

# ଲେଖକ ପରିଚୟ

ଜାତୀୟ ଓ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ, ଉଚ୍ଚକୋଟୀର ଗବେଷକ, ବରିଷ୍ଠ ସ୍ତମ୍ଭକାର, ପ୍ରଚଣ୍ଡ ବାଗ୍ମୀ, ସୁବକ୍ତା ତଥା ଯଶସ୍ୱୀ ଜନପ୍ରିୟ ବିଜ୍ଞାନ ସାହିତ୍ୟ ରଚନାକାର ଡ଼ଃ ଚିତ୍ତରଞ୍ଜନ ମିଶ୍ର ଓଡ଼ିଶା ବିଜ୍ଞାନ ଜଗତର ଏକ ଶୌର୍ଯ୍ୟଦୀପ୍ତ ପ୍ରତିଭା । ଅନନ୍ୟ ପ୍ରତିଭାଧାରୀ ମର୍ଯ୍ୟାଦାବନ୍ତ ବ୍ୟକ୍ତିତ୍ୱ ଡ଼ଃ ମିଶ୍ର ଯାଜପୁର ଜିଲ୍ଲାର ବରୀ ବ୍ଲକ ଅନ୍ତର୍ଗତ ଭବାନୀପୁର ଗ୍ରାମରେ ୧୯୪୯ ମସିହା ଜୁନ୍‌ମାସ ୨ ତାରିଖରେ ଏକ ଆଭିଜାତ୍ୟ ଓ ସଂସ୍କୃତିସମ୍ପନ୍ନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ଡ଼ଃ ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୬୯ ମସିହାରେ ରସାୟନ ବିଜ୍ଞାନରେ ସ୍ନାତକ ଓ ୧୯୭୧ ମସିହାରେ ସ୍ନାତକୋତ୍ତର ଶିକ୍ଷା ପରିସମାପ୍ତି କରି କଲିକତାର ଯାଦବପୁରସ୍ଥିତ ଦେଶର ସର୍ବପ୍ରଥମ ଗବେଷଣା ପ୍ରତିଷ୍ଠାନ " ଇଣ୍ଡିଆନ୍ ଆସୋସିଏସନ୍ ଫର୍ ଦି କଲ୍‌ଟିଭେସନ୍ ଅଫ୍ ସାଇନ୍‌ସ" ରେ ଉଚ୍ଚତର ଗବେଷଣା କରି ୧୯୭୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନ ଶାସ୍ତ୍ରରେ ପିଏଚ୍.ଡ଼ି ଉପାଧି ଲାଭ କରିଛନ୍ତି । ଆଲୁମିନିୟମ୍ ଶିଳ୍ପରେ ଉଚ୍ଚତର ଗବେଷଣା କରି ଡ଼ଃ ମିଶ୍ର ୨୦୦୯ ମସିହାରେ ଆମେରିକାର ରାଜଧାନୀ ୱାସିଂଟନ୍‌ସ୍ଥିତ "International University of Contemporary Studies" ରୁ "ଡକ୍ଟର ଅଫ୍ ସାଇନ୍ସ" (ଡ଼ି.ଏସ୍‌ସି) ଉପାଧି ଲାଭ କରିଛନ୍ତି । ଆଲୁମିନିୟମ୍ ଶିଳ୍ପରେ ଗବେଷଣା କରି ଡ଼ି.ଏସ୍‌ସି ଉପାଧି ଲାଭ କରିବାରେ ଡ଼ଃ ମିଶ୍ର ଭାରତବର୍ଷର ପ୍ରଥମ ବୈଜ୍ଞାନିକ ଅଟନ୍ତି ।

ରାସାୟନିକ ପ୍ରଯୁକ୍ତିବିଦ୍ୟାବିତ୍ ଡ଼ଃ ମିଶ୍ର ଜଣେ ସର୍ବଜନ ପ୍ରଶଂସିତ ବ୍ୟକ୍ତିତ୍ୱ । ସାରା ଜୀବନ ଉଚ୍ଚତର ବୈଜ୍ଞାନିକ ଗବେଷଣା ଓ ବୈଜ୍ଞାନିକ ସାହିତ୍ୟ ସାଧନାରେ ବ୍ରତୀ ରହି ଡ଼ଃ ମିଶ୍ର ଉତ୍କଳୀୟ ସାରସ୍ୱତ ଭଣ୍ଡାରକୁ କରିଛନ୍ତି ଋଦ୍ଧିମନ୍ତ । ଜାତୀୟ ଆଲୁମିନିୟମ୍ କମ୍ପାନୀ (ନାଲ୍‌କୋ)ର ପ୍ରାକ୍ତନ ବରିଷ୍ଠ ପଦାଧିକାରୀ ଡ଼ଃ ମିଶ୍ର ଗବେଷଣା ଓ ଉନ୍ନୟନ ବିଭାଗର ଡେପୁଟି ଜେନେରାଲ୍ ମ୍ୟାନେଜର୍ ଭାବେ ଅଧିଷ୍ଠିତ ରହି ଦେଶ ଓ ଦଶ ପାଇଁ ବହୁ ଗବେଷଣା ଲବ୍ଧ ଜ୍ଞାନ କୌଶଳ ସୃଷ୍ଟି କରିଛନ୍ତି । ବହୁ ଜାତୀୟ ଓ ଆନ୍ତର୍ଜାତୀୟ ପେଟେଣ୍ଟର ମଧ୍ୟ ସେ ଅଧିକାରୀ । ତାଙ୍କର ଏକ ପେଟେଣ୍ଟକୁ ଭିତ୍ତି କରି ନାଲ୍‌କୋ ତାର ଦାମନଯୋଡ଼ି ସ୍ଥିତ ଆଲୁମିନା କାରଖାନାରେ ତିରିଶ କୋଟି ଟଙ୍କା ବ୍ୟୟ କରି ଦେଶର ସର୍ବବୃହତ "ଡ଼ିଟରଜେଣ୍ଟ ଗ୍ରେଡ୍ ଜିଓଲାଇଟ୍ - ଏ" କାରଖାନା ପ୍ରତିଷ୍ଠା କରିଛି । ତାଙ୍କ ରଚିତ ବହୁ ବୈଜ୍ଞାନିକ ଗବେଷଣା ନିବନ୍ଧ ଜାତୀୟ ଓ ଆନ୍ତର୍ଜାତୀୟ ଜର୍ନାଲ, ସେମିନାର୍, କନଫରେନ୍ସ ଓ ସିମ୍ପୋଜିୟମମାନଙ୍କରେ ପ୍ରକାଶିତ ଓ ଉପସ୍ଥାପିତ ହୋଇ ଦେଶ ବିଦେଶରେ ଅସାଧାରଣ ସ୍ୱୀକୃତି ଲାଭ କରିଛି ।

ଡ଼ଃ ମିଶ୍ରଙ୍କ ସାମଗ୍ରିକ ଜୀବନ ବହୁ ପୁରସ୍କାର, ସମ୍ମାନ, ସ୍ୱୀକୃତି ଓ ପ୍ରଶଂସାରେ ଅଭିମଣ୍ଡିତ । ଡ଼ଃ ମିଶ୍ର ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟ ଅଧୀନସ୍ଥ ଜାତୀୟ ଗବେଷଣା ଉନ୍ନୟନ ନିଗମର "ଶ୍ରେଷ୍ଠ ସ୍ୱାଧୀନତା ଦିବସ ଜାତୀୟ ପ୍ରଯୁକ୍ତିବିଦ୍ୟା ପୁରସ୍କାର-୧୯୯୭", ନିଖିଳ ଭାରତି [illegible] ସ୍ଥିତ

# ବିଜ୍ଞାନର ଶଙ୍ଖନାଦ


ରଚନା : ଡ଼ଃ ଚିତ୍ତରଞ୍ଜନ ମିଶ୍ର

ପ୍ରକାଶକ : ଡ଼କ୍ଟର (ଶ୍ରୀମତୀ) ପ୍ରସନ୍ନା ରଥ
ବି-୩, ଏଚ୍.ଆଇ.ଜି କଲୋନୀ, ବରମୁଣ୍ଡା ହାଉସିଂ ବୋର୍ଡ଼
ଭୁବନେଶ୍ୱର-୭୫୧୦୦୩, ଫୋନ୍-(୦୬୭୪)୨୫୫୪୦୨୭

ପ୍ରଚ୍ଛଦ : ବଳଦେବ ମହାରଥୀ

ପ୍ରଥମ ପ୍ରକାଶ : ଶ୍ରୀଗୁଣ୍ଡିଚା, ୨୦୧୦

ମୁଦ୍ରଣ : ଶ୍ରୀ ଗୁରୁଗୌରାଙ୍ଗ ପ୍ରେସ୍, ଆଇ.ଆର.ସି. ଭିଲେଜ,
ଭୁବନେଶ୍ୱର-୭୫୧୦୧୫, ଫୋନ୍ : ୦୬୭୪-୨୫୫୪୨୮୧

ଅକ୍ଷର ସଜ୍ଜା : ଆଡ୍ ପ୍ରିଣ୍ଟ, ଏନ୍ ୧/୨୨୦, ଭୁବନେଶ୍ୱର-୭୫୧୦୧୫
ଫୋନ୍ : ୯୩୩୭୨୬୪୯୪୪

ମୂଲ୍ୟ : ତିନି ଶହ ଟଙ୍କା ମାତ୍ର


# BIGYANARA SANKHANADA


by Dr. Chittaranjan Mishra

***Publiser :***
Dr. (Smt.) Prasanna Rath
B-3, H.I.G Colony
Baramunda Housing Board
Bhubaneswar-751003

***First Edition:***
Srigundicha, 2010

***Printed at :***
Sri Guru Gouranga Press
IRC Village, Bhubaneswar-751015
Phone : 0674-2554281

***DTP & Layout by:***
AD Print, N1/220, Bhubaneswar-751015
Ph. : 9337264944

***Price :*** Rs. 300.00

# ସୂଚୀପତ୍ର

# ମୋ କଥା ମୋ ବ୍ୟଥା ...

ସାହିତ୍ୟର କିଛି ସୀମା ସରହଦ ନଥାଏ । ସାରା ଜୀବନଟାକୁ ଗୋଟାପଣ ଆବୋରି ରଖିଥାଏ ସାହିତ୍ୟ । ସାହିତ୍ୟ ଜୀବନର ଭାଷା ବଖାଣିଥାଏ, ମନର କଥା ଫୁଟାଇଥାଏ, ଆଶାର ବୀଣାରେ ଝଙ୍କାର ସୃଷ୍ଟି କରିଥାଏ । ଜୀବନର ସବୁ ସୋପାନରେ ସାହିତ୍ୟ ଆପଣାର ମଣିଷଟିଏ ପରି ଜୀବନକୁ କୋଳେଇ କାଖେଇ ନେଇଥାଏ । ମନରେ ଲହଡ଼ି ଉଠିଲେ ସାହିତ୍ୟରେ ଲହଡ଼ି ଉଠେ । ଆତ୍ମା କଇଁ କଇଁ କାନ୍ଦି ଉଠିଲେ ସାହିତ୍ୟ ବି ରାହା ଧରି କାନ୍ଦେ । ଜୀବନର ଦୀପ ଲିଭିଗଲେ ସାହିତ୍ୟ ବି ନିର୍ବାପିତ ହୋଇଯାଏ । ମନ, ଆତ୍ମା ଓ ପ୍ରାଣ ସହ ସାହିତ୍ୟର ଏକ ଅନ୍ତରଙ୍ଗ ସମ୍ପର୍କ ରହିଥାଏ । ଜୀବନର ଚୋରାବାଲିରୁ ଶାମୁକା ଗୋଟାଇବାକୁ ଯେତେବେଳେ ମୁଁ ମୋର କୁନି ହାତଟିକୁ ଆଗକୁ ବଢ଼ାଇ ଦେଇଥିଲି ସାହିତ୍ୟ ତାର ଲମ୍ବା ହାତଟିକୁ ମୋ ଆଡ଼କୁ ଲମ୍ବେଇ ଦେଇ ମୋତେ ଜାବୁଡ଼ି ଧରିଥିଲା, ଆଲିଙ୍ଗନ କରିଥିଲା, ସ୍ନେହ କରିଥିଲା, ବୋକ ଦେଇଥିଲା ।

ଜୀବନର ଘାସଗାଲିଚା ଉପରେ ମୁଁ ମୋର କୁନି କୁନି ପାଦଯୋଡ଼ିକୁ ଯେତେ ଯେତେ ଆଗକୁ ବଢ଼େଇ ନେଉଥାଏ ସାହିତ୍ୟ ମୋର କାଣି ଆଙ୍ଗୁଠିଟିକୁ ତାର ନରମ ହାତର ପରଶ ଦେଇ ଆଗକୁ ଆଗକୁ ବାଟ କଢ଼ାଇ ନେଉଥାଏ । ଯେଉଁଦିନଠୁଁ ଜୀବନକୁ ଜାଣିଲି, ଯେଉଁଦିନଠୁଁ ଜୀବନ ସହ ବନ୍ଧୁତ୍ୱ ସ୍ଥାପନ କରିବା ଆରମ୍ଭ କଲି ସେହିଦିନଠୁଁ ସାହିତ୍ୟ ସହ ମୋର ପରିଚୟ, ସମାଜ ସହ ମୋର ପରିଚୟ, ଜୀବନ ସହ ମୋର ପରିଚୟ, ସାରା ସଂସାର ସହ ମୋର ପରିଚୟ ।

କାହିଁକି କେଜାଣି ପାଗଳା ମନଟା ଟୁକୁ ଟୁକୁ ହୋଇ ସାହିତ୍ୟର ରାଜରାସ୍ତାରେ ଆଗକୁ ଆଗକୁ ପାଦ ଯୋଡ଼ିକୁ କଢ଼େଇନେଲା । ଧିରେ ଧିରେ ଜୀବନକୁ ଚିହ୍ନିଲି, ସପନକୁ ଚିହ୍ନିଲି, ମଣିଷକୁ ଚିହ୍ନିଲି । ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାର ଜିଜ୍ଞାସାକୁ ଚିହ୍ନିଲି । ଏହି ଚିହ୍ନା ଜଣାର ଅଙ୍କ କଷା କଷି ଭିତରେ ସମୟ ପିଠିରେ ଲାଉ ହୋଇ ଜୀବନର ବଡ଼ଦାଣ୍ଡରେ ପାଦଯୋଡ଼ିକୁ ଆଗକୁ ଆଗକୁ ବଢ଼ାଇ ଦେଲି । ସପନ ରାଣୀ ସହ ମିତ ବସିଲି । ଜୀବନକୁ କୋଳେଇ କାଖେଇ ଗେହ୍ଲା କଲି । ଜୀବନଠୁଁ ନିଜର ଏକ ପରିଚୟ ଧାର ମାଗିଲି । ସପନ କୁହୁଡ଼ିରେ ପହଁରିବାକୁ ଲାଗିଲି । ଆଶା ମରୀଚିକା ପଛରେ ଧାଇଁବାକୁ ଲାଗିଲି । ସମୟର ଢେଉ ଭାଙ୍ଗି ଜୀବନର ତାଳ ସହ ତାଳ ମିଳାଇଲି । ଚିହ୍ନାଜଣା ଓ ଭାବ ଦିଆନିଆର ଏହି ଦି ଦିନିଆ ଜୀବନ ଭିତରେ ନିଜକୁ ନିଜର ସଞ୍ଜ୍ଞା ବିଷୟରେ ପରିଚୟ ମାଗିଲି । ଦିନ

ରାତିର ଲୁଚକାଳି ଖେଳ ଭିତରେ ସମୟ ବିତାଇବାକୁ ଲାଗିଲି । ଟିକିମିକି ସ୍ୱପ୍ନର ତାଜମହଲଟିଏ ଗଢ଼ିବାକୁ ଲାଗିଲି । ଧୂଳିଧୂସରିତ ଜୀବନ ଭିତରେ ମଣିଷର ପରିଚୟଟିଏ ଖୋଜିବାକୁ ଲାଗିଲି । ନିଜକୁ ନିଜ ଭିତରେ ଆବିଷ୍କାର କରିବାକୁ ଲାଗିଲି । ସ୍ୱପ୍ନ ଓ ବାସ୍ତବତାର ଛକାପଞ୍ଝା ଖେଳ ଭିତରେ ଜୀବନର ମାନେ ଅଣ୍ଡାଳି ବସିଲି ।

ସମୟ ଗଡ଼ି ଚାଲିଲା ମାଗୁଣିର ଶଗଡ଼ ଗୁଳାରେ, ଗାଁ ଦାଣ୍ଡର ଧୂଳିଧୂସରିତ ମାଟି ବୁକୁରେ । ଦିନ ରାତି ଓ ରାତିଦିନର ମହାକାବ୍ୟ ଭିତରେ ସମୟ କଡ଼ ଲେଉଟାଇବାକୁ ଲାଗିଲା । ଜୀବନ ସୂର୍ଯ୍ୟ ସ୍ନାନ କଲା । ରାତିର ଘନ ଅନ୍ଧକାରର ଛାତି ଚିରି ଆଶାର ଅଙ୍କୁରୋଦଗମଟିଏ ଉଜ୍ଜୀବିତ ହେଲା ତାଳସଜର ପେଟ ଭିତରେ ଲୁଚି ରହିଥିବା ଆଶା ଆକାଂକ୍ଷାର ସ୍ୱପ୍ନିଳ ଇତିବୃତ୍ତ ପରି ।

ଚାହୁଁ ଚାହୁଁ ଗାଁ ଦାଣ୍ଡର ଧୂଳିଘର ଖେଳ, ମିଛିମିଛିକା ବୋହୂବୋହୂକା ଭାତ ଡ଼ାଲି ତରକାରୀର ଖେଳ, ଢ଼ିଙ୍କି ଆଉ କୁଲେଇର ଭାବ ଦିଆନିଆ ଖେଳର ସୁନାମଖା ହସକାନ୍ଦର ଦିନଗୁଡ଼ାକ ସମୟର ସାତତାଳ ପଙ୍କ ଭିତରେ କାହିଁ କୁଆଡ଼େ ପୋତି ହୋଇ ରହିଗଲା । ପବିତ୍ର ଗାଁ ଦାଣ୍ଡ ଧୂଳିମାଟିରେ ନାନା ବାୟା ଗୀତ ଗାଇ ସାଙ୍ଗସାଥିଙ୍କ ମେଳରେ ଗଡ଼ିଯିବାର ବେଳଗୁଡ଼ାକ ମୋତେ ଟା' ଟା' କରି କାହିଁ କୁଆଡ଼େ ଚାଲିଗଲେ । ଛୋଟ ପିଲାବେଳର ସାଙ୍ଗସାଥି ସୁମିତ୍ରା ବିଶ୍ୱାଳ, ସହଦେବ ସାମଲ, ଶଶିଭୂଷଣ ଗିରି, ପ୍ରେମସୁନ୍ଦର ମିଶ୍ର, ଭଗବତୀ ବିଶ୍ୱାଳ, ସୁନ୍ଦରୀ ଦାସ, ଦେବକୀ କର, ରେଖା ପତି, କବିର ଚୌଧୁରୀ, ମାଧବୀ ଚୌଧୁରୀ, କରୁଣାକର ବେଉରିଆ, ଦୁର୍ଯ୍ୟୋଧନ ପଣ୍ଡା ଆଦି ସମସ୍ତେ ନିଜ ନିଜର ଚଲାପଥରେ ନିଜ ନିଜର ସାଥି ଧରି, ନିଜ ନିଜର ସପନକୁ ଅଡ଼େଇ ନେଇ ଦୁନିଆର ଛାତି ଫଟାଫଟି ଭିଡ଼ ଭିତରେ କାହିଁ କୁଆଡ଼େ ହଜିଗଲେ । ଜୀବନର ଅମଡ଼ା ବାଟରେ ଚାଲିବାକୁ ପିଲାଟି ଦିନରୁ ଟିକେ ସଉକ ଥିଲା ବୋଲି ପିଲାଦିନର ଧୂଳିଘର ଖେଳ ଆଉ ମାଟି କାଦୁଅର ଚୁଲିରେ ଭାତ ରନ୍ଧାର ଦିନଗୁଡ଼ାକୁ ଛାତି ଭିତରେ ଜାବୁଡ଼ି ଧରି ଲୁହ ଆଉ ଲହୁର ଗଣ୍ଠିଲିକୁ କାନ୍ଧରେ ବୋହି, ସ୍ୱପ୍ନ ଓ ସମ୍ଭାବନାକୁ ଚିର ପାଥେୟ କରି ଆଗକୁ ଆଗକୁ ପାଦ ଦୁଇଟିକୁ ବଢ଼େଇନେଲି ଏକ ଅଜଣା ଅଶୁଣା ଦୀର୍ଘ କଣ୍ଟକିତ ଚଲାପଥରେ ।

ବହୁ ଘଟଣା ଘଟିଛି ଜୀବନରେ । ଘଟଣାଗୁଡ଼ାକ ତ ହେଲା ମୋ ଜୀବନର ମହାନାୟକ । ଯଦି ମୋ ଜୀବନରେ ଘଟଣାର ଘନଘଟା ଘଟିନଥାନ୍ତା, ମୋ ସ୍ୱପ୍ନର ଆକାଶରେ ଯଦି ବିଜୁଳି ଓ ଘଡ଼ଘଡ଼ିର ମହାତାଣ୍ଡବ ସୃଷ୍ଟି ହୋଇନଥାଆନ୍ତା ଜୀବନଟା

ହୁଏତ ଆଉଗୋଟାଏ ଅଜଣା ରାସ୍ତାରେ ବାଟଭାଙ୍ଗି ଚାଲିଯାଇଥାନ୍ତା । ସୁଖଦୁଃଖ, ଉଠାପକା ଜୀବନର ତାଳତମାଳ ଖେଳ ମୁଁ ଦେଖିଛି । ରାତ୍ରିର କାଳ କରାଳ ରୂପକୁ ମୁଁ ଅଙ୍ଗେ ଲିଭେଇଛି । ଜୀବନର କ୍ରୁର ଉପହାସକୁ ତିଳ ତିଳ କରି ସହିଛି । ବହୁତ ଭୋଗିଛି । ବହୁତ କାନ୍ଦିଛି । ବହୁତ କିଛି ପାଇଛି, ବହୁତ କିଛି ହରେଇଛି । ପାଇବା ଓ ହରେଇବାର ଅଛିଣ୍ଡା ଗଣିତକୁ ବୁଝିବାକୁ ଚେଷ୍ଟା କରିଛି । ମୁଁ ଯାହା ପାଇଛି ତାଠୁଁ କାହିଁ କେତେଗୁଣ ହରେଇଛି । ମୋ କଥା ମୋ ବ୍ୟଥାର କାହାଣୀ ଖାଲି ଆଇମା'ର ମନଲୋଭା କାହାଣୀଟିଏ ନୁହେଁ, ତାହା ଲୁହ ଲହୁର ଏକ ସୁଦୀର୍ଘ ଉପନ୍ୟାସ, ଦୁଃଖ, ଦୈନ୍ୟ, ଯନ୍ତ୍ରଣା ଓ ପ୍ରପୀଡ଼ିତ ଜୀବନର ଏକ ମହାକାବ୍ୟ, ସ୍ୱପ୍ନ ଓ ବାସ୍ତବତାର ଏକ ନିଛକ ପରିଚୟ ।

ଜୀବନକୁ ବହୁତ ନିକଟରୁ ଦେଖିଛି, ବହୁତ ଦୂରରୁ ବି ଦେଖିଛି । ଖାଲି ଆଖିରେ ବି ଦେଖିଛି, ଚଷମାରେ ବି ଦେଖିଛି । ଧୂଳିଝଡ଼ରେ ବି ଦେଖିଛି, ବନ୍ୟାର ପ୍ଲାବନ ଭିତରେ ବି ଦେଖିଛି । ଇନ୍ଦ୍ରଧନୁର ସପ୍ତରଙ୍ଗରେ ବି ଦେଖିଛି, ଗୋଧୂଳିର ବର୍ଣ୍ଣାଳୀ ଭିତରେ ବି ଦେଖିଛି । ପ୍ରାତଃ ସୂର୍ଯ୍ୟର ରକ୍ତାଭ ମୁରୁଜ ଭିତରେ ବି ଦେଖିଛି, ଉଦୁଉଦିଆ ଖରାବେଳର ଖଇ ଫୁଟା ତାତି ଭିତରେ ବି ଦେଖିଛି । ଅପରାହ୍ନର ଶାନ୍ତସିକ୍ତ ପରିବେଶରେ ବି ଦେଖିଛି, ସନ୍ଧ୍ୟା ଦୀପର ଅନାହୂତ ଭବିଷ୍ୟତ ଭିତରେ ବି ଦେଖିଛି । ଯାହା ଦେଖିଛି ତାଠୁଁ ବେଶୀ ଦେଖିନି । ଜୀବନ ଏକ ବିରାଟ ଉପନ୍ୟାସ । ଜନ୍ମମୃତ୍ୟୁର ଏକ ମହାକାବ୍ୟ । ଜୀବନ ଏକ ସୁଦୀର୍ଘ ନାଟକ । ଜୀବନକୁ ସବାରୀରେ ବୋହିନେବାକୁ ପଡ଼ିଥାଏ ମୃତ୍ୟୁର ଘାଟ ପର୍ଯ୍ୟନ୍ତ । ଅନ୍ତୁଡ଼ିଶାଳର କୁଆଁ କୁଆଁରାବଠୁଁ ଆରମ୍ଭ କରି ଶ୍ମଶାନର ବିକଟ ଚିତ୍କାର ପର୍ଯ୍ୟନ୍ତ ସବୁକିଛି ସହିବାକୁ ପଡ଼ିଥାଏ, ଭୋଗିବାକୁ ପଡ଼ିଥାଏ । ଜୀବନକୁ ଜୀଇଁବାକୁ ପଡ଼ିଥାଏ ମୃତ୍ୟୁ ପର୍ଯ୍ୟନ୍ତ । ମୃତ୍ୟୁ ଅପେକ୍ଷା କରିଥାଏ ଜୀବନକୁ ତା ଘରେ କୁଣିଆ କରିବା ପାଇଁ । ବହୁ ଜୀବନ ଦେଖିଛି, ବହୁ ମୃତ୍ୟୁ ଦେଖିଛି । ପିଲାରୁ ବୁଢ଼ା ହେବାର ଋତୁଚକ୍ରକୁ ବି ଦେଖିଛି । ୩୬୫ ଦିନ ଭିତରେ ବନ୍ଧା ହୋଇରହିଥିବା ଛଅଟି ଋତୁର ମନଲୋଭା ଚାତୁରୀମାକୁ ବି ଦେଖିଛି ।

କି କଥା କହିବି, କାହାକୁ ବା କହିବି, କାହିଁକି ବା କହିବି, ଶୁଣିବ ବା କିଏ, ପଢ଼ିବ ବା କାହିଁକି ? ସତ କହିବି ନା ମିଛ କହିବି, ସୁଖ କହିବି ନା ଦୁଃଖ କହିବି, ମୁଁ ତ ଜୀବନ ଜିଉଥିବା ମଣିଷଟିର ଜୀବନର କଥା କହିବି । କାଗଜ କଲମ ସାଥିରେ ଯେବେଠୁଁ ମୁଁ ମିତ ବସିଲି ସେବେଠୁଁ ଦି'ଧାଡ଼ି ଲେଖାପଢ଼ା କରିବା ଆରମ୍ଭ କଲି । ଅତି ପ୍ରିୟ ଅକ୍ଷରମାନଙ୍କ କୁହୁକ ମାୟାରେ ପଡ଼ି ଶବ୍ଦ ବ୍ରହ୍ମର

ହାତ ଧରି ଶଙ୍ଖ ଶିଳ୍ପୀଟିଏ ହେବାକୁ ମନ ବଳାଇଲି । ସୁଦୀର୍ଘ ଏ ଯାତ୍ରାପଥ । ବହୁ ଖରା, ବହୁ ବର୍ଷା, ବହୁଶୀତ, ବହୁ ତାତି । ବହୁ ଚନ୍ଦ୍ରବିଧୌତ ରଜନୀ ଦେଖିଛି, ତାରାର ଅଗଣାରେ ଜହ୍ନର ଲୁଚକାଳି ଖେଳବି ଦେଖିଛି । ଚନ୍ଦ୍ରକୁ ମେଘ ଢ଼ାଙ୍କି ଦେବାର ଅଭୁଲା ଦୃଶ୍ୟକୁ ବି ଦେଖିଛି । ମେଘର ଛାତିଚିରି ଚନ୍ଦ୍ର ପୁଣି ନୀଳ ଆକାଶରେ ଉଙ୍କି ମାରିବାର ଅପୂର୍ବ ଆଭାକୁ ବି ମନଭରି ଉପଭୋଗ କରିଛି ।

ଜୀବନ ତ ଗୋଟାଏ ଶୃଙ୍ଖଳା ନଈର ଢ଼େଉ । ଏ ଢ଼େଉର ପିଠିରେ ବି ପହଁରିବାକୁ ପଡ଼ିଥାଏ । ହାତଗୋଡ଼ ବାଡ଼େଇବାକୁ ବି ପଡ଼ିଥାଏ । ଲହୁଲୁହାଣ ହେବାକୁ ପଡ଼ିଥାଏ । ନଈର ଆରପାରିରେ ପହଁଞ୍ଚିବାକୁ ପଡ଼ିଥାଏ । ମଝି ନଈର ଗଣ୍ଡରେ ବି ବୁଡ଼ିଯିବାକୁ ପଡ଼ିଥାଏ । ନଈବାଲିର ଢ଼ହ ଢ଼ହ ତତଲା ବାଲିରେ ବି ଚାଲିବାକୁ ପଡ଼ିଥାଏ । ମୁଠା ମୁଠା ବାଲିକୁ ବି ଖାଇବାକୁ ପଡ଼ିଥାଏ । ଉଦିତ ସୂର୍ଯ୍ୟର ରଶ୍ମିକୁ ବି ଆଲିଙ୍ଗନ କରିବାକୁ ପଡ଼ିଥାଏ । ଅସ୍ତରାଗର ନୀଳିମାକୁ ବି କାଖେଇ କୋଳେଇ ନେବାକୁ ପଡ଼ିଥାଏ । ଏଇଟାତ ଜୀବନ । ଏଠି ଦି ଦିନିଆ କୁଣିଆ ସଭିଏଁ । ସମସ୍ତଙ୍କୁ ବାହୁଡ଼ି ଯିବାକୁ ପଡ଼ିଥାଏ ନିଜ ନିଜର ଘରକୁ ହାଟ ସଉଦା ସାରି । ବର୍ଷାରେ ଭିଜି ଭିଜି, ଖରାରେ ସିଝି ସିଝି, ଶୀତ କାକର ରାତିରେ କନ୍ଥା କମ୍ବଳର ଦରସିଆଁ ଚାଦରକୁ ଆପାଦ ମସ୍ତକ ଘୋଡ଼େଇ ହୋଇ ।

ମୁଁ ଯାହା କହିବି ସତ କହିବି, ଆଉ ସତ ଛଡ଼ା ଯଦି କିଛି କହେ ତେବେ ଜୀବନର କଥା ହିଁ କହିବି । ଜୀବନର ବଢ଼ଦାଣ୍ଡରୁ ଯେଉଁ ଟିକକ ପରିଚୟ ମୁଁ ସାଉଁଟି ଆଣିଛି ତାହା ଆପଣମାନଙ୍କ ସ୍ନେହ ଓ ଆଶୀର୍ବାଦର ଫଳ । କ'ଣ ବା ଲେଖିଛି, କି କଥା ବା ଲେଖିଛି । ମୋ ଜୀବନ ନାଟକର ତ ଆପଣମାନେ ହେଲେ ମହାନାୟକ । ଆପଣମାନଙ୍କ ଭିତରୁ ମୁଁ ଚରିତ୍ରମାନଙ୍କୁ ଖୋଜି ଆପଣମାନଙ୍କୁ ଭେଟି ଦେଇଛି । ପିଲାଦିନର ଗୋଟିଏ ଦୁଇଟି ଘଟଣା ଏଠାରେ ଉପସ୍ଥାପନ କରିବାକୁ ମନ ବଳାଉଛି । ମୋ ପୂର୍ବ ପୁସ୍ତକମାନଙ୍କରେ ମୁଁ କହିଛି ମୋ ଜୀବନରେ ଯଦି କୌଣସି ଗୋଟିଏ ବ୍ୟକ୍ତିବିଶେଷ ମୋର ସମସ୍ତ ବୈଜ୍ଞାନିକ ଚଲାପଥକୁ ସମ୍ପୂର୍ଣ୍ଣ ରୂପେ ଆଚ୍ଛାଦିତ କରି ରଖିଛି ସେ ଚରିତ୍ରଟି ହେଲା ମୋ ଜେଜେ ମା' । ମୁଁ ଆଜି ଯାହା କିଛି ଖାଲି ତା'ରି ପାଇଁ । ଦଶବର୍ଷ ଦିନରୁ ମା'କୁ ହରାଇ ଜେଜେମା'ର ପଣତକାନି ଧରି ଗାଁ ଦାଣ୍ଡରେ ବାଟ ଚାଲି ଶିଖିଛି । ଯଦି ଜେଜେମା' ଭଳି ଚରିତ୍ରଟିଏ ମୋ ଜୀବନରେ ଆସିନଥାନ୍ତା ମୁଁ ଆଜି ସମୟର ଅତଳ ଗର୍ଭରେ କାହିଁ କେଉଁଠି ଲୀନ ହୋଇଯାଇଥାନ୍ତି । ମୋର ସବୁକିଛି ପାଇବା ଓ ହରେଇବା, ସୁଖଦୁଃଖ,

ହାନିଲାଭ, ଜୟପରାଜୟ ଏହି ଜେଜେମା' ଚରିତ୍ରଟିର ମେରି ଚାରିକଡ଼େ ସାରାଜୀବନ ଘୂରି ବୁଲିଛି । ମୋ ଜୀବନରୁ ଏହି ଚରିତ୍ରଟିକୁ ବିଯୁକ୍ତ କରିଦେଲେ ମୋର କିଛି ସ୍ଥିତି ରହିବନିଁ, ଅସ୍ତିତ୍ୱ ରହିବନି । ଏହି ଚରିତ୍ରଟିର ପଣତକାନି ମୋତେ ସାହା ଭରସା ଦେଇଛି, ଅଭୟ ଦେଇଛି, ବର ଦେଇଛି । ଗାଁ ଦାଣ୍ଡ ବଟମୂଳର ଛାଇ ଦେଇଛି, ବ୍ରାହ୍ମଣୀ ନଈକୂଳ ଓସ୍ତଗଛର ଚାନ୍ଦୁଆ ଦେଇଛି । ଗାଁ ଠାକୁରାଣୀ ଭବାନୀଶ୍ୱରୀଙ୍କ ଅସୁମାରୀ ଆଶୀଷ ଦେଇଛି । ଏହି ଚରିତ୍ରଟିର ମହନୀୟତା, ଏହି ଚରିତ୍ରଟିର ପରାକାଷ୍ଠା, ଏହି ଚରିତ୍ରଟିର ଚାରିତ୍ର୍ୟତା ଅବର୍ଣ୍ଣନୀୟ । ଯେତେ ବଖାଣିଲେ ବି ସରିବନି, ଯେତେ ଗାଇଲେ ବି ପାଟି ପଡ଼ିବନି, ଯେତେ ଶୁଣିଲେ ବି ଅଶୁଣା ଲାଗିବ । ଏହି ଚରିତ୍ରଟିର ପଣତକାନିର ଛାଇ, ଏହି ଚରିତ୍ରଟିର ଆଶୀର୍ବାଦ, ଏହି ଚରିତ୍ରଟିର ଅହେତୁକ ଭଲପାଇବା ମୋତେ ପିଲାଟି ଦିନରୁ କାନ୍ଥ ବାଡ଼ ଧରି ଠିଆ ହେବାରେ ସାହାଯ୍ୟ କରିଛି । ଯଦିଓ ସେ ମୋତେ ତା ଲାହି କାଟି ଜନମ ଦେଇନି ହେଲେ ସେ ମୋ ସ୍ୱପ୍ନକୁ  ଜନ୍ମ ଦେଇଛି, ଅସ୍ମିତ୍ୱକୁ ଜନ୍ମ ଦେଇଛି, ମୋ ଭବିଷ୍ୟତକୁ ଇନ୍ଦ୍ରଧନୁର ସାତରଙ୍ଗରେ ରୂପାୟିତ କରିଛି । ମୁଁ ଯଦି ମୋର ସମସ୍ତ ସଫଳତାକୁ ତା ଅଣ୍ଟିରେ ଗୋଟାପଣେ ଅଜାଡ଼ି ଦିଏ ତେବେ ବି ତା ଅଣ୍ଟି ଖାଲି ପଡ଼ିବ, ତେବେ ବି ତା ସ୍ୱପ୍ନର ଚାଙ୍ଗୁଡ଼ି ଅପୂରା ରହିବ । ଏହି ଚରିତ୍ରଟି ପାଖରେ ମୁଁ ସଦା ନମସ୍ୟ, ଚିର ଋଣୀ ଓ ସ୍ନେହର ଭିକାରୀ ହୋଇ ରହିଥିବି ।

ହେଲେ ଆଜି ଜେଜେମା' ନାହିଁ, ଜେଜେମା'ର ପଣତ କାନି ବି ନାହିଁ । କାଳିଗାଈର କ୍ଷୀର ବି ନାହିଁ, ରଙ୍ଗାରୁ ଲମ୍ବି ପଡ଼ିଥିବା ସରୁ କଷି କାକୁଡ଼ି ବି ନାହିଁ । କଦଳୀଆ ଆମ୍ବଗଛର ଛାଇ ବି ନାହିଁ, ଆମ୍ବ ଡ଼ାଳୁଆର ସେ ମହକ ବି ନାହିଁ । ଓଳିମୂଳ ବାଉଁଶ ଗଛ ବି ନାହିଁ, ତେନ୍ତୁଳି ଗଛର ତେନ୍ତୁଳି ବି ନାହିଁ । ସାହାଡ଼ା ଗଛ ମୂଳର ଉଇ ହୁଙ୍କା ବି ନାହିଁ, ତାଳସଜର ଚେକି ବି ନାହିଁ । ସବୁକିଛି ହଜିଗଲା ତା ହଜିଗଲା ପରେ । ସେ ଆରପାରିକୁ ଟିକେଟ୍ କାଟିଲା ପରେ ଜୀବନଟା ଭାରି ଦହ ଗଞ୍ଜ ହେଲା, ନୂଆ ପୋଷାକ ପିନ୍ଧିଲା, ନୂଆ ରୂପରେ ଉଭା ହେଲା, ନୂଆ ପରି ଦିଶିଲା । ସବୁକିଛି ଓଲଟ ପାଲଟ ହୋଇଗଲା । ସ୍ଥିତି ଦୋହଲି ଗଲା । ଆକାଶ ମୁଣ୍ଡରେ ଖସି ପଡ଼ିଲା । ଗୋଡ଼ ତଳୁ ମାଟି ଗଳି ପଡ଼ିଲା । ସବୁକିଛି ସ୍ଥିର ଓ ଶୂନ୍‌ଶାନ୍ ହୋଇଗଲା, ସ୍ତବ୍ଧ ହୋଇଗଲା, ଜଡ଼ ହୋଇଗଲା ।

ଆଜି ମୁଁ ଦିନରାତି ଝୁରି ହେଉଛି ଜେଜେମା'କୁ । ବାହୁନୁଛି ରାହା ଧରି ରାତ୍ରିର ଗାଢ଼ ଅନ୍ଧକାର ଭିତରେ । ଦୁଇ ହାତରେ ଦରାଣ୍ଡି ହେଉଛି ତା ଲୋଚାକୋଚା

ଶେଯକୁ । କୋହ ଆଉ ଲୁହର ବନ୍ୟାରେ ଭିଜି ଯାଉଛି ଗୋଟାପଣ ମୋ ମନର ଅଗଣା । ତାପରେ ମୁହଁ ମାଡ଼ି ଶୋଇ ପଡୁଛି ତକିଆ ବୁକୁରେ, ସ୍ୱପ୍ନକୁ ଆଲିଙ୍ଗନ କରି, ଭବିଷ୍ୟତକୁ ନମସ୍କାର କରି, ଆଶା ଆକାଂକ୍ଷାକୁ ପାଥେୟ କରି । ରାତିପାହି ସକାଳ ହେଉଛି । ଆମ୍ବ ଗଛରେ କୋଇଲିର କୁହୁ ତାନ, ପଣସ ଡ଼ାଳରେ କୁଆର କା' କା' ରାବ ମନ ବୀଣାରେ ନୂତନ ଶିହରଣ ସୃଷ୍ଟି କରୁଛି । ଆମ୍ବ ଗଛରେ ନୂଆ ବଉଳ ମହକୁଛି । ନୂଆ ସମୟ, ନୂଆ ମଣିଷ, ନୂଆ ଆକାଶ ଓ ନୂଆ ପୃଥିବୀକୁ ଆପଣେଇ ନେବାକୁ ଚେଷ୍ଟା କରୁଛି । ସମୟ ପୁଣି ବହି ଚାଲୁଛି ବ୍ରାହ୍ମଣୀ ନଈର ସୁଅ ପିଠିରେ, ଆଗାମୀ କାଲିକୁ ଆହ୍ୱାନ କରିବା ପାଇଁ, ଜୀବନକୁ ଯୋଡ଼ ହସ୍ତରେ ପ୍ରଣାମ କରିବା ପାଇଁ, ସ୍ୱପ୍ନ ଓ ସମ୍ଭାବନାକୁ କୋଳକୁ ଆଉଜେଇ ଆଣିବା ପାଇଁ ।

ଆଉ ଗୋଟାଏ ବିଶାଳ ଚରିତ୍ର ଯିଏ ମୋ ଭିତରେ ଲୁଚି ରହିଥିବା ମୋ ପରିଚୟକୁ, ମୋ ସ୍ୱାତନ୍ତ୍ର୍ୟକୁ ମୋ ଭିତରୁ ଗୋଟାପଣ କାଢ଼ିଆଣି ଜୀବନର ବଡ଼ ଦାଣ୍ଡରେ ଠିଆ କରାଇଦେଇଛି- ସେ ହେଲା "ସମୟ" । ସମୟର ବଡ଼ଦାଣ୍ଡରେ ବାଡ଼ି ଖଣ୍ଡେ ଧରି ଠୁକ୍ ଠୁକ୍ ହୋଇଚାଲିଛି ଆଉ ସେହି ସମୟର ବଡ଼ଦାଣ୍ଡରେ ପାଇଛି ଏକ ଆଦର୍ଶ ଶିକ୍ଷାନୁଷ୍ଠାନ "ବାଣୀଶ୍ରୀ" । ଆମ ଗାଁ ଭବାନୀପୁରରୁ ଡ଼ାକେ ବାଟରେ ଗଢ଼ି ଉଠିଥିବା ଏହି ଅନନ୍ୟ ଶିକ୍ଷାନୁଷ୍ଠାନଟି ମୋର ସମ୍ପୂର୍ଣ୍ଣ ପରିଚୟ । କୁମ୍ଭାର ତାର ଦୁଇ ହାତରେ ମୋଞ୍ଚାଏ କଞ୍ଚା କାଦୁଅ ଧରି ହାଣ୍ଡି ଗଢ଼ିଲା ପରି ମୋତେ ଗଢ଼ି ତୋଳିଛି "ବାଣୀଶ୍ରୀ" । ମୋତେ ଏତୁଟିରୁ ଏତୁଟିଏ କରିଛି "ବାଣୀଶ୍ରୀ" । ମୋ ଆଖିରେ କଜଳ ଲଗେଇଦେଇଛି "ବାଣୀଶ୍ରୀ" । ମୋ ପାଦକୁ ସମୟର ବଡ଼ଦାଣ୍ଡରେ ଆଗେଇ ନେଇଛି "ବାଣୀଶ୍ରୀ" । ସମୟର ବହୁଦାନ, ବହୁ ପ୍ରତିଦାନ ଓ ବହୁ ଆଶୀର୍ବାଦର ଫଳ ମୁଁ । ମୁଁ ପିଲାଟି ଦିନର ବର୍ଷା ଦେଖିଛି, ଝଡ଼ ଦେଖିଛି, ନଈବଢ଼ି ଦେଖିଛି । ଜୀବନର ଚିତ୍କାର ଶୁଣିଛି, ଜୀବନର ଜଉଘରେ ହୁତୁହୁତୁ ହୋଇ ଜଳୁଥିବା ସ୍ୱପ୍ନର ଦହନକୁ ଦେଖିଛି । ବାସ୍ତବତାର ବୁକୁଫଟା ଚିତ୍କାର ଶୁଣିଛି, ଅସହ୍ୟ ପୀଡ଼ାକୁ ବି ସହିଛି । ମୋ ମନର ଫୁଲ ବଗିଚାରେ ଫୁଲଟିଏ ଫୁଟିବାର ଦେଖିଛି, ଫୁଲଟିଏ ମଉଳି ଯିବାର ବି ଦେଖିଛି । ଗୋଡ଼ରେ କଣ୍ଟାଫୁଟିବାର ପୀଡ଼ା ସହିଛି । "ବାଣୀଶ୍ରୀ" ର ଭେଷଜ ଉଦ୍ୟାନରୁ ମୁଠେ ବିଶଲ୍ୟକରଣୀ ପତ୍ର ତୋଳି ଆଣି ମୋ କୁନି କୁନି ହାତରେ ତାକୁ ଦଳି ସେଥିରେ ଲେପି ଦେଇଛି । "ବାଣୀଶ୍ରୀ" ର ପିଜୁଳି ବଗିଚା, ଆମ୍ବ ବଗିଚା, କାଜୁ ବଗିଚା, ପଣସ ବଗିଚା, ୟୁକାଲିପଟାସ୍ ବଗିଚା, ଝାଉଁ ବଣ ଓ ବ୍ରାହ୍ମଣୀ ନଦୀର ସୈକତ ଶଯ୍ୟା – ସବୁ ଦେଖିଛି, ସବୁ ଭୋଗିଛି, ସବୁ ଅଙ୍ଗେ ଲିଭେଇଛି ।

# ଭାରତବର୍ଷରେ ବିଜ୍ଞାନର ଦୀପ କଣ ଲିଭିଯିବ ?

ଭାରତବର୍ଷରେ ବିଜ୍ଞାନର ମୃତ୍ୟୁ ଘଣ୍ଟି ଠଣ ଠଣ ହୋଇ ବାଜି ଉଠିଲା ପରି ଲାଗିଲାଣି । ଦିନେ ଯାହା ଭାରତୀୟ ଯୁବ ପିଢ଼ିଙ୍କ ସ୍ୱପ୍ନର ସୌଦାଗର ସାଜିଥିଲା ତାହା ଆଜି କର୍ଦ୍ଦମାକ୍ତ ରାଜରାସ୍ତାରେ ଭୂଲୁଣ୍ଠିତ । ଫଳତଃ ବିଶ୍ୱ ବିଜ୍ଞାନର ଦରବାରରେ ଭାରତୀୟ ବିଜ୍ଞାନର ମାନ, ମର୍ଯ୍ୟାଦା ଓ ପ୍ରତିପତ୍ତି ଆଜି ଅଧୋଗତି ଆଡ଼କୁ ଦ୍ରୁତ ଧାବମାନ । ସମୟର ପାଲିଙ୍କିରେ ରାଜାବେଶ ସାଜିବାକୁ ଘରୁ ହାତରେ ଗୁଡ଼, ନଡ଼ିଆ ଓ ଅରୁଆ ଚାଉଳ ଧରି ପାଦ ବଢ଼େଇଥିବା ଭାରତୀୟ ବିଜ୍ଞାନ ଆଜି ସମୟର ବଡ଼ ଦାଣ୍ଡରେ ଲାଞ୍ଛିତ ଓ ଅବହେଳିତ । ଏହି ଅଭୂତପୂର୍ବ ବୈଜ୍ଞାନିକ ଝଡ଼ ଝଞ୍ଜାର ଖଟାମିଠା ସ୍ୱାଦକୁ ପାଠକଙ୍କ ଦରବାରରେ ପରିବେଷଣ କରାଯିବାର ପ୍ରଚେଷ୍ଟା କରାଯାଇଛି ଏହି ପ୍ରବନ୍ଧଟି ମାଧ୍ୟମରେ... ।

ସୂଚନା ପ୍ରଯୁକ୍ତି ବିଦ୍ୟାର ବିଶ୍ୱ କର୍ମଶାଳା ଭାବେ ଏବେ ଭାରତବର୍ଷକୁ ବିବେଚନା କରାଯାଉଛି । ପୁନଶ୍ଚ ଇଂରାଜୀ ଭାଷା ବ୍ୟବହାର କରୁଥିବା ବିଜ୍ଞାନ ଓ ବୈଷୟିକ ମାନବ ସମ୍ବଳ କ୍ଷେତ୍ରରେ ଭାରତ ବିଶ୍ୱରେ ଦ୍ୱିତୀୟ ସ୍ଥାନ ଅଧିକାର କରିବାର ବିରଳ ଗୌରବ ଅର୍ଜନ କରିଛି । ଖୁସିରେ ଗଦ୍‌ଗଦ୍ ହୋଇ ଛାତି କୁଣ୍ଢେମୋଟ କରିବା ପାଇଁ ଏଭଳି କାରଣମାନ ଯଥେଷ୍ଟ ହୋଇଥିଲେ ମଧ୍ୟ ଭାରତୀୟ ବୈଜ୍ଞାନିକ ସମାଜର ମନରେ କିନ୍ତୁ ଟିକେ ହେଲେ ବି ସରସତା ନାହିଁ । ମୁହଁକୁ ହରଷ ଭାବ ଟିକକ କାହିଁ କୁଆଡ଼େ ଉଭେଇ ଯାଇଛି । ବୈଜ୍ଞାନିକ ସଫଳତାକୁ ନେଇ ଦେଶରେ ଉତ୍ସବ ମୁଖର ପର୍ବ ପାଳନ କରିବା ପରିବର୍ତ୍ତେ ଭାରତୀୟ ବୈଜ୍ଞାନିକଙ୍କ ମନରେ ଭଙ୍ଗା ପଡ଼ିଯାଇଛି । ଭାରତୀୟ ବିଜ୍ଞାନ ବହୁବିଧ ସମସ୍ୟାର ଚକ୍ରବ୍ୟୁହରେ ପଡ଼ି ଯାହା ଖାଲି ଛଟପଟ ହୋଇ ଚାଲିଛି ବୋଲି ସେମାନେ ସେମାନଙ୍କର ତିକ୍ତ ଅଭିବ୍ୟକ୍ତି ପ୍ରକାଶ କରିଥାନ୍ତି ।

ପ୍ରକୃତରେ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କର ମୁଖ୍ୟ ବୈଜ୍ଞାନିକ ଉପଦେଷ୍ଟା ପ୍ରଫେସର ସି.ଏନ୍.ଆର୍. ରାଓ ୨୦୦୬ ଜୁଲାଇ ମାସ ୩ୟ ସପ୍ତାହରେ ପ୍ରଧାନମନ୍ତ୍ରୀଙ୍କୁ ଉପସ୍ଥାପିତ କରିଥିବା ଏକ ସାଇଣ୍ଟିଫିକ୍ ପ୍ରେଜେଣ୍ଟେସନ୍‌ରେ ଭାରତୀୟ

ବିଜ୍ଞାନର ଦୁଃଖଭରା କାହାଣୀର ଅବତାରଣା କରିଥିଲେ । ସେ ପ୍ରଧାନମନ୍ତ୍ରୀଙ୍କୁ ସ୍ପଷ୍ଟ କଣ୍ଠରେ କହିଲେ ଯେ - "ମୁଁ ଭାରତୀୟ ବିଜ୍ଞାନର ଏପରି ଦୁଃଖଦ ପରାଭବ ଅବଲୋକନ କରି ଅତ୍ୟନ୍ତ ମର୍ମାହତ ଓ ଲଜ୍ଜିତ ଅଟେ । ମୁଁ ଅତ୍ୟନ୍ତ ଦୁଃଖିତ ଯେ ସରକାର ଓ ଜନସାଧାରଣଙ୍କ ଜୀବନଯାତ୍ରା ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ରହି ମଧ୍ୟ ଆମେ ବିଜ୍ଞାନକୁ ଏକ "ବଜେଟ ଆଇଟମ" ବୋଲି ମାତ୍ର ବିବେଚନା କରିଥାଉ । ସମ୍ଭବତଃ ବଜେଟରେ ବିଜ୍ଞାନ ପାଇଁ ହେଉଥିବା ପୁଞ୍ଜିଲଗାଣ ଏକ ଅଣ ଉତ୍ପାଦନକାରୀ ବ୍ୟବସ୍ଥା ଭାବେ ବିବେଚିତ ହେଉଛି । ମୁଁ ଆପଣଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ଏପରି କଡ଼ା କଥା କହୁଛି ବା ମୋ ଲେଖନୀ ମୂନରେ ଗଭୀର ମାନସିକ ଅଭିବ୍ୟକ୍ତି ପରି ପ୍ରକାଶ କରୁଛି କାରଣ ମୁଁ ଆପଣଙ୍କୁ ଏକ କଠୋର ଚେତାବନୀ ଦେବାକୁ ଚାହେଁ ଯେ ବେଳ ଥାଉଁ ଥାଉଁ ଭାରତୀୟ ବୈଜ୍ଞାନିକ ଦୃଶ୍ୟପଟର ପ୍ରତ୍ୟେକ ଅଧ୍ୟାୟକୁ ଆପଣ ତନ୍ନ ତନ୍ନ କରି ପଢ଼ନ୍ତୁ ଓ ବିଜ୍ଞାନର ନାଡ଼ି ନକ୍ଷତ୍ରକୁ ସଠିକ୍‌ଭାବେ ଚିହ୍ନନ୍ତୁ ଓ ତଦନୁଯାୟୀ ଆବଶ୍ୟକୀୟ କାର୍ଯ୍ୟପନ୍ଥା ଗ୍ରହଣ କରନ୍ତୁ । ଅନ୍ୟଥା ଭାରତମାଟିରେ ଭାରତୀୟ ବିଜ୍ଞାନର ମୃତ୍ୟୁ ଶୋଭାଯାତ୍ରାରେ ସାମିଲ୍ ହେବା ପାଇଁ ଆପଣ ବେଶ ପୋଷାକ ପିନ୍ଧି ସଜବାଜ ହୋଇ ରହନ୍ତୁ ।"

## ଆଗ୍ରହରେ ଭଟ୍ଟା :

ପ୍ରଫେସର ରାଓଙ୍କ ଏପରି ଏକ କଡ଼ା ଚେତାବନୀ ଦେବାରେ କଣ ଡେରି ହୋଇଗଲା କି ? ବିଜ୍ଞାନ ପ୍ରତି ନୂତନ ଯୁବ ପିଢ଼ିଙ୍କ ମନରେ ଆଜି ସାମାନ୍ୟତମ ରୁଚି ବା ଆଗ୍ରହ ନାହିଁ କହିଲେ ଚଳେ । ବହୁ ଭାରତୀୟ ବିଶ୍ୱବିଦ୍ୟାଳୟ ବିଭିନ୍ନ ମୌଳିକ ବିଜ୍ଞାନ ବିଷୟକ ସ୍ଥାନ ସଂଖ୍ୟା ପୂରଣ କରିବାରେ ବିଫଳ ହେଉଛନ୍ତି । ଉଦାହରଣ ସ୍ୱରୂପ ଏବର୍ଷ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ବିଭିନ୍ନ ଖ୍ୟାତନାମା କଲେଜ ମାନଙ୍କରେ ମଧ୍ୟ ବିଜ୍ଞାନ ବିଷୟକ ସ୍ଥାନ ସଂଖ୍ୟା ଖାଲି ପଡ଼ିଛି । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମଧ୍ୟ ଉତ୍ତମ ଓ ଉପଯୁକ୍ତ ଶିକ୍ଷକଟିଏ ପାଇବାରେ ଫଳବତୀ ହୋଇପାରୁ ନାହାନ୍ତି । ଉଦାହରଣ ସ୍ୱରୁପ ବମ୍ବେ ବିଶ୍ୱବିଦ୍ୟାଳୟ ଓ ଆଲିଗଡ଼ ମୁସଲିମ ବିଶ୍ୱବିଦ୍ୟାଳୟରେ କୌଣସି ନିୟୁକ୍ଲିଅର୍ ଫିଜିକ୍ସ ଫାକଲ୍ଟି ସଦସ୍ୟ ନାହାନ୍ତି । ତାର କାରଣ ହେଲା ସେମାନେ ଏଥିପାଇଁ ଖୋଜି ଖୋଜି ଯୋଗ୍ୟତମ ବ୍ୟକ୍ତି ବିଶେଷ ପାଇପାରି ନାହାନ୍ତି । ନିୟୁକ୍ଲିଅର ସାଇନ୍ସ ସେଣ୍ଟରର ନିର୍ଦ୍ଦେଶକ ଶ୍ରୀ ଅମିତ ରାୟ ଏପରି ଏକ ନିଛକ ସତକଥା କହି

ଆମ ସମସ୍ତଙ୍କ ଆଖି ଖୋଲି ଦେଇଛନ୍ତି । ଆଉ ଅନ୍ୟାନ୍ୟ ବହୁ ବିଜ୍ଞାନ କଲେଜ ମାନଙ୍କରେ ମଧ୍ୟ ସେହି ଏକା ଦୁର୍ଦ୍ଦଶା ।

ଆଉ ଏକ ସମସ୍ୟା ହେଲା କଲେଜମାନଙ୍କରେ ପ୍ରଦାନ କରାଯାଉଥିବା ବିଜ୍ଞାନ ଶିକ୍ଷା ଅତ୍ୟନ୍ତ ମାନଧାତା ଅମଳର ଓ ନିହାତି ପୁରୁଣା । କଲିକତାସ୍ଥିତ ସତ୍ୟେନ୍ଦ୍ର ନାଥ ବୋଷ ନ୍ୟାସନାଲ ସେଣ୍ଟର ଫର ବେଶିକ୍ ସାଇନ୍ସର ପୂର୍ବତନ ପ୍ରଫେସର ପାର୍ଥ ଘୋଷ କୁହନ୍ତି ଯେ "ସ୍କୁଲ କଲେଜ ମାନଙ୍କରେ ବିଜ୍ଞାନ ଚିତ୍ତାକର୍ଷକ ଭାବେ ଆଦୌ ପଢ଼ାଯାଉ ନାହିଁ । ଫଳତଃ ଛାତ୍ରମାନେ ବିଜ୍ଞାନ ଆଡ଼କୁ ଆକର୍ଷିତ ହେବା ପରିବର୍ତ୍ତେ ବିକର୍ଷିତ ହେଉଛନ୍ତି ।"

ଇଣ୍ଟର ନ୍ୟାସନାଲ୍ ସେଣ୍ଟର ଫର ଜେନେଟିକ ଇଂଜିନିୟରିଂ ଏବଂ ବାୟୋ ଟେକ୍ନୋଲୋଜିର ନିର୍ଦ୍ଦେଶକ ବିରେନ୍ଦ୍ର ଚୌହାନ୍ ଅନୁଭବ କରନ୍ତି ଯେ – "ବିଜ୍ଞାନ ପ୍ରତି ଛାତ୍ରମାନଙ୍କ ମନରେ ଥିବା କୌତୁହଳ ଭାବନା ସ୍କୁଲ ସ୍ତରରେ ହିଁ ମରି ଝୋଟ ହୋଇ ଯାଉଛି । ଏହା ଆଦୌ ଆଶ୍ଚର୍ଯ୍ୟର କଥା ନୁହେଁ ଯେ ସେମାନଙ୍କ ମଧ୍ୟରୁ ଅନେକ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନକୁ ଘୃଣା ଚକ୍ଷୁରେ ହିଁ ଦେଖିଥାନ୍ତି ।"

## ମୋଟା ଦରମାର ତୀବ୍ର ଆକର୍ଷଣ

ଫଳତଃ ଏହା ଦେଖା ଯାଉଛି ଯେ ବହୁତ କମ ଛାତ୍ର ବୈଜ୍ଞାନିକ ଗବେଷଣାକୁ ନିଜର ବୃତ୍ତି ବା ପେଷା ଭାବେ ଆଜୀବନ ବରଣ କରି ନେବାପାଇଁ ଅତ୍ୟନ୍ତ ବିମୁଖ ହେଉଛନ୍ତି । ପୂର୍ବରୁ ବିଶ୍ୱ ବିଦ୍ୟାଳୟର ସର୍ବଶ୍ରେଷ୍ଠ ଛାତ୍ରଛାତ୍ରୀମାନେ ଯେଉଁମାନେ କି ମେଧା ତାଲିକାରେ ଶୀର୍ଷସ୍ଥାନ ଅଧିକାର କରି ସ୍ୱର୍ଣ୍ଣ ଓ ରୋପ୍ୟ ପଦକର ଅଧିକାରୀ ହେଉଥିଲେ ସେଇମାନେ ହିଁ ବୈଜ୍ଞାନିକ ଗବେଷଣାକୁ ନିଜ ଜୀବନର ପେଷା ଓ ବ୍ରତଭାବେ ବରଣ କରି ନେଉଥିଲେ । କିନ୍ତୁ ଆଜି ସେହି ଛାତ୍ରମାନେ ପରିଚାଳନା ଶିକ୍ଷା ଓ ସୂଚନା ପ୍ରଯୁକ୍ତି ବିଦ୍ୟା ଆଡ଼କୁ ଦ୍ରୁତ ଗତିରେ ମୁହେଁଇ ଚାଲିଛନ୍ତି ।

ସରକାରୀ ପରିଚାଳିତ ଗବେଷଣା ପ୍ରତିଷ୍ଠାନମାନଙ୍କରେ ବୈଜ୍ଞାନିକମାନେ ଆଇ.ଟି. ସେକ୍ଟର ପ୍ରଦାନ କରୁଥିବା ଦରମାର ଏକ ପଞ୍ଚମାଂଶ ବା ଏପରିକି ଏକ ଦଶମାଂଶ ହିଁ ପାଇଥାନ୍ତି । ପରନ୍ତୁ ବିକଶିତ ରାଷ୍ଟ୍ରମାନଙ୍କରେ ଅତ୍ୟନ୍ତ ଉଚ୍ଚଶିକ୍ଷିତ ବ୍ୟକ୍ତି ବିଶେଷମାନେ ପ୍ରାୟ ସମାନ ସ୍ତରର ବେତନ ପାଇଥାନ୍ତି । ଏଭଳି ବ୍ୟତିକ୍ରମ

ଆମକୁ ଏକ ସାଂଘାତିକ ଅବସ୍ଥା ଆଡ଼କୁ ଟାଣି ନେଇଯାଉଛି ବୋଲି ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠାନର ଅଧ୍ୟକ୍ଷ ଜି.ମାଧବନ ନାୟାର କରିଥାନ୍ତି ।

ବହୁ ବୈଜ୍ଞାନିକ ଅନୁଭବ କରନ୍ତି ଯେ ଆମ ଗବେଷଣାଗାରରେ ପ୍ରଚଳିତ ନିଯୁକ୍ତି ପ୍ରଥା ଅତ୍ୟନ୍ତ ପୁରୁଣା ଯାହାକି ଉପଯୁକ୍ତ ଗବେଷକଙ୍କୁ ଆକୃଷ୍ଟ କରିବାରେ ସମ୍ପୂର୍ଣ୍ଣ ରୂପେ ବିଫଳ ହେଉଛି । ଆମର ନିଯୁକ୍ତି ପ୍ରକ୍ରିୟା ୩-୪ ମାସ ସମୟ ନେଉଛି, ଆଉ ଯଦି ଛାତ୍ରଟି ଅତ୍ୟନ୍ତ ମେଧାବୀ ହୋଇଥାଏ ତେବେ ସେ ଏହି ସମୟରେ ଅନ୍ୟଆଡ଼କୁ ବାଟ ଭାଙ୍ଗି ଚାଲି ଯାଉଛି । ଏହା ଏକ ପରମ ଦୁଃଖଦ ଘଟଣା ।

## ଚୀନ୍ ଆଡୁ ବିପଦ :

ଏକ ମଧ୍ୟରେ ଏସିଆ ମହାଦେଶର ଅନ୍ୟତମ ବିଶାଳକାୟ ଦୈତ୍ୟ ଚୀନ୍ ଆଡୁ ଭାରତ ଆଡ଼କୁ ମହାବିପଦର ଝଡ଼ ମାଡ଼ି ଆସୁଛି । ଏ ଝଡ଼ ଆମ ବୈଜ୍ଞାନିକ ଆଧାରଶିଳାକୁ ଦୋହଲାଇ ଦେବାର ସମସ୍ତ ଶକ୍ତି ରଖିଛି ବୋଲି ସର୍ବତ୍ର ଆଲୋଚନା ହେଉଛି । ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଚୀନ୍ ଓ ଭାରତ ମଧ୍ୟରେ ଥିବା ତାରତମ୍ୟ ଆଜି ହାତରୁ ଯାଇ ବାଟରେ ପଡ଼ିଲାଣି । "ୟୁନେସ୍କୋ ସାଇନ୍ସ ରିପୋର୍ଟ" ପ୍ରକାଶ କରିଛି ଯେ ୧୯୯୭ ମସିହାରୁ ୨୦୦୨ ମସିହା ମଧ୍ୟରେ ଗବେଷଣା ଓ ଉନ୍ନୟନ ପାଇଁ ମୋଟ ପୁଞ୍ଜିନିବେଶ କ୍ଷେତ୍ରରେ ଚୀନ୍‌ର ଗ୍ଲୋବାଲ୍ ସେୟାର ୪ ପ୍ରତିଶତରୁ ବଢ଼ି ୯ ପ୍ରତିଶତରେ (ଦୁଇ ଗୁଣରୁ ବି ଅଧିକ) ପହଞ୍ଚିଥିଲା ବେଳେ ୨୦୦୦ ମସିହାରେ ଭାରତ ୨.୫ ପ୍ରତିଶତରେ ପହଞ୍ଚିଥିଲା । ପୁନଶ୍ଚ ଭାରତ ବିଶ୍ୱର ମୋଟ ବୈଜ୍ଞାନିକ ଗବେଷକଙ୍କ ସଂଖ୍ୟାରେ ମାତ୍ର ୨.୧ ପ୍ରତିଶତର ଯୋଗଦାନ ଦେଉଥିଲାବେଳେ ଚୀନ୍ ୧୪.୭ ପ୍ରତିଶତ ଯୋଗଦାନ ଦେଇଥାଏ । ଏପରିକି ବୈଜ୍ଞାନିକ ଗବେଷଣାର ପରିପ୍ରକାଶ ସଂଖ୍ୟାରେ ଭାରତ ଯୋଗଦାନ ୧.୯ ପ୍ରତିଶତ ହୋଇଥିଲା ବେଳେ ଚୀନ୍‌ର ୪.୧ ପ୍ରତିଶତ ଅଟେ । କଥାଟି ହେଲା ଚୀନ୍ ବିଜ୍ଞାନର ଅଶ୍ୱ ପୃଷ୍ଠରେ ଉପବିଷ୍ଟ ହୋଇ ସମୟର ବହ୍ମାଣ୍ଡରେ ଦ୍ରୁତ ଧାବମାନ ହେଉଥିଲା ବେଳେ ଭାରତ ହାତରେ ବାଡ଼ିଟିଏ ଧରି ଛୋଟେଇ ଛୋଟେଇ ଯାହା ଖାଲି ଅଶ୍ୱର ପଥ ଅନୁସରଣ କରୁଛି ।

ଏହା ଅତ୍ୟନ୍ତ ଉଦ୍‌ବେଗର ବିଷୟ ଯେ, ମାତ୍ର ଗୋଟିଏ ଦଶକ ପୂର୍ବରୁ

ଚୀନ୍, ଥାଇଲାଣ୍ଡ, ଦକ୍ଷିଣ କୋରିଆ ଭାରତର ପଛରେ ପଡ଼ିଥିଲା ବେଳେ ଆଜି ସେମାନେ ଭାରତଠୁଁ କାହିଁ କେତେ ଆଗରେ । ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନର ନିର୍ଦ୍ଦେଶକ ପି.ବଲରାମ କୁହନ୍ତି ଯେ ଏହା ନୁହେଁ ଯେ ବିଜ୍ଞାନ କ୍ଷେତ୍ରରେ ଭାରତ ଅଭିବୃଦ୍ଧି କରୁନାହିଁ କିନ୍ତୁ ଅଭିବୃଦ୍ଧି ହାର ଅତି ମନ୍ଥର । ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର ମହାନିର୍ଦ୍ଦେଶକ ଡକ୍ଟର ରଘୁନାଥ ଅନନ୍ତ ମାସେଲକର ବିଶ୍ୱାସ କରନ୍ତି ଯେ- "ବିଜ୍ଞାନ ପଥରେ ଆମେ ଅତ୍ୟନ୍ତ ଧିରେ ଧିରେ ଗତି କରୁଛୁ । ବ୍ୟାବହାରୀକ ବିଜ୍ଞାନ କ୍ଷେତ୍ରରେ ଆମେ ଭଲ ଫଳ ପ୍ରଦର୍ଶନ କରିଛୁ । ହେଲେ ସମସ୍ୟାର ଜଡ଼ଟି ହେଲା ମୌଳିକ ଗବେଷଣା, ଯେଉଁଠିକି ଆମେ ମାଡ଼ ଖାଇ ଯାଉଛୁ ।"

## ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ଦୁଃଖଦ ଅଭିଜ୍ଞତା :

ତାହେଲେ ବିଶ୍ୱ ବିଜ୍ଞାନର ମହାଦୌଡ଼ରେ ଆମେ ପଛରେ ପଡ଼ିଯିବାର ମୁଖ୍ୟ କାରଣ ଗୁଡ଼ିକ କଣ ହୋଇପାରେ ? ଦେଶର ଅଧିକାଂଶ ବୈଜ୍ଞାନିକ ବିଶ୍ୱାସ କରନ୍ତି ଯେ ଗୋଟିଏ ମୁଖ୍ୟ ପ୍ରତିବନ୍ଧକ ହେଲା ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଅତ୍ୟନ୍ତ ସ୍ୱଳ୍ପ ପୁଞ୍ଜି ବିନିଯୋଗ । ଇସ୍ରୋର ଅଧ୍ୟକ୍ଷ ଜି. ମାଧବନ ନାୟାର କୁହନ୍ତି ଯେ- "କେନ୍ଦ୍ର ବଜେଟର ମାତ୍ର ୨ ପ୍ରତିଶତରୁ ବି କମ ଅଙ୍କ ରାଶି ବୈଜ୍ଞାନିକ ଗବେଷଣା ଓ ଉନ୍ନୟନ ପାଇଁ ଗଚ୍ଛିତ ଥାଏ । ଆମକୁ ଆମ ରାଷ୍ଟ୍ରୀୟ ବୈଜ୍ଞାନିକ ପ୍ରତିଭା ଓ ପରାକାଷ୍ଠାର ଯଥାର୍ଥ ପ୍ରଦର୍ଶନ କରିବାକୁ ହେଲେ ଏହି ଅଂଶରାଶିକୁ ୫ ରୁ ୬ ପ୍ରତିଶତକୁ ବୃଦ୍ଧି ଘଟାଇବାକୁ ପଡ଼ିବ ।"

ଏହି ଉଦାହରଣଟିକୁ ଟିକେ ଆଖି ପୁରେଇ ଦେଖନ୍ତୁ । ଏବର୍ଷ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଚୀନ୍‌ର ବଜେଟ୍ ୮.୮ ବିଲିୟନ ଡଲାର ଥିଲାବେଳେ ଭାରତ ତାର ବଜେଟରେ ସେହି ସମୟ ପାଇଁ ୨.୯ ବିଲିୟନ ଡଲାରର ପୁଞ୍ଜି ବରାଦ କରିଛି ।

ଡକ୍ଟର ବିରେନ୍ଦ୍ର ଚୌହାନ୍ କୁହନ୍ତି ଯେ ଆମେ ଯଦି ଗବେଷଣା ଏବଂ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଆବଶ୍ୟକୀୟ ପୁଞ୍ଜି ନିବେଶ ନକରୁ ତେବେ ଆମେ ଚୀନ୍‌ର କାନ୍ଧ ସହ କାନ୍ଧ ମିଳେଇ ଚାଲିବାର ଦୁଃସାହସ କରିବା ନିଶ୍ଚିତ ରୂପେ ବୃଥା ହେବ । ଆମେ ଯଦି ଏବେଠୁଁ ପୁଞ୍ଜି ନିବେଶ କରୁ ତେବେ ତାର ମିଠା ଫଳ

ପାଇବାକୁ ଆମକୁ ଅତିକମ୍‌ରେ ୧୦ ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ଚୀନ୍ ୩୦ ରୁ ୩୫ବର୍ଷ ତଳେ ତାର ସ୍କୁଲ ପାଠ୍ୟକ୍ରମରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିଥିଲା ଏବଂ ନିଶ୍ଚିତ ରୂପେ ଏବେ ସେ ତାର ମିଠା ଫଳ ଚାଖୁଛି ।

ପ୍ରଫେସର ସି.ଏନ୍.ଆର୍. ରାଓ କୁହନ୍ତି ଯେ ଏପରିକି ତାଇୱାନ୍ ମଧ୍ୟ ବିଜ୍ଞାନ ଗବେଷଣା କ୍ଷେତ୍ରରେ ବର୍ଷକୁ ୧୦୦ ମିଲିୟନ ଡଲାର ପୁଞ୍ଜି ନିବେଶ କରୁଛି ଯାହା ଫଳରେ କି ନ୍ୟାସନାଲ୍ ତାଇୱାନ୍ ବିଶ୍ୱବିଦ୍ୟାଳୟକୁ ହାର୍ଭାଡ଼୍ କିମ୍ବା କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ସ୍ତରକୁ ଅଣାଯାଇ ପାରିବ । ସିଂଗାପୁର ମଧ୍ୟ ଆଗାମୀ ୩ ବର୍ଷରେ ମୌଳିକ ଗବେଷଣା କ୍ଷେତ୍ରରେ ୩ ରୁ ୫ ବିଲିୟନ ଡଲାରର ପୁଞ୍ଜି ଖର୍ଚ୍ଚ କରିବାକୁ ସ୍ଥିର କରିଛି । ପ୍ରଫେସର ରାଓ କୁହନ୍ତି ଯେ ଆମର ବଜେଟ ପରିମାଣ ଅତ୍ୟନ୍ତ ସ୍ୱଳ୍ପ ହୋଇଥିବାରୁ ଆମେ ସବୁବେଳେ ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବାକୁ ବ୍ରତୀ ହୋଇଥାଉ । ତେଣୁ ପ୍ରତିଯୋଗିତାମୂଳକ ଗବେଷଣା କରିବାକୁ ଆବଶ୍ୟକ ପଡୁଥିବା ପୁଞ୍ଜି ବରାଦ ଆମେ କରିପାରୁ ନାହୁଁ । ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ଯାହା କିଛି ବି ସ୍ୱଳ୍ପ ପୁଞ୍ଜି ବିନିଯୋଗ ଭାରତ କରି ପାରିଛି ତାର ଫଳ କିନ୍ତୁ ସେତେଟା ମନ୍ଦ ନୁହେଁ । କିନ୍ତୁ ପ୍ରତିଯୋଗିତାମୂଳକ ହେବାପାଇଁ ଏହି ଯତ୍ ସାମାନ୍ୟ ଫଳାଫଳ କଣ ଯଥେଷ୍ଟ ହେବ ?

## ବୈଜ୍ଞାନିକ ରୋଗ ପାଇଁ ଔଷଧ ଓ ପ୍ରତିକାର ବ୍ୟବସ୍ଥା :

ଏହି ବୈଜ୍ଞାନିକ ଶଂକଟାବସ୍ଥାରୁ ମୁକୁଳିବା ପାଇଁ ଭାରତ ସରକାର ନାନାବିଧ କାର୍ଯ୍ୟକ୍ରମ ହାତକୁ ନେବା ପାଇଁ ଆରମ୍ଭ କରି ଦେଲେଣି । ଏବେ ଦେଶରେ ୧.୫୭ ଲକ୍ଷ ଗବେଷଣା ଓ ଉନ୍ନୟନ ବୈଜ୍ଞାନିକ / ଇଂଜିନିୟର କାର୍ଯ୍ୟରତ ଅଛନ୍ତି । ମାସେଲକର କୁହନ୍ତି ଯେ ଆମର ଚ୍ୟାଲେଞ୍ଜ ହେଲା ଏହାକୁ ୨୦ ଲକ୍ଷରେ ପହଞ୍ଚାଇବା ପାଇଁ । ଦେଶରେ ସମ୍ପ୍ରତି ଗଢ଼ି ଉଠୁଥିବା ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ ଏଜୁକେସନ ଆଣ୍ଡ ରିସର୍ଚ୍ଚ (IISER) ଯାହାକି ପୁନେ, କଲିକତା ଏବଂ ମୋହାଲିରେ ଆଇ. ଆଇ.ଟି ଢାଞ୍ଚାରେ ପ୍ରତିଷ୍ଠିତ ହେବାକୁ ଯାଉଛି ତାହା ସମ୍ପୂର୍ଣ୍ଣ ରୂପେ ବିଜ୍ଞାନ ଶିକ୍ଷା ଓ ଗବେଷଣା ପାଇଁ ଉତ୍ସର୍ଗୀକୃତ ହେବ । ପୁନଶ୍ଚ ମୌଳିକ ଗବେଷଣାକୁ ପ୍ରାଧାନ୍ୟ ଦେବା ପାଇଁ ଯୋଜନା ମଧ୍ୟ ଏବେ ହାତରେ ଅଛି ।

ଏହା ମଧ୍ୟ ପ୍ରସ୍ତାବ ଅଛି ଯେ ରାମାନୁଜନ ଏବଂ ଜଗଦୀଶ ବୋଷ ଫେଲୋସିପ

ପ୍ରଦାନ କରାଯାଇ ଯୁବ ପ୍ରତିଭା ମାନଙ୍କୁ ପ୍ରୋତ୍ସାହନ ଦିଆଯିବ । ଭାରତ ବାହାରେ ଯେଉଁସବୁ ପ୍ରଥିତ ଯଶା ବୈଜ୍ଞାନିକମାନେ ଏବେ କର୍ମରତ ସେମାନଙ୍କୁ ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ମନ୍ତ୍ରଣାଳୟ ତରଫରୁ ନିମନ୍ତ୍ରଣ କରାଯାଇ ସେମାନଙ୍କର ବହୁମୂଲ୍ୟ ଅଭିଜ୍ଞତାକୁ ଦେଶ ଭିତରେ ଥିବା ବୈଜ୍ଞାନିକ ପ୍ରତିଷ୍ଠାନମାନଙ୍କରେ ଉପଯୁକ୍ତ ଭାବେ ଗ୍ରହଣ କରାଯିବ ।

ରାଷ୍ଟ୍ରୀୟ ପ୍ରଚେଷ୍ଟା ସଠିକ ଦିଗରେ ପରିଚାଳିତ ହେଉଅଛି ଏହା ବହୁ ବୈଜ୍ଞାନିକମାନଙ୍କର ଅନୁଭବ ହୋଇଥିଲେ ହେଁ ସମସ୍ତେ ଏକମତ ଯେ ଆମକୁ ଆହୁରି ବହୁତ କିଛି କରିବାର ବାକି ଅଛି । ଆମେ ସମ୍ମୁଖୀନ ହେଉଥିବା ବହୁବିଧ ସମସ୍ୟାର ଜଡ଼ ଆମର ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଭିତରେ ହିଁ ପୋତି ହୋଇ ରହିଛି । ଯଦି ଆମର ଶିକ୍ଷା ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ କରାଯାଏ ତେବେ ଯାଇଁ ଏ ସମସ୍ୟାର ସମାଧାନର ରାସ୍ତା ଫିଟିବ । ବିଜ୍ଞାନକୁ ଆକର୍ଷଣୀୟ ଭାବେ ଛାତ୍ର ସମାଜ ଓ ସମାଜ ବ୍ୟବସ୍ଥା ମଧ୍ୟରେ ଉପସ୍ଥାପିତ କରିବାକୁ ପଡ଼ିବ ଏବଂ ତତ୍ ସଂଗେ ସଂଗେ ଆମର ବିଶ୍ୱବିଦ୍ୟାଳୟ ମାନଙ୍କର ମୌଳିକ ଭିତ୍ତିଭୂମିରେ ମଧ୍ୟ ଅଭିବୃଦ୍ଧି ଘଟାଇବାକୁ ପଡ଼ିବ । ସେ ପର୍ଯ୍ୟନ୍ତ ଭାରତୀୟ ବିଜ୍ଞାନକୁ ଚୀନ ପଛରେ ହିଁ ପଡ଼ି ରହିବାକୁ ପଡ଼ିବ ।

ସମାଜ : ୧୨.୯.୨୦୦୬

ଯୋଜନା (ଓଡ଼ିଆ) : ଅକ୍ଟୋବର-୨୦୦୬



# ଭାରତବର୍ଷରେ ବିଜ୍ଞାନ ବଞ୍ଚି ରହିବ କିପରି ?

ବିଜ୍ଞାନ ଦୃଷ୍ଟିକୋଣରୁ ଅତ୍ୟନ୍ତ ପ୍ରବୀଣ, ଧୁରନ୍ଧର ଓ ପାରଙ୍ଗମ ରାଷ୍ଟ୍ରଭାବେ ଚୀନ ସମେତ ଭାରତ ଓ ଅନ୍ୟ ୨୦ଟି ରାଷ୍ଟ୍ରଙ୍କୁ ଏବେ ଏକ ସ୍ୱତନ୍ତ୍ର ରାଷ୍ଟ୍ରଗୋଷ୍ଠୀର ପର୍ଯ୍ୟାୟଭୁକ୍ତ କରାଯାଇ ଏକ ସ୍ୱତନ୍ତ୍ର ମାନ୍ୟତା ପ୍ରଦାନ କରାଯାଉଛି । ସେମାନଙ୍କୁ ସାଇଣ୍ଟିଫିକାଲି ପ୍ରୋଫିସିଏଣ୍ଟ କଣ୍ଟ୍ରିଜ୍ (ଏସ୍.ପି.ସି) ବୋଲି ଅଭିହିତ କରାଯାଉଛି । ଚୀନ ତାର ବିଜ୍ଞାନର ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ ନାନାବିଧ କାର୍ଯ୍ୟକ୍ରମ ହାତକୁ ନେଇ ଦ୍ରୁତ ଗତିରେ ସୋପାନ ପରେ ସୋପାନ ଆରୋହଣ କରି ଚାଲିଛି । ୨୦୨୦ ମସିହା ସୁଦ୍ଧା ଏହା ବିଶ୍ୱର ୨୫ଟି ବୈଜ୍ଞାନିକ ଦୃଷ୍ଟିକୋଣରୁ ବିକଶିତ ରାଷ୍ଟ୍ର (ସାଇଣ୍ଟିଫିକାଲି ଆଡଭାନ୍ସଡ଼ କଣ୍ଟ୍ରିଜ୍) ର ମର୍ଯ୍ୟାଦାପୂର୍ଣ୍ଣ ଆସନ ଅଳଂକୃତ କରିବା ପାଇଁ ଯୋଜନା ପ୍ରଣୟନ କରିଛି ଓ ତଦନୁଯାୟୀ ଉପଯୁକ୍ତ କାର୍ଯ୍ୟପନ୍ଥା ମଧ୍ୟ ଅନୁସରଣ କରି ଚାଲିଛି । ଭାରତ ହୁଏତ ସଗର୍ବେ ମୁଣ୍ଡଟେକି ବିକଶିତ ବୈଜ୍ଞାନିକ ରାଜ୍ୟଗୋଷ୍ଠୀ ମଧ୍ୟରେ ରହିପାରେ ଅବା ଆମେ ଯଦି ଏବେଠୁଁ ଉଚିତ୍ ପଦକ୍ଷେପ ଗ୍ରହଣ ନକରୁ ତେବେ ଭାରତ ତଳକୁ ଖସି ଆସି ପାକିସ୍ତାନ ପରି ଏକ ବିକାଶଶୀଳ ବୈଜ୍ଞାନିକ ରାଷ୍ଟ୍ରଟିଏ ହୋଇ ହିଁ କେବଳ ରହିଯିବ ।

ପ୍ରଧାନମନ୍ତ୍ରୀଙ୍କ ମୁଖ୍ୟ ବୈଜ୍ଞାନିକ ଉପଦେଷ୍ଟା ପ୍ରଫେସର ସି.ଏନ୍.ଆର୍.ରାଓ ପ୍ରଧାନମନ୍ତ୍ରୀଙ୍କୁ ଏକ କଡ଼ା ଚିଠି ଲେଖି ଅବଗତ କରାଇଛନ୍ତି ଯେ – "ଆପଣ ଯଦି ସଦା ସର୍ବଦା ଅର୍ଥନୈତିକ ପ୍ରତିଯୋଗିତା ପ୍ରତି ଅଧିକ ଧ୍ୟାନ ଦିଅନ୍ତି ଏବଂ ବୈଜ୍ଞାନିକ ପ୍ରତିଯୋଗିତାକୁ ସମୟର ଅଳିଆ ଗଦାରେ ଫିଙ୍ଗି ଦିଅନ୍ତି ତେବେ ମୁଁ ଭାବୁଛି ଯେ ଭାରତର ଭବିଷ୍ୟତ ନିଶ୍ଚିତ ଅନ୍ଧକାର ଆଡ଼କୁ ଦ୍ରୁତ ଅଗ୍ରସର ହେଉଛି । ମୋର ଅନୁରୋଧ ଭାରତର ଭବିଷ୍ୟତକୁ ନେଇ ଆପଣ ଏପରି ବାଜି ଖେଳନ୍ତୁନି ଅନ୍ୟଥା ଭାରତୀୟ ବିଜ୍ଞାନ ରସାତଳଗାମୀ ହେବା ସ୍ୱୟଂସିଦ୍ଧ । ଭାରତର ବିଭିନ୍ନ ବୈଜ୍ଞାନିକ କେନ୍ଦ୍ରମାନଙ୍କରେ ଆମେ ଏବେ ଉଚ୍ଚମାନଯୁକ୍ତ ବିଜ୍ଞାନ ଓ ବୈଜ୍ଞାନିକ କ୍ରିୟା କଳାପରେ ଲିପ୍ତ ରହିଥିଲେ ମଧ୍ୟ ପେଷାଦାର ଓ ଅଭିଜ୍ଞ ବିଶେଷଜ୍ଞ ବୈଜ୍ଞାନିକଙ୍କ ସଂଖ୍ୟାରେ ଦ୍ରୁତ ଅବନତି ପରିସ୍ଥିତିକୁ

ଅତ୍ୟନ୍ତ ଗମ୍ଭୀର କରି ଦେଲାଣି । ୨୦ ବର୍ଷ ତଳେ କିନ୍ତୁ ଦେଶରେ ଏଭଳି ଭୟଙ୍କର ପରିସ୍ଥିତି ନଥିଲା ଯାହାକି ଆଜି ଆମେ ଅଙ୍ଗେ ଲିଭେଇଚାଲିଛୁ । ଦେଖିବାକୁ ଗଲେ ବିଜ୍ଞାନ କ୍ଷେତ୍ରରେ ଆମେ ମୋଟାମୋଟି ଭଲ ଫଳ ପ୍ରଦର୍ଶନ କରୁଥିଲେ ମଧ୍ୟ ପେଷାଦାର ବୈଜ୍ଞାନିକଙ୍କ ସଂଖ୍ୟାରେ ଅସାଧାରଣ ହ୍ରାସ ରାଷ୍ଟ୍ରର ଭବିଷ୍ୟତ ପାଇଁ ଆଦୌ ଶୁଭକାରକ ନୁହେଁ ।"

ପ୍ରଖ୍ୟାତ ପଦାର୍ଥ ବିଦ୍ୟାବିତ୍ ପ୍ରଫେସର୍ ଭି.ଏସ୍. ରାମମୂର୍ତ୍ତି କୁହନ୍ତି ଯେ ବିଜ୍ଞାନର ଏହି ପାଇପ ଲାଇନ୍‌ରେ ଛିଦ୍ର ହେବାର ମୂଳ କାରଣଟି ହେଲା ବାପାମାଆମାନେ ସେମାନଙ୍କର ପିଲାମାନଙ୍କର ମାନସିକତାକୁ ୮ମ/୯ମ ଶ୍ରେଣୀରୁ ଇଂଜିନିୟରିଂ ଏବଂ ମେଡିକାଲ୍ ଶିକ୍ଷା ଆଡ଼କୁ ଜୋର୍‌ରେ ଠେଲି ଦେଉଛନ୍ତି ଏବଂ ସେଥିପାଇଁ ଲଗାତାର ପ୍ରସ୍ତୁତି ପର୍ବ ମଧ୍ୟ ଆରମ୍ଭ କରି ଦେଉଛନ୍ତି । ଏହି ପାଠ୍ୟକ୍ରମରେ ଡିଗ୍ରୀଟିଏ ହାସଲ କଲେ ଛାତ୍ରଟିଏ ମୋଟା ଦରମା, ଝକଚକ୍ୟପୂର୍ଣ୍ଣ ଜୀବନଯାତ୍ରାର ଗ୍ୟାରେଣ୍ଟି ଓ ଅପୂର୍ବ ସୁଯୋଗର ସ୍ୱର୍ଣ୍ଣପାତ୍ରର ଆଶା ରଖୁଥିବାରୁ ସେ ଆଡ଼କୁ ସେ ଆକର୍ଷିତ ହୋଇଯାଉଛି । ପରନ୍ତୁ ବିଜ୍ଞାନର ସ୍ନାତକଟିଏ କାଖରେ ଡିଗ୍ରୀ ସାର୍ଟିଫିକେଟ୍‌ଟି ଧରି ବାରଦ୍ୱାର ସୁଣ୍ଟିପିଣ୍ଡା ହେଲେ ମଧ୍ୟ ତାର ଆକୁଳ ପ୍ରାର୍ଥନା ଶୁଣିବାକୁ କାହା ପାଖରେ ବେଳ ନଥାଏ ଓ ସମସ୍ତେ ତାକୁ ଦୂର ଦୂର ମାର୍ ମାର୍ କରି ଗୋଡ଼େଇଦେଇ ଥାନ୍ତି । ଏପରି ଏକ ଭୟାନକ ପୃଷ୍ଠଭୂମିରେ ଦଣ୍ଡାୟମାନ ହୋଇ ଆମେ କିପରି ମେଧାବୀ ଯୁବଶକ୍ତିଙ୍କୁ ବିଜ୍ଞାନରେ ନିଜର କ୍ୟାରିୟର୍ କରିବା ପାଇଁ ଆକୃଷ୍ଟ କରି ପାରିବା - ତାହାହିଁ ରାଷ୍ଟ୍ର ଆଗରେ ଏକ ବିରାଟ ପ୍ରଶ୍ନବାଚୀ ?

ପ୍ରଥମ ପଦକ୍ଷେପ ସ୍ୱରୂପ ବୈଜ୍ଞାନିକଙ୍କ ଦରମା ହାରରେ ଅଭିବୃଦ୍ଧି ତୁରନ୍ତ ଅଣାଯିବା ଦରକାର । ହେଲେ ସରକାରୀ ଅଧିକାରୀମାନେ ଏ ନେଇ ବାଡ଼ିରେ ଷଣ୍ଢ ପୁରୋଉଛନ୍ତି । ସେମାନେ କହୁଛନ୍ତି ଯେ ଅମଲାତନ୍ତ୍ରୀମାନଙ୍କଠାରୁ ବିଶ୍ୱବିଦ୍ୟାଳୟ ବା ଗବେଷଣାଗାରର ବୈଜ୍ଞାନିକମାନେ କାହିଁକି ଅଧିକା ଦରମା ପାଇବେ ? ହେଲେ ଘରୋଇ ଶିଳ୍ପ ସଂସ୍ଥାମାନେ ସେଭଳି ଆଦୌ ଭାବିନଥାନ୍ତି । ଜି.ଇ.ଇଣ୍ଡିଆ କିମ୍ବା ଡକ୍ଟର ରେଡ୍ଡୀଙ୍କ ଲାବୋରାଟୋରୀରେ ବୈଜ୍ଞାନିକମାନେ

ଏପରିକି କ୍ୟାବିନେଟ ସେକ୍ରେଟାରୀଙ୍କ ଠାରୁ ମଧ୍ୟ ଅଧିକ ଦରମା ପାଇଥାନ୍ତି । ଅପରପକ୍ଷରେ, ତଥାକଥିତ ଗୋଟିଏ ସରକାରୀ ଚାକିରୀର ସୁରକ୍ଷା ଓ ସ୍ଥାୟୀତ୍ୱତା ଅଭିଭାବକ ଅବା ସେମାନଙ୍କର ପୁଅଝିଅମାନଙ୍କ ପାଇଁ ଆଜି ଆଉ ଏକ ମୁଦ୍ଦା ହୋଇ ରହିନାହିଁ । ବରଂ ସେମାନେ କଳକାରଖାନା ମାନଙ୍କର HIRE-AND-FIRE ଚାକିରୀକୁ ଅଧିକ ପସନ୍ଦ କରୁଛନ୍ତି । ଅର୍ଥନୀତିର ସିଂହଦ୍ୱାର ଏବେ ଉନ୍ମୋଚନ ହୋଇଯିବା ପରେ ଅଭୂତପୂର୍ବ ସୁଯୋଗ ଓ ସମ୍ଭାବନାର ମଳୟ ପବନ ବିଜ୍ଞାନର ମୁଖଶାଳା ବାଟଦେଇ ହିଁ ବହି ଚାଲିବ ଏବଂ ଏହି ଅପୂର୍ବ ସୁଯୋଗ ଓ ସମୃଦ୍ଧି ବୈଜ୍ଞାନିକମାନଙ୍କ ଶକ୍ତ ହାତମୁଠାରେ ହିଁ ପୋଷା ଶୁଆପରି ଆପେ ଆପେ ଆସି ଧରାଦେବ । ଆକର୍ଷଣୀୟ ଦରମାହାର ସହ ନାନାବିଧ ଚାକିରିର ଦ୍ୱାର ଖୋଲିଯବ ଓ ଆମର ଶିକ୍ଷିତ ଯୁବଶକ୍ତି ଜ୍ଞାନର ସଦୁପଯୋଗ କରିବାକୁ ଉତ୍‌କୃଷ୍ଟ ପ୍ରକ୍ଷେତ୍ର ଲାଭ କରିବେ ।

ଏଥିରୁ ସ୍ପଷ୍ଟ ଅନୁମେୟ ହେଉଛି ଯେ ଆମକୁ ଅଧିକରୁ ଅଧିକ ସଂଖ୍ୟକ ବୈଜ୍ଞାନିକ ସୃଷ୍ଟି କରିବାକୁ ପଡ଼ିବ । ହିସାବ କରି ଦେଖାଯାଇଛି ଯେ ଭବିଷ୍ୟତର ସୁବର୍ଣ୍ଣ ସୁଯୋଗକୁ ହାତ ମୁଠାକୁ ଆଣିବାକୁ ହେଲେ ସାମ୍ପ୍ରତିକ ବୈଜ୍ଞାନିକଙ୍କ ସଂଖ୍ୟାରେ ଅତିକମ୍‌ରେ ୫ଗୁଣ ଅଭିବୃଦ୍ଧି ଦରକାର । କେବଳ ଦରମାରେ ବୃଦ୍ଧି ନୁହେଁ ସେମାନଙ୍କୁ ବୃତ୍ତିଗତ ସଭା ସମିତି ଓ ସେମିନାର ଆଦିରେ ଯୋଗଦେବା ପାଇଁ ମଧ୍ୟ ଅଧିକରୁ ଅଧିକ ସୁଯୋଗ ଦିଆଯିବା ଉଚିତ୍ । ସେମାନଙ୍କୁ ମଧ୍ୟ ବିଭିନ୍ନ ଶିକ୍ଷାନୁଷ୍ଠାନ ମାନଙ୍କରେ କନ୍‌ସଲ୍‌ଟ୍ୟାନ୍ସି ଦେବାର ସୁଯୋଗ ପ୍ରଦାନ କରାଯିବା ଉଚିତ୍ । ସେମାନଙ୍କର ସଫଳତାକୁ ଅନୁଷ୍ଠାନମାନେ ସୋ-କେସ୍ କରି ନିଜ ନିଜର ପ୍ରାଧାନ୍ୟ ସମାଜରେ ପ୍ରତିଷ୍ଠା କରିବା ଉଚିତ୍ । ଯୁବାବସ୍ଥାରୁ ସେମାନଙ୍କୁ ବିଜ୍ଞାନର ଯାଦୁକରୀ ମାୟାଜାଲରେ ଛନ୍ଦିଦେଲେ ସେମାନେ ଜୀବନସାରା ବିଜ୍ଞାନର ପରମ ମନ୍ତ୍ରରେ ଦୀକ୍ଷିତ ହେଉଥିବେ । ଥରେ ସେମାନେ ବିଜ୍ଞାନକୁ ଭଲ ପାଇ ବସିଲେ ବିଜ୍ଞାନ ମଧ୍ୟ ସେମାନଙ୍କୁ ଭଲପାଇ ବସିବ । ଏହି ପରସ୍ପର ଭଲ ପାଇବାର ଅମୃତ ଫଳ ରାଷ୍ଟ୍ରର ଭବିଷ୍ୟତ ପାଇଁ ନିଶ୍ଚିତ ରୂପେ ମଙ୍ଗଳମୟ ହେବ ।

ଥରେ ତରୁଣ ଛାତ୍ରମାନେ ଅତ୍ୟନ୍ତ ତୀବ୍ରତର ଭାବେ ବିଜ୍ଞାନକୁ ଭଲ ପାଇବସିଲେ ଆମର ଆଉ କୌଣସି ଚିନ୍ତାର ଅବକାଶ ରହିବ ନାହିଁ । ପିଲାମାନଙ୍କୁ

ଆପଣ ଯଦି ଚ୍ୟାଲେଞ୍ଜ କରି ବସନ୍ତି ତେବେ ଆପଣ ନିଶ୍ଚିତ ଦେଖିବେ ଯେ ସେମାନଙ୍କ ମନ ରାଇଜରେ କିପରି ବିଜ୍ଞାନର ଝଡ଼ ସୃଷ୍ଟି ହେଉଛି । ବାଙ୍ଗାଲୋରରେ "କିଶୋର ବୈଜ୍ଞାନିକ ପ୍ରୋତ୍ସାହନ ଯୋଜନା"ର ପ୍ରଚଳନ କରାଇଥିବା ପ୍ରଫେସର ଦୀପଙ୍କର ଚଟାର୍ଜୀ ଏକ ବୈଜ୍ଞାନିକ ପ୍ରକଳ୍ପ କଥା କୁହନ୍ତି ଯାହାକି ସମ୍ପୂର୍ଣ୍ଣ ରୂପେ ଜଣେ ଝିଅ ଦ୍ୱାରା ସଫଳ ଭାବେ ପରିଚାଳିତ ହୋଇପାରିଛି । ପ୍ରେସର କୁକର୍‌ରେ ରୋଷେଇ କଲାବେଳେ ଭିତରେ ଅତ୍ୟଧିକ ଚାପ ସୃଷ୍ଟି ହେଉଥିବା ହେତୁ ପ୍ରେସର୍ କୁକର୍‌ର ବବ୍ ଶୀଘ୍ର ଶୀଘ୍ର ଘିରି ଘିରି ବୁଲିବାରେ ଲାଗିଥାଏ ଏବଂ ଏହା ଫଳରେ ଉତ୍ତପ୍ତ ବାଷ୍ପ ନିର୍ଗତ ଯୋଗୁଁ ଅଧିକ ଶକ୍ତିର କ୍ଷୟ ଘଟିଥାଏ । ଝିଅଟି ଏହି ଶକ୍ତି କ୍ଷୟକୁ ନେଇ ଅତ୍ୟନ୍ତ ଚିନ୍ତିତ ଥିଲା ଏବଂ ଏହାର ସମାଧାନର ସରଳ ରାସ୍ତାଟିଏ ଖୋଜୁଥିଲା । ଏହି ପ୍ରକଳ୍ପଟି ମାଧ୍ୟମରେ ବିଭିନ୍ନ ବ୍ରାଣ୍ଡର ପ୍ରେସର କୁକର ବ୍ୟବହାର କରି ଅଗ୍ନି ଶିଖାର ନିୟନ୍ତ୍ରଣ ଏବଂ ରୋଷେଇର ସମୟରେ ହ୍ରାସ କରାଇବାର ପ୍ରଚେଷ୍ଟା କରି ସେ ପ୍ରକୃତରେ କେତେ ପରିମାଣର ଶକ୍ତି କ୍ଷୟ ହେଉଛି ତାର ଆଙ୍କିକ ମାପ କରିବାରେ ସମର୍ଥ ହୋଇଥିଲା ଏବଂ ଶକ୍ତିକ୍ଷୟର ପରିମାଣରେ କିପରି ହ୍ରାସ ଘଟାଯାଇ ପାରିବ ସେଥିରେ ମଧ୍ୟ ସଫଳକାମୀ ହୋଇପାରିଥିଲା ।

ଭାରତୀୟ ଶିଳ୍ପ ସଂସ୍ଥା ସଂଗଠନ (ସି.ଆଇ.ଆଇ), ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଭାଗ ଏବଂ ଇନ୍‌ଟେଲ୍ କର୍ପୋରେସନ୍ ଆଇ.ଆର.ଆଇ.ଏସ୍. ନାମକ ଏକ ପ୍ରତିଯୋଗିତା ଆରମ୍ଭ କରିଛନ୍ତି ଯାହା ମାଧ୍ୟମରେ ଭାରତୀୟ ଯୁବ ପ୍ରତିଭାମାନେ ସେମାନଙ୍କର ଚିନ୍ତାଧାରା, ଭାବନା ଏବଂ ଇନୋଭେସନ୍‌କୁ ନେଇ ବିଶ୍ୱ ସ୍ତରରେ ପ୍ରତିଯୋଗିତା କରିପାରିବେ ।

ବହୁ ଯୁବ ଭାରତୀୟ ଆନ୍ତର୍ଜାତିକ ପଦକ ଲାଭ କରି ରାଷ୍ଟ୍ରର ମୁଖ ଉଜ୍ଜ୍ୱଳ କରିଛନ୍ତି । ଏହାର ପୂର୍ଣ୍ଣ ତଥ୍ୟ www.innovation.net.in/iris ରେ ମିଳି ପାରିବ । ବହୁ ପୂର୍ବରୁ ଭାରତବର୍ଷ ଆନ୍ତର୍ଜାତିକ ବିଜ୍ଞାନ ଅଲିମ୍ପିଆଡ଼ରେ ଭାଗ ନେଇ ଆସୁଛି ଏବଂ ବର୍ଷ ପରେ ବର୍ଷ ପଦକ ମଧ୍ୟ ଜିଣି ଚାଲିଛି । ଏ ସମ୍ପର୍କରେ ସବିଶେଷ ବିବରଣୀ hbcse.tifr.res.in/olympiads ରେ ମିଳିପାରିବ । ଆହୁରି କମ୍ ବୟସର ପିଲାମାନଙ୍କ ପାଇଁ ଏହି ପ୍ରତିଯୋଗିତା ଉନ୍ମୋଚନ ହେବା ଉଚିତ୍ । ପିଲାମାନେ ବିଜ୍ଞାନକୁ ଉପଭୋଗ କରିଥାନ୍ତି ସେତିକିବେଳେ ଯେତେବେଳେ

ସେମାନେ ତାହା ହାତରେ କରିଥାନ୍ତି ଖାଲି ସେମିତି ପଢ଼ିକରି ନୁହେଁ । ସିଲାବସ ଅନୁସାରେ କ୍ଲାସରେ ପ୍ରାକ୍ଟିକାଲ୍ କରିବା ଗୋଟେ କଥା ଆଉ ନିଜ ଜୀବନ କ୍ଷେତ୍ରରେ ବିଜ୍ଞାନକୁ ଅଂଗେ ଲିଭେଇବା ଅନ୍ୟ ଏକ କଥା । ଏହା ମଧ୍ୟ ସ୍କୁଲ୍ କଲେଜ ସିଲାବସରେ ଅନ୍ତର୍ଭୁକ୍ତ କରାଯାଇପାରିବ । ଅର୍ଥାତ୍ ବିଜ୍ଞାନ, ବୈଷୟିକ ଗବେଷଣା ପ୍ରତିଷ୍ଠାନ ଓ ବିଶ୍ୱବିଦ୍ୟାଳୟ ବିଜ୍ଞାନାଗାର ସହ ଅଙ୍ଗାଙ୍ଗୀ ଭାବେ ଯୋଗସୂତ୍ର ସ୍ଥାପନା କରି ଛାତ୍ରମାନଙ୍କୁ ଏହି ଅନୁଷ୍ଠାନମାନଙ୍କରେ ସ୍ୱଳ୍ପ ସମୟ ପାଇଁ ନିୟୋଜିତ କରାଯାଇ ପାରିବ ଯଦ୍ୱାରା ସେମାନେ ବିଜ୍ଞାନ ସହ ଓତପ୍ରୋତଃ ଭାବେ ଜଡ଼ିତ ହୋଇ ରହିପାରିବେ ।

ଏହା ଫଳରେ ବିଜ୍ଞାନାଗାର ଓ ଶିଳ୍ପ ସଂସ୍ଥାମାନେ ଶସ୍ତାରେ କୁଶଳୀ ହାତ ଯୋଡ଼ାକ ପାଇଯାଆନ୍ତି ଏବଂ ଅପର ପକ୍ଷରେ ଛାତ୍ରମାନେ ମଧ୍ୟ ବିଜ୍ଞାନର ରୂପ ବିନ୍ୟାସ ଓ ଛଟା ସମ୍ବନ୍ଧରେ ସମ୍ୟକ୍ ଧାରଣା ଉପଲବ୍ଧି କରିଥାନ୍ତି । ବିଟ୍ସ, ପିଲାନି; ରାଜସ୍ଥାନ ଏପରି ଏକ କାର୍ଯ୍ୟକ୍ରମ ଗତ ଦୁଇ ଦଶନ୍ଧି ଧରି କରି ଚାଲିଛି ଏବଂ ତାର ଛାତ୍ରମାନଙ୍କୁ ଦେଶର ୧୫୦ଟି ବିଭିନ୍ନ ବିଜ୍ଞାନଗାର ଓ ଶିଳ୍ପସଂସ୍ଥା ମାନଙ୍କୁ ପଠାଇ ସେମାନଙ୍କର ଜ୍ଞାନର ଦିଗ୍‌ବଳୟକୁ ସଂପ୍ରସାରିତ କରୁଛି । ବିଟ୍ସ ଏବଂ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନେ ଏପରି ଏକ କାର୍ଯ୍ୟକ୍ରମ ଗ୍ରାଜୁଏଟ ସ୍ତରରେ କାର୍ଯ୍ୟକାରୀ କରୁଛନ୍ତି । ଏହା ଆହୁରି ପୂର୍ବରୁ ମଧ୍ୟ କରାଯାଇ ପାରିବ । ଛାତ୍ରଛାତ୍ରୀମାନେ ୮ମ ବା ୯ମ ଶ୍ରେଣୀରେ ପଢୁଥିବା ବେଳେ ତାଙ୍କୁ ବିଜ୍ଞାନର ନାଗ ଫାଶରେ ଛନ୍ଦି ଦିଆଯିବା ଦରକାର । ଏକ ହଜାର ଛାତ୍ରଙ୍କୁ ନିକଟସ୍ଥ ଗବେଷଣାଗାରକୁ ପ୍ରତ୍ୟେକ ଗ୍ରୀଷ୍ମଛୁଟି ଓ ଏକ୍ସ-ମାସ ଛୁଟିରେ ଦୁଇ ସପ୍ତାହ ପାଇଁ ପଠାଗଲେ ସେମାନେ ସିଧା ସଳଖ ଭାବେ ବିଜ୍ଞାନ ଓ ବୈଜ୍ଞାନିକ ଗବେଷଣାକୁ ଚିହ୍ନିବେ, ନିଜେ ଅଂଗେ ଅଂଗେ ଅନୁଭବ କରିବେ ଓ ଭବିଷ୍ୟତ ଜୀବନ ପାଇଁ ବିଜ୍ଞାନକୁ ଆବୋରି ନେବେ, ଆଦରି ନେବେ, କୋଳେଇ ନେବେ । ନିଜର କୁନି କୁନି ହାତରେ ବିଜ୍ଞାନକୁ ସ୍ପର୍ଶ କରିବାର ଯେଉଁ ପ୍ରଚଣ୍ଡ ଉନ୍ମାଦନା ତାର କୌଣସି ପଟାନ୍ତର ନଥାଏ । ନିଜେ ନିଜ ହାତରେ ବିଜ୍ଞାନକୁ ଛୁଇଁ ବୈଜ୍ଞାନିକ ଗବେଷଣାର କଳା ଚାତୁର୍ଯ୍ୟକୁ ଅନୁଭବ କରିବା ଏକ ଅନନ୍ୟ ଅଭିଜ୍ଞତା ଯାହାକି ସେମାନଙ୍କ ପାଇଁ ଚୀର ସ୍ମରଣୀୟ ହେବ ।

ନିଜ ହାତରେ ନିଜେ ବିଜ୍ଞାନକୁ ପରଖିବା, ପରୀକ୍ଷା ନିରୀକ୍ଷା କରିବା ଏକ ସମ୍ପୂର୍ଣ୍ଣ ନିଆରା କଥା ଯାହାକି କେବଳ ଜଣେ ଅନୁଭବୀ ହିଁ ହୃଦୟଙ୍ଗମ କରିପାରିବ ।

ଏପରି କରାଗଲେ ଫଳାଫଳ ନିଶ୍ଚିତରୂପେ ଶୁଭ ହିଁ ଶୁଭ ହେବ । ଏହାର ଅର୍ଥ ନୁହେଁ କି ପ୍ରତ୍ୟେକ ଛାତ୍ର ବିଜ୍ଞାନକୁ ନିଜର ବୃତ୍ତି ବୋଲି ବରଣ କରିନେବେ, ହେଲେ ବିଜ୍ଞାନର ନିଶା ଯେ ନିଶ୍ଚିତ ରୂପେ ସେମାନଙ୍କୁ ଘାରିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଛାତ୍ରମାନେ ବିଜ୍ଞାନର ନିଶାକୁ ଆକଣ୍ଠ ପାନ କରନ୍ତୁ ଏହା ହିଁ ଆଜିର ଚ୍ୟାଲେଞ୍ଜ । ବର୍ଷ ବର୍ଷ ଧରି କଲେଜ ଓ ବିଶ୍ୱ ବିଦ୍ୟାଳୟ ଗୁଡ଼ିକ ବିଜ୍ଞାନର ଘର ଭିତରେ କାନ୍ଥ ବସେଇ ଦେଇଛନ୍ତି ଏବଂ ପାଠ୍ୟକ୍ରମକୁ କମ୍ପାର୍ଟମେଣ୍ଟାଲ୍ କରି ଦେଇଛନ୍ତି । ପାଠ୍ୟକ୍ରମକୁ କେବଳ ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ଅଙ୍କ ଶାସ୍ତ୍ର ଓ ବାୟୋଲୋଜି ଭଳି ବିଭିନ୍ନ ଡିଭିଜନ କରି ଦେଇ ନାହାନ୍ତି ବରଂ ସେଗୁଡ଼ିକ ମଧ୍ୟରେ ଆହୁରି ଛୋଟ ଛୋଟ ବିଭାଜନ ମଧ୍ୟ କରିଦେଇଛନ୍ତି । ବିଜ୍ଞାନର କୌଣସି ସୀମାରେଖା ନଥାଏ । ଏହା ଅନନ୍ତ ଏବଂ ଏହା ବିଭିନ୍ନ ଡିସିପ୍ଲିନ୍ ମଧ୍ୟରେ ଉତ୍ତମ ଯୋଗସୂତ୍ର ଦ୍ୱାରା ହିଁ ସମୃଦ୍ଧ ହୋଇଥାଏ ।

ଏକ ସମ୍ପୂର୍ଣ୍ଣ ସମନ୍ୱୟକାରକ ବିଜ୍ଞାନ ପାଠ୍ୟକ୍ରମ (ଇଣ୍ଟେଗ୍ରେଟେଡ୍ ସାଇନ୍ସ କରିକ୍ୟୁଲାର ସ୍କିମ୍)ରେ ଛାତ୍ରଟି ସବୁ ବିଷୟରେ ଅଧ୍ୟୟନ କରିଥାଏ ଏବଂ ଏକ ସମ୍ମିଳୀତ ଢଙ୍ଗରେ ସେ ସବୁର ବ୍ୟବହାର କରିଥାଏ । ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ, ବାଙ୍ଗାଲୋର; ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟ; ବିଟ୍ସ, ପିଲାନି, ରାଜସ୍ଥାନ ଏବଂ କୋଲକତା ଓ ପୁନେରେ ନୂଆ କରି ସ୍ଥାପନା କରାଯାଇଥିବା ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ ଏଜୁକେସନ୍ ଏବଂ ରିସର୍ଚ୍ଚ କାର୍ଯ୍ୟକ୍ରମ ଉପରେ ବର୍ଣ୍ଣିତ ସତ୍ୟାସତ୍ୟକୁ ଦୋହରାଇଥାଏ ।

ଛାତ୍ରମାନେ ମଧ୍ୟ ଏଭଳି ଚିନ୍ତାଧାରା ଓ କାର୍ଯ୍ୟକ୍ରମର ସପକ୍ଷରେ ମତ ଦେଇଥାନ୍ତି । ବୈଜ୍ଞାନିକ ଚିନ୍ତା ଚେତନାର ଉଦ୍ରେକ ପାଇଁ ସେପରି କୌଣସି ରେଡ଼ିମେଡ଼ ଫର୍ମୁଲା ନାହିଁ ଯାହାକି ଛାତ୍ରଟିକୁ ଘୋରିବାଟି ପେଇଦେଲେ ସେ ବିଜ୍ଞାନର ତାଳେ ତାଳେ ନାଚୁଥିବ । ତରୁଣ ଯୁବପିଢ଼ି ମନରେ ବୈଜ୍ଞାନିକ ମାନସିକତାର ବୀଜ ରୋପଣ ପାଇଁ ସେପରି କୌଣସି ଯାଦୁ ନାହିଁ ଯାହାକି

ଛାତ୍ରଟିକୁ ବୈଜ୍ଞାନିକ ବୃତ୍ତି ପାଇଁ ବାନ୍ଧିକରି ରଖିଦେବ । ଭାରତକୁ ଏକ ବିକଶିତ ରାଷ୍ଟ୍ର ହେବା ପାଇଁ ଯୁବପିଢ଼ିର କଅଁଳା ହାତ ଯୋଡ଼ାକ ଉପରେ ଭରଷା କରି ଆଦର ସହକାରେ ତାକୁ ଆହ୍ୱାନ କରିନେବାକୁ ହେବ । ସବୁ ଦିଗରୁ ମହତ ଚିନ୍ତାଧାରାର ବର୍ଷା ହେଉ - ଏପରି ମଙ୍ଗଳମୟ କାମନା କରାଯାଉ । ସେଥିରୁ ବହୁ ଚିନ୍ତାଧାରାର ପରିପ୍ରୟୋଗ ପାଇଁ ହସ୍ତ ସମ୍ପ୍ରସାରଣ କରାଯାଉ । ହଜାର ହଜାର ସଂଖ୍ୟାରେ ପଦ୍ମଫୁଲ ସମୟର ପୁଷ୍କରିଣୀରେ ପ୍ରସ୍ଫୁଟିତ ହେଉ । ଭବିଷ୍ୟତର ସମୟ ଚିନ୍ତା ଓ ଜ୍ଞାନର ସମୟ ହେବ । ବିଜ୍ଞାନ ମାଧ୍ୟମରେ ହିଁ ସଫଳତାର ସିଡ଼ି ପାହାଚ ଚଢ଼ାଯାଇ ପାରିବ ଯାହାକି ସମୟ ଦ୍ୱାରା ପରୀକ୍ଷିତ ଏକ ଉତ୍ତମ ଫର୍ମୁଲା ଅଟେ । ତେଣୁ ଅଧିକରୁ ଅଧିକ ବିଜ୍ଞାନ ପାଇଁ ଚାଲନ୍ତୁ ଚେଷ୍ଟିତ ହେବ ଯଦ୍ୱାରା ଅଧିକରୁ ଅଧିକ ସଂଖ୍ୟକ ବୈଜ୍ଞାନିକ ମଧ୍ୟ ସୃଷ୍ଟି କରାଯାଇ ପାରିବ ।

ଯୋଜନା (ଓଡ଼ିଆ) : ଡିସେମ୍ବର, ୨୦୦୬



# ଭାରତବର୍ଷରେ ବିଜ୍ଞାନର ଚିର ନିର୍ବାସନ

ପ୍ରଧାନମନ୍ତ୍ରୀ ଡ. ମନମୋହନ ସିଂହଙ୍କ ମୁଖ୍ୟ ବୈଜ୍ଞାନିକ ଉପଦେଷ୍ଟା ବିଶ୍ୱପ୍ରସିଦ୍ଧ ରସାୟନବିତ୍ ପ୍ରଫେସର ଡକ୍ଟର ସି.ଏନ୍.ଆର୍. ରାଓ ସମ୍ପ୍ରତି ଭାରତବର୍ଷରେ ବିଜ୍ଞାନର ମୃତ୍ୟୁକାଳୀନ ଘଣ୍ଟାକୁ ପ୍ରଚଣ୍ଡ ଶବ୍ଦରେ ନିନାଦିତ କରି ଜନ ମାନସରେ ଏକ ମହା ଜାଗରଣ ସୃଷ୍ଟି କରିବାରେ ସମର୍ଥ ହୋଇ ପାରିଛନ୍ତି । ପରିସ୍ଥିତି ଆଜି ଏପରି କାହିଁକି ହୋଇଗଲା ଯେ ପ୍ରଫେସର ରାଓଙ୍କ ପରି ମହାନ୍ ବୈଜ୍ଞାନିକ ବ୍ୟକ୍ତିତ୍ୱ ରାଷ୍ଟ୍ରର ମହାମହିମ ପଦାଧିକାରୀଙ୍କୁ କଡ଼ା ଚେତାବନୀ ଶୁଣାଇବାକୁ ବାଧ୍ୟ ହେଲେ । ଏହା କଣ ପୁଂଖାନୁପୁଂଖ ଚର୍ଚ୍ଚା ଓ ଗଭୀର ଆଲୋଚନାର ଏକ ବିଷୟବସ୍ତୁ ନୁହେଁ କି ? ଆପଣ ନିଶ୍ଚୟ ମୋ ସହିତ ଏକମତ ହେବେ ଯେ ଏହି ପରିସ୍ଥିତିର ତର୍ଜମା ନିହାତି ଦରକାର ଏବଂ ଏଭଳି ଏକ ଭୟଙ୍କର ବୈଜ୍ଞାନିକ ଚକ୍ରବ୍ୟୁହରୁ ଭାରତବର୍ଷକୁ ମୁକ୍ତି ପ୍ରଦାନ କରିବାର ସୁଗମ ପଥ ମଧ୍ୟ ଖୋଜି ବାହାର କରାଯିବା ସର୍ବାଦୌ କାମ୍ୟ । ତେଣୁ ସମସ୍ୟା ଓ ପରିସ୍ଥିତିର ଜଡ଼କୁ ଚାଲନ୍ତୁ ଟିକେ ଖୋଜି ବାହାର କରିବା ଓ ବିଜ୍ଞାନର ଚଲାପଥକୁ ସଦା କୁସୁମିତ କରିବା ପାଇଁ ଆମେ ଆମର ପାଦ ଦୁଇଟିକୁ ଦୁଇ ପାହୁଣ୍ଡ ଆଗେଇ ନବା ।

ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ଦୃଢ଼ ନିଶ୍ଚିତ ଥିଲେ ଯେ ବିଜ୍ଞାନ ହିଁ ଏକ ମାତ୍ର ଅମୋଘ ଅସ୍ତ୍ର ଯାହାକି ଭାରତବର୍ଷର କ୍ଷୁଧା, ଦାରିଦ୍ର୍ୟ, ନିରକ୍ଷରତା, ଅପରିମଳତା, ଅନ୍ଧବିଶ୍ୱାସ ଓ କୁସଂସ୍କାର ଆଦିର ମୂଳୋତ୍ପାଟନ କରିବାରେ ସମ୍ପୂର୍ଣ୍ଣ ରୂପେ ସକ୍ଷମ ହୋଇପାରିବ । ଆର୍ଯ୍ୟାବର୍ତ୍ତରେ ଏହି ମହିୟସୀ ଶଶାଗରା ଧରଣୀ ଭାରତବର୍ଷ ଫଳ ପୁଷ୍ପରେ ସୁସଜ୍ଜିତ ଓ ସୁଶୋଭିତ ହୋଇଥିଲେ ମଧ୍ୟ ଭୋକିଲା ଶୋଷିଲା ମଣିଷଙ୍କ ଏକ ଧନୀ ରାଷ୍ଟ୍ର ଭାବେ ସର୍ବତ୍ର ପରିଚିତ ହେଉଛି । ଏହା ଆମ ପାଇଁ ଏକ ଲଜ୍ଜାର ବିଷୟବସ୍ତୁ ନୁହେଁ କି ? ଏହି ଗୁଢ଼ ସିଦ୍ଧାନ୍ତ ଓ ଚିନ୍ତାଧାରାର ବଶବର୍ତ୍ତି ହୋଇ ସେ ତାଙ୍କ ଶାସନ କାଳ ୧୯୪୭ ରୁ ୧୯୬୪ ମସିହା ମଧ୍ୟରେ ଦେଶରେ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ ଅଧିନରେ ୨୫ଟି ଗବେଷଣା ପ୍ରତିଷ୍ଠାନ, ଭାରତୀୟ କୃଷି ଗବେଷଣା ପରିଷଦ

ଅଧିନରେ ଏକାଧିକ ବିଜ୍ଞାନାଗାର, ଗବେଷଣା କେନ୍ଦ୍ର, ଷ୍ଟେସନ୍ ଓ ସବଷ୍ଟେସନ୍ର ସ୍ଥାପନା କରିବା ସଂଗେ ସଂଗେ ଭାରତୀୟ ଭେଷଜ ଗବେଷଣା ପରିଷଦ ଅଧିନରେ ମଧ୍ୟ କେତେକ ବିଜ୍ଞାନାଗାର ପ୍ରତିଷ୍ଠା କରିଥିଲେ । ଦେଶରକ୍ଷା ଗବେଷଣା ଓ ବିକାଶ ପ୍ରତିଷ୍ଠାନର ସ୍ଥାପନା କରି ତା ଅଧିନରେ ଏରୋନଟିକ୍ସ, ଆର୍ମାମେଣ୍ଟସ, ଇଲେକ୍ଟ୍ରୋନିକ୍ସ ଆଦି କ୍ଷେତ୍ରରେ ଏକାଧିକ ଗବେଷଣାଗାରର ଶୁଭାରମ୍ଭ କରିଥିଲେ । ୧୯୪୮ ମସିହାରେ ଆଟମିକ ଏନର୍ଜି ଆକ୍ଟ ପାସ ହୋଇଥିଲା ଏବଂ ୧୯୫୪ ମସିହାରେ ଆଟମିକ୍ ଏନର୍ଜି ଏଷ୍ଟାବ୍ଲିସ୍‌ମେଣ୍ଟ (ଯାହାକି ଏବେ ଭାଭା ପରମାଣୁ ଗବେଷଣା କେନ୍ଦ୍ର ନାମରେ ସୁପରିଚିତ) ର ସ୍ଥାପନା ହୋଇଥିଲା । ୧୯୫୭ ମସିହାରେ ଏହା ନେହେରୁଙ୍କ ଦ୍ୱାରା ବିଧିବଦ୍ଧ ଭାବେ ଉନ୍ମୋଚିତ ହୋଇଥିଲା । ତାପରେ ଖୁବ୍ ଶୀଘ୍ର ଓ ପଛକୁ ପଛ ପାଞ୍ଚୋଟି ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଖଡ଼ଗପୁର, ବମ୍ବେ, ଦିଲ୍ଲୀ, କାନପୁର ଓ ମାନ୍ଦ୍ରାଜରେ ସ୍ଥାପିତ ହେଲା । ସେହିପରି ଭେଷଜ ବିଜ୍ଞାନ କ୍ଷେତ୍ରରେ ନୂଆଦିଲ୍ଲୀରେ ସର୍ବ ଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନ (AIIMS), ପଣ୍ଡିଚେରୀରେ ଜବାହାରଲାଲ ନେହେରୁ ସ୍ନାତକୋତ୍ତର ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ, କଲିକତାରେ ସ୍ନାତକୋତ୍ତର ଭେଷଜ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ସ୍ଥାପନା କରାଗଲା । ଦେଶରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ପଣ୍ଡିତ ନେହେରୁଙ୍କ ଅନିର୍ବାଣ ସ୍ୱପ୍ନ ଓ କାମନା ଥିଲା । ଫଳ ସ୍ୱରୂପ ୧୯୬୦ ମସିହାରେ ପନ୍ତନଗର ଠାରେ ଦେଶର ପ୍ରଥମ କୃଷି ବିଶ୍ୱବିଦ୍ୟାଳୟ - ଉତ୍ତରପ୍ରଦେଶ କୃଷିବିଶ୍ୱବିଦ୍ୟାଳୟର ସ୍ଥାପନା କରାଯାଇଥିଲା ଏବଂ ତାପରେ ପରେ ଭୁବନେଶ୍ୱରଠାରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଓ ପଞ୍ଜାବ କୃଷି ବିଶ୍ୱବିଦ୍ୟାଳୟର ସ୍ଥାପନା କରାଯାଇଥିଲା ।

୧୯୫୭ ମସିହା ଅକ୍ଟୋବର ୪ ତାରିଖରେ ସୋଭିଏତ୍ ୟୁନିଅନ୍ ଦ୍ୱାରା ସ୍ପୁଟନିକ ମହାକାଶ ଯାନର ଯାତ୍ରା ଏକ ମହାକାଶ ଯୁଗର ଶୁଭାରମ୍ଭ କରିବା ସଂଗେ ସଂଗେ ଏକ ମହାକାଶ ଦୌଡ଼ର ମଧ୍ୟ ଶୁଭାରମ୍ଭ କରିଥିଲା । ଧିରେ ଧିରେ ଏହାର ଅଳ୍ପ କିଛି ବର୍ଷ ମଧ୍ୟରେ ମହାକାଶ ପ୍ରଯୁକ୍ତି ବିଦ୍ୟାର ମହାଶକ୍ତି ମହାଦର୍ପରେ ତାର ରୂପ ବିନ୍ୟାସକୁ ପ୍ରତିପାଦିତ କରିଚାଲିଲା । ଏଭଳି ଏକ ଅସାମାନ୍ୟ କ୍ଷେତ୍ରରେ ଭାରତବର୍ଷ

ମଧ୍ୟ ନିଜର ପରାକାଷ୍ଠା ପ୍ରତିପାଦିତ କରିବାକୁ ସମୟର ବଡ଼ ଦାଣ୍ଡରେ ବଡ଼ ବଡ଼ ଖୋଜ ପକାଇ ଆଗେଇ ଚାଲିଲା । ଫଳ ସ୍ୱରୂପ ୧୯୬୨ ମସିହାରେ ପରମାଣୁ ଶକ୍ତି ବିଭାଗ ଦ୍ୱାରା ଇଣ୍ଡିଆନ ନ୍ୟାସନାଲ କମିଟି ଫର ସ୍ପେଶ ରିସର୍ଚ୍ଚ (INCOSPAR) ର ଗଠନ କରାଗଲା ଏବଂ ଥୁମ୍ବା ଇକ୍ୱାଟୋରିଆଲ ରକେଟ ଲଞ୍ଚିଙ୍ଗ ଷ୍ଟେସନ୍ (TERLS) ର କାମ ଆରମ୍ଭ କରାଗଲା । ୧୯୬୩ ମସିହା ନଭେମ୍ବର ୨୧ ତାରିଖ ଦିନ ଭାରତବର୍ଷର ପ୍ରଥମ ସାଉଣ୍ଡିଂ ରକେଟ ମହାକାଶକୁ ଉତ୍କ୍ଷେପଣ କରାଗଲା । ତାଲିକାଟି ଏଇଠି ପରିସମାପ୍ତି ହେଲା ନାହିଁ ଏବଂ ଏହାର ଦୈର୍ଘ୍ୟକୁ ଆହୁରି ଆଗକୁ ଆଗକୁ ବଢ଼ାଯାଇ ପାରିବ ।

ବିଜ୍ଞାନ ପ୍ରତି ପଣ୍ଡିତ ନେହେରୁଙ୍କ ସମ୍ପର୍କ ଏତେ ନିବିଡ଼ତମ ଥିଲା ଯେ ସେ ନିଶ୍ଚିତ ରୂପେ ପ୍ରତିବର୍ଷ ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଇ ତାଙ୍କର ଅଭୂତପୂର୍ବ ବୈଜ୍ଞାନିକ ଅଭିଭାଷଣ ପ୍ରଦାନ କରୁଥିଲେ । ଭାରତର ପ୍ରଧାନମନ୍ତ୍ରୀ ରହିବାର ୧୭ବର୍ଷ ଅବଧି ଭିତରେ ବିଜ୍ଞାନ କ୍ଷେତ୍ରରେ ଭାରତକୁ ଏକ ମହାଶକ୍ତି ରୂପେ ପ୍ରତିଷ୍ଠିତ କରିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ ଓ ଏଥିନିମନ୍ତେ ସମସ୍ତ ସମ୍ଭାବ୍ୟ ପଦକ୍ଷେପ ନେବାପାଇଁ ସେ ଯତ୍ପରୋନାସ୍ତି ଚେଷ୍ଟିତ ଥିଲେ । ଆଜି ଆମେ ଯଦି ନିୟୁକ୍ଲିଅର କ୍ଲବ୍ ଓ ସ୍ପେଶ୍ କ୍ଲବ୍‌ର ସଦସ୍ୟ ହୋଇ ପାରିଛନ୍ତି ଅଥବା ଖାଦ୍ୟ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହୋଇପାରିଛନ୍ତି ଅବା ବିଜ୍ଞାନ କ୍ଷେତ୍ରରେ ଭାରତବର୍ଷକୁ ବିକଶିତ ରାଷ୍ଟ୍ରମାନଙ୍କ ସହ ସମକକ୍ଷ କରାଇ ପାରିଛନ୍ତି – ଏହା କେବଳ ସମ୍ଭବ ହୋଇ ପାରିଛି ସେହି ବୈଜ୍ଞାନିକ ମହାପୁରୁଷ ମାନଙ୍କ ପାଇଁ ଯେଉଁମାନେ କି ନେହେରୁ ଯୁଗରେ ବିଜ୍ଞାନର ଉତ୍ତରୋତ୍ତର ଉନ୍ନତି ପାଇଁ ନିଜ ଜୀବନକୁ ବାଜି ଲଗେଇ ଦେଇଥିଲେ ।

ଭାରତବର୍ଷରେ ବିଜ୍ଞାନର ଅଭ୍ୟୁଦୟ ପାଇଁ ଉପଯୁକ୍ତ ବୈଜ୍ଞାନିକ ଭିତ୍ତିଭୂମି ଓ ସୁସ୍ଥ ବୈଜ୍ଞାନିକ ପରିବେଶ ସୃଷ୍ଟି କରିବା କ୍ଷେତ୍ରରେ ନେହେରୁଙ୍କ ଅଭୂତପୂର୍ବ ଅବଦାନର କୌଣସି ପଟାନ୍ତର ନାହିଁ ଏବଂ ଏହା ସମୟକ୍ରମେ ତାର ମିଠାଫଳ ଭାରତୀୟମାନଙ୍କୁ ପ୍ରଦାନ କରି ଚାଲିଲା । ୧୯୬୪ ମସିହାରେ ଆମେରିକାନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସ ଦ୍ୱାରା କରାଯାଇଥିଲା ଏକ ଷ୍ଟଡି ରିପୋର୍ଟ ପ୍ରକାଶ କରିଛି ଯେ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଭାରତରୁ ପ୍ରକାଶିତ ଗବେଷଣା ନିବନ୍ଧର ସଂଖ୍ୟା ପୃଥିବୀରେ ୯ମ ସ୍ଥାନ

ଅଧିକାର କରିଛି । ଆମେରିକା, ସୋଭିଏତ୍ ରୁଷ୍, ୟୁନାଇଟେଡ୍ କିଙ୍ଗ୍‌ଡମ୍, ଜାପାନ୍, ଫ୍ରାନ୍ସ, ଜର୍ମାନୀ, ନେଦରଲ୍ୟାଣ୍ଡ ଓ ଇଟାଲୀ ପଛକୁ ଭାରତ ତାର ସ୍ଥାନ ଅଧିକାର କରିଛି । ୧୯୯୮ ମସିହାରେ ରସାୟନ ବିଜ୍ଞାନକ୍ଷେତ୍ରରେ ଭାରତର ସ୍ଥାନ ନବମ ସ୍ଥାନରେ ଥିଲା । ଆମେରିକା, ଜାପାନ, ଜର୍ମାନୀ, ଫ୍ରାନ୍ସ, ୟୁନାଇଟେଡ୍ କିଙ୍ଗଡମ୍, ରୁଷିଆ, ଚୀନ୍ ଓ ଇଟାଲୀ ପଛକୁ ଭାରତ ତାର ସ୍ଥାନ ଅଧିକାର କରିଥିଲା । ୨୦୦୪ ମସିହାରେ ଏହି ର୍‍ୟାଙ୍କିଙ୍ଗ୍‌ରେ ଅସାଧାରଣ ପରିବର୍ତ୍ତନ ପରିଲକ୍ଷିତ ହେଲା ଏବଂ ଚୀନ୍ ଆମେରିକା ପଛକୁ ଏହି ତାଲିକାରେ ୨ୟ ସ୍ଥାନକୁ ଅକ୍ତିଆର କରି ବସିଲା । ଆମେରିକା, ଚୀନ୍, ଜାପାନ୍, ଜର୍ମାନୀ, ଫ୍ରାନ୍ସ, ୟୁନାଇଟେଡ୍ କିଙ୍ଗଡମ୍ ଏବଂ ରୁଷିଆ ଭାରତ ଉପରେ ଅଧିଷ୍ଠିତ ହେଲେ ଏବଂ ଭାରତ କଷ୍ଟେମଷ୍ଟେ ୮ମ ସ୍ଥାନରେ ନିଜର ଆସନ ଗ୍ରହଣ କରି ସନ୍ତୁଷ୍ଟ ରହିଲା ।

ୟୁଗିନ୍ ଗାରଫିଲ୍ଡ (EUGENE GARFIELD) ଯେ କି ସାଇନ୍ସ ସାଇଟେସନ୍ ଇଣ୍ଡେକ୍ସର ପ୍ରବର୍ତ୍ତକ ଥିଲେ ସେ ତୃତୀୟ ବିଶ୍ୱରେ ସାଇନ୍ସର ମ୍ୟାପିଂ କରିବା ପାଇଁ ୧୯୭୩ ମସିହାରେ ସାଇନ୍ସ ସାଇଟେସନ୍ ଇଣ୍ଡେକ୍ସକୁ ଭିତ୍ତିକରି ଏକ ଷ୍ଟଡି ହାତକୁ ନେଇଥିଲେ । ଏହି ଷ୍ଟଡି ତାର ରିପୋର୍ଟ ପ୍ରକାଶ କରି ସାଇଣ୍ଟିଫିକ୍ ପ୍ରୋଡକ୍ଟିଭିଟି (ବୈଜ୍ଞାନିକ ଉତ୍ପାଦନଶୀଳତା) ଅନୁଯାୟୀ ଭାରତର ସ୍ଥାନକୁ ୮ମ ସ୍ଥାନରେ ସ୍ଥାନିତ କରାଗଲା । ଏହି ତାଲିକାଟିରେ ଆମେରିକା, ୟୁନାଇଟେଡ୍ କିଙ୍ଗଡମ୍, ସୋଭିଏତ୍ ରୁଷିଆ, ଜର୍ମାନୀ ଗଣରାଜ୍ୟ, ଫ୍ରାନ୍ସ, ଜାପାନ ଏବଂ କାନାଡା ଦେଶର ନାମ ଯଥାକ୍ରମେ ଉଲ୍ଲେଖ ଥିଲା । ସେହି ରିପୋର୍ଟରେ ୟୁଗିନ ଗାରଫିଲ୍ଡ ଦର୍ଶାଇଥିଲେ ଯେ ବିଜ୍ଞାନ କ୍ଷେତ୍ରରେ ଭାରତର ଅବଦାନ ସମଗ୍ର ତୃତୀୟ ବିଶ୍ୱର ରାଷ୍ଟ୍ର ସମୂହର ଅବଦାନର ୫୦ ପ୍ରତିଶତ ଅଟେ । ୧୯୯୫ ମସିହାରେ ଭାରତର ସ୍ଥାନ ୮ ରୁ ୧୩ କୁ ଖସି ଆସିଲା । ଆଜି ମଧ୍ୟ ଭାରତର ସ୍ଥାନରେ କୌଣସି ପରିବର୍ତ୍ତନ ଘଟିନାହିଁ ଏବଂ ୨୦୦୬ ମସିହାର ରିପୋର୍ଟ ଅନୁଯାୟୀ ଭାରତରେ ସ୍ଥାନ ଗତ ବର୍ଷ ଧରି ସେହି ୧୩ରେ ଅପରିବର୍ତ୍ତିତ ରହି ଆସିଛି ।

୧୯୬୬ ରୁ ୧୯୭୬ ମସିହା ମଧ୍ୟରେ ସଂଗଠିତ ହୋଇଥିବା ଚୀନର ସାଂସ୍କୃତିକ ବିପ୍ଳବ ପରିପ୍ରେକ୍ଷୀରେ ସେଠାରେ ସମସ୍ତ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଭିତ୍ତିକ ପତ୍ର ପତ୍ରିକା ଓ ସାମୟିକ ପତ୍ର (Periodical) ବନ୍ଦ ହୋଇଗଲା । ଏପରିକି ୧୦୦

ବର୍ଷ ଧରି ପ୍ରକାଶ ପାଇ ଆସୁଥିବା ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଭିତ୍ତିକ ପତ୍ର ପତ୍ରିକା ମଧ୍ୟ ବନ୍ଦ ହୋଇଗଲା । ଫଳତଃ ୧୯୬୬ ମସିହା ପୂର୍ବରୁ ଚୀନରେ ସଂଗଠିତ ହୋଇଥିବା ଅଧିକାଂଶ ବୈଜ୍ଞାନିକ କାର୍ଯ୍ୟ କଳାପର ଉତ୍ପାଦକତା ପ୍ରାୟତଃ ଶୂନ୍ୟ ସ୍ତରକୁ ଚାଲିଆସିଲା । ୧୯୬୫ ମସିହାରେ ପ୍ରାୟ ୧୪୦୦ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଭିତ୍ତିକ ସାମୟିକ ପତ୍ର ଚୀନରେ ପ୍ରକାଶ ପାଉଥିଲା ବେଳେ ଭାରତରେ ଏ ସଂଖ୍ୟା ୫୦୦ ରୁ ବି କମ୍ ଥିଲା । ୧୯୮୦ ମସିହାରେ ଚୀନ୍‌ରୁ ମାତ୍ର ୯୨୪ଟି ଗବେଷଣା ନିବନ୍ଧ ପାଶ୍ଚାତ୍ୟ ବିବ୍‌ଲିଓଗ୍ରାଫିକାଲ ସୋର୍ସରେ ପରିଲକ୍ଷିତ ହୋଇଥିଲା । ଡେଙ୍ଗ ଝିଆଓପିଙ୍ଗ୍‌ଙ୍କ ବଳିଷ୍ଠ ଓ ପ୍ରଗତିଶୀଳ ନେତୃତ୍ୱ ଅଧିନରେ ଚୀନ୍ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଅସାଧାରଣ ଉନ୍ନତି କରିଚାଲିଲା ଏବଂ ଫଳ ସ୍ୱରୂପ ଆଜି ଚୀନ୍ ଆମେରିକା, ଜାପାନ୍, ଜର୍ମାନୀ ଓ ୟୁନାଇଟେଡ୍ କିଙ୍ଗଡମ୍ ପଛକୁ ବିଶ୍ୱରେ ୫ମ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇପାରିଛି ।

ଉପରେ ବର୍ଣ୍ଣିତ ଗାଣିତିକ ତଥ୍ୟ ଚୀନ୍‌ର କ୍ରମ ବର୍ଦ୍ଧିଷ୍ଣୁ ବୈଜ୍ଞାନିକ ଅବୟବ ଓ ଭାରତର ଦ୍ରୁତ ଅବକ୍ଷୟମାନ ବୈଜ୍ଞାନିକ ଦୁର୍ଗ ପତନର ସ୍ପଷ୍ଟ ଚିତ୍ର ପ୍ରତିପାଦିତ କରୁଛି ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯେତେବେଳେ ପ୍ରଧାନମନ୍ତ୍ରୀ ହେଲେ ସେ ମଧ୍ୟ ପଣ୍ଡିତ ନେହେରୁଙ୍କ ପରି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କଲେ ଏବଂ ଭାରତବର୍ଷର ବୈଜ୍ଞାନିକ ଇତିହାସର ବୁନିୟାଦକୁ ମଜବୁତ କରିବା ପାଇଁ ପ୍ରତିଜ୍ଞା କଲେ । ସେ ଅନୁଭବ କଲେ ଯେ ଭାରତବର୍ଷରେ ବିଜ୍ଞାନ କ୍ରମାଗତ ଭାବେ ଉତ୍ତରୋତ୍ତର ଉନ୍ନତି ପଥରେ ଧାବମାନ ହେବ ସେତିକିବେଳେ ଯେତେବେଳେ କେନ୍ଦ୍ରରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ନାମରେ ଏକ ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ ବିଭାଗ କାମ କରିବ । ଫଳ ସ୍ୱରୂପ ୧୯୭୧ ମସିହା ମଇ ମାସରେ ପ୍ରଥମ କରି ଭାରତବର୍ଷର ଇତିହାସରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଭାଗ (DST)ର ସ୍ଥାପନା କରାଗଲା ଯାହାର ମୁଖ୍ୟ ଆଭିମୁଖ୍ୟ ଥିଲା ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିଭିନ୍ନ କ୍ଷେତ୍ରରେ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ମାଧ୍ୟମରେ ରାଷ୍ଟ୍ରନିର୍ମାଣ କରିବା ଏବଂ ରାଷ୍ଟ୍ରର ସମସ୍ତ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଭିତ୍ତିକ କାର୍ଯ୍ୟକ୍ରମକୁ ଏକ ସୂତ୍ରରେ ବାନ୍ଧି ରଖିବା ।

ଦେଶରେ କୃଷି ବିଶ୍ୱବିଦ୍ୟାଳୟଗୁଡ଼ିକ ଗୋଟିକ ପରେ ଗୋଟିଏ ଖୋଲିବାରେ

ଲାଗିଲା । ୧୯୭୪ ମସିହା ମଇ ମାସ ୧୮ ତାରିଖରେ ପୋଖରାନ୍‌ର ଠାରେ ଭାରତ ପ୍ରଥମ କରି ଭୂଗର୍ଭ ପରମାଣୁ ବୋମା ବିସ୍ଫୋରଣ କଲା । ଟେଲିଭିଜନ ଟ୍ରାନ୍ସମିଟର ଗୁଡ଼ିକ ଦ୍ରୁତ ଗତିରେ ଦେଶ ସାରା ବିଭିନ୍ନ ସ୍ଥାନରେ ସ୍ଥାପନା କରାଗଲା ଏବଂ ୧୯୮୨ ମସିହାରେ ନ୍ୟାସନାଲ ଟେଲିଭିଜନ ନେଟୱାର୍କ ଏକ ବାସ୍ତବତାର ରୂପ ନେଲା । ମହାକାଶ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଭାରତ ଗୋଟିଏ ପରେ ଗୋଟିଏ ମାଇଲ ଖୁଣ୍ଟ ସ୍ଥାପନା କରିଚାଲିଲା । ଅହମଦାବାଦରେ ସ୍ୟାଟେଲାଇଟ କମ୍ୟୁନିକେସନ ଆର୍ଥ ଷ୍ଟେସନ୍ ୧୯୬୭ ମସିହାରେ ସ୍ଥାପନା କରାଗଲା । ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠା (ISRO) ୧୯୬୯ ମସିହାରେ ସ୍ଥାପିତ ହେଲା । ମହାକାଶ ବିଭାଗ ଏବଂ ମହାକାଶ କମିଶନ ମଧ୍ୟ ୧୯୭୨ ମସିହାରେ ପ୍ରତିଷ୍ଠା କରାଗଲା ଏବଂ ଆର୍ଯ୍ୟଭଟ୍ଟଙ୍କ ନାମରେ ନାମିତ ପ୍ରଥମ ଭାରତୀୟ ଉପଗ୍ରହ ୧୯୭୫ ମସିହା ଏପ୍ରିଲ୍ ୧୯ ତାରିଖରେ ମହାକାଶକୁ ଯାତ୍ରା କଲା । କ୍ରମାଗତ ଭାବେ ମହାକାଶ ଗବେଷଣା କ୍ଷେତ୍ରରେ ଭାରତ ଗୋଟିକ ପରେ ଗୋଟିଏ ବିଜୟ ବାନା ଉଡ଼େଇ ଚାଲିଲା ଏବଂ ଏହି ସଫଳତାକୁ ପୁଞ୍ଜି କରି ଆଜି ଆମେ ଭବିଷ୍ୟତକୁ ନିଜ ହାତ ମୁଠାରେ ଧରି ରଖିବାକୁ ଦୃଢ଼ ସଂକଳ୍ପବଦ୍ଧ ।

ଇନ୍ଦିରା ଗାନ୍ଧୀ ଭଲଭାବେ ଜାଣିଥିଲେ ଯେ ଆମ ଦେଶର ଖଣିଜ ପଦାର୍ଥ ଗୁଡ଼ିକ ଧିରେ ଧିରେ ସରି ସରି ଆସୁଛି । ତେଣୁ ଏଥିପାଇଁ ବିକଳ୍ପ ପଦାର୍ଥର ଅନୁସନ୍ଧାନର ଆବଶ୍ୟକତା ରହିଛି ଏବଂ ଏହା ଭାରତର ୭୫୦୦ କିଲୋମିଟର ସମୁଦ୍ର ତଟବର୍ତ୍ତୀ ଅଞ୍ଚଳର ସାଗର ଗର୍ବରେ ମିଳିପାରିବ । ଏଥିପାଇଁ ଆଣ୍ଟାର୍କଟିକା ମଧ୍ୟ ଅନ୍ୟ ଏକ ଉତ୍ତମ ପ୍ରକ୍ଷେତ୍ର ଭାବେ ସାବ୍ୟସ୍ତ ହୋଇପାରେ । ତେଣୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ବିଶେଷ ପ୍ରଚେଷ୍ଟା ଫଳରେ ୧୯୮୧ ମସିହା ଜୁଲାଇ ମାସରେ ସାମୁଦ୍ରିକ ବିକାଶ ବିଭାଗର ଶୁଭାରମ୍ଭ ହେଲା ଏବଂ ଏହି ବିଭାଗଟି ପ୍ରଧାନମନ୍ତ୍ରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ ଆରମ୍ଭ କଲା । ସେହିବର୍ଷ ଆଣ୍ଟାର୍କଟିକା ରିସର୍ଚ୍ଚ ପ୍ରୋଗ୍ରାମ ମଧ୍ୟ ଆରମ୍ଭ କରାଗଲା । ତାର ପରବର୍ଷ ଅର୍ଥାତ୍ ୧୯୮୨ ମସିହାରେ ରାଷ୍ଟ୍ରୀୟ ସାମୁଦ୍ରିକ ପଲିସି ଷ୍ଟେଟମେଣ୍ଟର ମଧ୍ୟ ପ୍ରବର୍ତ୍ତନ କରାଗଲା ।

୧୯୮୪ ମସିହାରେ ଯେତେବେଳେ ରାଜୀବ ଗାନ୍ଧୀ ଦେଶର ପ୍ରଧାନ ମନ୍ତ୍ରୀ ହେଲେ ସେ ଦେଶବ୍ୟାପୀ କମ୍ପ୍ୟୁଟରୀକରଣ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଲେ

ଏବଂ ୧୫ ବର୍ଷ ମଧ୍ୟରେ ସଫ୍ଟୱେୟାର ବିକାଶ କ୍ଷେତ୍ରରେ ଭାରତ ବିଶ୍ୱରେ ଏକ ପ୍ରଭାବଶାଳୀ ରାଷ୍ଟ୍ରର ମାନ୍ୟତା ଲାଭ କଲା । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ କିପରି ଜଣେ ଭବିଷ୍ୟଦ୍ରଷ୍ଟା ବ୍ୟକ୍ତି ବିଶେଷ ରାଷ୍ଟ୍ରର ଅସାମାନ୍ୟ ପ୍ରଗତିରେ ଭାଗିଦାରୀ ହୋଇ ରାଷ୍ଟ୍ରର ଭାଗ୍ୟ ପରିବର୍ତ୍ତନରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ ।

## ବିଜ୍ଞାନର ଦ୍ରୁତ ଅବକ୍ଷୟ ହେଲା କାହିଁକି ?

### (କ) ଅର୍ଥ ଓ ପ୍ରତିପତ୍ତିର ପ୍ରଭାବ :

ଆଜି ଜଣେ ଏମ୍.ଏସ୍.ସି. ଛାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥାଉ ଅବା ବିଜ୍ଞାନରେ ପି.ଏଚ୍.ଡି. କରିଥାଉ ତାର ଚାକିରୀକାଳର ପ୍ରାରମ୍ଭରେ ମାସକୁ ପ୍ରାୟ ୨୦ ହଜାର ଟଙ୍କା ଅର୍ଜନ କରିଥାଏ । ପରନ୍ତୁ ଜଣେ ସୂଚନା ପ୍ରଯୁକ୍ତିବିଦ୍ୟା ବୃତ୍ତିଧାରୀ ବି.ଟେକ ଅବା ସେଭଳି ଡିଗ୍ରୀଧାରୀ ଛାତ୍ରଟିଏ ଏକ ବହୁ ରାଷ୍ଟ୍ରୀୟ କମ୍ପାନୀରେ ଯୋଗଦେଲେ ବର୍ଷକୁ ପ୍ରାୟ ୬ ଲକ୍ଷ ଟଙ୍କା ବା ତଦୂର୍ଦ୍ଧ୍ୱ ଅର୍ଥରାଶି ରୋଜଗାର କରୁଛି । ସେହିଭଳି ଭାରତୀୟ ପରିଚାଳନା ପ୍ରତିଷ୍ଠାନ ଅବା ସେହିଭଳି ଉଚ୍ଚତର ଶିକ୍ଷାନୁଷ୍ଠାନରୁ ଏମ୍.ବି.ଏ. ଡିଗ୍ରୀଧାରୀ ଜଣେ ବ୍ୟକ୍ତି ତାର ଚାକିରିର ପ୍ରାରମ୍ଭରେ ମାସକୁ ୫୦ ହଜାରରୁ ୧ ଲକ୍ଷ ଟଙ୍କା ରୋଜଗାର କରୁଛି । ଜଣେ ଆଇ.ଏ.ଏସ୍. ପାଶ କରିଥିବା ଛାତ୍ର ତାର ଚାକିରିର ପ୍ରାରମ୍ଭରେ ଜଣେ ଗବେଷକ ଭଳି ପ୍ରାୟ ସମାନ ବେତନ ପାଇଥାଏ, କିନ୍ତୁ ତା ହାତ ପାଖରେ ଥିବା ଶାସନଗତ କ୍ଷମତା, ସେ ଉପଭୋଗ କରୁଥିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିତ୍ୱ (VIP) ର ପଦମର୍ଯ୍ୟାଦା, ସର୍ବସାଧାରଣ ଜନତାଙ୍କ ପାଖରୁ ସେ ପାଉଥିବା ଅଜସ୍ର ମାନ ସମ୍ମାନ, ଚାକିରିରେ ପଦୋନ୍ନତି ଏବଂ ଅବସରକାଳୀନ ସୁବିଧା ସୁଯୋଗ ସବୁକିଛି ମିଳିମିଶି ସାମଗ୍ରୀକ ଭାବେ ଜଣେ କୃତୀଛାତ୍ରକୁ ଆଇ.ଏ.ଏସ୍. ଆଡ଼କୁ ଟାଣି ନେଉଛି । ସେ ବିଜ୍ଞାନର ଯେତେ ଭଲ ଛାତ୍ର ହୋଇଥାଉନା କାହିଁକି ଜ୍ଞାନ ଅପେକ୍ଷା ମାନ ତାକୁ ଅତୀବ ଭାବେ ଆକୃଷ୍ଟ କରି ନେଉଛି ଏବଂ ବିଜ୍ଞାନ ସମାଜର ବଡ଼ ଦାଣ୍ଡରେ ପଡ଼ି ଯାହା ଖାଲି ଛଟପଟ ହେବା ହିଁ ସାର ହେଉଛି । ସ୍ୱାଧୀନତା ପରଠାରୁ ନବେ ଦଶକର ପ୍ରାରମ୍ଭ ପର୍ଯ୍ୟନ୍ତ ଚାକିରିରେ ଦରମାର ଏପରି ତାରତମ୍ୟ ନଥିଲା ଯାହାକି ଏବେ ବିଶେଷ ଭାବେ ପରିଲକ୍ଷିତ

ହେଉଛି । ଏପରିକି ଚୀନ୍, ଆମେରିକା ଅବା ଅନ୍ୟାନ୍ୟ ବିକଶିତ ରାଷ୍ଟ୍ରମାନଙ୍କରେ ବୈଜ୍ଞାନିକମାନଙ୍କ ପାଇଁ ଚାକିରି କ୍ଷେତ୍ରରେ ଦରମାର ତାରତମ୍ୟ ଭାରତ ଭଳି ଏତେଟା ନିସ୍ପୃହାଜନକ ନୁହେଁ । ତେଣୁ ଏଠାରେ ପ୍ରଶ୍ନ ଉଠୁଛି ଆମ ଦେଶର ଜଣେ ପ୍ରତିଭାବାନ୍ ଛାତ୍ର କାହିଁକି ବା ବୈଜ୍ଞାନିକ ଗବେଷଣାକୁ ନିଜର ବୃତ୍ତି ବୋଲି ଆଦରି ନେବ ? ଅଳ୍ପ କେତେକ ପ୍ରତିଭାବାନ ଛାତ୍ର ଥାଇପାରନ୍ତି ଯେଉଁମାନେ କି ଜୀବନର ସମସ୍ତ ଭୋଗ-ବିଳାସ ଓ ସୁଖ-ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଗବେଷଣାକୁ ଜୀବନର ବ୍ରତ ବୋଲି ଆଦରି ନେବେ । ନିଶ୍ଚିତରୂପେ ଏପରି ଛାତ୍ରମାନଙ୍କ ସଂଖ୍ୟା ବହୁତ କମ ଏବଂ ସମସ୍ୟାର ସମାଧାନ ପାଇଁ ଏହା କୌଣସି ସୁଗମ ପଥ ଉନ୍‌ମୋଚନ କରୁନାହିଁ ।

## (ଖ) ବୟସ ଓ ଅଭିଜ୍ଞତା :

ଅମଲାତାନ୍ତ୍ରିକ, ବ୍ୟବସାୟୀକ, ଶିଳ୍ପ ତଥା ଅନ୍ୟାନ୍ୟ ଆନୁସଂଗିକ କ୍ଷେତ୍ରରେ ଜଣେ ବୃତ୍ତିଧାରୀ ବ୍ୟକ୍ତିର ବୟସ ବୃଦ୍ଧି ହେବା ସଂଗେ ସଂଗେ ସେ ଅତ୍ୟନ୍ତ ପାକଳ ଓ ଅଭିଜ୍ଞତା ସମ୍ପନ୍ନ ବ୍ୟକ୍ତିଟିଏ ଭାବେ ସମାଜରେ ପରିଚିତ ଓ ପ୍ରତିଷ୍ଠିତ ହୋଇଥାଏ ଏବଂ ସମ୍ଭବତଃ କୌଣସି ଅନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତି ଓ ଉତ୍ପାଦକତାରେ ବୃଦ୍ଧି ଘଟାଇବାପାଇଁ ତାର ଅବଦାନ ଯଥେଷ୍ଟ ଅଧିକ ହୋଇଥାଏ । ଦୁର୍ଭାଗ୍ୟବଶତଃ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଏହା ସେପରି ନୁହେଁ । ଏଠାରେ ବ୍ୟକ୍ତିର ବୟସ ଏ ପ୍ରମୁଖ ଭୂମିକା ସମ୍ପାଦିତ କରିଥାଏ । ଶ୍ରୀନିବାସ ରାମାନୁଜନ ମାତ୍ର ୩୩ ବର୍ଷ ବୟସରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ଏବଂ ତାଙ୍କ ପଛରେ ସେ ଛାଡ଼ି ଯାଇଥିଲେ ତାଙ୍କ ଅଙ୍କ ଶାସ୍ତ୍ରର ଅମୂଲ୍ୟ ରତ୍ନ । ତାଙ୍କୁ ଯେତେବେଳେ ମାତ୍ର ୨୫ ବର୍ଷ ବୟସ ସେତେବେଳେ ମେଘନାଦ ସାହା ଆଷ୍ଟ୍ରୋ ଫିଜିକ୍ସ କ୍ଷେତ୍ରରେ ତାଙ୍କର ଅସାଧାରଣ ଅବଦାନ ପ୍ରତିପାଦିତ କରିବାରେ ସମର୍ଥ ହୋଇଥିଲେ । ଆଲବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କୁ ଯେତେବେଳେ ମାତ୍ର ୨୬ ବର୍ଷ ବୟସ ସେତେବେଳେ ସେ ବୋଷ ଆଇନଷ୍ଟାଇନ ପରିସଂଖ୍ୟାନ ପ୍ରସ୍ତୁତ କରିଥିଲେ । ଏକ ଷ୍ଟଡି ରିପୋର୍ଟ ପ୍ରକାଶ କରିଛି ଯେ ନୋବେଲ ପ୍ରାଇଜ ବିଜେତା ବୈଜ୍ଞାନିକମାନେ ନୋବେଲ୍ ପ୍ରାଇଜ ପାଇଁ କାମ କରୁଥିଲା ବେଳେ ସେମାନଙ୍କ ହାରାହାରି ବୟସ ରସାୟନ ବିଜ୍ଞାନ କ୍ଷେତ୍ରରେ ୩୭ ବର୍ଷ ୮ ମାସ ହୋଇଥିଲା ବେଳେ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ୩୬ ବର୍ଷ ଏବଂ ମେଡିସିନ୍ ଓ ଫିଜିଓଲୋଜି କ୍ଷେତ୍ରରେ ୩୯ ବର୍ଷ ଥିଲା । ଏଥିରୁ ମୋଟାମୋଟି ଭାବେ ଆମେ ଏହି

ସିଦ୍ଧାନ୍ତରେ ଉପନୀତ ହେବା ଯେ ଯେତେବେଳେ ଜଣେ ବୈଜ୍ଞାନିକ ବୟସର ସିଡ଼ି ପାହାଚରେ ଆରୋହଣ କରୁଥାଏ ସେତେବେଳେ ତାର ଉଦ୍‌ଭାବନଧର୍ମୀ ମାନସିକତା, ନୂଆକରି କିଛି ସୃଷ୍ଟିକରିବାର ବୈଜ୍ଞାନିକ ପ୍ରଗଳ୍ଭତା ଏବଂ ସୃଜନାତ୍ମକ ସୃଷ୍ଟିଧର୍ମୀ କ୍ଷମତାରେ ହ୍ରାସ ପରିଲକ୍ଷିତ ହୋଇଥାଏ । ଉଷ୍ମ ଯୁବରକ୍ତର ଅନବରତ ଗତିଶୀଳତା ଗବେଷଣା କ୍ଷେତ୍ରରେ ଅସାଧାରଣ ଆବିଷ୍କାର ଓ ଉଦ୍‌ଭାବନ ପାଇଁ ନବ ଦିଗନ୍ତର ଉନ୍ମୋଚନ କରିଥାଏ । ସୃଜନାତ୍ମକ କାର୍ଯ୍ୟକଳାପ ଓ ନୂତନ ଉଦ୍‌ଭାବନରେ ଏହା ଯଥେଷ୍ଟ ସହାୟକ ହୋଇଥାଏ । କିନ୍ତୁ ବଡ଼ ଦୁର୍ଭାଗ୍ୟର କଥା ଭାରତବର୍ଷରେ ଧିରେ ଧିରେ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଯୁବକମାନଙ୍କ ନିଯୁକ୍ତିରେ ଡେରି ହୋଇଯାଉଥିବାରୁ ଉଷ୍ମ ରକ୍ତର ଘୋର ଅଭାବ ପରିଲକ୍ଷିତ ହେଉଛି ଯାହାକି ରାଷ୍ଟ୍ର ପାଇଁ ଆଦୌ ଶୁଭଙ୍କର ନୁହେଁ ।

(ଗ) ଗବେଷଣା ପାଇଁ ପୁଞ୍ଜି ଲଗାଣରେ ସ୍ୱଳ୍ପତା :

ଭାରତବର୍ଷରେ ଆମେ ଜି.ଡ଼ି.ପି.ର ୧ ପ୍ରତିଶତରୁ ବି କମ୍ ଅର୍ଥରାଶି ଗବେଷଣା ଓ ଉନ୍ନୟନ ବାବଦରେ ବ୍ୟୟ କରୁଥିବା ବେଳେ ଜାପାନ ଓ ଆମେରିକା ପରି ଉନ୍ନତ ରାଷ୍ଟ୍ରମାନେ ଏ ବାବଦରେ ଜି.ଡି.ପି.ର ୩ପ୍ରତିଶତ ଅର୍ଥରାଶି ବ୍ୟୟ କରିଥାନ୍ତି । ନିଶ୍ଚିତ ରୂପେ ଭାରତବର୍ଷରେ ବିଜ୍ଞାନର ଦୁର୍ଗପତନ ପାଇଁ ଏହା ଏକ ମୁଖ୍ୟ କାରଣ ।

କେତେକ ପ୍ରଶ୍ନ :

ଆମର ବୈଜ୍ଞାନିକ କାର୍ଯ୍ୟକଳାପ କଣ ସତରେ ଏକ ନିଶ୍ଚିତ ଲକ୍ଷ୍ୟସ୍ଥଳ ଅଭିମୁଖେ ଗତି କରୁଛି ? ଆଜିଠୁଁ ୫ ବର୍ଷ ପରେ ୧ ଲିଟର ପେଟ୍ରୋଲର ମୂଲ୍ୟ ବେଶୀ ନ ହେଲେ ବି ନିଶ୍ଚିତ ରୂପେ ୧୦୦ ଟଙ୍କା ହୋଇଥିବ । ବିଶ୍ୱରେ ଗଚ୍ଛିତ ପେଟ୍ରୋଲିୟମର ପରିମାଣରେ ଦ୍ରୁତ ହ୍ରାସ ଘଟୁଥିବାରୁ ଏହାର ମୂଲ୍ୟ ଆକାଶ ଛୁଆଁ ହେବ । ଆମର ବୈଜ୍ଞାନିକମାନେ ଏ ନେଇ କଣ ଚିନ୍ତିତ କି ? କାଠରୁ ଅଟୋମୋବାଇଲ ଜାଳେଣୀର ଉତ୍ପନ୍ନ ପାଇଁ ଆମେ କି କି ପଦକ୍ଷେପ ନେଇଛୁ ?

ଅଗଷ୍ଟ ୨୦୦୬ରେ ଦିଲ୍ଲୀରେ ଅଧିକାଂଶ ଅଞ୍ଚଳ ହାରାହାରି ଦିନକୁ ୬ ଘଣ୍ଟା ବିଜୁଳି କାଟର ଚରମ ଅଭିଜ୍ଞତା ହାସଲ କଲେ । ୩୦/୪୦ ବର୍ଷ ପୂର୍ବରୁ

ପରିସ୍ଥିତି ଏପରି ଖରାପ ନଥିଲା । ବିଦ୍ୟୁତର ନିଅଁଣିଆ ପରିସ୍ଥିତି ଏବେ ଏକ ସର୍ବ ଭାରତୀୟ ଘଟଣା ହୋଇଯାଇଛି । ରାଷ୍ଟ୍ରର ଦ୍ରୁତ ଅଭିବୃଦ୍ଧି ସହ ବିଦ୍ୟୁତର ଚାହିଦା ମଧ୍ୟ ବଢ଼ି ବଢ଼ି ଚାଲିଛି । ଆଗାମୀ ବର୍ଷ ମାନଙ୍କରେ ଆମେ ପରିସ୍ଥିତିର ମୁକାବିଲା କିପରି କରିବା ? ସୌର ଶକ୍ତିର ବ୍ୟବହାର ମାଧ୍ୟମରେ କିପରି ରୋଷେଇପତ୍ର, ଶକ୍ତିର ଉତ୍ପାଦନ ଆଦି କରିପାରିବା ସେଥିପାଇଁ ଆମେ ସମ୍ବାଦପତ୍ର, ଟେଲିଭିଜନ ଓ ଅନ୍ୟାନ୍ୟ ଜନସଂଯୋଗ ପ୍ରକ୍ରିୟା ମାଧ୍ୟମରେ ଏହାକୁ ଲୋକପ୍ରିୟ କରାଇବା ପାଇଁ ଯଥେଷ୍ଟ ପଦକ୍ଷେପ ନେଉଛେ କି ? ସୋଲାର ସେଲ୍‌ର ଦକ୍ଷତାରେ ଅଭିବୃଦ୍ଧି ଆଣିବା ପାଇଁ ଆମେ କଷ୍ଟ ସାଧ୍ୟ ଗବେଷଣା କାର୍ଯ୍ୟକ୍ରମରେ ହାତ ଦେଉଛୁ କି ?

ଆମେ ବୈଦେଶିକ ମୁଦ୍ରା ଅର୍ଜନ ପାଇଁ ମୂଲ୍ୟବାନ ଖଣିଜପଦାର୍ଥ (ଲୁହାପଥର)କୁ ବିଦେଶକୁ ରପ୍ତାନୀ କରୁଛେ । ଆଜିଠୁଁ ୧୦୦ ବର୍ଷ ପରେ ଆମକୁ ସେହି ଲୁହା ପଥର ସୁନାର ଦାମ ଦେଇ ସେହି ଦେଶମାନଙ୍କରୁ ଆମଦାନୀ କରିବାକୁ ପଡ଼ିବ । ବିଶ୍ୱ ଖଣିଜ ସମ୍ପଦରେ ଦ୍ରୁତ ହ୍ରାସ ପରିଲକ୍ଷିତ ହେଉଛି । ସମୟ ଆଉ ବେଶିଦିନ ନାହିଁ ଆମକୁ ଚନ୍ଦ୍ରରେ ଖଣିଜ ପଦାର୍ଥର ସଂଧାନ କରି ଓ ତା ଉପରେ ନିର୍ଭର କରି ବଞ୍ଚି ରହିବାକୁ ପଡ଼ିବ । ଅବା ପୃଥିବୀ ପୃଷ୍ଠରେ ଏକ ସୁବୃହତ୍ ଗ୍ରହାଣୁ ପୁଞ୍ଜ (ASTEROID) ର ସୂକ୍ଷ୍ମ ଅବତରଣ ଯାହାକି ଭବିଷ୍ୟତରେ ଯେ କୌଣସି ସମୟରେ ସଂଗଠିତ ହେବାର ସମ୍ଭାବନା ରହିଛି ତହିଁରେ ଥିବା ଖଣିଜ ପଦାର୍ଥ ଉପରେ ନିର୍ଭର କରି ଆମର ଆଗାମୀ ବଂଶଧର ବଞ୍ଚି ରହିବେ । ଏହା ଆପଣଙ୍କୁ ସାଇନ୍ସ ଫିକ୍ସନ ଭଳି ଲାଗିପାରେ । ହେଲେ ଅତୀତରେ ଆମେ ଦେଖିଛେ ବହୁ ସାଇନ୍ସ ଫିକ୍ସନ୍ ପରବର୍ତ୍ତୀ ସମୟରେ ବାସ୍ତବତାର ରୂପ ନେଇ ଆମ ସମ୍ମୁଖରେ ପ୍ରକଟ ହୋଇଛନ୍ତି । ଏଭଳି କ୍ଷେତ୍ରରେ ଏହା ମଧ୍ୟ ଅସତ୍ୟ ନ ହୋଇପାରେ । ଆମର ବୈଜ୍ଞାନିକ ବନ୍ଧୁଗଣ ଏ ନେଇ କଣ କିଛି ଚିନ୍ତା କରନ୍ତି କି ?

ଏଥିରେ ସମସ୍ତେ ମୋଟାମୋଟି ଏକମତ ଯେ ସମ୍ପ୍ରତି ବିଜ୍ଞାନ କ୍ଷେତ୍ରରେ ଆମର ଜାତୀୟ ବ୍ୟୟରାଶି ଜିଡ଼ିପିର ୧ ପ୍ରତିଶତରୁ ବି କମ ଅଟେ ଏବଂ ବିଜ୍ଞାନ କ୍ଷେତ୍ରରେ ଆମର ଫଳାଫଳ ମଧ୍ୟ ନିରାଶାଜନକ । ଧରାଯାଉ ଯଦି ଆଗାମୀ ପଞ୍ଚବାର୍ଷିକ 'ଯୋଜନାରେ ବିଜ୍ଞାନ କ୍ଷେତ୍ରରେ ବ୍ୟୟରାଶିର ପରିମାଣ ଜିଡିପିର ୨ ପ୍ରତିଶତକୁ ବଢ଼େଇ ଦିଆଯାଏ ତେବେ ଆମର ବୈଜ୍ଞାନିକମାନେ ଏହି ବର୍ଦ୍ଧିତ ବ୍ୟୟ ରାଶିର

ପ୍ରକୃଷ୍ଟ ବିନିଯୋଗ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ହାତରେ ଧରି ପ୍ରସ୍ତୁତ ଅଛନ୍ତି କି ?

ଭବିଷ୍ୟତ :

ଭାରତୀୟ ବିଜ୍ଞାନର ସାମ୍ପ୍ରତିକ ରୂପ ବିନ୍ୟାସକୁ ଅବଲୋକନ କଲେ ଭବିଷ୍ୟତ ସେତେଟା ମଙ୍ଗଳକାରକ ବୋଲି ମନେହୁଏ ନାହିଁ । ନିକଟ ଭବିଷ୍ୟତରେ ଚୀନ ବୈଜ୍ଞାନିକ ଉତ୍ପାଦକତା କ୍ଷେତ୍ରରେ ଆମେରିକା ପଛକୁ ବିଶ୍ୱରେ ଦ୍ୱିତୀୟ ସ୍ଥାନ ଅଧିକାର କରିବାକୁ ଦ୍ରୁତ ଗତିରେ ଦୌଡ଼ ଲଗେଇ ଦେଇଛି । ଚୀନରେ ଯେହେତୁ କମ୍ୟୁନିଜିମ ଶାସନ ବ୍ୟବସ୍ଥା ପ୍ରଚଳିତ ଅଛି ତେଣୁ ସେଠିକାର ସରକାର ରାଷ୍ଟ୍ରର ବେଷ୍ଟ ବ୍ରେନ୍‌କୁ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ବିନିଯୋଗ କରାଇବା ପାଇଁ ନିଶ୍ଚିତ ରୂପେ ଉଚିତ୍ ପଦକ୍ଷେପ ନେବେ ଯାହାକି ଭାରତବର୍ଷରେ ସମ୍ଭବପର ନୁହେଁ । ବିଶ୍ୱର ପ୍ରଥମ ୧୦ଟି ସ୍ଥାନ ମଧ୍ୟରେ ଭାରତବର୍ଷକୁ ସ୍ଥାନିତ କରାଇବା ପାଇଁ ପ୍ରଚଣ୍ଡ ବୈଜ୍ଞାନିକ ପ୍ରଚେଷ୍ଟାର ଆବଶ୍ୟକତା ରହିଛି । ରାଷ୍ଟ୍ରର ବେଷ୍ଟ ବ୍ରେନ୍‌କୁ ଆବଶ୍ୟକୀୟ ପ୍ରୋତ୍ସାହନ ପ୍ରଦାନ କରି ବୈଜ୍ଞାନିକ ଗବେଷଣା ଆଡ଼କୁ ଆକର୍ଷିତ କରାଇବା ଏତେ ସହଜ ସାଧ୍ୟ ବ୍ୟାପାର ନୁହେଁ । ସେମାନଙ୍କୁ ଅନ୍ୟାନ୍ୟ ଆର୍ଥିକ ମୋହର ଦୃଢ଼ ବନ୍ଧନରୁ ମୁକ୍ତ କରାଇ ବୈଜ୍ଞାନିକ ଚଲାପଥର ଯାତ୍ରୀଟିଏ କରାଇବା ବଡ଼ ଦୁଃସାଧ୍ୟ ବ୍ୟାପାର । ସେଥିପାଇଁ ସ୍କୁଲ ସ୍ତରରୁ ପିଲାମାନଙ୍କୁ ବିଜ୍ଞାନର ନାଗଫାସରେ ବାନ୍ଧି ଦେବାକୁ ପଡ଼ିବ ଯଦ୍ୱାରା ସେମାନେ ବିଜ୍ଞାନର ପ୍ରେମରେ ପଡ଼ି ପାଗଳ ହୋଇଯିବେ ଓ ଥରେ ବିଜ୍ଞାନର ପାଗଳାମି ସେମାନଙ୍କୁ ଗ୍ରାସ କଲେ ସେଥିରୁ ମୁକୁଳିବା ତାଙ୍କ ପାଇଁ କାଠିକର ପାଠ ହୋଇଯିବ । ବିଲ୍ କ୍ଲିଣ୍ଟନ୍ ବଦଳରେ ଯଦି ଆଇନ୍‌ଷ୍ଟାଇନ୍ ଭାରତର ଏକ ବୃହତ୍ତର ଛାତ୍ର ଗୋଷ୍ଠୀଙ୍କର ରୋଲ୍ ମଡେଲ୍ ହୋଇଗଲେ ତେବେ ଆମେ ଅଚିରେ ବୈଜ୍ଞାନିକ ନବୋଦୟର ନୂତନ ଆଭା ପରିଦର୍ଶନ କରି ପାରିବା ।

ବୈଜ୍ଞାନିକମାନେ ମଧ୍ୟ ଜଣେ ଜଣେ ମାଟିର ମଣିଷ ଓ ମାଟିର ମଣିଷର ସମସ୍ତ ଆଶା, ଆକାଂକ୍ଷା ଓ ସ୍ୱପ୍ନ ମଧ୍ୟ ସେମାନଙ୍କର ବ୍ୟକ୍ତିତ୍ୱରେ ପରିସ୍ଫୁଟିତ ହୋଇଥାଏ । ଜଣେ ଜଣେ ସାର୍ଥକ ଭୂମିପୁତ୍ର ଭାବେ ରାଷ୍ଟ୍ରପ୍ରତି ମଧ୍ୟ ସେମାନଙ୍କର ଉତ୍ତର ଦାୟିତ୍ୱ ରହିଛି । ରାଷ୍ଟ୍ର ପାଖରେ ସେମାନଙ୍କର ମଧ୍ୟ ନିଶ୍ଚିତ ରୂପେ କିଛିଟା ଦାବୀ ରହିବ । ହେଲେ ସେ ଦାବୀ ପୂରଣ କରିବା ପାଇଁ ଧର୍ମଘଟ କରିବା, ଟ୍ରେଡ୍ ୟୁନିଅନ୍ ଗଢ଼ିବା ଆମୃତ୍ୟୁ ଅନଶନ କରିବା ସେମାନଙ୍କୁ ଆଦୌ ଶୋଭା ଦିଏନାହିଁ । ସବୁ ସମୟରେ

ଆମେ ରାଷ୍ଟ୍ରପାଇଁ ପଣ୍ଡିତ ନେହେରୁ, ଇନ୍ଦିରା ଗାନ୍ଧୀ ଅବା ରାଜୀବ ଗାନ୍ଧୀଙ୍କ ପରି ପ୍ରଚଣ୍ଡ ଦୂରଦୃଷ୍ଟି ସମ୍ପନ୍ନ ମହାମନିଷୀ ପାଇପାରିବା ନାହିଁ ।

ଏଭଳି ଏକ ଜଟିଳ ପରିସ୍ଥିତିରେ ଆମକୁ ଉପଯୁକ୍ତ ରାସ୍ତାର ପ୍ରକୃଷ୍ଟ ସନ୍ଧାନ କରିବାକୁ ପଡ଼ିବ ଯଦ୍ୱାରା ଭାରତବର୍ଷରେ ବିଜ୍ଞାନ ବିନା ବାଧା ବିଘ୍ନରେ ନିରବଚ୍ଛିନ୍ନ ଭାବେ ଗତି କରିପାରିବ ଏବଂ ଭବିଷ୍ୟତରେ ଭାରତ ବିଶ୍ୱରେ ଏକ ବୈଜ୍ଞାନିକ ମହାଶକ୍ତି ଭାବେ ଉଦ୍‌ଭାସିତ ହୋଇ ଆର୍ଯ୍ୟାବର୍ତ୍ତର ଗୌରବୋଜ୍ଜ୍ୱଳ ଐତିହ୍ୟକୁ ପୁନଃ ଉଜ୍ଜୀବିତ କରିପାରିବ । ଆମକୁ ଏହା ସଦାସର୍ବଦା ମନେ ରଖିବାକୁ ପଡ଼ିବ ଯେ କୌଣସି ରାଷ୍ଟ୍ରର ଅର୍ଥନୈତିକ ପ୍ରଗତି ସେ ରାଷ୍ଟ୍ରର ବୈଜ୍ଞାନିକ ପ୍ରଗତି ସହ ଓତପ୍ରୋତଃ ଭାବେ ଜଡ଼ିତ ଓ ଉଭୟ ପରସ୍ପରର ପରିପୂରକ ଅଟନ୍ତି । ଏକ ବିନା ଅନ୍ୟର ଅସ୍ତିତ୍ୱ ଠିକ୍ ଭାବେ ପରିସ୍ଫୁଟିତ ହୋଇ ପାରିନଥାଏ ।

ଯୋଜନା (ଓଡ଼ିଆ) : ମଇ, ୨୦୦୭

ବର୍ତ୍ତିକା (ଦୂର୍ଗାପୂଜା ସଂଖ୍ୟା) : ଅକ୍ଟୋବର, ୨୦୦୭



# ପ୍ଲୁଟୋର ପଦାବନତି - ବିଜ୍ଞାନ ଓ ଅନ୍ଧବିଶ୍ୱାସ

ହେ ପ୍ଲୁଟୋ ମହାଶୟ ! - ଆମେ ତୁମ ପାଇଁ ବଡ଼ ଦୁଃଖିତ । ଆମ ସୌର ଜଗତର ନବମତମ ଗ୍ରହଭାବେ ତୁମେ ଆଉ ବିଜ୍ଞାନ ପୁସ୍ତକର ଗୌରବୋଜ୍ଜ୍ୱଳ ପୃଷ୍ଠା ମଣ୍ଡନ କରିବ ନାହିଁ । କାରଣ ବୈଜ୍ଞାନିକମାନେ ନିକଟ ଅତୀତରେ ମୋଟ ଗ୍ରହ ସଂଖ୍ୟାକୁ ୯ ରୁ ୮କୁ କମେଇ ଦେଇଛନ୍ତି । ତୁମକୁ ନେଇ ସାରା ପୃଥିବୀରେ ବୈଜ୍ଞାନିକ ଚର୍ଚ୍ଚା ଏବେ ବେଶ୍ ସରଗରମ ହୋଇ ଉଠିଛି ଏବଂ ତର୍କଶାସ୍ତ୍ରୀମାନଙ୍କୁ ତର୍କର ଏକ ସୁନ୍ଦର ଖୋରାକ ଯୋଗାଇ ଦେବାରେ ଏହା ଅତ୍ୟନ୍ତ ସଫଳକାମୀ ହୋଇପାରିଛି । ଆଗାମୀ ଦିନମାନଙ୍କରେ ମଧ୍ୟ ତୁମ ସମ୍ବନ୍ଧୀୟ ବୈଜ୍ଞାନିକ ଗବେଷଣା ବିଜ୍ଞାନ ଜଗତରେ ବେଶ୍ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିବ - ଏହା ନିଶ୍ଚିତରୂପେ ଆଶା କରାଯାଉଛି ।

୧୯୩୦ ମସିହାରେ ଜଣେ ୨୨ ବର୍ଷୀୟ ଯୁବକ କ୍ଲାଇଡ୍ ଟମବାଗ (CLYDE TOMBAUGH) ପ୍ଲୁଟୋକୁ ଆବିଷ୍କାର କରିଥିଲା ବେଳେ ୨୦୦୬ ମସିହା ଅଗଷ୍ଟମାସ ୨୪ ତାରିଖ ଦିନ ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ୍ ୟୁନିଅନ୍ ଗ୍ରହ ହିସାବରେ ପ୍ଲୁଟୋର ମାନ୍ୟତାକୁ ପ୍ରତ୍ୟାହାର କରି ନେଇଥିଲେ । ଏହା ସମୟର ଖେଳ ଯେ ସେହି ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ ୟୁନିଅନ୍ ୧୯୩୦ ମସିହାରେ ପ୍ଲୁଟୋକୁ ଗ୍ରହର ମାନ୍ୟତା ମଧ୍ୟ ପ୍ରଦାନ କରିଥିଲେ ।

ବାଦାନୁବାଦର ଜଡ଼ :

ଗ୍ରହ ହିସାବରେ ପ୍ଲୁଟୋକୁ ମାନ୍ୟତାକୁ ଅପହରଣ କରିବା ପଛରେ ବୈଜ୍ଞାନିକମାନଙ୍କର ଦୃଷ୍ଟିକୋଣ ଓ ଚିନ୍ତାଧାରା କଣ ଥିଲା ? ବାଙ୍ଗାଲୋରସ୍ଥିତ ଇଣ୍ଡିଆନ୍ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଆଷ୍ଟ୍ରୋଫିଜିକ୍ସର ନିର୍ଦ୍ଦେଶକ ଡକ୍ଟର ସିରାଜ ହାସାନ ଯେକି ପ୍ରାଗଠାରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ୍ ୟୁନିଅନର ମିଟିଙ୍ଗ୍‌ରେ ଭାରତର ପ୍ରତିନିଧିତ୍ୱ କରିଥିଲେ କୁହନ୍ତି ଯେ ଏ ସମସ୍ତ ବାଦାନୁବାଦର ଝଡ଼ ଗତ ୩ ବର୍ଷ ତଳେ କାଲିଫର୍ଣ୍ଣିଆ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜିର ମାଇକେଲ୍ ବ୍ରାଉନ୍‌ଙ୍କ ଦ୍ୱାରା "ଜେନା"

(XENA) ର ଆବିଷ୍କାରକୁ ନେଇ ହିଁ ଉଠିଥିଲା । ଯଦି "ଜେନା" (XENA)ର ବସ୍ତୁତ୍ୱ (Mass) ଏବଂ ଆକୃତି (Shape) ପ୍ଲୁଟୋ ଠାରୁ ଛୋଟ ହୋଇଥାଆନ୍ତା ତେବେ ସମସ୍ୟା ବୋଲି ଆଜି ଆଉ କିଛି ନଥାନ୍ତା ।

ଯଦି ପ୍ଲୁଟୋ ଗୋଟିଏ ଗ୍ରହ ହୋଇପାରିଲା ତେବେ "ଜେନା" (XENA) କାହିଁକି ଗୋଟିଏ ଗ୍ରହ ହେବ ନାହିଁ ବୋଲି ଡକ୍ଟର ହାସାନ୍ ବାଦାନୁବାଦ ଉପରେ ନିଜର ଯୁକ୍ତି ଉପସ୍ଥାପନ କଲେ । ଗୋଟିଏ ସମ୍ଭାବନା ମୁଣ୍ଡ ଟେକିଲା ଯେ ଯଦି ଗ୍ରହର ସଂଜ୍ଞା (DEFINITION) କୁ ଆମେ ସମ୍ପ୍ରସାରିତ କରି ପାରିବା ତେବେ "ଜେନା" ସହ ଆଉ ଅନ୍ୟାନ୍ୟ ବସ୍ତୁ (Objects) ମଧ୍ୟ ଏହାର ଅନ୍ତର୍ଭୁକ୍ତ ହୋଇପାରିବେ । ଯଦି ଏହା ହୁଏ ତେବେ ସୌର ଜଗତରେ ୯ଟି ନୁହେଁ ୧୨ଟି ଗ୍ରହ ହେବେ ।

ଭବିଷ୍ୟତରେ ଆଉ ଅନ୍ୟାନ୍ୟ ବସ୍ତୁ (Objects) ଆଦିର ସମ୍ଭାବ୍ୟ ଆବିଷ୍କାର ହେଲେ ତାହା ଗ୍ରହର ସଂଜ୍ଞା ପରିସରଭୁକ୍ତ ହେବେ ଓ ଗ୍ରହ ବୋଲି ମଧ୍ୟ ପରିଚିତ ହେବେ ଯେହେତୁ ନେପଚୁନ୍‌ର ପରିସର ବାହାରେ ଥିବା କୁଇପର ବେଲ୍ଟ (Kuiper Belt) ମଧ୍ୟରେ ଏପରି ବହୁ ବସ୍ତୁ ଦୃଶ୍ୟମାନ ହୋଇଥାନ୍ତି । "ଜେନା" ପରି ପ୍ଲୁଟୋ ମଧ୍ୟ କୁଇପର ବେଲ୍ଟରେ ଥିବା ଏକ ଅନ୍ୟତମ ବସ୍ତୁ (Object) ହିଁ ଅଟେ ।

ଡକ୍ଟର ହାସାନ କୁହନ୍ତି ଯେ ଏହି ଅନିଶ୍ଚିତତା ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ ୟୁନିଅନ୍‌କୁ ଗ୍ରହର ସଂଜ୍ଞା ଉପରେ ସବିଶେଷ ତର୍ଜମା କରିବାକୁ ବାଧ କରିଥିଲା ଏବଂ ସଂଜ୍ଞାର ପରିବର୍ତ୍ତନ ପାଇଁ ମଧ୍ୟ ବାଟ ଖୋଲି ଦେଇଥିଲା । କେଉଁ କେଉଁ ବସ୍ତୁ (Object) ଗୁଡ଼ିକୁ ଗ୍ରହ ବୋଲି ନାମିତ କରାଯାଇପାରିବ ଏବଂ ଏହା ପଛରେ ଲୁଚି ରହିଥିବା ଉପଯୁକ୍ତ ଦର୍ଶନ ଓ ପାରସ୍ପରିକ ଗୁରୁତ୍ୱର ଧାରଣା ସମ୍ବନ୍ଧରେ ବିଶ୍ଳେଷଣ କରି ସବିଶେଷ ତଥ୍ୟ ଉପସ୍ଥାପନା କରିବା ପାଇଁ ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ୍ ୟୁନିଅନ୍ ପ୍ରଥିତଯଶା ଗ୍ରହ ବିଜ୍ଞାନୀମାନଙ୍କର ଏକ ପ୍ୟାନେଲ୍ ଗଠନ କଲା । ସର୍ବଶେଷରେ ସହମତି ପ୍ରକାଶ ପାଇଲା । କୁଇପର ବେଲ୍ଟରେ ଥିବା ବସ୍ତୁ (Object) ଗୁଡ଼ିକର ସଂଖ୍ୟାରେ ଅନିଶ୍ଚିତତା ଯୋଗୁଁ ଗ୍ରହଟିଏ ହେବାପାଇଁ ଥିବା ସାମ୍ପ୍ରତିକ ମାନଦଣ୍ଡ ପୂରଣ କରିବାରେ ସେମାନେ ଅସଫଳ ହେଉଥିବାରୁ ଆଉ ଗୋଟିଏ କଡ଼ା ନିୟମ ଗ୍ରହର ସଂଜ୍ଞାରେ ଯୋଡ଼ାଗଲା । "ଜେନା" ଓ ଅନ୍ୟାନ୍ୟ ବସ୍ତୁ (object) ପରି ପ୍ଲୁଟୋ, ଗ୍ରହର ସଂଜ୍ଞାର ପ୍ରଥମ ଦୁଇଟି ସର୍ତ୍ତ (ସୂର୍ଯ୍ୟ ଚାରିକଡ଼େ ପ୍ରଦକ୍ଷିଣ କରିବା ଓ

ଆକାର ପ୍ରକାରରେ ପ୍ରାୟ ଗୋଲକ ସଦୃଶ ପ୍ରତିଭାତ ହେବା) ପୂରଣ କରୁଥିଲେ ମଧ୍ୟ ନୂତନ ଭାବେ ଗ୍ରହଣ କରାଯାଇଥିବା ତୃତୀୟ ନିର୍ଣ୍ଣାୟକ ନୀତି (କକ୍ଷପଥର ଘରିଆଡ଼େ ଥିବା ସମୀପବର୍ତ୍ତୀ ଅଞ୍ଚଳ ନିଶ୍ଚିତ ରୂପେ ପରିଷ୍କାର ଥିବା ବାଞ୍ଛନୀୟ) ପୂରଣ କରି ନ ପାରିବାରୁ ଗ୍ରହ ତାଲିକାରୁ ବାଦ୍ ପଡ଼ିଲା ।

## ସଂଜ୍ଞାରେ ପରିବର୍ତ୍ତନ :

ଡକ୍ଟର ହାସାନ୍ ଗୁରୁତ୍ୱ ଦେଇ କୁହନ୍ତି ଯେ ଆନ୍ତର୍ଜାତିକ ଆଷ୍ଟ୍ରୋନୋମିକାଲ ୟୁନିଅନ ଗ୍ରହର ସଂଜ୍ଞାରେ କେବଳ ପରିବର୍ତ୍ତନ କଲା । ଏହା ଗ୍ରହର ନାମକରଣ ବ୍ୟବସ୍ଥା ବା ପଦ୍ଧତିରେ ଅର୍ଥାତ୍ ଗ୍ରହର ପାରିଭାଷିକ ଶବ୍ଦ (Nomenclature) ରେ ମଧ୍ୟ ବିଶେଷଭାବେ ପରିବର୍ତ୍ତନ ଆଣିଲା । ଏହା ନୁହେଁ କି ପ୍ଲୁଟୋ ବିଷୟରେ ଆମେ ହଠାତ୍ ନୂଆ କିଛି ସୂଚନା ପାଇଗଲୁ ଯାହାକି ପ୍ଲୁଟୋକୁ ଗ୍ରହର ପର୍ଯ୍ୟାୟଭୁକ୍ତ ହେବାପାଇଁ ବଞ୍ଚିତ କଲା ।

ଗ୍ରହ ସମ୍ପର୍କରେ ଏହି ଶ୍ରେଣୀ ବିଭାଗ ପ୍ଲୁଟୋ ବିଷୟରେ ଆମେ ଆଗରୁ ଯାହା କିଛି ବି ଜାଣିଥିଲୁ ସେଥିରେ କୌଣସି ପରିବର୍ତ୍ତନ ଆଣିନଥିଲା । ତା ସତ୍ତ୍ୱେ ମଧ୍ୟ କେତେକ ଜ୍ୟୋତିର୍ବିଜ୍ଞାନ ବିଷାରଦ ଏବଂ ଅନ୍ୟ ପଣ୍ଡିତମାନେ ପ୍ଲୁଟୋର ପଦାନବତିକୁ ଆଦର ସହକାରେ ଗ୍ରହଣ କରିପାରି ନାହାନ୍ତି । ଡକ୍ଟର ହାସାନ୍ କୁହନ୍ତି ଯେ - ମୁଁ ସଠିକ୍ ବୁଝି ପାରୁଛି ଯେ ବହୁ ବିଜ୍ଞାନୀ ପ୍ଲୁଟୋର ପଦାନବତିକୁ ନେଇ ଆଦୌ ସନ୍ତୁଷ୍ଟ ନାହାଁନ୍ତି । ଯଦିଓ ବିଶ୍ୱ ବିଜ୍ଞାନ ସମାଜ ପ୍ଲୁଟୋର ପଦାନବତିକୁ ଧିରେ ଧିରେ ଗ୍ରହଣ କରିନେବ ଓ ଗ୍ରହ ହିସାବରେ ପ୍ଲୁଟୋର ମାନ୍ୟତାରେ ଲାଗିଥିବା ଗ୍ରହଣକୁ ମଧ୍ୟ ବରଣ କରିନେବ ପରନ୍ତୁ ପ୍ଲୁଟୋ ପ୍ରତି ଅସଂଖ୍ୟ ସର୍ବସାଧାରଣ ଜନତାଙ୍କ ମନରେ ଥିବା ଆବେଗମୟ ଆକର୍ଷଣରେ ଭଟ୍ଟା ପଡ଼ିବା ଏକ ସହଜ ବ୍ୟାପାର ନୁହେଁ । ଯେଉଁ ପୃଷ୍ଠଭୂମିରେ ବିଜ୍ଞାନ ଆଜି ସଗର୍ବେ ଦଣ୍ଡାୟମାନ ହୋଇଛି ତାହା ଯେପରି ଦୋଦୁଲ୍ୟମାନ ହୋଇଯାଇଛି । ସାଧାରଣ ମଣିଷଟିଏ ବିଜ୍ଞାନ ପ୍ରତି ଏକ ନୈରାଶ୍ୟବାଦ ଅଭିବ୍ୟକ୍ତି ପୋଷଣ କରୁଛନ୍ତି ବୋଲି ପ୍ରତୀୟମାନ ହୋଇଥାଏ ।

## ଏହା ସ୍ଥିରୀକୃତ ମତବାଦର ଉଦ୍ଧତ ଘୋଷଣା ନୁହେଁ :

ହାଇଦ୍ରାବାଦସ୍ଥିତ ସେଣ୍ଟର ଫର ସେଲୁଲାର ଆଣ୍ଡ ମଲେକ୍ୟୁଲାର ବାୟୋଲୋଜି ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକ ପି.ଏମ୍.ଭାର୍ଗବ କୁହନ୍ତି ଯେହାୟ ! ଲୋକମାନେ କଣ ସତରେ ହୃଦୟଙ୍ଗମ କରି ପାରନ୍ତି ଯେ ବିଜ୍ଞାନ ଧର୍ମ ପରି ସ୍ଥିରୀକୃତ

ମତବାଦର ଉଦ୍ଧତ ଘୋଷଣା କରି ନଥାଏ ଏବଂ ଯେ କୌଣସି ହାଇପୋଥେସିସ୍ ନିଶ୍ଚିତ ରୂପେ ସୂକ୍ଷ୍ମ ପରୀକ୍ଷାନିରୀକ୍ଷାର ପର୍ଯ୍ୟାୟଭୁକ୍ତ ଅଟେ । ଯେ କୌଣସି ହାଇପୋଥେସିସ୍‌କୁ ମିଥ୍ୟା ବୋଲି ପ୍ରମାଣ କରି ହିଁ ବିଜ୍ଞାନ ଆଗକୁ ଆଗକୁ ଅଗ୍ରସର ହୋଇଥାଏ । ବିଜ୍ଞାନର ନାନାଦି ପ୍ରକ୍ରିୟାର ପ୍ରତିପ୍ରୟୋଗ କରି ଆମେ ଯେତେବେଳେ କୌଣସି ହାଇପୋଥେସିସ୍‌ର ପରୀକ୍ଷା ନିରୀକ୍ଷା କରିଥାଉ ସେତେବେଳେ ଆମେ ପରୀକ୍ଷା ନିରୀକ୍ଷାକୁ ଏଭଳି ଭାବେ ଡିଜାଇନ୍ କରିଥାଉ ଯାହାକି ହାଇପୋଥେସିସକୁ ମିଥ୍ୟା ବୋଲି ପ୍ରମାଣ କରିଥାଏ ଏବଂ ହାଇପୋଥେସିସ୍‌କୁ ମିଥ୍ୟା ବୋଲି ପ୍ରମାଣ କରିବା ପାଇଁ ବୈଜ୍ଞାନିକ ପ୍ରକ୍ରିୟାର ସମସ୍ତ ରାସ୍ତା ଯେତେବେଳେ ବନ୍ଦ ହୋଇଯାଏ ସେତେବେଳେ ହିଁ ହାଇପୋଥେସିସ୍‌କୁ ଏକ ସତ୍ୟ ବା ଫ୍ୟାକ୍ଟ ବୋଲି ଆମେ ଗ୍ରହଣ କରିଥାଉ ।

ଡକ୍ଟର ହାସାନ୍ ଗୁରୁତ୍ୱ ଦେଇ କୁହନ୍ତି ଯେ କୌଣସି ସ୍ୱତ ପ୍ରବୃତ୍ତ ଆବେଗ ଓ ଭାବ ପ୍ରବଣତାର ସ୍ଥାନ ବିଜ୍ଞାନରେ ନଥାଏ । ବିଜ୍ଞାନର ପ୍ରକ୍ରିୟା ସତ୍ୟାସତ୍ୟ (Facts), ପର୍ଯ୍ୟବେକ୍ଷଣ (Observation), ପ୍ରତିପାଦନ (Verification) ଓ ଅନୁମୋଦନ (Validation) ଉପରେ ହିଁ ପର୍ଯ୍ୟବେସିତ ଅଟେ ।

ତାମିଲ୍‌ନାଡୁର କାଲ୍‌ପାକମସ୍ଥିତ ଇନ୍ଦିରାଗାନ୍ଧୀ ସେଣ୍ଟର ଫର ଆଟମିକ୍ ରିସର୍ଚ୍ଚର ନିର୍ଦ୍ଦେଶକ ଡକ୍ଟର ବଳଦେବ ରାଜ କୁହନ୍ତି ଯେ - ପ୍ରାୟ ଅଧିକାଂଶ ସମୟ ଅତ୍ୟନ୍ତ ଦୃଢ଼ ଓ କଳ୍ପନା ପ୍ରସୂତ ହାଇପୋଥେସିସ୍ ଯୋଗୁଁ ବିଜ୍ଞାନ ତାର ଯାତ୍ରା ପଥରେ ଅଭିବୃଦ୍ଧି ହାସଲ କରିଥାଏ । ପ୍ରତିପାଦନର ଶେଷ ପର୍ଯ୍ୟାୟରେ ନୂଆ ହାଇପୋଥେସିସ୍‌କୁ ପୂନର୍ବାର ସୂକ୍ଷ୍ମ ପରିକ୍ଷା ନିରୀକ୍ଷାର ଅଗ୍ନିପଥରେ ଯାତ୍ରା କରିବାକୁ ପଡ଼ିଥାଏ ।

ବିଜ୍ଞାନରେ ବହୁ ଦୃଷ୍ଟାନ୍ତ ଅଛି - ଉଦାହରଣ ସ୍ୱରୂପ ଇଲେକ୍‌ଟ୍ରୋନ୍‌ର ଆବିଷ୍କାର ପରୀକ୍ଷା ନିରୀକ୍ଷା ସମ୍ବନ୍ଧୀୟ ପର୍ଯ୍ୟବେକ୍ଷଣର ବହୁପରେ ହିଁ ସଂଗଠିତ ହୋଇଥିଲା । ଏ ନେଇ ହାଇପୋଥେସିସ୍ ଏବଂ ଥିଓରୀ ଜନ ମାନସରେ ଠିକ୍ ରୂପେ ଗ୍ରହଣଯୋଗ୍ୟ ହୋଇଯାଇଥିଲା ଯେହେତୁ ହାଇପୋଥେସିସ୍ ପ୍ରକୃତ ଜୀବନଧର୍ମୀ ଫଳାଫଳକୁ ସଠିକ୍ ଭାବେ ଉପସ୍ଥାପନ କରିବାରେ ସଫଳ ହୋଇଥିଲା ।

ବିଜ୍ଞାନ ମତଭେଦ ଓ ଭିନ୍ନ ମତ ପ୍ରକାଶକୁ ଜାଣିଶୁଣି ପ୍ରଶ୍ରୟ ଦେଇଥାଏ ଯଦ୍ୱାରା ବ୍ୟକ୍ତିର ନିଜସ୍ୱ ଚିନ୍ତାଧାରା ପ୍ରତି ସମ୍ମାନ ଦିଆଯାଇଥାଏ । ପରୀକ୍ଷା ନିରୀକ୍ଷା ଓ ପ୍ରକ୍ରିୟା ଆଦିର ପୁନାରାବୃତ୍ତି କରିବା ବିଜ୍ଞାନର ମୂଳମନ୍ତ୍ର ଅଟେ । ଡକ୍ଟର ଭାର୍ଗବ କୁହନ୍ତି ଯେ

ବିଜ୍ଞାନରେ ସେପରି କୌଣସି ଅଭିପ୍ରାୟ ଭିତ୍ତିକ ସତ୍ୟାସତ୍ୟ (Objective Truth) ନଥାଏ ।

ଛୋଟ ପିଲାମାନଙ୍କ ପାଖରେ ଥିବା ଆଗ୍ରହ ଓ ଅନିସନ୍ଧିତ୍ସୁ ପ୍ରବୃତ୍ତି ସେମାନଙ୍କର ବଡ଼ ହେବା ସାଂଗେ ସାଂଗେ ମଉଳି ଯାଇଥାଏ । ଆପଣମାନେ କେବେ ଭାବିଛନ୍ତି କି ଏପରି କାହିଁକି ହୋଇଥାଏ ? ଡକ୍ଟର ବଳଦେବ ରାଜ କୁହନ୍ତି ଯେ ପିଲାଟି ଯେତେବେଳେ ଧିରେ ଧିରେ ବଡ଼ ହୋଇଥାଏ ତା ଭିତରେ ଥିବା ତାର ଛନଛନିଆ କୌତୁକିଆ ବାଳୁତ ମନଟିର ଆଗ୍ରହ ଓ ଅନିସନ୍ଧିତ୍ସୁ ପ୍ରବୃତ୍ତି ଡେଣା ବାଢ଼େଇ ନୀଳ ଗଗନରେ ଉଡ଼ିବାକୁ ଚେଷ୍ଟା କରିଥାଏ ଓ ପ୍ରକୃତି କୋଳରେ କାହିଁ କୁଆଡ଼େ ହଜି ଯିବାକୁ ମନ ବଳେଇଥାଏ । ହେଲେ ତାର ଏହି ପ୍ରକୃତିକୁ ପ୍ରାୟ ସମସ୍ତେ ନିରୁତ୍ସାହିତ କରିଥାନ୍ତି । ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥାରେ ଦିଆଯାଉଥିବା ଗୁରୁତ୍ୱ ସ୍ମୃତି ଶକ୍ତି ଭିତ୍ତିକ ଶିକ୍ଷା ବ୍ୟବସ୍ଥା (Memory based learning) ଠାରୁ ସୃଷ୍ଟିଧାରୀକାରକ ଶିକ୍ଷା ବ୍ୟବସ୍ଥା (Facilitating Creativity) ଉପରେ ଗୁରୁତ୍ୱ ଦିଆଯାଉଛି । ପିଲାମାନଙ୍କ ମନରେ ବୈଜ୍ଞାନିକ ଉତ୍କଣ୍ଠାର ବୀଜ ରୋପଣ କରି ତାକୁ ଉପଯୁକ୍ତ ପାଣି ପବନ ଦେଇ ବଞ୍ଚେଇ ରଖିବାକୁ ହେଲେ ଆମେ ଜଣେ ଜଣେ ସାମାଜିକ ପ୍ରାଣୀଭାବେ ପିଲାଙ୍କ ମନରୁ ଅଣ ବୈଜ୍ଞାନିକ ଚିନ୍ତାଧାରାର ମୂଳୋତ୍ପାଟନ କରିବା ସର୍ବାଦୌ କାମ୍ୟ ହେବା ଉଚିତ୍ । ଯେତେବେଳେ ବୈଜ୍ଞାନିକ ଉତ୍କଣ୍ଠା ଓ ଜିଜ୍ଞାସା ମନୋବୃତ୍ତି ସ୍ୱତପ୍ରବୃତ ଆବେଗ ଓ ଭାବ ପ୍ରବଣତାକୁ ବାଟ କଢ଼େଇଥାଏ ସେତେବେଳେ ସହଜରେ ପ୍ରତାରିତ ବା ପ୍ରରୋଚିତ ହେବାର ସମ୍ଭାବନା ମୁଣ୍ଡ ଟେକିବାକୁ ସୁଯୋଗ ପାଇଥାଏ ।

## ବୈଜ୍ଞାନିକ ମିଜାଜ

ବୈଜ୍ଞାନିକ ମିଜାଜ ବା ବୈଜ୍ଞାନିକ ସ୍ୱଭାବ କହିଲେ ପ୍ରଥମତଃ ଆମେ କଣ ବୁଝିଥାଉ ? ଡକ୍ଟର ବଳଦେବ ରାଜ କୁହନ୍ତି ଯେ – "It is a quality of observing the natural phenomenon and attempting a rational explanation based on existing knowledge or speculating a new explanation to be verified by further experimental and theoretical understanding. Laws of science are universal. Science is an art of understanding nature."

"ଅର୍ଥାତ୍ ବୈଜ୍ଞାନିକ ମିଜାଜ ହେଲା ପ୍ରତ୍ୟକ୍ଷଭାବେ ପରିଦୃଷ୍ଟ ହେଉଥିବା ପ୍ରାକୃତିକ

ଘଟଣାବଳୀର ଗୁଣାତ୍ମକ ପର୍ଯ୍ୟବେକ୍ଷଣ ଏବଂ ବାସ୍ତବିକ ଜ୍ଞାନକୁ ଭିତ୍ତିକରି ଯୁକ୍ତିଯୁକ୍ତ ବ୍ୟାଖ୍ୟା ପ୍ରଦାନ ପାଇଁ ପ୍ରଚେଷ୍ଟା ଜାରି ରଖିବା କିମ୍ବା ନୂତନ ବ୍ୟାଖ୍ୟାକୁ କଳ୍ପନାରେ ନିର୍ଦ୍ଧାରଣ କରିବା ଯାହାକି ପୁନଃ ପ୍ରଚଳିତ ଅନୁଭୂତି ଉପରେ ଆଧାରିତ ପରୀକ୍ଷା ନିରୀକ୍ଷା ଏବଂ ତାତ୍ତ୍ୱିକ ଭାବନାଶକ୍ତି ସମ୍ବଦ୍ଧ ଅଟେ । ମନେ ରଖନ୍ତୁ ବିଜ୍ଞାନର ନୀତି ନିୟମ ସାର୍ବଜନୀନ ଅଟେ ଏବଂ ପ୍ରକୃତିକୁ ଭଲଭାବେ ବୁଝିବାର କଳାଟି ହିଁ ହେଲା ବିଜ୍ଞାନ ।" ଯେତେବେଳେ ଲୋକଙ୍କ ପାଖରେ ବୈଜ୍ଞାନିକ ମିଜାଜର ଘୋର ଅଭାବ ପରିଦୃଷ୍ଟ ହୋଇଥାଏ ଅବା କୌଣସି ଘଟଣାବଳୀକୁ ଭଲଭାବେ ଟିକି ନିଖି ବୁଝିବା ପାଇଁ ସେମାନଙ୍କ ପାଖରେ ଯଥେଷ୍ଟ ଧୈର୍ଯ୍ୟର ଅଭାବ ଥାଏ ସେତେବେଳେ ସେମାନେ ଏହି ଘଟଣାବଳୀକୁ ଅଲୌକିକ ଘଟଣାବଳୀ ବୋଲି ଆଖ୍ୟା ଦେଇଥାନ୍ତି ।

ଅନ୍ୟଥା ୧୯୯୫ ମସିହାରେ ଦେଶର ଅଗଣିତ ଜନ ସମୁଦ୍ର ବିଘ୍ନରାଜ ଗଣେଶଙ୍କ କ୍ଷୀର ପିଇବାକୁ ନେଇ ଯେଉଁ ଭୟଙ୍କର ପାଗଳାମି ପ୍ରଦର୍ଶନ କଲେ ଅବା ଖୁବ୍ ନିକଟ ଅତୀତରେ ପୁନର୍ବାର ଗଣେଶଙ୍କ କ୍ଷୀର ପିଇବା ସମ୍ବାଦ ଯେପରି ଭାବେ ଜଙ୍ଗଲ ନିଆଁ ଭଳି ଚାରିଆଡ଼େ ବ୍ୟାପିଗଲା ତାହା ଆପଣ କିପରି ଭାବେ ବା ବୁଝାଇ ପାରିବେ ! ବହୁତ ଲୋକ ଗଣେଶଙ୍କ କ୍ଷୀର ପିଇବାକୁ ଆଜି ପର୍ଯ୍ୟନ୍ତ ବି ଏକ ଅଲୌକିକ ଘଟଣା ବୋଲି ଭାବୁଥିଲେ ଏବଂ ଏହା ମଧ୍ୟରେ ଥିବା ବୈଜ୍ଞାନିକ ବ୍ୟାଖ୍ୟାକୁ ମାନିବାକୁ ଆଦୌ ରାଜି ହେଉ ନଥିଲେ ଓ ଏହାକୁ ମଧ୍ୟ ଅତ୍ୟନ୍ତ ହେୟ ଜ୍ଞାନ କରୁଥିଲେ । କିନ୍ତୁ ପରିଶେଷରେ ବିଜ୍ଞାନର ଜୟ ହେଲା ଓ ଅଲୌକିକତାର ପ୍ରଭାବ ବ୍ୟକ୍ତିର ମନ ରାଇଜରୁ ଧୂଆଁ ଭଳି ଅପସାରିତ ହୋଇଗଲା ।

ଅଥବା ଆଉ ଏକ ନିକଟ ଅତୀତର ଅଲୌକିକତାକୁ ଉଦାହରଣ ସ୍ୱରୂପ ନିଆଯାଉ । ବମ୍ବେ ସ୍ଥିତ ମହିମ ସମୁଦ୍ର ଜଳ ହଠାତ୍ ମିଠା ଲାଗିବାର ସମ୍ବାଦଟି ଘଣ୍ଟେ ଘଣ୍ଟେ ଦେଶ ସାରା ଆଖି ପିଛୁଳାକେ ବ୍ୟାପିଗଲା । ହେଲେ ଭାରତୀୟ ଜନ ସମୁଦ୍ରର ମହା ପାଗଳାମି ଏଥରକ ଗଣେଶଙ୍କ କ୍ଷୀର ପିଇବା ଘଟଣା ଭଳି ଏତେ ମାତ୍ରାରେ ବ୍ୟାପକ ନଥିଲା । ବୈଜ୍ଞାନିକ ଗଣଚେତନାର ମଧୁମୟ ପ୍ରଭାବ ଅବା ମହିମ ସମୁଦ୍ର ବେଳାର ମିଠାଜଳ ନ ପିଇବାକୁ ବମ୍ବେ ପୁଲିସର କଡ଼ା ବାରଣ ଘଟଣାଟିକୁ ସମ୍ପୂର୍ଣ୍ଣ ନିୟନ୍ତ୍ରିତ କରିବାରେ ସଫଳ ହୋଇପାରିଥିଲା ।

ଅଲୌକିକ କାଣ୍ଡର ମହାଜାଲ ତାର ସୁବିସ୍ତୃତ ଛତ୍ରଛାୟାକୁ ମଝିରେ ମଝିରେ ଏଇମିତି ପ୍ରକାଶ କରୁଥିବ । ଏପରିକି ଶ୍ରୀରମଣ ପିଲାଇ ମଧ୍ୟ ଦିନେ ଦେଶର ବୈଜ୍ଞାନିକ ସମୁଦାୟ ଓ ଜନ ସମୁଦାୟଙ୍କୁ ତାର ବୈଜ୍ଞାନିକ ବିସ୍ମୟର ମାୟାଜାଲରେ ଛନ୍ଦିଦେଇ ପାରିବାରେ ସଫଳ ହୋଇ ପାରିଥିଲା । ଭାରତୀୟ ବୈଷୟିକ ପ୍ରତିଷ୍ଠାନ, ମାନ୍ଦ୍ରାଜ ହର୍ବାଲ୍ ପେଟ୍ରୋଲ୍ ସଂକ୍ରାନ୍ତରେ ଶ୍ରୀ ରମଣ ପିଲାଇଙ୍କ ବୈଜ୍ଞାନିକ ପ୍ରତିଭାକୁ ମହା ଡମ୍ଫାମି ବୋଲି ପ୍ରମାଣ କଲାପରେ ଏଥିରେ ଯାଇଁ ଭଟ୍ଟା ପଡ଼ିଲା । ଶ୍ରୀ ରମଣ ପିଲାଇଙ୍କ ଦାବୀକୁ ସମ୍ପୂର୍ଣ୍ଣ ଅସଂଗତ ବୋଲି ବର୍ଣ୍ଣନା କରି ଡକ୍ଟର ଭାର୍ଗବ କୁହନ୍ତି ଯେ ଏହା ରସାୟନ ଶାସ୍ତ୍ର (Chemistry), ଶକ୍ତିର ସଂରକ୍ଷଣ (Conservation of Energy), ବସ୍ତୁର ବସ୍ତୁତ୍ୱର ସଂରକ୍ଷଣ (Conservation of Mass) ସଂକ୍ରାନ୍ତୀୟ ସମସ୍ତ ନୀତି ନିୟମକୁ ଜଳାଞ୍ଜଳି ଦେଇଥିଲା ।

ଏ ସବୁ ସତ୍ତ୍ୱେ ଶ୍ରୀ ରମଣ ପିଲାଇଙ୍କୁ ଲୋକମାନେ ଈଶ୍ୱରଙ୍କ ଦୂତ ବୋଲି ମଣୁଥିଲେ ଯେ କି ହର୍ବାଲ୍ ପେଟ୍ରୋଲ୍ ମାଧ୍ୟମରେ ଭାରତବର୍ଷକୁ ଅଣପାରମ୍ପରିକ ଶକ୍ତି କ୍ଷେତ୍ରରେ ପ୍ରତିଷ୍ଠିତ କରିବାକୁ ଅବତାର ପୁରୁଷ ବୋଲି ଆବିର୍ଭୂତ ହୋଇଥିବାର ଦୃଢ଼ ପ୍ରତିଜ୍ଞା ଥିଲେ ।

ଏ ସମସ୍ତ ବୈଜ୍ଞାନିକ ଚମତ୍କାରୀତା ଓ ବୈଜ୍ଞାନିକ ବିସ୍ମୟକୁ ବିଶ୍ୱାସ କରୁଥିବା ବହୁଲୋକ ଯୁକ୍ତି ବାଢ଼ିଥାନ୍ତି ଯେ ଆଜିର ବିଶ୍ୱ ପୃଷ୍ଠଭୂମିରେ ଦୃଷ୍ଟିଗୋଚର ହେଉଥିବା ସମସ୍ତ ଘଟଣା ପ୍ରବାହକୁ ବିଜ୍ଞାନ ସଠିକ୍ ଭାବେ ବୁଝାଇବାରେ ସଫଳ ହୋଇପାରିନାହିଁ; ଅତୀତ କଥାତ ଛାଡ଼ନ୍ତୁ ।

ହଁ ଏହା ଶୋଳଅଣା ସତ କଥା ଯେ ବିଜ୍ଞାନ ଆଜି ପର୍ଯ୍ୟନ୍ତ ଯାହା କିଛି ବି ଆବିଷ୍କାର କରିଛି, ଯାହା କିଛି ବି ବୁଝେଇବାରେ ସକ୍ଷମ ହୋଇ ପାରିଛି ତାହା ସମୁଦ୍ରକୁ ଶଂଖେ ପାଣି ପରି । ତାର ଅର୍ଥ ନୁହେଁ ଯେ ଯେଉଁ ବୈଜ୍ଞାନିକ ପ୍ରକ୍ରିୟା ଗୁଡ଼ିକୁ ବିଜ୍ଞାନର ନୀତି ନିୟମ ମାଧ୍ୟମରେ ସଠିକ୍ ଭାବେ ବୁଝାଯାଇ ପାରିବ ସେଗୁଡ଼ିକୁ ମଧ୍ୟ ବିଜ୍ଞାନ ବୁଝାଇ ପାରୁନଥିବା ଘଟଣାବଳୀ ସହ ଯୋଡ଼ି ଦିଆଯିବ । ତାହା ମଧ୍ୟ ହେଉଛି ଗୋଟାଏ କାରଣ ଯେଉଁଥି ପାଇଁ କି ବୈଜ୍ଞାନିକ ମିଜାଜ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚନ କରିବାରେ ଆଶାନୁରୂପ ସଫଳତା ଆଣି ପାରୁନାହିଁ ।

ସହକାର : ଜାନୁୟାରୀ - ୨୦୦୭

●

# ମଣିଷର ପ୍ରଚଣ୍ଡ ଇଚ୍ଛାଶକ୍ତି ହିଁ ବିଶ୍ୱପ୍ରଗତିର ଅସଲ ଋବିକାଠି ହେବ ! ... ନେଲ୍ସନ୍ ମାଣ୍ଡେଲା

ଗତ ମାର୍ଚ୍ଚ ମାସରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ପଞ୍ଚମ ଇଣ୍ଡିଆ ଟୁଡେ କନ୍‌କ୍ଲେଭରେ ସମ୍ମାନିତ ତଥା ବିଶିଷ୍ଟ ଅତିଥି ବକ୍ତାଭାବେ ଦକ୍ଷିଣ ଆଫ୍ରିକାର ପୂର୍ବତନ ରାଷ୍ଟ୍ରପତି ତଥା ଭାରତ ରତ୍ନ ନେଲସନ୍ ମାଣ୍ଡେଲା ଜୋହନେସବର୍ଗରେ ଉପସ୍ଥିତ ରହି ସ୍ୟାଟେଲାଇଟ୍ ମାଧ୍ୟମରେ ନିଜର ଓଜସ୍ୱିନୀ ଅଭିଭାଷଣ ପ୍ରଦାନ କରି କୁହନ୍ତି ଯେ ମଣିଷର ପ୍ରଚଣ୍ଡ ଇଚ୍ଛାଶକ୍ତି ହିଁ ବିଶ୍ୱ ପ୍ରଗତିର ଅସଲ ଋବିକାଠି ହେବ । ଏବର୍ଷ ଇଣ୍ଡିଆ ଟୁଡେ ଗ୍ରୁପ ଦ୍ୱାରା ଆୟୋଜିତ ଏହି ପଞ୍ଚମ ଇଣ୍ଡିଆ ଟୁଡେ କନ୍‌କ୍ଲେଭର ଭିତ୍ତିମନ୍ତ୍ରଟି ଥିଲା - "ଋଲନ୍ତୁ ନା ! ଆମ ଆମ ଭିତରେ ସମ୍ପର୍କର ମଧୁର ସେତୁଟିଏ ଗଢ଼ି ତୋଳିବା । Bridging the Divide - ଏହି ପୃଷ୍ଠଭୂମିର ସ୍ୱରୂପ ଉପରେ ସେ ତାଙ୍କର ଅଭିଭାଷଣକୁ ଭିତ୍ତିକରି କୁହନ୍ତି ଯେ - ଆମେ ସାଧାରଣତଃ ଏହା କହିଥାଉ ଯେ ଆମେ ସମସ୍ତେ ଗୋଟିଏ ବିଶ୍ୱଗ୍ରାମର ଅଧିବାସୀ । ପ୍ରକୃତରେ ଦେଖିବାକୁ ଗଲେ ଆକ୍ଷରିକ ଅର୍ଥରେ ଏହା ଏକ ନିଛକ ସତକଥାଟିଏ । ହେଇ ଦେଖନ୍ତୁନା, ମୁଁ ଜୋହନେସବର୍ଗରେ ରହି ଭାଷଣ ଦେଉଛି ଆଉ ଆପଣମାନେ ନୂଆଦିଲ୍ଲୀରେ ବସି ରହି ମୋ କଥା ଶୁଣୁଛନ୍ତି । ଏହି ଘଟଣାଟି କଣ ଆମକୁ ଗୋଟିଏ ବିଶ୍ୱଗ୍ରାମର ଅଧିବାସୀ ବୋଲି ସାବ୍ୟସ୍ତ କରୁନି ? ଉତ୍ତରରେ ମୁଁ ହଁ ବୋଲି ହିଁ କହିବି ଏବଂ ତାହା ଜୋର୍ ଦେଇ ମଧ୍ୟ କହିବି । ଆମ ମନ ଭିତରେ ସମ୍ପର୍କରେ ସେତୁଟିଏ କଣ ଏହା ଯୋଡୁନି ? ଏହା ଆମକୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ଯେ ବିଂଶ ଶତାବ୍ଦୀରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଅସାଧାରଣ ପ୍ରଗତି ହାସଲ କରି ପାରିଛି ଯାହାକି ବିଶ୍ୱାସ ଯୋଗ୍ୟ ମନେ ନ ହେଲେ ବି ସତ୍ୟ ଅଟେ ।

ଆଜିର ବିଶ୍ୱ ବ୍ୟବସ୍ଥା ଗତ ୧୦୦ ବର୍ଷ ତଳର ବିଶ୍ୱ ବ୍ୟବସ୍ଥା ଠାରୁ କାହିଁ କେତେ ଗୁଣ ସମୃଦ୍ଧମୟ ଓ ଗୌରବଶାଳୀ ଓ ସେଥିପାଇଁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପାଖରେ ଆମେ ସଦା କୃତଜ୍ଞ ରହିବା ଦରକାର । ବିଗତ ଶତାବ୍ଦୀ କେବଳ ଭାରତବର୍ଷ

ଓ ଦକ୍ଷିଣ ଆଫ୍ରିକା କାହିଁକି ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କରେ ମଧ୍ୟ ପ୍ରମାଣ କରିଦେଲା ଯେ ଅନ୍ୟାୟକୁ ଦୃଢ଼ ପ୍ରତିରୋଧ କରିବା ଏବଂ ସ୍ୱାଧୀନତା ପାଇଁ ସଂଗ୍ରାମ କରିବା କେବଳ ଏକ ରାଜନୈତିକ ଧାରା ବା ଇଚ୍ଛା ଶକ୍ତି ନୁହେଁ ବରଂ ଏହା ଏକାଧାରରେ ଏକ ମାନବୀୟ ଜନ୍ମଗତ ପ୍ରବୃତ୍ତି ମଧ୍ୟ ।

ବିଂଶ ଶତାବ୍ଦୀ ସାମ୍ରାଜ୍ୟବାଦର ବିଲୋପ ଏବଂ ଅଗଣିତ ଯୁବରାଷ୍ଟ୍ରର ଜନ୍ମକୁ ଆଖିପୁରେଇ ଦେଖିଲା । ରାଷ୍ଟ୍ରୀୟ ରାଜନୈତିକ ସ୍ୱାଧୀନତା ହାସଲ କରିବା କେବଳ ସଂଗ୍ରାମର ଶେଷ କଥା ନୁହେଁ । ମୁଁ ଅତୀତରେ ମଧ୍ୟ କହିଛି ଯେ ଗୋଟାଏ ବିରାଟ ପାହାଡ଼ର ଶୀର୍ଷ ଦେଶକୁ ଆରୋହଣ କଲାପରେ ବି ଆପଣ ଲକ୍ଷ୍ୟ କରିବେ ଯେ ସେହିପରି ଆହୁରି ଗୁଡ଼ାଏ ପାହାଡ଼ ରହିଛି ଯାହାକୁ କି ଆପଣଙ୍କୁ ଚଢ଼ିବାକୁ ପଡ଼ିବ । ଆଜି ଆମ ବିଶ୍ୱର ପ୍ରତ୍ୟେକ କୋଣ ଅନୁକୋଣରେ ମଣିଷ ଜାତି ତାର ନିଷ୍ଠାପର ତଥା ଅଦମ୍ୟ ସଂଗ୍ରାମ ଜାରୀ ରଖିଛି ଯଦିଓ ଏହା ପ୍ରାୟତଃ ଅନ୍ୟ ଧରଣର ଉତ୍ପୀଡ଼କମାନଙ୍କ ବିରୁଦ୍ଧରେ ହିଁ ଉଦ୍ଦିଷ୍ଟ ଯାହାକି ନିତାନ୍ତ ଅପରିହାର୍ଯ୍ୟ ଓ ଆବଶ୍ୟକ ମଧ୍ୟ । ଦାରିଦ୍ର୍ୟ, କ୍ଷୁଧା, ବ୍ୟାଧି ଏବଂ ମୃତ୍ୟୁ ସହ ଅସ୍ତ୍ର ଶସ୍ତ୍ର ମାଧ୍ୟମରେ ସଂଗ୍ରାମ କରାଯାଏନା, ସେଗୁଡ଼ିକୁ ପ୍ରକୃତରେ ମାନବୀୟ ଇଚ୍ଛାଶକ୍ତିଦ୍ୱାରା ହିଁ ଦମନ କରାଯାଇଥାଏ । ମୁଁ ଅତ୍ୟନ୍ତ ଚିନ୍ତିତ ଯେ ଆମ ବିଶ୍ୱ ବ୍ୟବସ୍ଥା କେବଳ ନାନାବିଧ ସାମଗ୍ରୀ ଓ ସୂଚନାର ବିନିମୟ ପାଇଁ ହିଁ ଏକ ବିଶ୍ୱଗ୍ରାମରେ ପରିଣତ ହୋଇ ଚାଲିଛି । ପରନ୍ତୁ ଆମ୍ଭ ମାନଙ୍କର ଆବାସସ୍ଥଳ, ଜୀବନଜୀବିକା ନିର୍ବାହ, ସୁରକ୍ଷା, ମାନସମ୍ମାନର ପ୍ରତିଷ୍ଠା ପାଇଁ ଏହା ଆଦୌ ଶୁଭଙ୍କର ହେଉନାହିଁ ଯେଉଁମାନେ କି ଆମେ ଏହି ଧରିତ୍ରୀର ସ୍ଥାୟୀ ବାସିନ୍ଦା ଅଟୁ । ଗୋଟାଏ ଗାଁ କହିଲେ କ'ଣ ବୁଝାଏ ତାହା ମୁଁ ଭଲଭାବେ ଜାଣିଛି, କାରଣ ମୁଁ ଗୋଟାଏ ଗାଁର ମଣିଷ ଓ ଗାଁର ପାଣି ପବନରେ ହିଁ ମୁଁ ବଡ଼ ହୋଇଛି ।

ବିଶ୍ୱର ଧନୀ ଓ ଦରିଦ୍ର ଲୋକଙ୍କ ମଧ୍ୟରେ ଦଣ୍ଡାୟମାନ ହୋଇଥିବା ବିଭେଦତାର ପ୍ରାଚୀର କେବଳ ଅର୍ଥନୈତିକ ଫଳାଫଳ ଅବା ବଜାର ଶକ୍ତି ଉପରେ ନିର୍ଭର କରେନାହିଁ ବରଂ ଏହା ଆମର ଅବରୁଦ୍ଧ ହୃଦୟ ଏବଂ ସଂକୀର୍ଣ୍ଣ ମନ ଉପରେ ନିର୍ଭର କରିଥାଏ । ସମ୍ପତ୍ତିର ସମପରିମାଣ ବଣ୍ଟନ ବ୍ୟବସ୍ଥା ବ୍ୟତିରେକ ଯଥାର୍ଥ

ଅଭିବୃଦ୍ଧି ସମ୍ଭବପର ହୋଇପାରେନା କିମ୍ବା ଏହା ଅଭିବୃଦ୍ଧିକୁ ମଧ୍ୟ ଠିକ୍ ଭାବେ ବଜାଇ ରଖି ପାରେନା । ସାମାଜିକ ନ୍ୟାୟ ବିନା ଅଭିବୃଦ୍ଧି ପ୍ରକୃତରେ ଅଭିବୃଦ୍ଧି ନୁହେଁ । ସାମାଜିକ ନ୍ୟାୟବିନା ପ୍ରଗତି ପ୍ରକୃତରେ ମାନବୀୟ ଅଭିବୃଦ୍ଧିର ସ୍ମାରକୀ ବହନ କରିନଥାଏ ।

ଭାରତର ଦ୍ୱନ୍ଦ୍ୱ ଯାହାକି ଏ ବର୍ଷର ଇଣ୍ଡିଆ ଟୁଡେ କନ୍‌କ୍ଲେଭ୍‌ରେ ବିସ୍ତୃତ ଭାବେ ଆଲୋଚିତ ଓ ପର୍ଯ୍ୟାଲୋଚିତ ହେଉଛି ତାହା ପ୍ରକୃତରେ କେବଳ ଭାରତର ଦ୍ୱନ୍ଦ୍ୱ ନୁହେଁ, ବରଂ ତାହା ସମଗ୍ର ପୃଥିବୀ ଗ୍ରହର ହିଁ ଦ୍ୱନ୍ଦ୍ୱ ଅଟେ । ଆମେ ଏକ ବିଜ୍ଞାନ ପ୍ରଯୁକ୍ତି ବିଦ୍ୟା ଧନ୍ୟ ସମାଜ ବ୍ୟବସ୍ଥାରେ ବସବାସ କରୁଥିଲେ ହେଁ ଆମେ ଆମର ସମୁଦାୟ ଜନସାଧାରଣଙ୍କ ପାଖରେ ମୌଳିକ ସ୍ୱାସ୍ଥ୍ୟ ସେବା ପହଞ୍ଚେଇବାରେ ବିଫଳ ହୋଇଛୁ । ଏହା ଆମର କର୍ତ୍ତବ୍ୟ, ଏହା ଆମ ଜାତୀୟ ନେତୃବର୍ଗ ଓ କର୍ପୋରେସନର ମଧ୍ୟ କର୍ତ୍ତବ୍ୟ ଯେ ଆମେ ଗୋଟିଏ ଘରର ବାସିନ୍ଦା ହେବା ସଂଗେ ସଂଗେ ବିଶ୍ୱ ଗ୍ରାମର ମଧ୍ୟ କିପରି ବାସିନ୍ଦା ହୋଇପାରିବା ସେଥିପାଇଁ ଯତ୍‌ପରୋନାସ୍ତି ଚେଷ୍ଟିତ ହେବା ଉଚିତ୍ ।

ମୁଁ ଏଠାରେ ଆପଣମାନଙ୍କୁ ଆପଣଙ୍କ ଜାତୀୟ ପିତା ତଥା ବିଂଶ ଶତାବ୍ଦୀର ଅନ୍ୟତମ ସର୍ବଶ୍ରେଷ୍ଠ ମାନବ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ କଥା ମନେ ପକେଇ ଦେବାକୁ ଚାହୁଁଛି ଯେ କି ଏହି ପରମ ଶୁଭ ଚିନ୍ତନର ଜନ୍ମଦାତା ଥିଲେ । ମୁଁ ଏଠାରେ ତାଙ୍କ ମହତ୍‌ବାଣୀକୁ ଉଦ୍ଧୃତ କରି କହିବାକୁ ଚାହେଁ ଯେ – "Whenever you are in doubt apply the full test. Recall the face of the poorest and the weakest man you may have seen and ask yourself if the step you contemplate is going to be of any use to him. Will it restore him to control his own life and destiny?"

ଅର୍ଥାତ୍ ଆପଣ ଯେତେବେଳେ ସନ୍ଦେହର ଜାଲରେ ପଡ଼ି ଛଟପଟ ହେଉଛନ୍ତି ସେତେବେଳେ ପ୍ରଗତିର ସମସ୍ତ ପରୀକ୍ଷା ନିରୀକ୍ଷାର ପ୍ରୟୋଗ କରନ୍ତୁ । ଦରିଦ୍ରରୁ ଦରିଦ୍ରତମ ତଥା ଦୁର୍ବଳରୁ ଦୁର୍ବଳତମ ବ୍ୟକ୍ତିର ମୁହଁକୁ ସେତେବେଳେ ଟିକେ ମନେ

ପକାନ୍ତୁ ଏବଂ ନିଜକୁ ନିଜେ ପ୍ରଶ୍ନବାଣରେ ଜର୍ଜରିତ କରି ନିଜକୁ ନିଜେ ଉତ୍ତର ମାଗନ୍ତୁ ଯେ ଆପଣ ନେଉଥିବା ପଦକ୍ଷେପ ସେହି ଦରିଦ୍ରତମ ଓ ଦୁର୍ବଳତମ ବ୍ୟକ୍ତିର ମୁହଁରେ ହସ ଟିକେ ଫୁଟେଇବାକୁ ସକ୍ଷମ ତ ? ସେ ତାର ନିଜ ଜୀବନ ଓ ଭାଗ୍ୟକୁ ଆପଣ ନେଉଥିବା ପଦକ୍ଷେପ ଦ୍ୱାରା ପରିବର୍ତ୍ତିତ ଓ ନିୟନ୍ତ୍ରିତ କରିପାରିବ ତ ?

ଯଦି ବିଂଶ ଶତାବ୍ଦୀକୁ ଆମେ ଜାତୀୟ ସ୍ୱାଧୀନତାର ଶତାବ୍ଦୀ ବୋଲି ନାମିତ କରି ପାରିବା ତେବେ ଯେଉଁ ଶତାବ୍ଦୀରେ ଆମେ ଏବେ ବଞ୍ଚିଛୁ ସେ ଶତାବ୍ଦୀଟି ସମଗ୍ର ବିଶ୍ୱବାସୀଙ୍କ ପାଇଁ ସତ୍ୟ-ଶିବ-ସୁନ୍ଦର ଜୀବନ ପ୍ରଦାନ କାରକ ହେବା ଉଚିତ୍ ବୋଲି ମୁଁ ମଣୁଛି ।

ଯୋଜନା (ଓଡ଼ିଆ) : ଜୁନ୍, ୨୦୦୬



# କଣ ଏକ ଭାରତୀୟ କମ୍ପାନୀ ବିଶ୍ୱର ଦଶଟି ସର୍ବବୃହତ୍ କମ୍ପାନୀ ମଧ୍ୟରୁ ଗୋଟିଏ ହୋଇପାରିବନି ?

The illiterate of the 21st Century will not be those who can not read or write but those who can not learn, unlearn and relearn... Alvin Toffler. ଅର୍ଥାତ୍ ବିଶ୍ୱବିଖ୍ୟାତ ଅର୍ଥନୀତିଜ୍ଞ ଆଲଭିନ ଟଫଲର୍‌ଙ୍କ ମତରେ ଏକବିଂଶ ଶତାବ୍ଦୀରେ ଅଶିକ୍ଷିତ ଲୋକ ବୋଲି ଆମେ ସେଇମାନଙ୍କୁ ପରିଗଣିତ କରିବାନି ଯେଉଁମାନେ କି ପଢ଼ିପାରୁ ନଥିବେ ଅବା ଲେଖି ପାରୁନଥିବେ ବରଂ ଆମେ ସେଇମାନଙ୍କୁ ପରିଗଣିତ କରିବା ଯେଉଁମାନେ କୌଣସି ବିଷୟରେ ଜ୍ଞାନ ଅର୍ଜନ କରିବାପାଇଁ ସମ୍ପୂର୍ଣ୍ଣ ରୂପେ ବିମୁଖ ହେଉଥିବେ ଅବା ଶିଖିଥିବା ଜ୍ଞାନର ପରିସରରୁ ନିଜକୁ ପରିହାର କରିପାରୁ ନଥିବେ ଅବା ନୂଆକରି କିଛି ଶିଖିବା ପାଇଁ ସେମାନଙ୍କ ପାଖରେ କୌଣସି ଆଗ୍ରହ ଓ ଇଚ୍ଛାଶକ୍ତି ଆଦୌ ନଥିବ ।

ଆଜି ଭାରତୀୟ ଅର୍ଥନୀତି ପାଇଁ ଏକ ମାହେନ୍ଦ୍ର ବେଳା ପଡ଼ିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରି ଏକ ସଂଯୋଗ ଓ ସ୍ଥିତିକୁ ଭାରତ ନୂଆକରି ଅବଲୋକନ କରୁଛି । ଏଡ଼େ ସୁନ୍ଦର ଅର୍ଥନୈତିକ ବ୍ୟବସ୍ଥାକୁ ଆମେ କେବେ ଆଗରୁ ଅଂଗେ ଲିଭେଇ ନଥିଲୁ । ବିଗତ ଦେଢ଼ ଦଶନ୍ଧି ଧରି ଏକ ଉଦାର ଅର୍ଥନୈତିକ ପରିବେଶ ଅଭୂତପୂର୍ବ ଅଭିବୃଦ୍ଧି ଧାରାକୁ ଆଖି ପୁରେଇ ଦେଖି ଆସୁଛି । ଅତ୍ୟଧିକ ଚମକପ୍ରଦ ଘଟଣାଟି ହେଲା ଏକ ବଳିଷ୍ଠ ସେବା କ୍ଷେତ୍ର ଓ ମାନୁଫ୍ୟାକ୍‌ଚରିଙ୍ଗ କ୍ଷେତ୍ର ନିଜ ବଳରେ ଏବେ ବଳୀୟାନ ହୋଇ ସଗର୍ବେ ମୁଣ୍ଡଟେକି ଉଠୁଛି । ଏତେ କଥା କହିସାରିଲା ପରେ ତଥାପି ମୁଁ କହିବାକୁ ଚାହେଁ ଯେ ଏବେବି ସର୍ବୋତ୍‌କୃଷ୍ଟ ଅର୍ଥନୈତିକ ଚମତ୍‌କାରୀତା ତାର ଯାଦୁକାରୀ ଖେଳ ଭାରତ ମାଟିରେ ପ୍ରଦର୍ଶନ କରିବାକୁ ବାକି ରହିଛି । ଭାରତୀୟ ଅର୍ଥନୀତି ଏବେ ଏକ ସୁଦୀର୍ଘ ତଥା ପ୍ରଗତିଶୀଳ ପଥରେ ପଥିକ ହୋଇଛି ଯାହାକି ନିଶ୍ଚିତ ରୂପେ ଏକ ଶୁଭ ସୂଚନା ।

କେତେକ ଭାରତୀୟ କମ୍ପାନୀ ବିଶ୍ୱ ମାନଚିତ୍ରରେ ନିଜ ନିଜର ସତ୍ୟନିଷ୍ଠ ପରାକାଷ୍ଠା ପ୍ରତିପାଦନ କରିବାରେ ବେଶ ଧୁରନ୍ଧର ଅଟନ୍ତି । ଭାରତୀୟ ଆଇ.ଟି

(IT) ଏବଂ ଆଇ.ଟି.ଇ.ଏସ୍. (ITES) କମ୍ପାନୀମାନଙ୍କୁ ବିଶ୍ୱ ବଜାରରେ ବେଶ ଜୋର୍‌ସୋର୍‌ରେ ଖୋଜା ପଡ଼ିଛି ଏବଂ ସେମାନେ ସମୟର ବେଳାଭୂମିରେ ନିଜ ନିଜର ସ୍ମରଣୀୟ ପାଦଚିହ୍ନ ଛାଡ଼ିଯିବାକୁ ଯତ୍‌ପରୋନାସ୍ତି ଚେଷ୍ଟିତ ହେଉଛନ୍ତି । ଜୈବ ଅଭିବୃଦ୍ଧି (Organic Growth) ତଥା କମ୍ପାନୀର ଅଧିଗ୍ରହଣ ମାଧ୍ୟମରେ ସେମାନେ ବିଶ୍ୱ ପୃଷ୍ଠଭୂମିରେ ନିଜ ନିଜର ସ୍ୱତନ୍ତ୍ର ସ୍ଥାନ ଜାହିର କରୁଛନ୍ତି । ଭାରତୀୟ ଟେଲିକମ୍ କମ୍ପାନୀମାନେ ସର୍ବନିମ୍ନ ସୁଧହାର ପ୍ରବର୍ତ୍ତନ କରି ବିଶ୍ୱ ବଜାରରେ ଏକ ନୂଆ ବେଞ୍ଚମାର୍କ ସୃଷ୍ଟି କରିବାରେ ସଫଳକାମୀ ହୋଇପାରିଛନ୍ତି । ଏପରିକି ଭାରତର ମାନୁଫ୍ୟାକଚରିଙ୍ଗ କମ୍ପାନୀମାନେ ଏବେ ବିଶ୍ୱ ସ୍ତରୀୟ ବସ୍ତୁମାନ ପ୍ରସ୍ତୁତ କରୁଛନ୍ତି ଏବଂ ଆନ୍ତର୍ଜାତିକ ବଜାରରେ ନିଜର ବେଶ ପ୍ରତିପତ୍ତି ସହ ସୁନାମ ଅର୍ଜନ କରୁଛନ୍ତି । ଜଣେ ଭାରତୀୟଭାବେ ଆଜି ଯେ କେହି ଗର୍ବୀତ ହେବ ଯେ ବ୍ରିଟେନ୍‌ରେ ଟାଟା ଇଣ୍ଡିକା ମୋଟର ଗାଡ଼ି ରୋଭର ବ୍ୟାଜ (Rover Badge) ନାମରେ ବେଶ ପରିଚିତ ଓ ସେଥିପାଇଁ ଲୋକଙ୍କର ଆଦର ନ କହିଲେ ସରେ । ଭାରତୀ ଏଣ୍ଟରପ୍ରାଇଜେସ୍ ଲିମିଟେଡ୍‌ର ଚେୟାରମ୍ୟାନ୍ ତଥା ଗ୍ରୁପ୍ ମ୍ୟାନେଜିଂ ଡାଇରେକ୍ଟର ସୁନିଲ୍ ଭାରତୀ ମିତ୍ତଲ ଆଶା ଓ ବିଶ୍ୱାସ କରନ୍ତି ଯେ ଭିତ୍ତିଭୂମି ଜନିତ ପ୍ରତିବନ୍ଧକର ଦୂରୀକରଣ ସହ ଟ୍ରେଡ ପଲିସିର ଉଦାରୀକରଣ ହୋଇଗଲେ ଭାରତୀୟ ଅର୍ଥନୀତି ରେସ୍‌କୋର୍ସର ଘୋଡ଼ା ସହ ସମତାଳରେ ଦୌଡ଼ି ପାରିବ ।

କୌଣସି ଏକ ଭାରତୀୟ କମ୍ପାନୀକୁ ବିଶ୍ୱର ସର୍ବଶ୍ରେଷ୍ଠ ୧୦ଟି ପ୍ରଖ୍ୟାତ କମ୍ପାନୀ ମଧ୍ୟରେ ନିଜର ଆସନ ପ୍ରତିଷ୍ଠା କରିବାକୁ ହେଲେ ଆମେ ଭବିଷ୍ୟତକୁ ଲମ୍ଫ ପ୍ରଦାନ କରିବା ପୂର୍ବରୁ ଏହା ନିଶ୍ଚିତ ରୂପେ ଜାଣି ରଖିବା ଉଚିତ୍ ହେବ ଯେ ଏବେ ଏହି ସୌଭାଗ୍ୟଶାଳୀ ଆସନରେ ଉପବିଷ୍ଟ ହୋଇଥିବା ଟପ୍ ଟେନ୍ କ୍ଲବ୍ (Top 10 Club) ର ସଦସ୍ୟତା ପଛରେ ଥିବା ମୂଳ ରହସ୍ୟଟି କଣ ? ଏହି ଟପ୍ ଟେନ୍ କ୍ଲବ୍‌ର ସଦସ୍ୟ କମ୍ପାନୀମାନେ ନାନାବିଧ ବ୍ୟବସାୟୀକ କ୍ଷେତ୍ର, ବିଭିନ୍ନ ଦେଶ ଓ ମହାଦେଶମାନଙ୍କରୁ ଆସିଛନ୍ତି ଏବଂ ସେମାନଙ୍କର ବ୍ୟବସାୟୀକ ଦର୍ଶନ ମଧ୍ୟ ଭିନ୍ନ ଭିନ୍ନ । କିନ୍ତୁ ଏ ସମସ୍ତଙ୍କ ମଧ୍ୟରେ ଏକ ସମାନ ରୂପ ପ୍ରକଟିତ ହୋଇଥାଏ ତାହା ହେଲା ବାଳକ ଓ ପ୍ରାପ୍ତ ବୟସ୍କ ପୁରୁଷମାନଙ୍କ ମଧ୍ୟରେ ଥିବା ଇଶ୍ୱରଦତ୍ତ ପାର୍ଥକ୍ୟ ।

ଏହି ଅତି ବିଶିଷ୍ଟ କମ୍ପାନୀମାନେ 'ଟପ୍ ଟେନ୍ କ୍ଲବ୍'ର ସଦସ୍ୟତା ଲାଭ କରି ସେଠାରେ ନିଜ ନିଜର ସ୍ୱତନ୍ତ୍ର ଆସନ ଅଧିକାର କରି ପାରିଲେ କିପରି ? ସେମାନେ ସେଠାରେ ପହଞ୍ଚିପାରିଲେ ଏଇଥିପାଇଁ ଯେ ସେମାନଙ୍କର ଏକ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ଦୃଷ୍ଟିକୋଣ ଥିଲା ଏବଂ ଦ୍ୱିତୀୟତଃ ସେମାନଙ୍କର ଫୋକସ୍ ଅତ୍ୟନ୍ତ ସ୍ୱଷ୍ଟ । ଏହି 'ଟପ୍ ଟେନ୍ କ୍ଲବ୍'ର ସଦସ୍ୟମାନେ ତାଙ୍କର ଗୋଟିଏ ଆଖିକୁ ସଦା ସର୍ବଦା ନିଜର ଅଭିବୃଦ୍ଧିରେ ନିବିଷ୍ଟ କରି ଆଉ ଆଖିଟିକୁ ପରିବର୍ତ୍ତନଶୀଳ ବ୍ୟବସାୟିକ ପରିବେଶ ଉପରେ କେନ୍ଦ୍ରୀଭୂତ କରି ତଦନୁଯାୟୀ ନିରନ୍ତର ଅଗ୍ରଗତି କରିଥାନ୍ତି । ତଦ୍ୱାରା ସେମାନେ ନୂତନ ପ୍ରଯୁକ୍ତି ବିଦ୍ୟାର ଆହ୍ୱାନକୁ ସମ୍ମୁଖୀନ ହେବା ସଂଗେ ସଂଗେ ନିତ୍ୟନୂତନ ପ୍ରଥା ଏବଂ କ୍ରେତାମାନଙ୍କର ପରିବର୍ତ୍ତନଶୀଳ ଆବଶ୍ୟକତାର ମଧ୍ୟ ସଫଳ ମୁକାବିଲା କରିଥାଆନ୍ତି । ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ସେମାନେ ଅତ୍ୟନ୍ତ ସାହସୀ ହୋଇ ନୂତନ ବଜାରକୁ କବଜା କରିବା ସଂଗେ ସଂଗେ ଆନ୍ତଃରାଷ୍ଟ୍ରୀୟ ବଜାରରେ ମଧ୍ୟ ନିଜର କର୍ତ୍ତୃତ୍ୱ ଜାହିର କରିଥାନ୍ତି । ଏତଦ୍ ବ୍ୟତୀତ ସେମାନେ ପ୍ରଚୁର ପରିମାଣର ପୁଞ୍ଜି ବିନିଯୋଗ କରି ଅତ୍ୟନ୍ତ ଶକ୍ତିଶାଳୀ ଏବଂ ଦୀର୍ଘସ୍ଥାୟୀ ବ୍ରାଣ୍ଡ ସୃଷ୍ଟି କରିବାରେ ମଧ୍ୟ ସଫଳକାମୀ ହୋଇ ପାରିଛନ୍ତି । ପ୍ରାକୃତିକ ସମଜାତୀୟ ପଦାର୍ଥ (Natural Species) ଯାହାକି ସଦା ସର୍ବଦା ବିବର୍ତ୍ତନଶୀଳ ହୋଇ ଚାଲିଥାନ୍ତି ଏବଂ ହଜାର ହଜାର ବର୍ଷର ପରିବର୍ତ୍ତନକୁ ପିଠେଇ ଦେଇ ସଭ୍ୟତା ମଧ୍ୟରେ ମୁଣ୍ଡ ଟେକି ବଞ୍ଚି ରହିଥାନ୍ତି ତା ସହ ଏହି ପରିସ୍ଥିତିର ବହୁ ସାମଞ୍ଜସ୍ୟ ରହିଛି । ଅଥଚ ଅନ୍ୟ କମ୍ପାନୀମାନେ ଆୟା ରାମ - ଗୟା ରାମ ପରି ଆସିଛନ୍ତି ଓ ସମୟ ସୁଅରେ କାହିଁ କୁଆଡ଼େ ଉଭେଇ ମଧ୍ୟ ଯାଇଛନ୍ତି । "ସୁଅ ମୁହଁରେ ପତର" ପରି ଏହି କମ୍ପାନୀମାନେ ପରିବର୍ତ୍ତନର ସ୍ରୋତରେ ଭାସି ଭାସି ସମୁଦ୍ରର ମୁହାଣ ଆଡ଼କୁ ଚାଲିଯାଇଛନ୍ତି ।

ଆପଣ ୱାଲ୍ ମାର୍ଟ କମ୍ପାନୀର ଉଦାହରଣ ନିଅନ୍ତୁ । ଗୋଟିଏ ମାତ୍ର କେନ୍ଦ୍ରୀଭୂତ ଚିନ୍ତାଧାରାକୁ ଆଧାର କରି ଏହି କମ୍ପାନୀ ତାର ପାଇକାରୀ ବ୍ୟବସାୟ ଆରମ୍ଭ କରିଥିଲା । ସେହି ଚିନ୍ତାଧାରାଟି ଥିଲା କମ୍ପାନୀ ତାର ଗ୍ରାହକମାନଙ୍କୁ ସମ୍ଭାବ୍ୟ ସର୍ବନିମ୍ନ ମୂଲ୍ୟ ପ୍ରଦାନ କରିବା । ଆଜି ଏହି କମ୍ପାନୀ କେବଳ ବିଶ୍ୱର ସର୍ବ ବୃହତ୍ ପାଇକାରୀ ବ୍ୟବସାୟୀ ନୁହେଁ ଏହା ମଧ୍ୟ ବିଶ୍ୱର ସର୍ବବୃହତ୍ କମ୍ପାନୀ ଅଟେ । ଟୟୋଟା ମୋଟର୍ସ ଗୁଣବତ୍ତା, ଇନ୍ନୋଭେସନ୍ ଏବଂ ପ୍ରୋସେସ୍ ଏଫିସିଏନ୍ସି ବା ପ୍ରକ୍ରିୟାର କାର୍ଯ୍ୟଦକ୍ଷତା

ଉପରେ ଅନବରତ ତାର ଲକ୍ଷ୍ୟ କେନ୍ଦ୍ରୀଭୂତ କରୁଥିବାରୁ ଆନ୍ତର୍ଜାତୀୟ ଅଟୋମୋବାଇଲ୍ ଶିଳ୍ପ ଜଗତର ମହାସମ୍ମିଳନୀର ଅଂଶୀଦାର ହେବା ପାଇଁ ନିକଟର ହେଲାଣି । ଏହି କମ୍ପାନୀ ଗୁଡ଼ିକର କାର୍ଯ୍ୟଦକ୍ଷତା ଶୈଳୀର ଭୂୟସୀ ପ୍ରଶଂସା କରିବା ସଂଗେ ସଂଗେ ଆମେ ଏହା ମଧ୍ୟ ଶିକ୍ଷା କରିବା ଉଚିତ୍ ଯେ କିପରି ଏହି କମ୍ପାନୀମାନେ ସାଫଲ୍ୟର ଶୀର୍ଷ ସ୍ଥାନରେ ଉପବିଷ୍ଟ ହୋଇପାରିଲେ ଏବଂ ସେହି ସ୍ଥାନରେ ନିଜର ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କରି ତିଷ୍ଠି ରହିପାରିଲେ ।

ବିଶ୍ୱ ଦରବାରରେ ଏସିଆ ମହାଦେଶର ଆବିର୍ଭାବକୁ ଆଜି କେହି ଅସ୍ୱୀକାର କରିପାରିବେ ନାହିଁ ଏବଂ ବିଶ୍ୱ ଅର୍ଥନୀତିର ଅଭିବୃଦ୍ଧି କାରକ ଇଞ୍ଜିନ୍ (Growth Engine) ହେବା ଏସିଆର ନିଶ୍ଚିତ ଭାଗ୍ୟଲେଖ । ଭାରତୀୟ କମ୍ପାନୀମାନେ ଆଜି ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଛକ ଯାଗାରେ ପହଞ୍ଚିଛନ୍ତି ଏବଂ ନୂତନଭାବେ ଆବିର୍ଭୁତ ହୋଇଥିବା ଏହି ଏସିଆ ମହାଦେଶକୁ ସେମାନେ ଆଗାମୀ ଦିନରେ ଚୀନ ସହ ମିଶି ପ୍ରତିନିଧିତ୍ୱ କରିବେ । ଏହା ଧ୍ରୁବ ସତ୍ୟ । ସାମ୍ପ୍ରତିକ ଅର୍ଥନୈତିକ ଭୂଭାଗର ଦୃଶ୍ୟପଟ୍ଟ (Economic Land-scape) ରେ ଜଗତୀକରଣ ଅଭୂତପୂର୍ବ ପରିବର୍ତ୍ତନ ଆଣିଛି । ଏହା ଆମ ପାଇଁ ଅଜସ୍ର ସୁଯୋଗର ସିଂହଦ୍ୱାର ଉନ୍ମୋଚନ କରିବା ସଂଗେ ସଂଗେ ବହୁବିଧ ଆହ୍ୱାନ ସହ ଆଖିରେ ଆଖି ମିଳେଇବା ପାଇଁ ଅପୂର୍ବ ସୁଯୋଗ ମଧ୍ୟ ପ୍ରଦାନ କରିଛି । ବାଣିଜ୍ୟିକ ପ୍ରତିବନ୍ଧକ (Trade Barriers) ଗୁଡ଼ିକ ଧିରେ ଧିରେ ଉଭେଇଯିବା ସଂଗେ ସଂଗେ ନୂଆ ନୂଆ ପ୍ରଯୁକ୍ତି ବିଦ୍ୟାକୁ କରାୟତ୍ତ କରିବାର ପ୍ରକ୍ରିୟାରେ ଦିନକୁ ଦିନ ଅଧିକ ସରଳୀକରଣ ପଦ୍ଧତି ଅବଲମ୍ବନ ହେଉଛି ଯଦ୍ୱାରା ବିଶ୍ୱ ଏକ ସର୍ବସାଧାରଣ ବଜାର ବ୍ୟବସ୍ଥା (Common Market Place) ହେବାପାଇଁ ଅଣ୍ଟା ଭିଡ଼ି ଲାଗି ପଡ଼ିଛି । ପ୍ରତ୍ୟେକ ସେହି ଏକା ବଜାର ଓ ଏକା ଗ୍ରାହକ ପାଇଁ ପ୍ରତିଦ୍ୱନ୍ଦିତା କରିବେ ଏବଂ ଯିଏ ଦକ୍ଷ, ସୁଗୁଣ ସମ୍ପନ୍ନ ଓ ଯୋଗ୍ୟ ସାବ୍ୟସ୍ତ ହେବ ପ୍ରକୃତରେ ସିଏ ହିଁ ଏହି ସଂସାରରେ ତିଷ୍ଠି ରହିବ । ଉଦାହରଣ ସ୍ୱରୂପ ବନାରସୀ ଶାଢ଼ୀ ଯାହାକି ଆମର ନୂଆ ବୋହୂମାନେ ବିବାହ ସମୟରେ ବେଦୀ ମଣ୍ଡପରେ ପିନ୍ଧିଥାନ୍ତି, ତାହା ଚୀନର ପାୱାର ଲୁମ୍‌ରେ ମଧ୍ୟ ବୁଣାଯାଇ ପାରିବ । ଆମେରିକାର ଗୋଦାମ ମାନଙ୍କରେ ଉପଲବ୍ଧ ହେଉଥିବା ଫଳ ଓ ପନିପରିବା ଆଦି ଭାରତର ଫାର୍ମ ହାଉସ୍ ମାନଙ୍କରେ ଅମଳ କରାଯାଇ ପାରିବ ଏବଂ ସତ କହିବାକୁ ଗଲେ ଏହା ଏବେ ଭାରତୀୟ ଫାର୍ମ ହାଉସ ମାନଙ୍କରେ ଅମଳ ହେଉଅଛି ମଧ୍ୟ ।

ତେବେ ଏହି ପରିବର୍ତ୍ତନକୁ ସଫଳ ଭାବେ ପରିଚାଳନା କରି ଆଗକୁ ଆଗକୁ ମାଡ଼ି ଯିବା ପାଇଁ ଆମ ଭାରତୀୟ କମ୍ପାନୀମାନେ କଣ ସବୁ ପଦକ୍ଷେପ ନେବା ଉଚିତ୍ ହେବ ? ଆମ ଅର୍ଥନୀତି ଅଧିକ ସଂପ୍ରସାରିତ ହେଲେ ଅଧିକରୁ ଅଧିକ ସୁଯୋଗ ଓ ସମ୍ଭାବନାର ପଥ ମଧ୍ୟ ଉନ୍ମୋଚନ ହେବ । ଯଦିଓ ଏ ସମସ୍ତ ସୁଯୋଗ ଓ ସମ୍ଭାବନାରୁ ଉପଯୁକ୍ତ ଲାଭବାନ ହେବା ପାଇଁ ଭାରତୀୟ କମ୍ପାନୀମାନେ ସବୁମନ୍ତେ ପ୍ରସ୍ତୁତ ଓ ନିଜର ଆସନକୁ ଦୃଢ଼ୀଭୂତ କରି ବସି ରହିଛନ୍ତି ହେଲେ ନିଜ ଘର ଅଗଣା ଓ ବାଡ଼ି ବଗିଚାର ଚୌହଦୀ ଡେଇଁ ସେମାନଙ୍କୁ ନୂତନ ବଜାରର ପ୍ରକୃଷ୍ଟ ସନ୍ଧାନ କରିବାକୁ ପଡ଼ିବ । ଶ୍ରୀ ସୁନିଲ ଭାରତୀ ମିତ୍ତଲ ଗଭୀର ଆଶାବାଦୀ ଯେ ଆଗାମୀ ଦଶକ ମଧ୍ୟରେ ବହୁ ଭାରତୀୟ କମ୍ପାନୀ ଆନ୍ତର୍ଜାତିକ ମାନଦଣ୍ଡ ପରିପ୍ରେକ୍ଷୀରେ ସେମାନଙ୍କର ପାରଦର୍ଶିତା, ଗୁଣବତ୍ତା ଓ ପ୍ରତିଦ୍ୱନ୍ଦ୍ୱିତାକୁ ବଜାଇ ରଖିବେ ଏବଂ ସେଥିପାଇଁ ସେମାନଙ୍କୁ ଏକ ବୃହତ୍ ଓ ମହାପରାକ୍ରମଶାଳୀ ଅନ୍ତର୍ଦ୍ଦେଶୀୟ ଅର୍ଥନୀତି ସହାୟକ ହେବ । ଏହି ପର୍ଯ୍ୟାୟରୁ ପ୍ରାକୃତିକ ପରିବର୍ତ୍ତନ ବା ଅବସ୍ଥାନ୍ତର ମାଧ୍ୟମରେ ଭାରତୀୟ ବହୁରାଷ୍ଟ୍ରୀୟ କମ୍ପାନୀର ସୃଷ୍ଟି ହେବ । କମ୍ପାନୀ ମାନଙ୍କର ଅଧିଗ୍ରହଣ ଓ ରପ୍ତାନୀ – ଏହି ଦୁଇ ପ୍ରକ୍ରିୟାର ସଫଳ ସଂଯୋଗ ମାଧ୍ୟମରେ ଏହା ମୁଖ୍ୟତଃ ଫଳବତୀ ହେବ । "ମିତ୍ତଲ ଷ୍ଟିଲ୍"ର ରୂପ ବିନ୍ୟାସରେ ଘଟିଥିବା ପରିବର୍ତ୍ତନର ଆମେ ପ୍ରକୃତରେ ସାକ୍ଷୀ ଯାହାକି ବହୁ ଇସ୍ପାତ୍ କାରଖାନାର ଅଧିଗ୍ରହଣ କରି ନିଜକୁ ପ୍ରକୃତରେ ଏକ ବିଶ୍ୱସ୍ତରୀୟ କମ୍ପାନୀର ଆସନରେ ଅଧିଷ୍ଠିତ କରିପାରିଛି । ଏଭଳି ଉଦ୍‌ଯୋଗ, ଶିଳ୍ପୋଦ୍ୟୋଗୀ ମନୋବୃତ୍ତି ଓ ସର୍ବୋପରି ମହାଦୃଷ୍ଟିକୋଣର ସଫଳ ସଂଯୋଗ ନିରନ୍ତର ଅଭିବୃଦ୍ଧି ପାଇଁ ପରମ ଆବଶ୍ୟକତା ଅଟେ ।

ଭାରତବର୍ଷରେ ବହୁ ଦକ୍ଷ ଓ ପ୍ରବୀଣ ଉଦ୍‌ଯୋଗୀ ଅଛନ୍ତି ଯାହାଙ୍କର ପ୍ରଚଣ୍ଡ ଉଚ୍ଚାଭିଳାଷ ସେମାନଙ୍କୁ ଏକ ନମ୍ବର ଶିଳ୍ପୋଦ୍ୟୋଗୀ ଆସନରେ ଅଧିଷ୍ଠିତ କରାଇ ପାରିବ । ସର୍ବଶ୍ରେଷ୍ଠ ଗୁଣବତ୍ତାଧର୍ମୀ ପ୍ରୋଡକ୍ଟ ପ୍ରସ୍ତୁତ କରି ଆବଶ୍ୟକୀୟ ସେବା ଯୋଗାଇ ଦେବା ସଂଗେ ସଂଗେ ମୂଲ୍ୟରେ ହ୍ରାସ ଘଟାଇ ଏକ ଉତ୍ତମ ବ୍ୟବସାୟୀକ ମଡେଲ ସୃଷ୍ଟି କରି ପାରିଲେ କମ୍ପାନୀମାନେ ନିଶ୍ଚିତ ରୂପେ ଏକ ସ୍ୱତନ୍ତ୍ର ଶ୍ରେଷ୍ଠତା ବଜେଇ ରଖି ପାରିବେ । ପରନ୍ତୁ ଆପଣ ଏହା ଭୁଲି ଯାଆନ୍ତୁ ନାହିଁ ଯେ ପ୍ରଗତିର ଅସଲ ଚାବିକାଠିଟି ରହିଛି "ନବୀନ ପ୍ରକ୍ରିୟା (Innovation) ଏବଂ "ବିଶ୍ୱ ସ୍ତରୀୟ

ମାନସିକତା" (Global Mind Set) ପାଖରେ । କମ୍ପାନୀମାନଙ୍କୁ ଗବେଷଣା ଓ ଉନ୍ନୟନରେ ପ୍ରଚୁର ପୁଞ୍ଜି ଲଗାଣ କରିବାକୁ ପଡ଼ିବ ଏବଂ ବ୍ୟବସାୟୀକ ଜ୍ଞାନ କୌଶଳକୁ ହାତ ମୁଠାକୁ ଆଣିବାକୁ ପଡ଼ିବ । ତେବେ ଯାଇ ସେମାନେ ସଫଳତାର ଶିରପା ନିଜ ମସ୍ତକରେ ଧାରଣ କରିପାରିବେ ।

ଭାରତୀୟ କମ୍ପାନୀମାନଙ୍କୁ ନୂଆ ନୂଆ ପ୍ରୋଡକ୍ଟର ଆବିଷ୍କାର କରିବାକୁ ପଡ଼ିବ ଓ ତଦ୍‌ଜନିତ ସେବା ମଧ୍ୟ ଯୋଗାଇ ଦେବାକୁ ପଡ଼ିବ ଅଥବା ସମ୍ପୂର୍ଣ୍ଣ ନୂଆ ପ୍ରୋଡକ୍ଟର ଉଦ୍‌ଭାବନ କରିବାକୁ ପଡ଼ିବ । ଯେହେତୁ ବିଶ୍ୱ ଅର୍ଥନୀତି ଏବେ ଦିନକୁ ଦିନ ଜ୍ଞାନାଶ୍ରୟୀ ଅର୍ଥନୀତି ଆଡ଼କୁ ମୁହେଁଇ ଚାଲିଛି ଏବଂ ଜ୍ଞାନ ହିଁ ପ୍ରଗତିର ପରିଭାଷା ଓ ପରିମାପକ ବୋଲି ସାବ୍ୟସ୍ତ ହୋଇ ଚାଲିଛି ସେ ପରିପ୍ରେକ୍ଷୀରେ ସେହି ଭାରତୀୟ କମ୍ପାନୀମାନେ ଯେଉଁମାନେ କି ଯେତେଶୀଘ୍ର ଜ୍ଞାନକୁ ଆହରଣ କରି ନୂତନ ପ୍ରଯୁକ୍ତି ବିଦ୍ୟା ସୃଷ୍ଟି କରିପାରିବେ ସେଇ କମ୍ପାନୀମାନେ ହିଁ ପ୍ରଗତିର ପ୍ରଥମ ଓ ଶେଷ ଶବ୍ଦ ଉଚ୍ଚାରଣ କରିବେ । ମୁହୂର୍ତ୍ତକ ପାଇଁ ବିଚାର କରାଯାଉ ଯେ ଗୋଟିଏ ପ୍ରୋଡକ୍ଟ ପ୍ରସ୍ତୁତ କରୁଥିବା ବିଭିନ୍ନ କମ୍ପାନୀର ପ୍ରଯୁକ୍ତି ବିଦ୍ୟା ସ୍ତର ଗୋଟିଏ ଏବଂ ବଜାରରେ ମଧ୍ୟ ସେହି କମ୍ପାନୀମାନଙ୍କର ପ୍ରାଧାନ୍ୟ ସମାନ । ତେବେ ସେଇଠି ପ୍ରଗତିର ଅସଲ ଚାବିକାଠିଟି ରହିଲା ନବୀନ ପ୍ରକ୍ରିୟା ବା Innovation ପାଖରେ । ସେହି କମ୍ପାନୀ ଯେ କି ସମ୍ପୂର୍ଣ୍ଣ ଭାବେ ନୂତନ ଶ୍ରେଣୀ ବା ବିଭାଗର ପ୍ରଡକ୍ଟ ପ୍ରସ୍ତୁତ କରି ପାରିବ ସେହି କମ୍ପାନୀ ହିଁ ନୂତନ ଚାହିଦା ସୃଷ୍ଟି କରିବାରେ ସକ୍ଷମ ହୋଇ ପାରିବ ଓ ଅଭିବୃଦ୍ଧି ଏବଂ ଲାଭର ସୁଯୋଗକୁ ନିଜ ପକେଟରେ ପୁରାଇ ପାରିବ ।

ଶେଷରେ ଏହା କୁହାଯାଇପାରେ (ଯଦିଓ ଏହା ସର୍ବଶେଷ କଥା ନୁହେଁ) ଭାରତୀୟ କମ୍ପାନୀମାନେ ଅତ୍ୟନ୍ତ ଶକ୍ତିଶାଳୀ ଗ୍ଲୋବାଲ୍ ବ୍ରାଣ୍ଡ ସୃଷ୍ଟି କରିବାକୁ ସକ୍ଷମ ହେବା ଉଚିତ୍ ଯାହାକୁ କି ବିଶ୍ୱ ସ୍ତରୀୟ କମ୍ପାନୀର ମର୍ଯ୍ୟାଦା ଲାଭ କରିବା ପାଇଁ ଏକ ପ୍ରମୁଖ ଅସ୍ତ୍ରଭାବେ ବ୍ୟବହାର କରାଯାଇ ପାରିବ । ଏହି ଶକ୍ତିଶାଳୀ ଗ୍ଲୋବାଲ୍ ବ୍ରାଣ୍ଡ ଏକ ଉଚ୍ଚ ଶ୍ରେଣୀର (Top Class) କମ୍ପାନୀ ପାଇଁ ସର୍ବଶ୍ରେଷ୍ଠ ପରିଚ୍ଛଳକ ଭାବେ ପରିଗଣିତ ହେବ । ଏହି ଶକ୍ତିଶାଳୀ ଭାରତୀୟ ବ୍ରାଣ୍ଡ ଭୌଗୋଳିକ ଓ ସାଂସ୍କୃତିକ ସୀମାରେଖା ଅତିକ୍ରମ କରି ବିଶ୍ୱ ବଜାରର ଗ୍ରାହକମାନଙ୍କ ପାଖରେ ପହଞ୍ଚିବାରେ ସକ୍ଷମ ହେବ ଓ ନିଜ ଗୁଣର ପାରଦର୍ଶିତାକୁ ସାବ୍ୟସ୍ତ କରି ପାରିବ ।

ଗ୍ଲୋବାଲ୍ ବ୍ରାଣ୍ଡ ସୃଷ୍ଟି କରିବାର ପାରଦର୍ଶିତାରେ ସମ୍ଭବତଃ ସାମସଙ୍ଗ ଇଲେକ୍‌ଟ୍ରୋନିକ୍ସ କମ୍ପାନୀକୁ ଟପି ଆଉ କୌଣସି ଭାରତୀୟ କମ୍ପାନୀ ଆଗକୁ ପାଦ ବଢ଼େଇ ପାରିନାହିଁ । ଗୋଟିଏ ଦଶକର କିଛି ଆଗରୁ ଏହି କମ୍ପାନୀ ନିମ୍ନ ସ୍ତରୀୟ କଞ୍ଜ୍ୟୁମର ଇଲେକ୍‌ଟ୍ରୋନିକ୍ସର ନିର୍ମାତା ରୂପେ ପରିଚିତ ଥିଲା ଏବଂ ଲୋକମାନେ ଏହାକୁ ଜାପାନର ଶ୍ରେଷ୍ଠ କଞ୍ଜ୍ୟୁମର ଇଲେକ୍‌ଟ୍ରୋନିକ୍ସ ବ୍ରାଣ୍ଡର ଗରିବ ସମ୍ପର୍କୀୟ (Poor Cousin) ବୋଲି ଜାଣିଥିଲେ । କିନ୍ତୁ ଏକ ସ୍ୱଚ୍ଛ ଦୃଷ୍ଟିକୋଣ (Clear Focus) ଏବଂ ବ୍ରାଣ୍ଡରେ ଉତ୍ତମ ପୁଞ୍ଜି ଲଗାଣ ଯୋଗୁ ସାମସଙ୍ଗ ଆଜି ଭ୍ୟାଲୁ ଚେନ୍‌ର କାହିଁ କେତେ ଉପରେ ଉପବିଷ୍ଟ । ଏହା ଆଜି ବିଶ୍ୱର ସର୍ବଶ୍ରେଷ୍ଠ କଞ୍ଜ୍ୟୁମର ଇଲେକ୍‌ଟ୍ରୋନିକ୍ସ ସାମଗ୍ରୀର ପ୍ରସ୍ତୁତକର୍ତ୍ତା ବୋଲି ସର୍ବଜନ ବିଦିତ । ୨୦୦୫ ମସିହାର ସର୍ବଶ୍ରେଷ୍ଠ ୧୦୦ଟି ବ୍ରାଣ୍ଡ ଉପରେ "ବିଜିନେସ୍ ଉଇକ୍"ର ଇଣ୍ଟର ବ୍ରାଣ୍ଡ ସର୍ଭେ ରିପୋର୍ଟ ତଥ୍ୟ ପ୍ରକାଶ କରିଛି ଯେ "ବ୍ରାଣ୍ଡ ଭ୍ୟାଲୁ" ଅନୁଯାୟୀ ସାମସଙ୍ଗ, ସୋନିକୁ ଟପି ଆଗକୁ ଚାଲିଯାଇଛି । ଏକ ବିଶ୍ୱସ୍ତରୀୟ ବ୍ରାଣ୍ଡର ମାନ୍ୟତା ଲାଭ କରି ସ୍ୱଳ୍ପ ସମୟ ମଧ୍ୟରେ ପ୍ରଚଣ୍ଡ ଭାବେ ଲୋକଲୋଚନକୁ ଆସିପାରିଥିବା ୱେବ୍‌ସାଇଟ୍ "Google" ଏକ ଅନନ୍ୟ ଉଦାହରଣ କହିଲେ ଅତ୍ୟୁକ୍ତି ହେବନାହିଁ ।

ଭାରତବର୍ଷରେ "Apple ipod" ପରି ଏକ ଅସାମାନ୍ୟ "ପ୍ରୋଡକ୍ଟ ବ୍ରେକ୍ ଥ୍ରୁ" ବା ବଡ଼ଧରଣର ଉଦ୍‌ଭାବନ କଣ ସମ୍ଭବପର ହୋଇପାରିବ ଯାହାକି ସମଗ୍ର ବିଶ୍ୱକୁ ଚମକାଇ ଦେଇପାରିବ ? କୌଣସି ଏକ ଭାରତୀୟ ଫାର୍ମା କମ୍ପାନୀ କଣ ପ୍ରଥମକରି ଏଡ୍‌ସ ପାଇଁ ଏକ ଭ୍ୟାକ୍‌ସିନ୍‌ର ଉଦ୍‌ଭାବନ କରିପାରିବ ? କୌଣସି ଏକ ଭାରତୀୟ ସୂଚନା ପ୍ରଯୁକ୍ତି ବିଦ୍ୟା (IT) କମ୍ପାନୀ କଣ ପରବର୍ତ୍ତୀ "Windows" ର ସୃଷ୍ଟି କରି ପାରିବ ? ଏ ସବୁ ପ୍ରଶ୍ନ ଉତ୍‌ଥାପନ କଲାବେଳେ ଆମକୁ ମନେ ରଖିବାକୁ ପଡ଼ିବ ଯେ ବିଶ୍ୱ ବଜାରରେ ନିଜର ସ୍ଥିତି ମଜବୁତ କରିବା ପାଇଁ ଭାରତୀୟ କମ୍ପାନୀମାନଙ୍କ ପାଇଁ ଆଗାମୀ ଶତାବ୍ଦୀ ଅତୀବ ସନ୍ଧିକ୍ଷଣ ଭାବେ ସାବ୍ୟସ୍ତ ହେବ । ଉପଯୁକ୍ତ ନୀତି ନିୟମର ପ୍ରଣୟନ ତଥା ଭିତ୍ତିଭୂମିର ଅପାରଗତାକୁ ପରୀକ୍ଷା ନିରୀକ୍ଷା କରିବା କ୍ଷେତ୍ରରେ ସରକାର ମଧ୍ୟ ଏକ ଅତ୍ୟନ୍ତ ନିଷ୍ପତ୍ତିମୂଳକ ଭୂମିକା ଅବଲମ୍ବନ କରିବେ । ଏକ ସମନ୍ୱିତ ବିଶ୍ୱ ଅର୍ଥନୀତି ମଧ୍ୟରେ ବଞ୍ଚି ରହିବାର ଅପୂର୍ବ କଳାଟିକକ ଆମକୁ ଶିଖିବାକୁ ପଡ଼ିବ ଏବଂ ବିଶାଳ ଲମ୍ଫ ଡିଆଁ ପ୍ରଦାନ କରିବା ପୂର୍ବରୁ ଆମକୁ ପ୍ରଥମେ ବିଶ୍ୱ

ପୃଷ୍ଠଭୂମିରେ ପ୍ରତିଯୋଗିତାମୂଳକ ହେବାକୁ ପଡ଼ିବ । ପରିଦୃଷ୍ଟ ହେଉଥିବା ଅର୍ଥନୀତିରେ ଏକ ଅଲିଭା ଛାପ ଛାଡ଼ିଯିବାରେ ଏହି ମୁହୂର୍ତ୍ତରେ ଆମେ ହୁଏତ ପ୍ରସ୍ତୁତ ଅଛେ ପରନ୍ତୁ ପ୍ରକୃତ ଚ୍ୟାଲେଞ୍ଜଟି ହେବ ସର୍ବୋତ୍କୃଷ୍ଟ କମ୍ପାନୀମାନଙ୍କ ସହ ତାଙ୍କ ଇଲାକାରେ ପ୍ରତିଦ୍ୱନ୍ଦିତା କରି ତାଙ୍କ ଆଖି ଆଗରେ ବିଜୟୀ ହେବା । ଏକ ଗ୍ରହଣଯୋଗ୍ୟ ପଲିସି ଯାହାକି ଭାରତର ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଏକ ୩୬୦ ଡିଗ୍ରୀ ବ୍ୟବସ୍ଥାର ପ୍ରଚଳନ ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଥାଏ ତାହା ଏଥିପାଇଁ ଏକ ଭିତ୍ତିଭୂମି ପ୍ରସ୍ତୁତ କରିବ । କେବଳ ଏପରି ଏକ ପରିବେଶ ହିଁ ଆମକୁ ଚିନ୍ତାଶୀଳ ନେତା ଓ ଆଗାମୀ କାଲିର ଉପଯୁକ୍ତ ଓ ଯୋଗ୍ୟ ଶିଳ୍ପୋଦ୍ୟୋଗୀ ପ୍ରଦାନ କରିବ ।

କଣ ଏକ ଭାରତୀୟ କମ୍ପାନୀ ବିଶ୍ୱର ଦଶଟି ସର୍ବବୃହତ୍ କମ୍ପାନୀ ମଧ୍ୟରୁ ଗୋଟିଏ ବୋଲି ପରିଗଣିତ ହୋଇପାରିବ ? ଆମକୁ ଏକ ହିମାଳୟ ପର୍ବତ ଚଢ଼ିବାକୁ ପଡ଼ିବ ଏବଂ ଏଥିପାଇଁ ଆମ ପାଖରେ ସବୁ ହାତ ହତିଆର ଓ ସରଞ୍ଜାମ ମଧ୍ୟ ମହଜୁଦ ଅଛି ଯାହାକି ବିଶାଳ ଭାରତୀୟ ସ୍ୱପ୍ନକୁ ସାକାର କରିବାରେ ନିଶ୍ଚୟ ସହାୟକ ହେବ । ଏହା କେବଳ ଏକ ସମୟର କଥା ।

ଯୋଜନା (ଓଡ଼ିଆ) : ଏପ୍ରିଲ୍ - ୨୦୦୬



# ବିଶ୍ୱର ପ୍ରଥମ ମହିଳା ମହାକାଶ ବିଜୟିନୀ - ଭ୍ୟାଲେଣ୍ଟିନା ତେରେସ୍‌କୋଭା

"Hey Mr Sky, take off your hat" - ହେ ଆକାଶ ମହାଶୟ ! ତୁମେ ତୁମର ଟୋପିଟିକୁ ଏବେ ମସ୍ତକରୁ ଓହ୍ଲେଇ ଦିଅ । ୧୯୬୩ ମସିହା ଜୁନ୍ ମାସ ୧୬ ତାରିଖରେ ଭ୍ୟାଲେଣ୍ଟିନା ତେରେସ୍‌କୋଭା ବିଶ୍ୱର ପ୍ରଥମ ମହିଳା ମହାକାଶ ବିଜୟିନୀ ଓ କିମ୍ବଦନ୍ତୀ ମହିଳା ହୋଇଯିବା ପୂର୍ବରୁ ଏହି ଯୁଗାନ୍ତକାରୀ ବାକ୍ୟଟିକୁ ଉଚ୍ଚାରଣ କରି ବିଶ୍ୱ ବୈଜ୍ଞାନିକ ଜଗତରେ ମହା ଆଲୋଡ଼ନ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲେ । ଭୋଷ୍ଟକ - ୬ (Vostok - 6 Space Ship) ମହାକାଶଯାନ ଯାହାକି ଭ୍ୟାଲେରୀ ବାଇକୋଭସ୍କି (Valery Bykovskiy) ଙ୍କ ଭୋଷ୍ଟକ - ୫ ମହାକାଶ ଯାନ ସହ ଏହା ସାଙ୍ଗରେ ପୃଥିବୀର କକ୍ଷ ପଥରେ ପ୍ରଦକ୍ଷିଣ କରୁଥିଲା ତାହା ୭୦ ଘଣ୍ଟା ୫୦ ମିନିଟ୍ ସମୟ ନେଇଥିଲା । ଭ୍ୟାଲେଣ୍ଟିନା ତେରେସ୍‌କୋଭାଙ୍କର କୋଡ୍ (Code) ନାଁ ଥିଲା ଚାଇକା (Chaika - Seagull) । ସେ ପୃଥିବୀକୁ ୪୮ଥର ପ୍ରଦକ୍ଷିଣ କରିଥିଲେ । କିନ୍ତୁ ମହାକାଶରେ ସେ ବିତେଇଥିବା ସମୟ ମୁଠାକ ତାଙ୍କ ଜୀବନର ଆନନ୍ଦ ମୁଖର ସମୟ ନଥିଲା ବୋଲି ସେ ସ୍ପଷ୍ଟ ରୂପେ ସ୍ୱୀକାରୋକ୍ତି କରିଛନ୍ତି । ତାଙ୍କର ସେହି ଅନନ୍ୟ ଅଭିଜ୍ଞତା ଓ ଖଟା ମିଠା ଜୀବନର ବାସ୍ତବ ଓ ସ୍ୱପ୍ନବିଦଗ୍ଧ ଜୀବନଚର୍ଯ୍ୟାକୁ ପାଠକଙ୍କ ଦରବାରରେ ପରିବେଷଣ କରାଯିବାର ପ୍ରୟାସ କରାଯାଇଛି ଏହି ନାତିଦୀର୍ଘ ରଚନାଟି ମାଧ୍ୟମରେ ।

ମହାକାଶ ଅଭିଯାନ ଏକ ଅତ୍ୟନ୍ତ ଭୟାବହ ଓ ବିପଦଶଙ୍କୁଳ ଘଟଣା । ଜଣେ ମହିଳା ମହାକାଶ ଅଭିଯାତ୍ରୀଙ୍କ ସ୍ୱାସ୍ଥ୍ୟ ଉପରେ ମହାକାଶ ଅଭିଯାନର ପ୍ରଭାବ ସମ୍ବନ୍ଧରେ ମେଡ଼ିକାଲ୍ ସାଇନ୍ସ ପାଖରେ କୌଣସି ତଥ୍ୟ ନଥିଲା । ଭୋଷ୍ଟକ ମହାକାଶ ଯାନର ଡିଜାଇନ କରିଥିବା ଇଂଜିନିୟରମାନେ ଏହାର କ୍ୟାବିନ୍‌କୁ Tin Can ବୋଲି ଡାକ ନାଁ ଦେଇଥିଲେ । ଏହି କ୍ୟାବିନଟି ଏତେ ଛୋଟ ଥିଲା ଯେ ମହାକାଶ ପୋଷାକ ପରିଧାନ କରି ଜଣେ ମହାକାଶଯାତ୍ରୀ ଅତି କଷ୍ଟରେ ତା ଭିତରେ ଚଳପ୍ରଚଳ କରିପାରିବ । ବହୁ ବିଶେଷଜ୍ଞଙ୍କ ମତରେ ଏହି ମହାକାଶ ଯାତ୍ରା ବିଶେଷ କରି ଜଣେ

ମହିଳାଙ୍କ ପାଇଁ ଏକ ଅତ୍ୟନ୍ତ ବୀରତ୍ୱପୂର୍ଣ୍ଣ କାର୍ଯ୍ୟଥିଲା ଯେ କି ନାନାଦି କଷ୍ଟସାଧ୍ୟ ପ୍ରଶିକ୍ଷଣ ପରେ ମଧ୍ୟ ଏପରି ଏକ ଛୋଟିଆ Tin Can ଭିତରେ ପ୍ରାୟ ୩ ଦିନ ବିତେଇ ଥିଲେ ।

ସମ୍ପୂର୍ଣ୍ଣ ମହାକାଶଯାତ୍ରା କାଳରେ ତେରେସ୍‌କୋଭାଙ୍କ ମୁଣ୍ଡ ପ୍ରାୟ ଘୁରୋଉଥାଏ ଏବଂ ସେ ବାନ୍ତି କରି ଚାଲିଥାନ୍ତି । ତା ସତ୍ତ୍ୱେ ମଧ୍ୟ ସେ ଧୈର୍ଯ୍ୟର ସହ ପରିସ୍ଥିତିର ସମ୍ମୁଖୀନ ହୋଇ ମହାକାଶରେ ଆଗକୁ ଆଗକୁ ଗତି କରି ଚାଲିଥାନ୍ତି । "This is Chaika, The flight is going well" (ମୁଁ ଚାଇକା କହୁଛି, ମହାକାଶଯାନଟି ଠିକ୍ ବାଟରେ ଆଗେଇ ଚାଲିଛି) । ସେ ଏହି ଆଶାପୂର୍ଣ୍ଣ ବାକ୍ୟଟିକୁ ଭୂପୃଷ୍ଠକୁ ରିପୋର୍ଟ କରି ଚାଲିଥାନ୍ତି । ମହାକାଶ ଯାନଟି ଯେତେବେଳେ ଭୂପୃଷ୍ଠରୁ ବହିଷ୍କରଣ (Ejection) ହେଲା ସେତେବେଳେ ହେଲମେଟ ଥିବା ସତ୍ତ୍ୱେ ମଧ୍ୟ ତେରେସକୋଭାଙ୍କ ମୁଣ୍ଡ ମହାକାଶ ଯାନରେ ଖୁବ୍ ଯୋରରେ ପିଟିହୋଇ ଯାଇଥିଲା ଏବଂ ତାଙ୍କର ଗାଲ ଏବଂ ନାକ ଖଣ୍ଡିଆ ଖାବରା ହୋଇଯାଇଥିଲା । ସେ ପ୍ରାୟ ଅଚେତ ହୋଇପଡ଼ିଲେ ଏବଂ ଅତ୍ୟନ୍ତ ଜରୁରୀ ପରିସ୍ଥିତିରେ ମସ୍କୋର ଏକ ହସ୍‌ପିଟାଲ୍‌କୁ ସ୍ଥାନାନ୍ତରୀତ ହେଲେ । ସନ୍ଧ୍ୟା ସୁଦ୍ଧା ଡାକ୍ତରବାବୁ ତେରେସ୍‌କୋଭାଙ୍କ ସ୍ୱାସ୍ଥ୍ୟ ବିପଦମୁକ୍ତ ଅଟେ ବୋଲି ଘୋଷଣା କଲେ । ତାପର ଦିନ ତାଙ୍କ ମହାକାଶଯାନର ଅବତରଣର ଦୃଶ୍ୟକୁ ପୁନଃ ଅଭିନୀତ କରାଗଲା ଏବଂ କ୍ୟାମେରା ଦ୍ୱାରା ସେ ସବୁର ଦୃଶ୍ୟ ଗ୍ରହଣ କରାଯାଇ ସମ୍ବାଦ ସରବରାହ ସଂସ୍ଥାମାନଙ୍କୁ ଅର୍ପଣ କରାଗଲା । ତାଙ୍କୁ ପୁନଶ୍ଚ ତାଙ୍କ କ୍ୟାପସୁଲ ମଧ୍ୟରେ ପ୍ରବେଶ କରାଇ ଦିଆଗଲା ଏବଂ ଏହି ଦୃଶ୍ୟର ଫଟୋଚିତ୍ର ମଧ୍ୟ ଉତ୍ତୋଳନ କରାଗଲା । ତେରେସ୍‌କୋଭା ମହାକାଶଯାନ ଭିତରେ ବସି ରହି ଖୁସି ଓ ହସ ହସ ମୁହଁରେ ନିଜ ଫଟୋଚିତ୍ର ଉଠାଇଥିଲେ ଏବଂ ସେହି ଚମତ୍କାର ଫଟୋଗୁଡ଼ିକୁ ବିଶ୍ୱର ଅଗଣିତ ଜନତା ପରିଦର୍ଶନ କରି ଆନନ୍ଦରେ ମନ୍ତ୍ରମୁଗ୍ଧ ହୋଇଯାଇଥିଲେ ।

ମହାକାଶଯାତ୍ରା କରିବା ପାଇଁ ତେରେସ୍‌କୋଭା ସର୍ବଶେଷ ୫ଜଣ ମନୋନୀତ ମହିଳା ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ଅନ୍ୟତମ ଥିଲେ ଯଦିଓ ତାଙ୍କ ଜୀବନର କେତେକ କଳାଦାଗ ତାଙ୍କ ପିଛା ଛାଡ଼ିନଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାରମ୍ଭିକ ପର୍ଯ୍ୟାୟରେ ତାଙ୍କ ପିତା ସୋଭିଏତ୍ ରୁଷ୍‌ର ଆର୍ମିରେ ଯୋଗଦାନ କରିଥିଲେ କିନ୍ତୁ ସେ ଯୁଦ୍ଧ ସମୟରେ ଆର୍ମିରୁ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ସେ ଯୁଦ୍ଧ କରୁ କରୁ କେଉଁଠି ହଜିଗଲେ ବୋଲି ଘୋଷଣା କରାଗଲା ।

ସୋଭିଏତ୍ ରୁଷ୍‌ରେ ଏଭଳି ଭାବେ ଅନ୍ତର୍ଦ୍ଧାନ ହୋଇଯିବାକୁ ଅତ୍ୟନ୍ତ ସନ୍ଦେହ ଚକ୍ଷୁରେ ଦେଖାଯାଇଥାଏ (ଯଦି ଆପଣ ନିଜକୁ ଭାଗ୍ୟବାନ ବୋଲି ଭାବୁଥାନ୍ତି) ଅନ୍ୟଥା ପ୍ରାୟ ସୋଭିଏତ୍ ଦେଶ ଏଭଳି କାର୍ଯ୍ୟ କଳାପ ପାଇଁ କଠିନରୁ କଠିନତମ ଦଣ୍ଡ ଦେଇଥାଏ ଏବଂ ଏଥିପାଇଁ ଦେଶଦ୍ରୋହୀ ବୋଲି ମଧ୍ୟ ଘୋଷଣା କରିଥାଏ । ଜଣେ ମହାକାଶଯାତ୍ରୀ ହେବା ତେରେସ୍‌କୋଭାଙ୍କ ପାଇଁ ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର ଥିଲା । ହେଲେ ବିଧିର ବିଧାନ କେ କରିବ ଆନ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ପ୍ରକୃତରେ ତାଙ୍କ ବାପା ମୃତ୍ୟୁ ବରଣ କରିଥିଲେ ଏବଂ ଯୁଦ୍ଧର ୨୫ ବର୍ଷ ପରେ ସୋଭିଏତ୍ ମାର୍ଶାଲ୍ ଦିମିତ୍ରୀ ଯାଜୋଭ (Soviet Marshal Dimitriy Yazov) ଙ୍କ ସହାୟତାରେ ତେରେସକୋଭା ସେହି ସ୍ଥାନକୁ ଅତି କଷ୍ଟରେ ଖୋଜି ବାହାର କରିଥିଲେ ।

ତେରେସ୍‌କୋଭାଙ୍କର ଜଣେ ସାଂଗ ତାତିଆନା ମୋରୋଜାଇଚେଭା (Tatiana Morozycheva) ଯେ କି ଫ୍ଲାଇଙ୍ଗ ସ୍କୁଲ୍‌ରେ ତାଙ୍କ ସହପାଠିନୀ ଥିଲେ ମହାକାଶ ଯାତ୍ରା ପାଇଁ ଅଧିକ ଦକ୍ଷ ଓ ଯୋଗ୍ୟତା ସମ୍ପନ୍ନ ମହିଳା ଥିଲେ, କାରଣ ସେ ତେରେସ୍‌କୋଭାଙ୍କ ଠାରୁ ଅଧିକଥର ପାରାଚ୍ୟୁଟ୍ ଜମ୍ପ କରିଥିଲେ । କିନ୍ତୁ ଏକ ମେଡିକାଲ୍ ଚେକ୍-ଅପ୍ ସମୟରେ ଜଣା ପଡ଼ିଲା ଯେ ସେ ଗର୍ଭବତୀ ଅଛନ୍ତି ତେଣୁ ଋଇକା-ତେରେସ୍‌କୋଭା ଏକ କିମ୍ବଦନ୍ତୀ ହୋଇଗଲେ । କୁହାଯାଏ ସୋଭିଏତ୍ ରୁଷର ରାଷ୍ଟ୍ରପତି ନିକିତା କ୍ରୁସ୍‌ଚେଭ ତେରେକୋଭାଙ୍କ ସୌନ୍ଦର୍ଯ୍ୟରେ ଏତେ ମୁଗ୍ଧ ହୋଇଯାଇଥିଲେ ଯେ ବ୍ୟକ୍ତିଗତ ଭାବେ ସେ ତାଙ୍କୁ ମହାକାଶଯାତ୍ରା ପାଇଁ ଚୟନ କରିଥିଲେ ଯଦିଓ ଇଂଜିନିୟରିଂ, ବୈଷୟିକ ଏବଂ ଉଡ଼ାଣ କଳା କୌଶଳରେ ସେ ତାଙ୍କ ସହକର୍ମୀଙ୍କ ଠାରୁ ନ୍ୟୁନ ଥିଲେ । ଅନ୍ୟ ୪ ଜଣ ମହିଳା ଯେଉଁମାନେ କି ବିଶ୍ୱର ପ୍ରଥମ ମହିଳା ମହାକାଶଯାତ୍ରୀ ହେବାର ଅନୁପମ ସ୍ୱପ୍ନ ମଧ୍ୟ ଦେଖୁଥିଲେ ଏବଂ ଯେଉଁମାନେ କି ମହାକାଶ ଯାତ୍ରା ପାଇଁ ସମସ୍ତ ପ୍ରଶିକ୍ଷଣ ମଧ୍ୟ ଲାଭ କରିଥିଲେ ସେମାନେ ସମସ୍ତେ ବୃତ୍ତିଧାରୀ ପାଇଲଟ ଥିଲେ ପରନ୍ତୁ ତେରେସ୍‌କୋଭା ବୃତ୍ତିରେ ମାତ୍ର ଜଣେ ଲୁଗା ବୁଣାଳୀ (Weaver) ଥିଲେ ।

ଭ୍ୟାଲେଣ୍ଟିନା ତେରେସ୍‌କୋଭାଙ୍କ ବିଶ୍ୱର ପ୍ରଥମ ମହିଳା ମହାକାଶଯାତ୍ରୀ ହେବାର ଅଭୂତପୂର୍ବ ବିଜୟ ସମ୍ବାଦ ଯେତେବେଳେ ସମ୍ବାଦ ସରବରାହ ସଂସ୍ଥା ସମଗ୍ର ବିଶ୍ୱରେ ପ୍ରଚାର କଲା ତାହା ଶୁଣି ତାଙ୍କ ମାଆ ଖୁସିରେ ଆତ୍ମ ବିଭୋର ହୋଇ

ଉଠିଲେ ଏବଂ ଏହା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଖୁସି ସମ୍ବାଦ ବୋଲି ଚିତ୍କାର କରି ପ୍ରଗଳ୍ଭତାର ସହ ସର୍ବ ସମ୍ମୁଖରେ ଘୋଷଣା କଲେ । ଭ୍ୟାଲେଣ୍ଟିନା ସମସ୍ତଙ୍କୁ କହିଥିଲେ ଯେ ଦୀର୍ଘଦିନପାଇଁ ସେ ଏକ ଆକାଶ ଡିଆଁ ପ୍ରତିଯୋଗିତା (Sky Diving Competition) ରେ ଭାଗ ନେବାପାଇଁ ଯାଉଛନ୍ତି ।

## ନିର୍ଦ୍ଦେଶ ମାଧ୍ୟମରେ ବିବାହ **(Marriage by Order)**

ତାଙ୍କ ମହାକାଶ ଅଭିଯାନର ୫ ମାସ ପରେ ଭ୍ୟାଲେଣ୍ଟିନା ତେରେସ୍‌କୋଭା ୧୯୬୩ ମସିହା ନଭେମ୍ବର ୩ ତାରିଖ ଦିନ ଅନ୍ୟ ଜଣେ ମହାକାଶ ଯାତ୍ରୀ ଆଣ୍ଡ୍ରିୟାନ୍ ନିକୋଲାଏଭଙ୍କୁ ବିବାହ କରି ବହୁ ଲୋକଙ୍କୁ ଆଶ୍ଚର୍ଯ୍ୟାନ୍ୱୀତ କରି ଦେଇଥିଲେ । କେହି ବୁଝିପାରିଲେନି ସେ ତାଙ୍କୁ କାହିଁକି ତାଙ୍କର ଜୀବନସାଥୀ ବୋଲି ବାଛିଲେ । ଘରିଆଡ଼େ ଗୁଜବ ପ୍ରଚାର ହୋଇଥିଲା ଯେ ତେରେସ୍‌କୋଭା ବିଶ୍ୱର ପ୍ରଥମ ମହାକାଶଯାତ୍ରୀ ୟୁରି ଗାଗାରିନ୍‌ଙ୍କୁ ପ୍ରେମ କରୁଛନ୍ତି ବୋଲି । କିନ୍ତୁ ୟୁରି ଗାଗାରିନ୍ ସେତେବେଳକୁ ବିବାହ କରି ସାରିଥିଲେ । କେତେକ ଲୋକ ମଧ୍ୟ ସୋଭିଏତ୍ ରୁଷର ରାଷ୍ଟ୍ରପତି ନିକିତା କ୍ରୁସ୍‌ଚେଭଙ୍କ ନାମକୁ ତେରେସ୍‌କୋଭାଙ୍କ ସହ ଯୋଡୁଥିଲେ । ଏହା ମଧ୍ୟ ପ୍ରବାଦ ଥିଲା ଯେ ତେରେସ୍‌କୋଭାଙ୍କ ବିବାହ ମହାକାଶଯାତ୍ରୀ ଆଣ୍ଡ୍ରିୟାନ୍ ନିକୋଲାଏଭଙ୍କ ସହ ସମ୍ପାଦିତ କରିବାକୁ ମେଡ଼ିକାଲ୍ ଗବେଷକମାନେ ସୋଭିଏତ୍ ରୁଷର ପ୍ରଥମ ସେକ୍ରେଟାରୀ ଏଥିପାଇଁ ନିର୍ଦ୍ଦେଶ ଦିଅନ୍ତୁ ବୋଲି ତାଙ୍କୁ ବିଶେଷ ଭାବେ ଅନୁରୋଧ କରିଥିଲେ । ଏ ବିବାହ ଫଳପ୍ରଦ ହେଲେ ମେଡ଼ିକାଲ ଗବେଷକମାନେ ମାନବ ଶରୀର ଉପରେ ମହାକାଶ ଯାତ୍ରାର ପ୍ରଭାବ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଗବେଷଣା କରିପାରିବେ ବୋଲି ଦୃଢ଼ ନିଶ୍ଚିତ ଥିଲେ । ଏ ବିବାହ ପାଇଁ ନିକୋଲାଏଭ ଜଣେ ଉପଯୁକ୍ତ ପ୍ରାର୍ଥୀ ଥିଲେ କାରଣ ଜଣେ ମହାକାଶଯାତ୍ରୀଭାବେ ସେ ଆଗରୁ ମହାକାଶରେ ୯୬ ଘଣ୍ଟା ବିତେଇଥିବାର ଅନନ୍ୟ ଅଭିଜ୍ଞତା ହାସଲ କରିଥିଲେ ଏବଂ ଏହା ମଧ୍ୟ ଏକ ରେକର୍ଡ଼ ଥିଲା । ସେ ଥିଲେ ବିଶ୍ୱର ପ୍ରଥମ ବ୍ୟକ୍ତି ଯେ କି ମହାକାଶ ଯାନ ଭିତରେ ତାଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଚେୟାର୍ ଉପରୁ ଉଠି ମହାକାଶଯାନ ଭିତରେ ମୁକ୍ତ ଭାବେ ଉଡ଼ିଥିଲେ ଏବଂ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ବିଷୟଟି ଥିଲା ସେ ହିଁ ଏକମାତ୍ର ଅବିବାହିତ ମହାକାଶ ଯାତ୍ରୀ ଥିଲେ ।

ତେରେସ୍‌କୋଭାଙ୍କର ଝିଅ ଏଲିନା (Elena) କିନ୍ତୁ ତାଙ୍କ ମାଆଙ୍କର ଜୋର ଜବରଦସ୍ତ ବିବାହର ଗୁଜବକୁ ଅଗ୍ରାହ୍ୟ କରନ୍ତି । ଟେଲିଭିଜନ ପାଇଁ ଚ୍ୟାନେଲ-୧ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ଏକ ଚଳଚିତ୍ର "In the Private Life of Valentina Terescova" କୁ ଲକ୍ଷ୍ୟ କରି ଏଲିନା କୁହନ୍ତି ଯେ ଆଣ୍ଡ୍ରିୟାନ୍ କିପରି ଭ୍ୟାଲେଣ୍ଟିନାଙ୍କୁ ଅତ୍ୟନ୍ତ ସ୍ନେହ, ଶ୍ରଦ୍ଧା ଓ ପ୍ରେମ କରୁଥିଲେ ଏବଂ ସେମାନେ କିପରି ପରସ୍ପରକୁ ଠିକ୍‌ଭାବେ ବୁଝି ପାରୁଥିଲେ ତାର ସ୍ପଷ୍ଟ ଅବତାରଣା କରାଯାଇଛି । ୟୁରି ଗାଗାରିନ୍ ଥରେ ତେରେସ୍‌କୋଭା ଓ ନିକୋଲାଏଭଙ୍କ ପ୍ରେମଯୁଗଳ ରୂପ ଅବଲୋକନ କରି ରାଷ୍ଟ୍ରପତି ନିକିତା କ୍ରୁସ୍‌ଚେଭଙ୍କୁ କହିଥିଲେ - "ଏହି ପ୍ରେମୀଯୁଗଳଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରି ଆମେ କଣ ଅବା ବା ଭୁଲ୍ କରିଦେଲେ ?" ଏହାର ପ୍ରତ୍ୟୁତ୍ତର ଦେଇ ସୋଭିଏତ୍ ରୁଷ୍‌ର୍ ପ୍ରଥମ ସଚିବ କହିଲେ ଯେ ଏହା ଏକ ଅତ୍ୟନ୍ତ ଘରୋଇ ବ୍ୟାପାର । ଏହି ଚଳଚିତ୍ରର ଅନ୍ୟତମ ନିର୍ମାତା ଇଟେରୀ ଲେଭିଏଭା (Etery Levieva) ତାଙ୍କ ଚଳଚିତ୍ରରେ ଏ ସମସ୍ତ ଘଟଣାର ସ୍ପଷ୍ଟ ପରିସ୍ଫୁଟନ ହୋଇଛି ବୋଲି ଦୃଢ଼ୋକ୍ତି ପ୍ରକାଶ କରନ୍ତି ।

ନିକୋଲାଏଭ ତାଙ୍କର ଏକ ସାକ୍ଷାତକାରରେ କହିଛନ୍ତି ଯେ ନିକିତା କ୍ରୁସ୍‌ଚେଭ ହିଁ ଆମ ବିବାହ ଉତ୍ସବ ପାଳନରେ ପାଣି ପକେଇ ଦେଇଥିଲେ । ନବ ବିବାହିତ ଦୁହେଁ ମସ୍କୋ ଗାରିସନ୍‌ର ହାଉସ୍ ଅଫ୍ ଅଫିସର୍ସରେ ଉତ୍ସବଟିକୁ ପାଳନ କରିବାକୁ ଚାହୁଁଥିଲେ ଏବଂ ଏଥିପାଇଁ ୩୦୦ ଜଣଙ୍କ ପାଇଁ ଆଗରୁ ଆରକ୍ଷଣ ବ୍ୟବସ୍ଥା ମଧ କରିଥିଲେ । କିନ୍ତୁ ବିବାହ ଉତ୍ସବସ୍ଥଳୀକୁ ଷ୍ଟେଟ ହାଉସ୍-ଅଫ୍-ରିସେପସନ୍‌କୁ ସ୍ଥାନାନ୍ତର କରିବାକୁ ସେମାନେ କ୍ରୁସ୍‌ଚେଭ ପ୍ରଶାସନ ପାଖରୁ ଅଗତ୍ୟା ନିର୍ଦ୍ଦେଶ ପାଇଲେ । ସେମାନଙ୍କର ପ୍ରାୟ ୧୦୦ ଜଣ ବନ୍ଧୁ ଓ ସମ୍ପର୍କୀୟ ଏହି ରିସେପ୍‌ସନ୍ ହଲ୍‌ରେ ଯାଗା ଧରିଲେ ନାହିଁ ଏବଂ ସେମାନଙ୍କୁ ନବ ବିବାହିତଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ ଷ୍ଟାରସିଟି ଭେଜ୍‌ଡ଼ନି ଗୋରୋଡ଼କ (Star City Zvezdnyi Gorodok) ଠାରେ ଅପେକ୍ଷା କରିବାକୁ କୁହାଗଲା ଯେଉଁଠାରେ କି ରୁଷର ପ୍ରାୟ ଅଧିକାଂଶ ମହାକାଶଯାତ୍ରୀ ସେମାନଙ୍କର ପରିବାର ସମେତ ସେ ସମୟରେ ବସବାସ କରୁଥିଲେ । ନିକିତା କ୍ରୁସ୍‌ଚେଭ ଓ ତାଙ୍କ ସ୍ତ୍ରୀ ବିବାହ ଉତ୍ସବ ପରିସର ଛାଡ଼ି ଚାଲି ଗଲାପରେ ହିଁ ନିକୋଲାଏଭ ଓ ତେରେସ୍‌କୋଭା ତାଙ୍କ ବନ୍ଧୁ ଓ ସମ୍ପର୍କୀୟଙ୍କୁ ଚର୍ଚ୍ଚା କରିବା ପାଇଁ ଷ୍ଟାର ସିଟିରେ ଉପସ୍ଥିତ ହୋଇଥିଲେ ।

ଏହା ଥିଲା ଖୋଦ୍ ନିକୋଲାଏଭଙ୍କ ଅନ୍ତରର ଅଭିବ୍ୟକ୍ତି । ବିବାହର ବର୍ଷେକ ପରେ ସେମାନଙ୍କର ଝିଅ ଏଲିନାର ଜନ୍ମ ହେଲା । ଏଲିନା ସ୍କୁଲ୍‌ରେ 'ଏ' ଗ୍ରେଡ୍‌ର ଛାତ୍ରୀ ଥିଲା ଏବଂ ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍‌ରୁ ଅନର୍ସ ସହ ଗ୍ରାଜୁଏଟ୍ ହୋଇଥିଲା । ସେ ବିବାହ କରିଥିଲା ଏବଂ ଆଲେକ୍ସି ବୋଲି ତାର ଗୋଟିଏ ପୁଅ ବି ଅଛି । ଆଲେକ୍ସି ତାର ଜେଜେବାପା ଓ ଜେଜେମାଆଙ୍କ ରକେଟ ଚଢ଼ା କାହାଣୀ ତାର ସାଙ୍ଗ ସାଥିଙ୍କ ଆଗରେ ସଦା କହି ବୁଲେ ତଥା ଗର୍ବ ଗାରୀମାର ଗୌରବାଦିତ୍ୟ ଐତିହ୍ୟକୁ ସଦା ଉଜ୍ଜୀବିତ କରି ରଖିବାକୁ ଚେଷ୍ଟା କରିଥାଏ ।

## ମୁକ୍ତ ଆକାଶର ବିସ୍ତୃତ ଅଗଣାରେ ବିବାହ ବିଚ୍ଛେଦ (Divorce Under Clear Sky) :

ଭ୍ୟାଲେଣ୍ଟିନା ତେରେସ୍‌କୋଭା ଓ ଆଣ୍ଡ୍ରିୟାନ୍ ନିକୋଲାଏଭଙ୍କ ପ୍ରେମ ପ୍ରଗଳ୍ଭ ଦାମ୍ପତ୍ୟ ଜୀବନରେ ଘଟିଥିବା ବିବାହ ବିଚ୍ଛେଦ ବିଶ୍ୱର ଅଗଣିତ ନରନାରୀଙ୍କୁ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା । ଅବଶ୍ୟ କିଛି ଲୋକ ମୂଳରୁ ଦୃଢ଼ ନିଶ୍ଚିତ ଥିଲେ ଯେ ସେମାନଙ୍କ ବୈବାହିକ ଜୀବନରେ ନିଶ୍ଚିତ ରୂପେ କାଳ ବୈଶାଖୀର ଝଡ଼ ବହିବ ଓ ସେ ଝଡ଼ ଏତେ ଭୟଙ୍କର ହେବ ଯେ ସେମାନଙ୍କର ଜୀବନ ତରୀଟିକୁ ଭାଙ୍ଗି ଚୁରମାର କରିଦେବ । ଏଭିଏସନ୍ ଜେନେରାଲ୍ ନିକୋଲେ କାମାନିନ (Nikolay Kamanin) ୧୯୬୩ ମସିହା ନଭେମ୍ବର ୧୦ ତାରିଖରେ ତାଙ୍କ ଡାଏରୀରେ ଉଲ୍ଲେଖ କରିଛନ୍ତି ଯେ "ଗତକାଲି ଏୟାର ଫିଲ୍ଡ ପାଖରେ ଭାଲ୍ୟା (ଭ୍ୟାଲେଣ୍ଟିନା) ଏବଂ ଆଣ୍ଡ୍ରିୟାନ୍ ଉଭୟ ସହର୍ଷ ଚିତ୍ତରେ ପରସ୍ପରକୁ ଅବଲୋକନ କରୁଥିବାର ସ୍ପଷ୍ଟ ଚିତ୍ର ଅତ୍ୟନ୍ତ ଲୋଭନୀୟ ଥିଲା । ସେମାନେ ପ୍ରାଣ ଖୋଲି ହସୁଥିଲେ ଓ ପରସ୍ପର ପ୍ରତି ଅତ୍ୟନ୍ତ ଆକର୍ଷିତ ହୋଇ ପଡ଼ିଥିଲେ ଓ ତାହା ଏହି ଚିତ୍ରରେ ମଧ୍ୟ ସ୍ପଷ୍ଟ ରୂପେ ଫୁଟି ଉଠୁଥିଲା । ବୈଜ୍ଞାନିକ ଓ ରାଜନୈତିକ ଦୃଷ୍ଟିକୋଣରୁ ସେମାନଙ୍କର ବିବାହ ଅତ୍ୟନ୍ତ ଆବଶ୍ୟକ ହୋଇ ଥାଇପାରେ ପରନ୍ତୁ ମୋର ସନ୍ଦେହ ଅଛି ଯେ ଭାଲ୍ୟା ପ୍ରକୃତରେ ଆଣ୍ଡ୍ରିୟାନଙ୍କୁ ପ୍ରାଣ ଦେଇ ଭଲ ପାଉଥିଲେ ନା ନାହିଁ ? ସେ ଦୁହେଁ ଅତ୍ୟନ୍ତ ଭିନ୍ନ ପ୍ରକୃତିର ମଣିଷ ଥିଲେ - ଯେପରି କି ଭାଲ୍ୟା ନିଆଁ ହେଲେ ଆଣ୍ଡ୍ରିୟାନ୍ ପାଣି । ଉଭୟ ଅତ୍ୟନ୍ତ କଠିନ ପ୍ରକୃତିର ମଣିଷ ଥିଲେ ଏବଂ ଉଭୟ ପ୍ରଚଣ୍ଡ ଇଚ୍ଛାଶକ୍ତିର ଅଧିକାରୀ ଥିଲେ । ଜଣେ ଅନ୍ୟ ଜଣଙ୍କର ଇଚ୍ଛା ଆଗରେ ମୁଣ୍ଡ ନୁଆଁଉନଥିଲେ । ଏ

ବିବାହ ନିକୋଲାଏଭଙ୍କ ପାଇଁ ଅଧିକ ଲାଭଦାୟକ ଥିଲାବେଳେ ତେରେସ୍‌କୋଭାଙ୍କ ପାଇଁ ସଦା ହାରିବା ହିଁ ସାର ହେଉଥିଲା ।"

୧୯୬୬ ମସିହାରେ ପ୍ରକାଶ ପାଇଥିବା "ଆମେ କକ୍ଷପଥରେ ଭେଟିବା" (We will meet in Orbit) ନାମକ ତାଙ୍କର ପ୍ରଥମ ପୁସ୍ତକରେ ଆଣ୍ଡ୍ରିୟାନ୍ ନିକୋଲାଏଭ ତାଙ୍କ ପତ୍ନୀଙ୍କ ଉଦ୍ଦେଶ୍ୟରେ କେବଳ କେତେକ ପ୍ରେମବୋଳା ସ୍ନେହମୟ ଶବ୍ଦର ପରିପ୍ରୟୋଗ କରିଛନ୍ତି । ଯଥା : We are happy. We have found each other to be the most cherished things in life. We were brought closer together by our mutual views on life, work, common goals and as Valya said, the river : We were both from the Volga..." ଅର୍ଥାତ୍ "ଆମେ ଖୁବ୍ ସୁଖୀ । ଆମେ ଖୁବ୍ ଆହ୍ଲାଦିତ । ଆମେ ପରସ୍ପର ଭିତରେ ଜୀବନର ଅତ୍ୟନ୍ତ ଉତ୍ସାହପ୍ରଦ ଓ ଆକର୍ଷଣୀୟ ରୂପର ଅବଲୋକନ କରିଛୁ । ଜୀବନ ପ୍ରତି ଆମର ପାରସ୍ପରିକ ଦୃଷ୍ଟିକୋଣ, କର୍ମ ଓ ସାଧାରଣ ଲକ୍ଷ୍ୟକୁ ନେଇ ଆମେ ପରସ୍ପର ପ୍ରତି ଅତ୍ୟନ୍ତ ନିକଟତର ହୋଇଥିଲୁ ଏବଂ ବିଶେଷ କରି ଭାଲ୍ୟାଙ୍କ କହିବାନୁଯାୟୀ ଭୋଲ୍‌ଗା ନଦୀର ଅବଦାନ ଏଥିପାଇଁ ଅନନ୍ୟ ସାଧାରଣ ଯେହେତୁ ଆମେ ଉଭୟ ଭୋଲ୍‌ଗା ଅବବାହିକାର ମଣିଷ ହିଁ ଥିଲୁ ଓ ଭୋଲ୍‌ଗା ନଦୀର ପାଣି ପିଇ ଜୀବନ ଧାରଣ କରିଥିଲୁ ।"

୧୯୭୯ ମସିହାରେ ପ୍ରକାଶ ପାଇଥିବା "ମହାକାଶ ଏବଂ ଅସମାପ୍ତ ରାସ୍ତା" (Space and the Endless Road) ନାମକ ତାଙ୍କ ଦ୍ୱିତୀୟ ପୁସ୍ତକରେ ଆଣ୍ଡ୍ରିୟାନ୍, ତେରେସ୍‌କୋଭାଙ୍କ ବିଷୟରେ ମାତ୍ର ଅଳ୍ପ କେତେକ କ୍ଷୁଦ୍ର ଧାଡ଼ି ଲେଖିଦେଇ ତାଙ୍କ ସ୍ୱାମୀ ପଣିଆ ଦାଇତ୍ୱର ପରିସମାପ୍ତି ଘଟାଇଥିଲେ । ଯେତେବେଳେ ପରସ୍ପର ପ୍ରତି ଥିବା ସେମାନଙ୍କର ପ୍ରେମମୟ ଭାବନାର ବାଷ୍ପୀକରଣ ହୋଇଗଲା ସେତେବେଳେ ତେରେସ୍‌କୋଭା ଓ ନିକୋଲାଏଭଙ୍କ ପକ୍ଷରେ ସେମାନଙ୍କର ବିବାହ ବନ୍ଧନର ପରିସମାପ୍ତି ଘଟାଇବା ଅତ୍ୟନ୍ତ କଷ୍ଟସାଧ୍ୟ ହେଲା । ଜଣେ ଆଦର୍ଶମୟୀ ସୋଭିଏତ୍ ମହିଳାଙ୍କ ପକ୍ଷରେ ସ୍ୱାମୀ ବିଚ୍ଛେଦିନୀ ମହିଳା ହୋଇ ଜୀବନ ନିର୍ବାହ କରିବା ଏକ ଲଜ୍ଜାଜନକ ବ୍ୟାପାର ଭାବେ ପରିଗଣିତ ହୋଇଥାଏ । ତେରେସ୍‌କୋଭା ତାଙ୍କର ବିବାହ ବିଚ୍ଛେଦ ପାଇଁ ନିକିତା କ୍ରୁସ୍‌ଚେଭଙ୍କ ପରବର୍ତ୍ତୀ ସୋଭିଏତ୍ ରାଷ୍ଟ୍ରପତି ଲିଓନିଡ଼୍ ବ୍ରେଜନେଭଙ୍କ ଅନୁମତି ପ୍ରାର୍ଥନା କରିଥିଲେ । ସେ ତାଙ୍କର ସମସ୍ତ ଧୈର୍ଯ୍ୟ, ସାହସ

ଓ ଶକ୍ତିକୁ କେନ୍ଦ୍ରୀଭୂତ କରି ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ଜେନେରାଲ ସେକ୍ରେଟାରୀଙ୍କ ଅନୁମତି ନେଇ ତାଙ୍କୁ ଦେଖା କରିବାକୁ ଯାଇଥିଲେ । କେତେକ ଲୋକ କୁହନ୍ତି ଯେ ଯେତେବେଳେ ବ୍ରେଜନେଭ, ତେରେସ୍‌କୋଭା ଓ ନିକୋଲାଏଙ୍କ ବିବାହ ବିଚ୍ଛେଦ ପାଇଁ ଅନୁମତି ପ୍ରଦାନ କଲେ ସେତେବେଳେ ନିକୋଲାଏଭ ଆଣ୍ଡ୍ରିୟାନ୍ ହୃଦଘାତର ଶିକାର ହେଲେ ଏବଂ ବହୁ ମାସ ଧରି ହସ୍‌ପିଟାଲ୍‌ରେ ରହି ଚିକିତ୍ସିତ ହେଲେ ।

ଅଶୀ ଦଶକର ପ୍ରାରମ୍ଭରେ ଭ୍ୟାଲେଣ୍ଟିନା ତେରେସ୍‌କୋଭା ୟୁଲି ସାପୋଷନିକୋଭ (Yuly Shaposhnikov) ଙ୍କୁ ଭେଟିଥିଲେ ଯିଏ କି ଟ୍ରଉମା ଅର୍ଥୋପେଡିକ୍ କେନ୍ଦ୍ରୀୟ ବିଜ୍ଞାନ ଗବେଷଣା ପ୍ରତିଷ୍ଠାନର ମୁଖ୍ୟ ଅଧିକାରୀ ଥିଲେ । ସେ ଭ୍ୟାଲେଣ୍ଟିନାଙ୍କ ପ୍ରେମରେ ଏତେ ପାଗଳ ହୋଇଗଲେ ଯେ ତାଙ୍କ ସ୍ତ୍ରୀ ଓ ପରିବାର ଛାଡ଼ି ଭ୍ୟାଲେଣ୍ଟିନାଙ୍କୁ ନିଜର କରିନେଲେ । ସେ ବହୁବର୍ଷ ହେଲା ଜଣେ ଅତ୍ୟନ୍ତ ସରଳ, ବିନୀତ ଓ କଠିନ ପରିଶ୍ରମପ୍ରେମୀ ବ୍ୟକ୍ତି ବିଶେଷ ଥିଲେ । ୧୯୯୭ ମସିହାରୁ ଭ୍ୟାଲେଣ୍ଟିନା ତେରେସ୍‌କୋଭା ଜଣେ ଅବସରପ୍ରାପ୍ତ "ଜେନେରାଲ ଅଫ୍ ଏଭିଏସନ୍" ଭାବେ ପରିଚିତ । ୨୦୦୦ ମସିହାରେ ବ୍ରିଟିଶ ଇଣ୍ଟରନାସ୍‌ନାଲ୍ ଉଇମେନ୍ ଅଫ୍ ଦି ଇୟର୍ ଆସୋସିଏସନ୍ ତେରେସ୍‌କୋଭାଙ୍କୁ "ଶତାବ୍ଦୀର ମହିଳା" (Woman of the Century) ପଦବୀ ପ୍ରଦାନ କରି ସମ୍ମାନିତ କରିଛି ।

ପ୍ରାୟ ଏକ ଡଜନ ମହିଳା ତେରେସ୍‌କୋଭାଙ୍କ ପଦାଙ୍କ ଅନୁସରଣ କରି ମହାକାଶ ଯାତ୍ରୀ ହେବାର ପରମ ସୌଭାଗ୍ୟ ଅର୍ଜନ କରିଛନ୍ତି । କିନ୍ତୁ ତେରେସ୍‌କୋଭା ହେଉଛନ୍ତି ବିଶ୍ୱର ପ୍ରଥମ ମହିଳା ଓ ଆଜି ପର୍ଯ୍ୟନ୍ତ ଏକମାତ୍ର ମହିଳା ଯେ କି ନିଜେ ଏକା ଏକା ଏକ Single - Person Space Craft ରେ ମହାକାଶରେ ଘୁରି ବୁଲିଛନ୍ତି । ପରେ ରୁଷର ଦୁଇଜଣ ମହିଳା ମହାକାଶଯାତ୍ରୀ ପଥ ପ୍ରଦର୍ଶକର ଐତିହାସିକ ଭୂମିକା ସମ୍ପାଦିତ କଲେ । ସ୍ଭେତଲାନା ସାଭିତସ୍କାୟା (Svetlana Savitskaya) ବିଶ୍ୱର ପ୍ରଥମ ମହିଳା ଯେ କି ମହାକାଶରେ ଚାଲିଥିଲେ ଓ ଏଲିନା କୋଣ୍ଡାକୋଭା ହେଉଛନ୍ତି ବିଶ୍ୱର ପ୍ରଥମ ମହିଳା ଯେକି ୧୬୯ ଦିନ ଓ ରାତି ପୃଥିବୀ ଗ୍ରହର କକ୍ଷ ପଥରେ ପ୍ରଦକ୍ଷିଣ କରିବାରେ ବିତେଇଥିଲେ । ୧୯୮୪ ମସିହାରେ ସାଭିତସ୍କାୟାଙ୍କ ନେତୃତ୍ୱରେ ଏକ ଇନ୍ନୋଭେଟିଭ ସ୍ପେଶ୍ ଫ୍ଲାଇଟ୍ ଏକ ତିନି ଜଣିଆ ମହିଳା ମହାକାଶଯାତ୍ରୀଙ୍କୁ ନେଇ ମହାକାଶକୁ ଯାତ୍ରା କରିବାରଥିବା ଯୋଜନା ବହୁ କାରଣରୁ ସ୍ଥଗିତ ହୋଇ ରହିଗଲା ।

୧୯୮୫ ମସିହା ପର୍ଯ୍ୟନ୍ତ ତେରେସ୍‌କୋଭା ତାଙ୍କର ଦ୍ୱିତୀୟ ମହାକାଶ ଯାତ୍ରା କରିବାର ସ୍ୱପ୍ନକୁ ଉଜ୍ଜୀବିତ କରି ରଖିଥିଲେ କିନ୍ତୁ ତାଙ୍କ ଜୀବନରେ ଆଉ ଗୋଟିଏ ମୋଡ଼ ଆସିଲା ଏବଂ ବିଶ୍ୱର ପ୍ରଥମ ଷ୍ଟାର ମହିଳା ସେହିଦିନରୁ ସମାଜ ସେବାରେ ନିଜକୁ ସମ୍ପୂର୍ଣ୍ଣରୂପେ ନିୟୋଜିତ କରିଦେଲେ । ଏବେ ତାଙ୍କର ବୟସ ୭୦ ବର୍ଷ ।

ଭ୍ୟାଲେଣ୍ଟିନା ତେରେସ୍‌କୋଭାଙ୍କ ସମ୍ପର୍କରେ ସଂକ୍ଷିପ୍ତ ଟୀକା

୧. ଟେକ୍‌ନିକାଲ୍ ସାଇନ୍ସରେ ପି.ଏଚ୍.ଡି

୨. କେବଳ ଏକମାତ୍ର ମହିଳା ଜେନେରାଲ୍

୩. ହିରୋ ଅଫ୍ ଦି ସୋଭିଏତ୍ ୟୁନିଅନ ଡେକୋରେସନ୍ ଆୱାର୍ଡ଼

୪. ଇଣ୍ଟର୍ ନ୍ୟାସ୍‌ନାଲ କମିଟି ଅଫ୍ ଏରୋସ୍ପେସ୍ ଆକ୍ଟିଭିଟିଜ୍ ପ୍ରଦତ୍ତ "ଉଇଣ୍ଡ ରୋଜ" ଏବଂ "ଅର୍ଡ଼ର ଅଫ୍ ଦି ଡାଇମଣ୍ଡ ଆୱାର୍ଡ଼"

୫. ଶାନ୍ତି ପାଇଁ ମିଳିତ ଜାତିସଂଘର ସ୍ୱର୍ଣ୍ଣ ପଦକ

୬. ସୋଭିଏତ୍ ୟୁନିଅନ୍ ଏକାଡେମୀ ଅଫ୍ ସାଇନ୍‌ସେସ୍ ପ୍ରଦତ୍ତ କେ.ଇ. ସିଓଲକୋଭସ୍କି (K.E. Tsiolkovsky) ସ୍ୱର୍ଣ୍ଣ ପଦକ

୭. ମହାକାଶ ଅଭିଯାନରେ ଅଭୂତପୂର୍ବ ସଫଳତା ପାଇଁ ବ୍ରିଟିଶ ଇଣ୍ଟର ପ୍ଲାନେଟାରୀ ସୋସାଇଟି ପ୍ରଦତ୍ତ ସ୍ୱର୍ଣ୍ଣ ପଦକ ।

୮. ଏଫ୍.ଏ.ଆଇ ଗୋଲ୍ଡ ସ୍ପେସ୍ ମେଡାଲ୍ ଓ ଆହୁରି ଅନେକ

୯. ଚନ୍ଦ୍ରରେ ଏକ ଗର୍ତ୍ତର ନାଆଁ ତାଙ୍କ ନାଆଁ ଅନୁସାରେ ଭ୍ୟାଲେଣ୍ଟିନା ତେରେସ୍‌କୋଭା ରଖାଯାଇଛି ।

ସହକାର ପୂଜାସଂଖ୍ୟା : ଅକ୍ଟୋବର, ୨୦୦୮<br>ସୌଜନ୍ୟ : ଏରୋଫ୍ଲୋଟ୍ ଏୟାରଲାଇନ୍ସ<br>(ଜାନୁୟାରୀ-ଫେବୃୟାରୀ, ୨୦୦୭, ଇନ୍-ଫ୍ଲାଇଟ୍ ମାଗାଜିନ୍)



# ସମଗ୍ର ବିଶ୍ୱ ଚନ୍ଦ୍ର ଅଭିଯାନ ପଛରେ ଏଡ଼େ ବ୍ୟଗ୍ର ହୋଇ ପଡ଼ିଛି କାହିଁକି ?

୨୦୦୭ ଓ ୨୦୦୮ ମସିହାରେ ବିଶ୍ୱର ଚାରୋଟି ରାଷ୍ଟ୍ର ପ୍ରତ୍ୟେକ ଗୋଟିଏ ଲେଖାଏ ସାଇଣ୍ଟିଫିକ ସ୍ପେଶକ୍ରାଫ୍ଟ ମହାକାଶକୁ ପଠାଇ ଚନ୍ଦ୍ରର ଫଟୋଚିତ୍ର ଉତ୍ତୋଳନ କରିବା ସଂଗେ ସଂଗେ ଚନ୍ଦ୍ରର ମାନଚିତ୍ର ସମ୍ବନ୍ଧରେ ମଧ୍ୟ ଅଭୂତପୂର୍ବ ତଥ୍ୟ ଆହରଣ କରିବେ । ଜାପାନ ଏରୋସ୍ପେଶ୍ ଏକ୍ସପ୍ଲୋରେସନ୍ ଏଜେନ୍ସି ତାର ସ୍ପେଶକ୍ରାଫ୍ଟ ସେଲିନ (SELENE) କୁ ୨୦୦୭ ମସିହା ଗ୍ରୀଷ୍ମ ଋତୁରେ ଚନ୍ଦ୍ର ଅଭିଯାନ ଉଦ୍ଦେଶ୍ୟରେ ପ୍ରେରଣ କରିବ । ଏଜେନ୍ସିର ମୁଖପାତ୍ରଙ୍କ ଅନୁଯାୟୀ ଜୁଲାଇ ୨୨ ତାରିଖ ପୂର୍ବରୁ ହୁଏତ ଏହି ଯାତ୍ରାର ଅୟଂଆରମ୍ଭ ହୋଇପାରିବ ନାହିଁ । ଚୀନ୍‌ର ସମ୍ବାଦପତ୍ର "ପିପୁଲ୍ସ ଡେଲି"ରେ ପ୍ରକାଶିତ ଏକ ସଦ୍ୟ ତଥ୍ୟ ଅନୁଯାୟୀ ଚୀନ୍‌ର ପ୍ରଥମ ଲୁନାର ପ୍ରୋବ୍ ଚ୍ୟାଙ୍ଗଇ-୧, ୨୦୦୭ ମସିହା ସେପ୍ଟେମ୍ବର ମାସ ବେଳକୁ ପ୍ରାୟ ଲଞ୍ଚ ହେବାର ଯୋଜନା ଅଛି ।

ଭାରତ ଚନ୍ଦ୍ରଯାନ - ୧ ମିଶନ ଆଜିଠୁଁ ପ୍ରାୟ ୧ ବର୍ଷ ମଧ୍ୟରେ ପୋଲାର ସ୍ୟାଟେଲାଇଟ୍ ଲଞ୍ଚ ଭେହିକିଲ୍ ମାଧ୍ୟମରେ ଚନ୍ଦ୍ର ଉଦ୍ଦେଶ୍ୟରେ ତାର ଐତିହାସିକ ଯାତ୍ରା ଆରମ୍ଭ କରିବ । ଆମେରିକାର ନ୍ୟାସନାଲ ଏରୋନଟିକ୍ସ ଆଣ୍ଡ ସ୍ପେଶ୍ ଆଡ଼ମିନିଷ୍ଟ୍ରେସନ୍ (NASA) ୨୦୦୮ ମସିହାର ଶେଷ ଭାଗକୁ ଏକ ଲୁନାର ରିକନ୍ନାଇସାନ୍ସ ଆର୍ବିଟର ଚନ୍ଦ୍ର ଅଭିଯାନରେ ପଠାଇବା ପାଇଁ ମନସ୍ଥ କରିଛି ।

ଚନ୍ଦ୍ରକୁ ନେଇ ଆଜି ସମସ୍ତଙ୍କ ମନରେ ପ୍ରବଳ ଉତ୍କଣ୍ଠା । ଏତେବଡ଼ ଆକାଶରେ ଏତେ ଛୋଟ ଜହ୍ନଟିଏ ! ହେଲେ ସମସ୍ତଙ୍କ ମନ କିଣି ନେଉଥିବା ଏହି ଛୋଟ ଜହ୍ନଟି ପାଇଁ ଆଜି ସମସ୍ତଙ୍କ ମନ ଅତ୍ୟନ୍ତ ପ୍ରଫୁଲ୍ଲିତ ଓ ଆନନ୍ଦରେ ଉଲ୍ଲସିତ । ଆଜି ସମଗ୍ର ବିଶ୍ୱବାସୀ ଭାରତର ଚନ୍ଦ୍ର ଅଭିଯାନକୁ ଉତ୍କଣ୍ଠାର ସହ ଅପେକ୍ଷା କରି ବସିଛି । ଜର୍ମାନ୍ ସ୍ପେଶ୍ ଏଜେନ୍ସି (DLR) ର ମୁଖ୍ୟଙ୍କ ଅଭିବ୍ୟକ୍ତିକୁ ଉଦ୍ଧାର କରି ନିକଟ ଅତୀତରେ ୟୁରୋପର ଏକ ସମ୍ବାଦପତ୍ର କହିଛି ଯେ ୨୦୧୩ ମସିହା ସୁଦ୍ଧା ମନୁଷ୍ୟ

ବିହୀନ ଏକ ସ୍ପେଶ୍ ସଟଲ୍ ମହାକାଶକୁ ପ୍ରେରଣ କରିବା ପାଇଁ ଜର୍ମାନୀ ଯୋଜନା ହାତକୁ ନେଇଛି । କେତେକାଂଶରେ ଚନ୍ଦ୍ର ସମ୍ବନ୍ଧରେ ବୈଜ୍ଞାନିକ ଉତ୍କଣ୍ଠାକୁ ନେଇ ଜାତ ହେଉଥିବା ଅଦମ୍ୟ ଆଗ୍ରହ, ଚନ୍ଦ୍ରର ଜନ୍ମ ଏବଂ ପୃଥିବୀର ନିଜସ୍ୱ ଅତୀତ ସମ୍ବନ୍ଧରେ ଅଧିକରୁ ଅଧିକତର ଜ୍ଞାନ ସଂଗ୍ରହ ଚନ୍ଦ୍ର ଅଭିଯାନକୁ ନେଇ ସର୍ବତ୍ର ବଳବତ୍ତର ଆଗ୍ରହ ସୃଷ୍ଟି କରୁଛି । ଅହମଦାବାଦସ୍ଥିତ ଭୌତିକ ଗବେଷଣାଗାର (ଫିଜିକାଲ୍ ରିସର୍ଚ୍ଚ ଲାବୋରାଟୋରୀ)ର ପ୍ରାକ୍ତନ ବୈଜ୍ଞାନିକ ନରେନ୍ଦ୍ର ଭଣ୍ଡାରୀ ଯେ କି ଚନ୍ଦ୍ରଯାନର ବୈଜ୍ଞାନିକ କାର୍ଯ୍ୟକ୍ରମକୁ ରୂପାୟୀତ କରିବାରେ ସଫଳ ଯୋଗଦାନ ଦେଇଥିଲେ କୁହନ୍ତି ଯେ – "ପୃଥିବୀ ଓ ଚନ୍ଦ୍ରର ଇତିହାସ ଓତଃପ୍ରୋତଃ ଭାବେ ଜଡ଼ିତ ଏବଂ ଯଦି ଆପଣ ପୃଥିବୀର ଇତିହାସ ଜାଣିବାକୁ ଇଚ୍ଛୁକ ତେବେ ଆପଣଙ୍କୁ ତାହା ଚନ୍ଦ୍ର ପୃଷ୍ଠକୁ ଯାଇ ଅଧ୍ୟୟନ କରିବାକୁ ପଡ଼ିବ ।"

ଏହା ସର୍ବଜନ ବିଦିତ ଏବଂ ସର୍ବତ୍ର ବିଶ୍ୱାସ ଯୋଗ୍ୟ ଯେ ଆଜିଠୁଁ ୪.୬ ବିଲିୟନ୍ ବର୍ଷ ପୂର୍ବେ ମଙ୍ଗଳ ଗ୍ରହ ଆକାରର ଏକ ବିରାଟ କ୍ଷୁଦ୍ର ଗ୍ରହ (Asteroid) ପୃଥିବୀ ସହ ପ୍ରଚଣ୍ଡ ଧକ୍କା ଲାଗିବା ଫଳରେ ଚନ୍ଦ୍ରର ସୃଷ୍ଟି ହୋଇଥିଲା । ତା'ପରେ ପ୍ରାୟ ୩.୯ ବିଲିୟନ୍ ବର୍ଷ ପୂର୍ବେ ଉଭୟ ପୃଥିବୀ ଏବଂ ଏହାର ପ୍ରାକୃତିକ ଉପଗ୍ରହ ଚନ୍ଦ୍ର ପୃଥିବୀ ଗ୍ରହର ଉତ୍ପତ୍ତି ସମୟରେ ସୃଷ୍ଟି ହୋଇଥିବା ବଳକା ଭଙ୍ଗାରୁଜା ଅଂଶ ବିଶେଷ ଦ୍ୱାରା ପ୍ରଚଣ୍ଡ ଭାବେ ଆଘାତପ୍ରାପ୍ତ ହୋଇଥିଲା ବୋଲି ବିଶ୍ୱାସ କରାଯାଉଛି । ପୃଥିବୀ ପୃଷ୍ଠରେ ଘଟିଯାଇଥିବା ଏପରି ଏକ ମହାଭୌତିକ ଘଟଣାର ଚକ୍ଷୁସ ପ୍ରମାଣ ପରବର୍ତ୍ତୀ ସମୟରେ ମହାଦେଶ ଭୂଖଣ୍ଡର ପ୍ରଚଳନ (Continental Plate Movement), ଲାଭା ଉଦ୍‌ଗୀରଣ (Volcanic Activity) ତଥା ଜଳବାୟୁରେ ଦ୍ରୁତ ପରିବର୍ତ୍ତନ ହେତୁ ସତ୍ୟ ବୋଲି ସମିଚୀନ ହୋଇଥାଏ । କିନ୍ତୁ ଚନ୍ଦ୍ରରେ ଏପରି କୌଣସି ଭୌଗୋଳିକ ପରିବର୍ତ୍ତନ ପରିଲକ୍ଷିତ ହୋଇନଥାଏ ଓ ଭୌଗୋଳିକ ସ୍ଥିତି ସେଠାରେ ଉତ୍ତମ ରୂପେ ସଂରକ୍ଷିତ ହୋଇ ରହିଅଛି । ସୌର ଜଗତରେ ସଂଗଠିତ ହୋଇଥିବା ସର୍ବବୃହତ୍ ଆଘାତପ୍ରାପ୍ତ ସ୍ଥଳ ଉଦାହରଣ ସ୍ୱରୂପ ଚନ୍ଦ୍ରର ଅପର ପାର୍ଶ୍ୱରେ ପରିଲକ୍ଷିତ ହୋଇଥାଏ ।

ବହୁ ରାଷ୍ଟ୍ର ଦ୍ୱାରା ପଠାଯାଉଥିବା ପ୍ରୋବ୍ ଗୁଡ଼ିକ ଚନ୍ଦ୍ର ପୃଷ୍ଠର ହାଇ ରିଜୋଲ୍ୟୁସନ୍ ମ୍ୟାପିଙ୍ଗ୍ ପାଇଁ ନାନାଦି ଯନ୍ତ୍ରପାତିରେ ସୁସଜ୍ଜିତ ଅଟେ ଯାହାକି ଚନ୍ଦ୍ରର

ରାସାୟନିକ ଗଠନ ଶୈଳୀ (Chemical Make-up) ଏବଂ ଚନ୍ଦ୍ରରେ ଥିବା ନାନାଦି ଖଣିଜ ପଦାର୍ଥର ଅବସ୍ଥିତି ସମ୍ପର୍କରେ ମୌଳିକ ଜ୍ଞାନ ପ୍ରଦାନ କରିବ । ଆମେରିକାର ବ୍ରାଉନ ବିଶ୍ୱବିଦ୍ୟାଳୟର ମୁଖପାତ୍ର କାର୍ଲେ ପାଇଟର୍ସ କୁହନ୍ତି ଯେ - "ପୃଥିବୀ ଓ ଚନ୍ଦ୍ର ବ୍ୟବସ୍ଥା (Earth-Moon System) ର ମୌଳିକ ପ୍ରକୃତି ସମ୍ପର୍କରେ ଗଭୀରତର ଅନୁଧ୍ୟାନ କରିବା, ଚନ୍ଦ୍ରପୃଷ୍ଠର ସ୍ୱରୂପ ତଥା ପରିବେଶ ସମ୍ବନ୍ଧରେ ଅଧିକରୁ ଅଧିକତର ଜ୍ଞାନ ଆହରଣ କରିବା, କେଉଁଠି କିଭଳି ବସ୍ତୁ ଉପଲବ୍ଧ ଏବଂ ପୃଥିବୀର ଏହି ନିକଟତମ ପଡ଼ୋଶୀ ଉପଗ୍ରହ ଚନ୍ଦ୍ରର ଗଠନ ଏବଂ ସମୟକ୍ରମେ ଏଥିରେ କିଭଳି ନାନାଦି ପରିବର୍ତ୍ତନ ସଂଗଠିତ ହୋଇଛି ଏ ସମସ୍ତ ବିଷୟରେ ବିଷଦ ତଥ୍ୟ ଆହରଣ କରିବା ଏକାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଛି । ଡକ୍ଟର ପାଇଟର୍ସ ମୁନ୍ ମିନେରୋଲୋଜି ମ୍ୟାପ୍ର (Moon Mineralogy Mapper) ନାମକ ଏକ ଯନ୍ତ୍ରର ପ୍ରମୁଖ ଅନୁସନ୍ଧାନକାରୀ ଅଟନ୍ତି ଯାହାକି ବ୍ରାଉନ ୟୁନିଭରସିଟି ଓ ଜେଟ୍ ପ୍ରୋପଲ୍ସନ ଲାବୋରାଟୋରୀର ମିଳିତ ସହଯୋଗରେ ନିର୍ମିତ ହୋଇଛି ଯାହାକି ଚନ୍ଦ୍ରଯାନ - ୧ ସହ ମହାକାଶକୁ ମଧ୍ଯ ଯାତ୍ରା କରିବ ।

ଏବେ ବେଶ ଏକ ଗରମାଗରମ ଆଲୋଚନାର ବିଷୟବସ୍ତୁ ହୋଇଛି ଯେ ଚନ୍ଦ୍ରରେ ଜଳ ବରଫ ଆକାଶରେ ଅଛି ନା ନାହିଁ ? ୧୯୯୪ ମସିହାରେ ଆମେରିକା ପଠାଇଥିବା କ୍ଲିମେନଟାଇନ୍ ସ୍ୟାଟେଲାଇଟ୍ ଏବଂ ଏହାର ୪ ବର୍ଷ ପରେ ପଠାଯାଇଥିବା ଲୁନାର ପ୍ରୋସ୍‌ପେକ୍ଟର ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ତଥ୍ୟ ପ୍ରକାଶ କରିଥିଲା ଯେ ଚନ୍ଦ୍ରର ମେରୁ ଅଞ୍ଚଳର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଜଳ ବରଫ ଆକାରରେ ରହିବାର ଯଥେଷ୍ଟ ସମ୍ଭାବନା ରହିଛି, ଯେଉଁ ଅଞ୍ଚଳରେ କି ଆଦୌ ସୌର ରଶ୍ମି ପଡ଼ି ନଥାଏ । ଫଳତଃ ସେଠିକାର ଉତ୍ତାପ ବିଯୁକ୍ତ ୨୦୦ ଡିଗ୍ରୀ ସେଲ୍‌ସିଅସ୍‌ରେ ଥାଏ । ଚନ୍ଦ୍ରଯାନ-୧ ମିନି-ଏସ୍.ଏ.ଆର୍ (Mini SAR) ନାମକ ଏକ ର୍‌ୟାଡାର୍ ମ୍ୟାପର (Radar Mapper) ସାଂଗରେ ଧରି ଯାତ୍ରା କରିବ ଯାହାକି ଆମେରିକାର ଜନ ହପ୍‌କିନ୍ ବିଶ୍ୱବିଦ୍ୟାଳୟର ଆପ୍ଲାଏଡ୍ ଫିଜିକ୍ସ ଲାବୋରାଟୋରୀ ଏବଂ ଆମେରିକାର ନୌ ସେନା ଯୋଗେଇ ଦେଇଛି । ଏହି ରାଡାର ଚନ୍ଦ୍ରରେ ଜଳର ସ୍ଥିତି ଓ ଏହାର ବରଫ ଅବସ୍ଥା ସମ୍ପର୍କରେ ଅନୁଧ୍ୟାନ କରିବ । ଆପ୍ଲାଏଡ୍ ଫିଜିକ୍ସ ଲାବୋରାଟୋରୀର ଡକ୍ଟର ପଲ ସ୍ପୁଡିସ୍ (Dr.

Paul Spudis) ଯେକି ମନୁଷ୍ୟବାହୀ ମହାକାଶ ଅଭିଯାନର ଏକ ଦୃଢ଼ ପ୍ରବକ୍ତା ଅଟନ୍ତି, କୁହନ୍ତି ଯେ – "ଚନ୍ଦ୍ରରେ ବରଫ ରୂପରେ ଜଳର ସନ୍ଧାନ ମିଳିଗଲେ ସେଠାରେ ଜୀବନ ନିର୍ବାହ ସହଜସାଧ୍ୟ, ଶସ୍ତା ଏବଂ ସମ୍ଭାବନାପୂର୍ଣ୍ଣ ହୋଇ ଉଠିବ । "ସ୍ପେଶ୍ ରିଭ୍ୟୁ" ନାମକ ଏକ ଅନ୍-ଲାଇନ୍ ପବ୍ଲିକେଶନ୍‌ରେ "ଚନ୍ଦ୍ରରେ ବରଫ" ନାମକ ଏକ ବୈଜ୍ଞାନିକ ନିବନ୍ଧ ଉପସ୍ଥାପନା କରି ମିନି - ଏସ୍.ଏ.ଆର୍. ର୍ୟାଡାର ମ୍ୟାପର୍‌ର ମୁଖ୍ୟ ଗବେଷକ ଡକ୍ଟର ସ୍ପୁଡିସ୍ କୁହନ୍ତି ଯେ - ଚନ୍ଦ୍ରର ମେରୁ ଅଞ୍ଚଳରେ ଥିବା ଜଳର ସମ୍ଭାବ୍ୟ ବରଫ ଅବସ୍ଥା ଉଦ୍‌ଯାନ ଓ ଅମ୍ଳଯାନ ବାଷ୍ପର ଗାଢ଼ ସ୍ୱରୂପ ଅଟେ ଏବଂ ଏହି ଦୁଇଟି ମୌଳିକ ବସ୍ତୁ ମାନବ ଜୀବନର ସଞ୍ଚାର ଓ ପ୍ରତିପୋଷଣ ପାଇଁ ବହୁଳ ଭାବେ ଆବଶ୍ୟକ ହୋଇଥାଏ ତଥା ମହାକାଶ ପରିବହନ ପ୍ରଣାଳୀ ପାଇଁ ମୁଖ୍ୟ ଭିତ୍ତିଭୂମି ଭାବେ ମଧ୍ୟ ସହାୟକ ହୋଇଥାଏ ।

ଡକ୍ଟର ଶ୍ରୀମତୀ ପିଟର୍ସ ବିଶ୍ୱାସ କରନ୍ତି ଯେ ବିଭିନ୍ନ ମହାକାଶଯାନ ପରୀକ୍ଷା ନିରୀକ୍ଷା ବ୍ୟବସ୍ଥା (Space Craft Study) ରେ ବ୍ୟବହୃତ ହେଉଥିବା ନାନାବିଧ ଉପାଦେୟ ଯନ୍ତ୍ରପାତି ବିଭିନ୍ନ ରକମର ନିର୍ଦ୍ଦିଷ୍ଟ ତଥ୍ୟାବଳୀ ପରିବେଷଣ କରିଥାନ୍ତି । ପ୍ରତ୍ୟେକଟି ମହାକାଶଯାନରେ ସନ୍ନିବେଶିତ ଥିବା ନିର୍ଦ୍ଦିଷ୍ଟ ରକମର ବିଶେଷ ଯନ୍ତ୍ରପାତି ଚନ୍ଦ୍ର ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଅନ୍ୱେଷଣର ନିର୍ଦ୍ଦିଷ୍ଟ ଉତ୍ତର ପ୍ରଦାନ କରିଥାଏ ଏବଂ ସମସ୍ତ ତଥ୍ୟାବଳୀର ଯୋଗସୂତ୍ର ଦ୍ୱାରା ଅତ୍ୟନ୍ତ ମୂଲ୍ୟବାନ ଓ ଅସାଧାରଣ ଫଳାଫଳ ପ୍ରଦାନ କରିଥାଏ । ବିଭିନ୍ନ ସେନ୍‌ସର୍‌ରୁ ଉପଲବ୍ଧ ହେଉଥିବା ବିଭିନ୍ନ ତଥ୍ୟ ହିଁ ଗ୍ରହ ନକ୍ଷତ୍ରାଦିର ଆକାର ପ୍ରକାର ସମ୍ବନ୍ଧରେ ସଠିକ ବିବରଣ ପ୍ରଦାନ କରିବ ।

## ମନୁଷ୍ୟବାହୀ ମହାକାଶଯାନ ଅଭିଯାନରେ ପ୍ରଥମ ପଦକ୍ଷେପ :

ଅହମଦାବାଦସ୍ଥିତ ଭୌତିକ ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକ ଡଃ ଜେ.ଏନ୍. ଗୋସ୍ୱାମୀ କୁହନ୍ତି ଯେ ଭାରତ, ଜାପାନ ଓ ଆମେରିକାର ବୈଜ୍ଞାନିକମାନେ ଅଧିକନ୍ତୁ ସହମତ ଯେ ଚନ୍ଦ୍ର ଅଭିଯାନ ପାଇଁ "ଲୁନାର ସ୍ପେଶ୍ କ୍ରାଫ୍ଟ"ରେ ବ୍ୟବହୃତ ହେଉଥିବା ବିଭିନ୍ନ ଯନ୍ତ୍ରପାତି ଚନ୍ଦ୍ରର କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ଉପରେ ଲକ୍ଷ୍ୟ କେନ୍ଦ୍ରୀଭୂତ କରି ସେଠାରେ ଅଧିକରୁ ଅଧିକତର ବୈଜ୍ଞାନିକ ଗବେଷଣା କରିବା ପାଇଁ ଉଦ୍ଦିଷ୍ଟ ହେବା

ଦରକାର ଯାହାକି ନିର୍ଦ୍ଦିଷ୍ଟ ଏବଂ ପ୍ରକୃଷ୍ଟ ବୈଜ୍ଞାନିକ ତଥ୍ୟ ଉପସ୍ଥାପନ କରିବାରେ ସହାୟକ ହେବ । ଚନ୍ଦ୍ର ଅଭିଯାନକୁ ତୀବ୍ରତର ଭାବେ ତ୍ୱରାନ୍ୱିତ କରିବା ପଛରେ ଆଉ ଏକ ବିଶେଷ କାରଣ ହେଲା ଏହାର ଫଳାଫଳକୁ ଭିତ୍ତିକରି ସୌରଜଗତର ଅନୁସନ୍ଧାନ ପାଇଁ ମନୁଷ୍ୟବାହୀ ମହାକାଶ ଅଭିଯାନ ପ୍ରେରଣ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପ୍ରଥମ ପଦକ୍ଷେପ ନେବା ପାଇଁ ଅଧିକରୁ ଅଧିକତର ଆଗ୍ରହ ସୃଷ୍ଟି । ଜାନୁୟାରୀ - ୨୦୦୪ ମସିହାରେ ଅମେରିକାର ରାଷ୍ଟ୍ରପତି ଜର୍ଜ ଡବ୍ଲ୍ୟୁ ବୁଶ ତାଙ୍କର ରାଷ୍ଟ୍ରୀୟ ଆଭିମୁଖ୍ୟ ଘୋଷଣା କରି କହିଥିଲେ ଯେ, - "୨୦୨୦ ମସିହା ସୁଦ୍ଧା ଆମକୁ ପୁଣି ଚନ୍ଦ୍ର ପୃଷ୍ଠକୁ ଫେରିଯିବାକୁ ପଡ଼ିବ" । ମିଷ୍ଟର ବୁଶ ତାଙ୍କର ଏହି ଆଭିମୁଖ୍ୟରେ ସ୍ପଷ୍ଟ ଭାବେ ଉଲ୍ଲେଖ କରିଥିଲେ ଯେ ଚନ୍ଦ୍ରପୃଷ୍ଠରେ ମନୁଷ୍ୟର ଉପସ୍ଥିତି, ଜୀବନ ନିର୍ବାହ ଏବଂ ଚିରକାଳ ବସତି ସ୍ଥାପନ ପରେ ମଙ୍ଗଳ ଗ୍ରହ ଏବଂ ଅନ୍ୟାନ୍ୟ ଗ୍ରହ ଉପଗ୍ରହରେ ମଣିଷ ଜାତିର ଉପନିବେଶ ସ୍ଥାପନ ପାଇଁ ମହାକାଶ ଅଭିଯାନ ପଥ ସୁଗମ କରିବ ।

ଆମେରିକା କେବଳ ଏକମାତ୍ର ରାଷ୍ଟ୍ର ନୁହେଁ ଯେ କି ଚନ୍ଦ୍ରକୁ ମଣିଷ ପଠାଇବାକୁ ଇଚ୍ଛୁକ । ମହାକାଶ ପ୍ରଯୁକ୍ତିବିଦ୍ୟା ସଂକ୍ରାନ୍ତୀୟ ଚୀନୀୟ ଏକାଡେମୀର ୱେବ୍‌ସାଇଟ ପ୍ରଦତ୍ତ ସୂଚନା ଅନୁଯାୟୀ ଝଙ୍ଗେ ପ୍ରୋଜେକ୍ଟ ତିନୋଟି ପର୍ଯ୍ୟାୟଭୁକ୍ତ ଅଟେ । ପ୍ରଥମଟି ହେଲା ଚନ୍ଦ୍ର ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ ପାଇଁ ଏକ ଅର୍ବିଟରର ପ୍ରେରଣ । ଦ୍ୱିତୀୟ ପର୍ଯ୍ୟାୟଟି ହେବ ଚନ୍ଦ୍ର ପୃଷ୍ଠରେ ଏକ "ଲୁନାର ରୋଭର"ର ଅବତରଣ ଏବଂ ଶେଷ ଓ ତୃତୀୟ ପର୍ଯ୍ୟାୟଟି ହେବ ଚନ୍ଦ୍ରପୃଷ୍ଠର ବିଭିନ୍ନ ସ୍ଥାନରୁ ମାଟିର ନମୁନା ସଂଗ୍ରହ । ଚୀନ୍‌ର "ପିପୁଲ୍ସ ଡେଲି" ପତ୍ରିକାରେ ଫେବୃୟାରୀ ୨୦୦୭ରେ ପ୍ରକାଶ ପାଇଥିବା ଏକ ନିବନ୍ଧ ଅନୁଯାୟୀ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ୨୦୨୦ ରୁ ୨୦୨୫ ମସିହା ମଧ୍ୟରେ ଚୀନ ମନୁଷ୍ୟବାହୀ ମହାକାଶଯାନ ଚନ୍ଦ୍ରପୃଷ୍ଠକୁ ପ୍ରେରଣ କରିବାରେ ସମର୍ଥ ହୋଇପାରିବ ।

ଯଦିଓ ଚନ୍ଦ୍ରଯାନ - ୧ ପରବର୍ତ୍ତୀ କୌଣସି ମୁନମିଶନ୍ ସମ୍ବନ୍ଧରେ ଆନୁଷ୍ଠାନିକ ଭାବେ ଏ ପର୍ଯ୍ୟନ୍ତ ଘୋଷଣା କରାଯାଇନାହିଁ, ଏହା ହୁଏତ ଆଶା କରାଯାଉଛି ଯେ ଭାରତୀୟ ମୁନ ମିଶନ ଚୀନ ପରି ନିଜର ଭବିଷ୍ୟତ କାର୍ଯ୍ୟପନ୍ଥା ନିଜେ ନିର୍ଦ୍ଧାରଣ

କରିବ । ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠାନର ପୂର୍ବତନ ଅଧ୍ୟକ୍ଷ ଏବଂ ସମ୍ପ୍ରତି ଏହି ପ୍ରତିଷ୍ଠାନର ମହାକାଶ ଉପଦେଷ୍ଟା କମିଟିର ମୁଖ୍ୟ ଥିବା ପ୍ରଫେସର ୟୁ.ଆର.ରାଓ କୁହନ୍ତି ଯେ : ଗ୍ରହ ଗ୍ରହାନ୍ତର ସମ୍ପର୍କରେ ଗବେଷଣା କେବଳ ଗୋଟିଏ ମାତ୍ର ପରୀକ୍ଷା ନିରୀକ୍ଷାରେ ସମାପ୍ତ ହୋଇଯାଏନା । ୨୦୦୧ ମସିହାରେ ଡକ୍ଟର ଭଣ୍ଡାରୀ ଇସ୍ରୋର ମହାକାଶ ଉପଦେଷ୍ଟା କମିଟି ପାଇଁ ଗ୍ରହ ଗ୍ରହାନ୍ତର ବିଜ୍ଞାନ ଏବଂ ମହାକାଶଯାତ୍ରା ସମ୍ବନ୍ଧରେ ଏକ ପ୍ରସ୍ତାବ ପ୍ରସ୍ତୁତ କରିଥିଲେ । ଏହି ପ୍ରସ୍ତାବରେ ସ୍ପଷ୍ଟ ରୂପେ ଉଲ୍ଲେଖ ଥିଲା ଯେ ଗୋଟାଏ ରାଷ୍ଟ୍ର (ଭାରତ) ଯେ କି ବିଶ୍ୱ ବ୍ୟବସ୍ଥାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦିତ କରିବାକୁ ଥରେ ଅଣ୍ଟା ଭିଡ଼ି ଦେଇଛି ସେ କୌଣସି ପରିସ୍ଥିତିରେ ବି ପଛଘୁଞ୍ଚା ଦେବା ଶୋଭନୀୟ ହେବନାହିଁ ଏବଂ ଅନ୍ୟ ରାଷ୍ଟ୍ରର କ୍ରମାଗତ ଉନ୍ନତିକୁ ଏକ ନିରବ ଦ୍ରଷ୍ଟା ଭାବେ ଅବଲୋକନ କରିବା ରାଷ୍ଟ୍ରଟି ପାଇଁ ଆତ୍ମହତ୍ୟା ସଦୃଶ ପ୍ରତୀୟମାନ ହେବ, ଯାହାକି ଏକ ଲଜ୍ଜା ଓ ପରିତାପର ବିଷୟ ବୋଲି ଶତ ମୁଖରେ ସାବ୍ୟସ୍ତ ହେବ । ଏହି ପ୍ରସ୍ତାବରେ "ମୁନ ଲ୍ୟାଣ୍ଡିଂ ମିଶନ" ସମ୍ଭବତଃ ଏକ ରୋଭର ସାହାଯ୍ୟରେ ଚନ୍ଦ୍ର ପୃଷ୍ଠରେ ମନୁଷ୍ୟର ଅବତରଣ ସଂକ୍ରାନ୍ତରେ କଡ଼ା ସୁପାରିଶ କରାଯାଇଛି । ଏହାର ପରବର୍ତ୍ତୀ କାର୍ଯ୍ୟକ୍ରମ ହେବ ଚନ୍ଦ୍ର ପୃଷ୍ଠରୁ ଗୋଡ଼ି-ମାଟି-ବାଲି ର ନମୁନା ଧରି ପୃଥିବୀ ପୃଷ୍ଠକୁ ପ୍ରତ୍ୟାବର୍ତ୍ତନ ।

ଯଦିଓ ୨୦୦୧ ମସିହାର ପ୍ରସ୍ତାବ ଚନ୍ଦ୍ର ଅଭିମୁଖେ କୌଣସି ମନୁଷ୍ୟବାହୀ ମହାକାଶଯାନର ଯାତ୍ରା ସମ୍ପର୍କରେ ବଳିଷ୍ଠ ଯୁକ୍ତି ଉପସ୍ଥାପନା କରିନଥିଲା ହେଲେ ଏହା ନିଶ୍ଚିତ ରୂପେ ସୂଚୀତ କରୁଥିଲା ଯେ ନିକଟ ଭବିଷ୍ୟତରେ· ଭାରତ ତାର ନିଜର ମହାକାଶଯାତ୍ରୀଙ୍କୁ ଚନ୍ଦ୍ରପୃଷ୍ଠରେ ଅବତରଣ କରାଇବ । ଡଃ ରାଓଙ୍କ କହିବା ଅନୁଯାୟୀ ଏପରି ସମ୍ଭାବନାର ଚିକିନିଖି ବିଶ୍ଳେଷଣ ଓ ପର୍ଯ୍ୟାଲୋଚନାକୁ ଭିତ୍ତିକରି ଇସ୍ରୋରେ କେତେକ ଆଭ୍ୟନ୍ତରୀଣ ଷ୍ଟଡିଜ୍ କରାଯାଇଛି ।

୨୦୦୩ ମସିହାରେ ଚୀନ୍ ତାର ପ୍ରଥମ ମହାକାଶଯାତ୍ରୀକୁ ମହାକାଶକୁ ପଠାଇ ଏକ ଗୌରବମୟ ଅଧ୍ୟାୟ ସୃଷ୍ଟି କରିଥିଲା ଏବଂ ତା ପରେ ପରେ ୨ ଜଣ ମହାକାଶଯାତ୍ରୀଙ୍କୁ ନେଇ ଚୀନ ତାର ଦ୍ୱିତୀୟ ମହାକାଶ ଅଭିଯାନ ୨୦୦୫ ମସିହାରେ

ଶୁଭାରମ୍ଭ କରିଥିଲା ମନୁଷ୍ୟବାହୀ ମହାକାଶ ଯାନ ମାଧ୍ୟମରେ । ମନୁଷ୍ୟବାହୀ ମହାକାଶଯାନ ବ୍ୟବସ୍ଥାର ପ୍ରଚଳନ ସମ୍ପ୍ରତି ଭାରତର ଦକ୍ଷତାର ବାହାରେ । ସମ୍ଭବତଃ ଏହା କେବଳ ଏକ ସମୟର କଥା ଯେ ଏହି ଦକ୍ଷତାକୁ କରାୟତ୍ତ କରିବା ପାଇଁ ପ୍ରକୃଷ୍ଟ କାର୍ଯ୍ୟକ୍ରମର ଶୁଭାରମ୍ଭ ହିଁ ଯାହା ଖାଲି ବାକି ଅଛି । ୨୦୦୬ ମସିହା ନଭେମ୍ବର ମାସରେ ରାଷ୍ଟ୍ରର ବରିଷ୍ଠ ମହାକାଶ ବିଜ୍ଞାନୀମାନେ ଏକତ୍ର ସମ୍ମିଳିତ ହୋଇ ସର୍ବସମ୍ମତିକ୍ରମେ ରାଜି ହେଲେ ଯେ ମନୁଷ୍ୟବାହୀ ମହାକାଶଯାନ ପ୍ରେରଣ କରିବା ପାଇଁ ଏବେ ହିଁ ପ୍ରକୃଷ୍ଟ ସମୟ ଓ ଏହି ସମୟକୁ ଉପଯୁକ୍ତ ଭାବେ ଅଭ୍ୟର୍ଥନା କରାଯିବା ଉଚିତ୍ । ୨୦୦୭-୦୮ ମସିହାର କେନ୍ଦ୍ର ବଜେଟରେ ମନୁଷ୍ୟବାହୀ ମହାକାଶଯାନ ପ୍ରେରଣ ବାବଦରେ ମହାକାଶ ବିଭାଗ ପାଇଁ ୫୦ କୋଟି ଟଙ୍କା ବ୍ୟୟ ବ୍ୟୟ ବରାଦ କରାଯାଇଛି । ଇସ୍ରୋ ହିସାବ କରି ଦେଖିଛି ଯେ ଆଗାମୀ ୮ ବର୍ଷ ମଧ୍ୟରେ ମନୁଷ୍ୟବାହୀ ମହାକାଶଯାନର ମହାକାଶକୁ ପ୍ରେରଣ ବାବଦରେ ୧୦ ହଜାର କୋଟି ଟଙ୍କା ଖର୍ଚ୍ଚ ହେବ ।

ଜି.ଏସ୍.ଏଲ୍.ଭି.ର ମାର୍କ-୩ ରୂପରେଖ ଯାହାକି ରାଷ୍ଟ୍ରର ନିଜସ୍ୱ କ୍ରାୟୋଜେନିକ୍ସ ଷ୍ଟେଜ୍ ବ୍ୟବସ୍ଥାକୁ ନେଇ ଗଠିତ ତାହା ମହାକାଶଯାତ୍ରୀଙ୍କୁ ପୃଥିବୀର କକ୍ଷପଥରେ ସ୍ଥାନିତ କରାଇବ । ଅପର ପକ୍ଷରେ ଚନ୍ଦ୍ରଯାତ୍ରା ପାଇଁ ମନୁଷ୍ୟବାହୀ ମହାକାଶଯାନ ଜି.ଏସ୍.ଏଲ୍.ଭି. - ମାର୍କ-୩ର ଏକ ଉନ୍ନତ ବ୍ୟବସ୍ଥାର ଆବଶ୍ୟକ କରିପାରେ ଯାହାକି ସମ୍ପ୍ରତି ଦେଶରେ ବିକାଶ ସ୍ତରରେ ରହିଛି ।

ଷାଠିଏ ଦଶକରେ, ଚନ୍ଦ୍ରପୃଷ୍ଠରେ ମନୁଷ୍ୟରେ ଅବତରଣ ଆମେରିକା ଓ ରୁଷିଆ ମଧ୍ୟରେ ଏକ ମହାକାଶ ଦୌଡ଼ର ରୂପରେଖ ନେଇଥିଲା ବେଳେ ଭବିଷ୍ୟତର ଚନ୍ଦ୍ର ଅଭିଯାନ ପ୍ରତିଯୋଗିତା ବଦଳରେ ବିଶ୍ୱ ସହଯୋଗର ପଥ ଉନ୍ମୋଚନ କରିବ । ମହାକାଶ ଅଭିଯାନକୁ ନେଇ ଆମେରିକାର ସ୍ୱପ୍ନକୁ ଫଳବତୀ କରିବା ପାଇଁ ନାସା ଏକ ବିଶ୍ୱ ମହାକାଶ ଅଭିଯାନ ଷ୍ଟ୍ରାଟେଜୀ ପ୍ରସ୍ତୁତ କରିବା ପାଇଁ ଫଳପ୍ରଦ କଥାବାର୍ତ୍ତା ଓ ଯୋଗସୂତ୍ରର ଶୁଭାରମ୍ଭ କରିଛି । ଇସ୍ରୋ, କେତେକ ଏନ୍.ଜି.ଓ. ବ୍ୟବସାୟୀକ ପ୍ରତିଷ୍ଠାନ ତଥା ବିଶ୍ୱର ୧୪ଟି ମହାକାଶ ଏଜେନ୍ସିର ପ୍ରତିନିଧିମାନେ ଚନ୍ଦ୍ର ଅଭିଯାନକୁ

ନେଇ ଏକ ଉତ୍ତମ ଓ ସମୟ ଉପଯୋଗୀ ଷ୍ଟ୍ରାଟେଜୀ ନିର୍ଣ୍ଣୟ କରବା ପାଇଁ ଆବଶ୍ୟକୀୟ ପଦକ୍ଷେପ ନେଉଛନ୍ତି । ମୁଖ୍ୟତଃ ଏହି ଷ୍ଟ୍ରାଟେଜୀ ଦୁଇଟି ଗୁରୁତ୍ୱପୂର୍ଣ୍ଣ ମୁଦ୍ଦା ଉପରେ ପର୍ଯ୍ୟବେସିତ ହେବ । ପ୍ରଥମଟି ହେଲା ଆମେ ଚନ୍ଦ୍ର ଅଭିଯାନ କରିବାକୁ କାହିଁକି ବା ମନ ବଳାଇଛୁ ? ଏବଂ ଦ୍ୱିତୀୟଟି ହେଲା ଆମେ ଚନ୍ଦ୍ର ପୃଷ୍ଠରେ ପହଞ୍ଚିଗଲା ପରେ ସେଠରେ କଣ ସବୁ କରିବାକୁ ଯୋଜନା ହାତରେ ରଖିଛୁ ? ଏ ପ୍ରଶ୍ନର ଉତ୍ତର ଦେଇ ନାସା ପ୍ରତିନିଧି କୁହନ୍ତି ଯେ - ଆମେରିକା ଚନ୍ଦ୍ରପୃଷ୍ଠରେ ଏକ "ଲୁନାର ବେସ୍" ସ୍ଥାପନା କରିବାକୁ ଚାହୁଁଛି ଏବଂ ପୃଥିବୀ ପୃଷ୍ଠରୁ ଚନ୍ଦ୍ରକୁ ଓ ଚନ୍ଦ୍ର ପୃଷ୍ଠରୁ ପୃଥିବୀକୁ ମନୁଷ୍ୟ ତଥା ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀର ପରିବହନ କରିବା ପାଇଁ ଆବଶ୍ୟକୀୟ ଦକ୍ଷତାର ସୃଷ୍ଟି ଉପରେ ମଧ୍ୟ ପ୍ରାଧାନ୍ୟ ଦେଉଛି । ପରନ୍ତୁ ସେ କୁହନ୍ତି ଯେ ଆନ୍ତର୍ଜାତିକ ସହଯୋଗ ପାଇଁ ନାସାର ଦ୍ୱାର ସଦା ଉନ୍ମୁକ୍ତ ଏବଂ ଯେକୌଣସି ରାଷ୍ଟ୍ର ଏହି ସୁଯୋଗ ଓ ସମ୍ଭାବନାର ବାଟ ଦେଇ ଚନ୍ଦ୍ର ଅଭିଯାନ ପାଇଁ ମନ ବଳେଇ ପାରିବେ ।

ସାପ୍ତାହିକ ସମାଜ : ଡିସେମ୍ବର ୫-୧୧, ୨୦୦୭

ସହକାର : ୨୦୦୭ (ପୂଜା ସଂଖ୍ୟା)

●

# ବିଜ୍ଞାନ ଉପରେ ନିର୍ଭରଶୀଳ ରୁଷୀୟ ଅର୍ଥନୀତି : ଦୃଶ୍ୟପଟ ୨୦୨୦

୫୦ ବର୍ଷ ତଳେ ପୃଥିବୀର ପ୍ରଥମ ଉପଗ୍ରହ ସ୍ପୁଟ୍‌ନିକ୍ ଲଞ୍ଚକରି ସମଗ୍ର ବିଶ୍ୱବାସୀଙ୍କୁ ତଟସ୍ଥ କରିଦେଇଥିବା ସୋଭିଏତ୍ ୟୁନିୟନ ଆଜି ନିତ୍ୟନୂତନ ପ୍ରଯୁକ୍ତି ବିଦ୍ୟାକୁ ସାରଥୀ କରି ଅଭିବୃଦ୍ଧିର ରଣାଙ୍ଗନରେ ବୀରଦର୍ପରେ ଅଗ୍ରସର ହେବାକୁ ଲମ୍ଫ ପ୍ରଦାନ କରିଛି । ପ୍ରଯୁକ୍ତି ବିଦ୍ୟାର ମହାଦୌଡ଼ରେ ସମସ୍ତ ବାଜି ଜିତିବାର ରଣ କୌଶଳକୁ ଅଖ୍ତିଆର କରିବାକୁ ସେ ଆଜିପଣ କରିଛି । ପ୍ରାକୃତିକ ସମ୍ପଦ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିବା ରୁଷୀୟ ଅର୍ଥନୀତି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଧନ୍ୟ ଅର୍ଥନୈତିକ ଶାସନ ବ୍ୟବସ୍ଥାରେ ନିଜକୁ ରୂପାନ୍ତରିତ କରିବା ପାଇଁ ସମ୍ପ୍ରତି ଏକ ବିରାଟ କର୍ମ ଯୋଜନା ହାତକୁ ନେଇଛି । ସୋଭିଏତ୍ ୟୁନିୟନର ନିକଟ ଅତୀତର ବିଭାଜନ ପରବର୍ତ୍ତି ଐତିହାସିକ ପୃଷ୍ଠଭୂମିରେ ରୁଷୀୟ ଅର୍ଥନୀତିର ଏହା ଦ୍ୱିତୀୟ ମହାବୈପ୍ଳବିକ ପରିବର୍ତ୍ତନ ହେବ । ୧୯୯୦ ଦଶକର ଯନ୍ତ୍ରଣା ଜର୍ଜରିତ ଘନଘଟା ଓ ବିଶୃଙ୍ଖଳା ପରିସ୍ଥିତି ମଧ୍ୟ ଦେଇ ଗତି କରି ରୁଷିଆ କେନ୍ଦ୍ରୀୟ ଅର୍ଥନୈତିକ ଢାଞ୍ଚାରୁ ମୁକୁଳି ଏକ ବଜାର ଅର୍ଥନୈତିକ ଢାଞ୍ଚାକୁ ଆବୋରି ନେଲା ଏବଂ ଏହି ପରିବର୍ତ୍ତନର ମହାସ୍ରୋତରେ ରୁଷିଆ ତାର ଅର୍ଦ୍ଧେକ ଶିଳ୍ପ ଭିତ୍ତିଭୂମିକୁ ହରାଇ ବସିଲା । ମାତ୍ର ଏଇ ବିଗତ କିଛି ବର୍ଷ ମଧ୍ୟରେ ରୁଷିଆ ତାର ପୂର୍ବ ଗୌରବକୁ ପୁଣି ଫେରିପାଇଲା ଏବଂ ଏଥିପାଇଁ ବର୍ଦ୍ଧିତ ତୈଳଦର ଏବଂ ରାଷ୍ଟ୍ରପତି ଭ୍ଲାଡିମିର ପୁଟିନଙ୍କ ବଳିଷ୍ଠ ଏବଂ ସ୍ଥିର ନେତୃତ୍ୱ ଧନ୍ୟବାଦର ପାତ୍ର ।

ଆଜିର ବିଶ୍ୱ ପୃଷ୍ଠଭମିରେ ରୁଷିଆ ଏକ ସମୃଦ୍ଧଶୀଳ ଅର୍ଥନୈତିକ ରାଷ୍ଟ୍ରଭାବେ ମୁଣ୍ଡଟେକି ଠିଆ ହୋଇଛି ଏବଂ ଏକ ସ୍ଥିର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ୬ ରୁ ୭ ପ୍ରତିଶତ ମଧ୍ୟ ହାସଲ କରିପାରିଛି । ରାଷ୍ଟ୍ରର ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ (GDP) ୨୦୦ ବିଲିୟନ ଡଲାର୍‌ରୁ ୧.୨ ଟ୍ରିଲିୟନ ଡଲାରରେ ପହଞ୍ଚି ପାରିଛି ଏବଂ ଜନସାଧାରଣଙ୍କର ଜୀବନ ଧାରଣ ମାନରେ ମଧ୍ୟ ବେଶ ନାଟକୀୟ ଅଭିବୃଦ୍ଧି ହାସଲ କରାଯାଇ ପାରିଛି । ରୁଷୀୟ ନାଗରିକମାନେ ସେମାନଙ୍କର ୧୪୩ ମିଲିୟନ ଜନସଂଖ୍ୟା ପାଇଁ ଗତବର୍ଷେ ୧.୭୭ ମିଲିୟନ ନୂଆ ମୋଟର ଗାଡ଼ି କିଣିଥିଲାବେଳେ ଭାରତୀୟମାନେ ଗତବର୍ଷ

୧.୨ ମିଲିୟନ ମୋଟର ଗାଡ଼ି କିଣିଥିଲେ । ରୁଷିଆର ଜନସଂଖ୍ୟା ତୁଳନାରେ ସେମାନେ ବ୍ୟବହାର କରୁଥିବା ମୋବାଇଲ ଫୋନ୍‌ର ସଂଖ୍ୟା ବହୁ ଗୁଣ ଅଧିକ ।

ସମସ୍ୟାଟି ହେଲା ରୁଷୀୟ ଅର୍ଥନୀତି ଅତିମାତ୍ରାରେ ଶକ୍ତିର ନିଷ୍କାସନ ଏବଂ ଅନ୍ୟାନ୍ୟ ପ୍ରାକୃତିକ ସମ୍ପଦ ଉପରେ ବହୁଳ ଭାବେ ଆତ୍ମନିର୍ଭରଶୀଳ । ଗତବର୍ଷ କେବଳ ତୈଳ ଏବଂ ପ୍ରାକୃତିକ ବାଷ୍ପ ରୁଷିଆର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (GDP) ରେ ୪୦ ପ୍ରତିଶତ ଓ ରପ୍ତାନୀରେ ୭୦ ପ୍ରତିଶତ ଯୋଗଦାନ ଦେଇଥିଲା । ମାନୁଫ୍ୟାକ୍‌ଚରିଂ ଶିଳ୍ପ ସଂସ୍ଥାଗୁଡ଼ିକ ୧୯୯୦ ଦଶକର ଗଭୀର ସମସ୍ୟାରୁ ମୁକୁଳିବା ପାଇଁ ଏବେବି ଲଢ଼ିଚାଲିଛନ୍ତି ଏବଂ ଇଂଜିନିୟରିଂ ରପ୍ତାନୀ ରୁଷୀୟ ବାଣିଜ୍ୟ କାରବାରରେ ମାତ୍ର ୩ ପ୍ରତିଶତ ଯୋଗଦାନ ଦେବାରେ ସକ୍ଷମ ହୋଇପାରିଛି ।

ପରିସ୍ଥିତିରେ ନାଟକୀୟ ମୋଡ଼ ଆସିବ ସେତିକିବେଳେ ଯେତେବେଳେ ସରକାର ଜନସାଧାରଣଙ୍କ ସାମନାରେ ଅଭିବୃଦ୍ଧିର ଏକ ଲମ୍ବା ସଡ଼କଟିଏ ଉନ୍ମୋଚନ କରିଦେବେ । ଆଜିଠୁଁ ୧୫ ବର୍ଷ ପରେ ରୁଷିଆ ଅତ୍ୟନ୍ତ ଉଚ୍ଚମାନ ସମ୍ପନ୍ନ ପ୍ରଯୁକ୍ତିବିଦ୍ୟା ଧର୍ମୀ ଅର୍ଥନୀତି (ହାଇଟେକ ଇକୋନୋମି)ର ମାଲିକ ହେବ ଯାହାକି ରାଷ୍ଟ୍ରର ଚିରାଚରିତ ବଳିଷ୍ଠ ବିଜ୍ଞାନ ଓ ବୈଷୟିକ ଦକ୍ଷତା, ସୌର୍ଯ୍ୟଦୀପ୍ତ ଐତିହ୍ୟ ଓ ପ୍ରଚଣ୍ଡ ଗୁଣବତ୍ତା ସମ୍ପନ୍ନ ମାନବ ସମ୍ବଳ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ପରିଚାଳିତ ହେବ । ୨୦୦୭ ମସିହା ଜୁନ୍‌ମାସ ଶେଷ ସପ୍ତାହରେ "ରୁଷିଆର ଅର୍ଥନୈତିକ ଅଭିବୃଦ୍ଧି - ୨୦୨୦" ଉପରେ ଏକ ଚିଠା ଯୋଜନା ଉପସ୍ଥାପନା କରି ରୁଷୀୟ ସରକାର କହିଛନ୍ତି ଯେ – ରୁଷିଆକୁ ଏକ ବିଶ୍ୱ ଅର୍ଥନୈତିକ ମହାଶକ୍ତି ଭାବେ ଉଦ୍‌ଭାସିତ କରାଇବା ଆମର ପରମ ଲକ୍ଷ୍ୟ ହେବ ଯାହାକି ଶିଳ୍ପ ସମୃଦ୍ଧ ବିକଶିତ ରାଷ୍ଟ୍ରମାନଙ୍କ ସହ ରୁଷିଆକୁ ସମକକ୍ଷ ଭାବେ ଦଣ୍ଡାୟମାନ କରାଇ ପାରିବ । ରୁଷୀୟ ବିକାଶର ଏହି ସୁଦୂରପ୍ରସାରୀ ପରିକଳ୍ପନା ରାଷ୍ଟ୍ରର ଏକାଡେମିକ୍ ଏବଂ ଅର୍ଥନୈତିକ ସମ୍ପ୍ରଦାୟ ମଧ୍ୟରେ ହଲଚଲ୍ ସୃଷ୍ଟି କରିଦେଇଛି ।

ରୁଷିଆର ପ୍ରଥମ ଉପ ପ୍ରଧାନମନ୍ତ୍ରୀ ସର୍ଗେଇ ଇଭାନୋଭ (Sergei Ivanov) ଯେ କି ରୁଷିଆକୁ ଏକ ପ୍ରଯୁକ୍ତି ବିଦ୍ୟା ଧନ୍ୟ ମହାଶକ୍ତି ଭାବେ ଗଢ଼ିତୋଳିବାକୁ ପ୍ରଚଣ୍ଡ ଭାବେ ଦୃଢ଼ ପ୍ରତିଜ୍ଞ କୁହନ୍ତି ଯେ ରୁଷିଆର କେତେକ ଗୋଷ୍ଠୀ ରୁଷିଆ ସଦାସର୍ବଦା ତାର ନିଜସ୍ୱ ରାଷ୍ଟ୍ରୀୟ ସମ୍ପଦ ଉପରେ ନିର୍ଭରଶୀଳ ଅର୍ଥନୈତିକ ବ୍ୟବସ୍ଥାଧର୍ମୀ ରାଷ୍ଟ୍ରଟିଏ

ହୋଇ ରହିଥାଉ ବୋଲି ଚାହାଁନ୍ତି । କେତେକ ବିଶେଷଜ୍ଞ ଯୁକ୍ତି ବାଢ଼ିଥାନ୍ତି ଯେ ରୁଷିଆର ଅତ୍ୟନ୍ତ ସାଂଘାତିକ ଜଳବାୟୁ ପରିସ୍ଥିତି (ରୁଷିଆର ତିନିଭାଗରୁ ଦୁଇଭାଗ ସର୍ବଦା ବରଫାବୃତ)କୁ ଅଧ୍ୟୟନ କଲେ ଏହା ନିଶ୍ଚିତ ରୂପେ ବିଚାରଯୋଗ୍ୟ ହେବ ଯେ ରୁଷିଆ ମୁକ୍ତ ଅର୍ଥନୀତିର ଦୌଡ଼ରେ କେବେ ବି ପ୍ରତିଯୋଗିତାମୂଳକ ହୋଇପାରିବ ନାହିଁ । ତେଣୁ ରୁଷିଆ ତାର ବଜାରକୁ ବିଶ୍ୱବାସୀଙ୍କ ପାଇଁ ବନ୍ଦକରିଦେଉ ଏବଂ ନିଜର ରାଷ୍ଟ୍ରୀୟ ସମ୍ପଦ ଉପରେ ନିର୍ଭର କରି ଅଭିବୃଦ୍ଧିକୁ ପରିଚାଳିତ କରୁ । ଏହା ସତ ଯେ ୟୁରୋପ ଅପେକ୍ଷା ରୁଷିଆରେ ଉତ୍ପାଦନ ଖର୍ଚ୍ଚ ଅଢ଼େଇ ଗୁଣ ଅଧିକ ଏବଂ ଏକଟନ ତୈଳ ଉତ୍ପାଦନ ପାଇଁ ସାଇବେରିଆରେ ୧୪ ଡଲାର ପଡୁଥିଲା ବେଳେ କୁଏତ୍‌ରେ ମାତ୍ର ୪ ଡଲାର ପଡ଼ିଥାଏ ।

"ରାଷ୍ଟ୍ରୀୟ ସମ୍ପଦ ଉପରେ ନିର୍ଭରଶୀଳ ଅର୍ଥନୈତିକ ବ୍ୟବସ୍ଥା" ଚିନ୍ତାଧାରାର ବିରୋଧୀମାନେ କୁହନ୍ତି ଯେ ତାର କଠିନ ଜଳବାୟୁକୁ ଆଖିଆଗରେ ରଖି ରୁଷିଆ ଏକ ଜ୍ଞାନାଶ୍ରୟୀ ଅର୍ଥନୈତିକ ବ୍ୟବସ୍ଥାକୁ ଆଦରି ନେବା ହିଁ ଶ୍ରେୟସ୍କର ହେବ । ଏହି ନୂତନ ବ୍ୟବସ୍ଥାରେ ନିର୍ମାଣ ଓ ଜୀବନଧାରଣ ପାଇଁ ଆବଶ୍ୟକୀୟ ଖର୍ଚ୍ଚ ହାଇଟେକ୍ ଯନ୍ତ୍ରପାତିର ମୂଲ୍ୟ ଓ ଏହା ଉତ୍ପନ୍ନ କରୁଥିବା ବସ୍ତୁର ମୂଲ୍ୟ ତୁଳନାରେ ଅତ୍ୟନ୍ତ ସ୍ୱଳ୍ପ ହେବ ।

ରୁଷିଆର ଅଭିବୃଦ୍ଧିରେ ହାଇ-ଟେକ୍ ରାସ୍ତାର ଗୁରୁତ୍ୱକୁ ନେଇ ଯେଉଁମାନେ ଯୁକ୍ତି ବାଢ଼ିଥାନ୍ତି ସେମାନଙ୍କ ସହ ରାଷ୍ଟ୍ରପତି ପୁଟିନ୍ ସହମତ ପ୍ରକାଶ କରୁଛନ୍ତି । ଏବର୍ଷ "ଷ୍ଟେଟ-ଅଫ-ଦି-ନେସନ୍" (ରାଷ୍ଟ୍ରର ସାମ୍ପ୍ରତିକ ସ୍ଥିତି) ଉପରେ ଅଭିଭାଷଣ ପ୍ରଦାନ କରି ସେ ରୁଷୀୟ ନାଗରିକମାନଙ୍କୁ ଏକ ପ୍ରତିଯୋଗିତାମୂଳକ ବିଜ୍ଞାନଧର୍ମୀ ଅର୍ଥନୈତିକ ବ୍ୟବସ୍ଥାର ଗଠନ ପାଇଁ ବଜ୍ର ଆହ୍ୱାନ ଦେଇଥିଲେ । ନୂତନ ପ୍ରଯୁକ୍ତି ବିଦ୍ୟାକୁ ସାରଥିକରି ରାଷ୍ଟ୍ରର ନବନିର୍ମାଣ ଯଜ୍ଞ ଯଥାଶୀଘ୍ର ଆୟୋଜନ କରିବାକୁ ସେ ରୁଷର ବୁଦ୍ଧିଜୀବୀ ଓ ସାଧାରଣ ନାଗରିକମାନଙ୍କୁ ଆମନ୍ତ୍ରଣ କରିଥିଲେ । ରୁଷିଆର ପ୍ରାକୃତିକ ସମ୍ପଦ ଉପରେ ନିର୍ଭର କରି ଆଜିପର୍ଯ୍ୟନ୍ତ ଗତିକରି ଆସିଥିବା ରୁଷୀୟ ଅର୍ଥନୀତି ରାଷ୍ଟ୍ରକୁ ଆଶାନୁରୂପ ଅଭିବୃଦ୍ଧି ପ୍ରଦାନ କରି ପାରିନାହିଁ ବୋଲି ସେ ଗଭୀର କ୍ଷୋଭ ପ୍ରକାଶ କରିଥିଲେ ।

"ବିଜ୍ଞାନ ଦ୍ୱାରା ପରିଚାଳିତ ରାଷ୍ଟ୍ରୀୟ ଅର୍ଥନୈତିକ ବ୍ୟବସ୍ଥା"ର ପଥ ଆଦୌ ନିଷ୍କଣ୍ଟକ ନୁହେଁ ଏବଂ ନାନାବିଧ ପ୍ରତିବନ୍ଧକ ପ୍ରଗତିର ଯାତ୍ରା ପଥରେ ଅନ୍ତରାୟ

ସୃଷ୍ଟିକରିବା ନିଶ୍ଚିତ । ଏହାର ସ୍ପଷ୍ଟ ଉଦାହରଣ ଦେଇ ରୁଷୀୟ ବୁଦ୍ଧିଜୀବୀମାନେ କୁହନ୍ତି ଯେ ରୁଷିଆର କ୍ରମ ଅବକ୍ଷୟମାନ ଭିତ୍ତିଭୂମି, ଅମଲାତାନ୍ତ୍ରିକ ଅକ୍ଷମତା, ବହୁଳ ଭ୍ରଷ୍ଟାଚାର ଏବଂ ବ୍ରେନ୍ ଡ୍ରେନ୍ ଦ୍ୱାରା ସୃଷ୍ଟି ହୋଇଥିବା ଦକ୍ଷ ମାନବ ସମ୍ବଳର ପ୍ରଚଣ୍ଡ ଅଭାବ ତଥା ସର୍ବୋପରି ବ୍ରିୟୁକ୍ତ ଜନସଂଖ୍ୟା ଅଭିବୃଦ୍ଧି ହାର ରୁଷର ସାମଗ୍ରୀକ ବିକାଶରେ ଆଦୌ ସହାୟକ ହେବନାହିଁ । ପରନ୍ତୁ ରୁଷିଆର ଉପ ପ୍ରଧାନମନ୍ତ୍ରୀ ସର୍ଗେଇ ଇଭାନୋଭ ଯେ କି ରୁଷିଆର ନୂତନ ପ୍ରଯୁକ୍ତି ବିଦ୍ୟା ବିପ୍ଳବର ମୁଖ୍ୟ କର୍ଣ୍ଣଧାର ଭାବେ ରାଷ୍ଟ୍ରର ମଙ୍ଗ ପରିଚାଳିତ କରୁଛନ୍ତି ଏବଂ ଯେ କି ଆଗାମୀ ବର୍ଷ ରାଷ୍ଟ୍ରପତି ପୁଟିନ୍‌ଙ୍କ ପଦତ୍ୟାଗ ପରେ ରୁଷିଆର ରାଷ୍ଟ୍ରପତି ହେବା ନିଶ୍ଚିତ, ଗଭୀରଭାବେ ଆଶାବାଦୀ ଯେ ୨୦୨୦ ମସିହା ସୁଦ୍ଧା ରୁଷିଆ ବିଶ୍ୱର ୫ଟି ପ୍ରମୁଖ ଅର୍ଥନୈତିକ ସମୃଦ୍ଧ ରାଷ୍ଟ୍ରଙ୍କ ମଧ୍ୟରେ ନିଶ୍ଚିତ ରୂପେ ପରିଗଣିତ ହେବ ।

ରୁଷିଆ ଆଗାମୀ ୩ବର୍ଷ ମଧ୍ୟରେ ଶକ୍ତି ରପ୍ତାନୀରୁ ଉପଲବ୍ଧ ହେବାକୁ ଥିବା ତାର ରାଜସ୍ୱକୁ ଆଧାରକରି ୬୦ ବିଲିୟନ ଡଲାରର ଅର୍ଥରାଶି ଇନ୍ନୋଭେସନ୍ ଭିତ୍ତିକ ଅର୍ଥନୀତିର ବିକାଶ ପାଇଁ ବ୍ୟୟ କରିବ । ପାରମାଣବିକ ଶକ୍ତି, ବିମାନ ଚଳାଚଳ, ମହାକାଶ ଶିଳ୍ପ, ପାଣି ଜାହାଜର ନିର୍ମାଣ, ସଫ୍ଟୱେୟାର, ବାୟୋଟେକ୍ନୋଲୋଜି ଏବଂ ନାନୋ ଟେକ୍ନୋଲୋଜି ଆଦି ବିଶେଷ କ୍ଷେତ୍ରରେ ଦୀର୍ଘଦିନ ଧରି ପ୍ରଚଣ୍ଡ ଦକ୍ଷତା ହାସଲ କରିଥିବା ରୁଷିଆ ତାର ରାଷ୍ଟ୍ରୀୟ ନବ ନିର୍ମାଣରେ ଏହି ଅସାଧାରଣ ଜ୍ଞାନ କୌଶଳକୁ ପରି ପ୍ରୟୋଗ କରିବ ।

ବାଙ୍ଗାଲୋର ମଡେଲ୍ :

ରୁଷିଆ ସରକାର ଏକ ବିରାଟ ନେଟ୍‌ୱାର୍କ ମାଧ୍ୟମରେ ଦେଶସାରା ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ନାନାବିଧ କେନ୍ଦ୍ରମାନ ସ୍ଥାପନା କରିବା ପାଇଁ ଏକ ଅତି ସୁନ୍ଦର କର୍ମଯୋଜନା ହାତକୁ ନେଇଛନ୍ତି । ଭାରତବର୍ଷର ସିଲିକନ୍ ଭ୍ୟାଲି ବାଙ୍ଗାଲୋର୍ ଢାଞ୍ଚାରେ ରୁଷିଆରେ ଟେକ୍ନୋପାର୍କମାନ ସ୍ଥାପନା କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ରୁଷିଆର ରାଷ୍ଟ୍ରପତି ଭ୍ଲାଡିମିର ପୁଟିନ ନିକଟ ଅତୀତରେ ତାଙ୍କ ସହକର୍ମୀମାନଙ୍କ ସହ ବାଙ୍ଗାଲୋର ସହର ପରିଦର୍ଶନ କରି ଏହି ନବୀନତମ ଚିନ୍ତାଧାରା ଗ୍ରହଣ କରି ସେହି ଚିନ୍ତାଧାରାରେ ରୁଷିଆର ବୈଜ୍ଞାନିକ ଭାଗ୍ୟ ନିର୍ଣ୍ଣୟ କରିବାକୁ ଯୋଜନା ପ୍ରଣୟନ କରୁଛନ୍ତି । ବିଜ୍ଞାନ ଓ ଶିଳ୍ପ ମଧ୍ୟରେ ଏକ ଉତ୍ତମ ସମନ୍ୱୟ ଓ ଚିର ବନ୍ଧୁତ୍ୱ ସ୍ଥାପନା ପାଇଁ ପୁଟିନ ବଳିଷ୍ଠ ପଦକ୍ଷେପମାନ

ଗ୍ରହଣ କରୁଛନ୍ତି । ରୁଷିଆରେ ବିଜ୍ଞାନ ଓ ଶିଳ୍ପ ମଧ୍ୟରେ ଥିବା ସମ୍ପର୍କ ସମ୍ପର୍କ ବିହୀନ ସମ୍ପର୍କ କହିଲେ ଚଳେ ଏବଂ ଏହି ସମ୍ପର୍କକୁ ପ୍ରଚଣ୍ଡ ମଜବୁତ କରିବାପାଇଁ ଋଷ ଏବେ ଦୃଢ଼ ପ୍ରତିଜ୍ଞ । ସୋଭିଏତ୍ ୟୁନିଅନ୍‌ରେ ବିଜ୍ଞାନ ଓ ଶିଳ୍ପ ମଧ୍ୟରେ ଏକ ନୂତନ ଯୋଗସୂତ୍ର ସ୍ଥାପନା କରିବା ପାଇଁ ପୁଟିନ୍ ସରକାର ସମସ୍ତ ଆବଶ୍ୟକୀୟ କାର୍ଯ୍ୟପନ୍ଥା ହାତକୁ ନେବାପାଇଁ ସମ୍ପୂର୍ଣ୍ଣରୂପେ ସଂକଳ୍ପବଦ୍ଧ ।

ବିଶ୍ୱର ୧୦ଜଣ ବୈଜ୍ଞାନିକଙ୍କ ମଧ୍ୟରୁ ଏବେବି ଜଣେ ବୈଜ୍ଞାନିକ ରୁଷ ଦେଶର ବୈଜ୍ଞାନିକ ଅଟନ୍ତି ଏବଂ ସମଗ୍ର ବିଶ୍ୱର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ୫୦ଟି ଅତ୍ୟନ୍ତ ଜଟିଳ ପ୍ରକ୍ଷେତ୍ର ମଧ୍ୟରୁ ରୁଷିଆ ଏବେବି ୧୦ ରୁ ୧୫ଟି ଜଟିଳ ପ୍ରକ୍ଷେତ୍ରରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିପାରିଛି । ଏସବୁ ସତ୍ୱେ ବିଶ୍ୱର ହାଇ-ଟେକ୍ ଉତ୍ପାଦନ କ୍ଷେତ୍ରରେ ରୁଷିଆର ଯୋଗଦାନ ୧ ପ୍ରତିଶତରୁ ମଧ୍ୟ କମ ଅଟେ ।

ବିଶେଷ ଅର୍ଥନୈତିକ ଅଞ୍ଚଳର ମାନ୍ୟତା ଲାଭ କରି ୨୦୧୧ ମସିହା ସୁଦ୍ଧା ଏହି ଟେକ୍ନୋ-ପାର୍କ ଗୁଡ଼ିକ ହାଇ-ଟେକ ଉତ୍ପାଦନ ମାଧ୍ୟମରେ ୧୦୦ ବିଲିୟନ୍ ରୁବଲ୍ ବା ୪ ବିଲିୟନ୍ ଡଲାର ଅର୍ଥରାଶିରୁ ଅଧିକ ଅର୍ଥରାଶି ଅମଳ କରିବା ଉଚିତ୍ । ୨୦୨୦ ମସିହା ସୁଦ୍ଧା ହାଇ-ଟେକ୍ ସେକ୍ଟର ଗୁଡ଼ିକ ରୁଷିଆର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (GDP) ରେ ୧୭ ରୁ ୨୦ ପ୍ରତିଶତ ଯୋଗଦାନ ଦେବ ଯାହାକି ଆଜିର ପରିମାଣର ଦୁଇଗୁଣ ଅଟେ । ଅପରପକ୍ଷରେ ରୁଷିଆର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ କ୍ଷେତ୍ରରେ ତୈଳ ଓ ପ୍ରାକୃତିକ ବାଷ୍ପର ଯୋଗଦାନରେ ହ୍ରାସ ଘଟି ତାହା ୧୨ ପ୍ରତିଶତରୁ ତଳକୁ ଖସି ଆସିବ ।

ରୁଷ୍‌ର ଦେଶରକ୍ଷା ପ୍ରକ୍ଷେତ୍ର ଯାହାକି ଅତ୍ୟନ୍ତ ଉଚ୍ଚକୋଟୀର ପ୍ରଯୁକ୍ତିବିଦ୍ୟାର ଏକ ସମୃଦ୍ଧ ଗନ୍ତାଘର ବୋଲି ସର୍ବତ୍ର ପରିଗଣିତ ହୋଇଥାଏ ତାହା ରୁଷିଆର ନୂତନ ଉଦ୍‌ଭାବନଧର୍ମୀ ଅର୍ଥନୈତିକ ଧାରାକୁ ପ୍ରଖର ଭାବେ ତ୍ୱରାନ୍ୱିତ କରିବା ପାଇଁ ଉଚିତ୍ ମାର୍ଗଦର୍ଶନ କରିପାରିବ ବୋଲି ଆହ୍ୱାନ ଦିଆଯାଉଛି । ସୋଭିଏତ୍ ୟୁନିଅନରେ ବୈଜ୍ଞାନିକ ଉତ୍‌କର୍ଷତା ମୁଖ୍ୟତ ରାଷ୍ଟ୍ରର ଦେଶରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବାରେ ପ୍ରରିପ୍ରୟୋଗ ହୋଇଥାଏ ଏବଂ ସିଭିଲ ସେକ୍ଟର ଇଣ୍ଡଷ୍ଟ୍ରି ପାଇଁ ଏହାର ଅବଦାନ ଅତ୍ୟନ୍ତ ନଗଣ୍ୟ କହିଲେ ଚଳେ । ମିଷ୍ଟର ଇଭାନୋଭ ଯେ କି ଦେଶରକ୍ଷା ପ୍ରକ୍ଷେତ୍ରଗୁଡ଼ିକୁ ଅଭିଦର୍ଶନ କରିଥାନ୍ତି କୁହନ୍ତି ଯେ, ରୁଷୀୟ ଅର୍ଥନୀତି ପାଇଁ ଦେଶରକ୍ଷା ପ୍ରକ୍ଷେତ୍ରଗୁଡ଼ିକ ଲୋକୋମୋଟିଭ୍ ଭଳି ହେବା ନିତାନ୍ତ ଦରକାର ।

ରୁଷିଆର ଅତ୍ୟନ୍ତ ଉଚ୍ଚମାନଯୁକ୍ତ ଟେକ୍ନୋଲୋଜିକାଲ ପ୍ରଡକ୍ଟର ୭୦ ପ୍ରତିଶତ ଦେଶରକ୍ଷା ଶିଳ୍ପମାନଙ୍କରୁ ହିଁ ଉତ୍ପାଦିତ ହୋଇଥାଏ । ୨୦୧୫ ମସିହାସୁଦ୍ଧା ଦେଶରକ୍ଷା କଳକାରଖାନା ମାନଙ୍କରେ ସିଭିଲିଆନ୍ ପ୍ରଡକ୍ଟ ଗୁଡ଼ିକର ଉତ୍ପାଦନ ସାମ୍ପ୍ରତିକ ୩୦-୩୫ ପ୍ରତିଶତ ସ୍ତରରୁ ୭୦ ପ୍ରତିଶତର ଉର୍ଦ୍ଧ୍ୱକୁ ବୃଦ୍ଧି ଘଟିବ ।

ରୁଷିଆର ପୂର୍ବତନ ରାଷ୍ଟ୍ରପତି ବୋରିସ ଏଲ୍‌ସିନଙ୍କ ଦ୍ୱାରା ପ୍ରଚଳିତ ବହୁଳ ଘରୋଇକରଣ ଏବଂ ଶିଳ୍ପ ସମ୍ପତ୍ତିର ବିଭାଜନ ପ୍ରକ୍ରିୟାର ବିପରୀତମୁଖୀ ଯାତ୍ରାପଥକୁ ଗ୍ରହଣ କରିନେଇ ରୁଷିଆ ଉର୍ଦ୍ଧ୍ୱମୁଖୀ ଅଭିବୃଦ୍ଧିଧର୍ମୀ ସରକାରୀ କମ୍ପାନୀମାନ ପ୍ରତିଷ୍ଠା କରି ହାଇ-ଟେକ ଶିଳ୍ପ ସଂସ୍ଥାମାନ ସ୍ଥାପନା କରିବାରେ ଦ୍ରୁତ ଗତିରେ ଲାଗିପଡ଼ିଛି । ବେସାମରିକ ଉଡ଼ାଜାହାଜ ନିର୍ମାଣ, ଜଳଜାହାଜ ନିର୍ମାଣ ଓ ପାରମାଣବିକ ଶକ୍ତି ପ୍ରକଳ୍ପର ପ୍ରତିଷ୍ଠା ପାଇଁ ବିଶାଳ ସରକାରୀ ଉଦ୍ୟୋଗମାନ ନିକଟ ଅତୀତରେ ସ୍ଥାପନା କରାଯାଇଛି । ରୁଷୀୟ ସରକାର ଏଭଳି ପ୍ରାୟ ୩୦-୪୦ଟି ନ୍ୟାସନାଲ ଚାମ୍ପିଆନ୍ ପ୍ରତିଷ୍ଠାକରି ରୁଷିଆର ଅର୍ଥନୈତିକ ମାନଚିତ୍ରକୁ ଏକ ନବୀନତମ ରୂପବିନ୍ୟାସ ଦେବା ପାଇଁ ଲାଗି ପଡ଼ିଛନ୍ତି ।

ରୁଷିଆର ଏହି ନୂତନ ପ୍ରଯୁକ୍ତିବିଦ୍ୟା ଭିତ୍ତିକ ମହା ବିପ୍ଳବରେ ଘରୋଇ ବ୍ୟବସାୟୀକ ସଂସ୍ଥାମାନଙ୍କୁ ଆକୃଷ୍ଟ କରିବା ପାଇଁ ରୁଷୀୟ ସରକାର ହାଇ-ଟେକ୍ ଯନ୍ତ୍ରପାତିର ଆମଦାନୀ ଉପରୁ କଷ୍ଟମ ଡ୍ୟୁଟି ଉଠାଇ ଦେବା ସଂଗେ ସଂଗେ ଭେନଚର୍ ଫଣ୍ଡର ସ୍ଥାପନା କରି ଇନ୍ନୋଭେସନ୍ ଭିତ୍ତିକ କ୍ରିୟା କଳାପ ଉପରୁ ମଧ୍ୟ ଟିକସ ହ୍ରାସ କରିଦେଇଛନ୍ତି ।

ଅତ୍ୟାଧୁନିକ ପ୍ରଯୁକ୍ତିବିଦ୍ୟାକୁ ଆଧାର କରି ହାଇ-ଟେକ ଶିଳ୍ପ କ୍ଷେତ୍ରରେ ରୁଷିଆକୁ ଏକନମ୍ବର ରାଷ୍ଟ୍ରଭାବେ ବିଶ୍ୱବୁକୁରେ ଦଣ୍ଡାୟମାନ କରାଇବା ପାଇଁ ନାନୋ ଟେକ୍ନୋଲୋଜିକୁ ଏକ ଅମୋଘ ଅସ୍ତ୍ର ଭାବେ ପରିଗଣିତ କରାଯାଇଛି । ରାଷ୍ଟ୍ରପତି ପୁଟିନ କୁହନ୍ତି ଯେ, ୨୦୧୦ ମସିହା ପର୍ଯ୍ୟନ୍ତ ରୁଷୀୟ ସରକାର ବର୍ଷକୁ ୧ ବିଲିୟନ ଡଲାରରୁ ଉର୍ଦ୍ଧ୍ୱ ଅର୍ଥରାଶି, ଯାହାକି ତୈଳ ବିକ୍ରୀର ରାଜସ୍ୱରୁ ଉପଲବ୍ଧ ହୋଇଥାଏ, ନାନୋ ଟେକ୍ନୋଲୋଜିର ବିକାଶ କ୍ଷେତ୍ରରେ ବିନିଯୋଗ କରିବେ । ନୂତନ ବସ୍ତୁ ଓ ଡିଭାଇସ ମାନଙ୍କର ନିର୍ମାଣ ବିଜ୍ଞାନ ଯାହାକୁ କି ଆମେ ନାନୋ ଟେକ୍ନୋଲୋଜି ବୋଲି ଅଭିହିତ କରିଥାଉ ଏହା ଅଣୁକୁ ଇଟା ଭାବେ ବ୍ୟବହାର କରି ନାନାଦି କ୍ଷେତ୍ର

ମାନଙ୍କରେ ପରିପ୍ରୟୋଗ କରିଥାଏ । ଆଗାମୀ ଗୋଟିଏ ଦଶକ କିମ୍ବା ଦୁଇ ଦଶକ ମଧ୍ୟରେ ନାନୋ ଟେକ୍ନୋଲୋଜି ଏକ ଅସାଧାରଣ ବୈଜ୍ଞାନିକ ଓ ବୈଷୟିକ ବିପ୍ଳବ ମାଧ୍ୟମରେ ମାନବସଭ୍ୟତାର ଗତିପ୍ରଗତିକୁ ସମ୍ପୂର୍ଣ୍ଣରୂପେ ନିୟନ୍ତ୍ରଣ କରିବ । ମସ୍କୋରେ ଥିବା କୁର୍ଚାଟୋଭ ପାରମାଣବିକ ପ୍ରତିଷ୍ଠାନରେ ନିକଟ ଅତୀତରେ ଆୟୋଜିତ ହୋଇଥିବା ଏକ ବୈଜ୍ଞାନିକ ସଂଗୋଷ୍ଠୀକୁ ଉଦ୍‌ବୋଧନ ଦେଇ ଶ୍ରୀ ପୁଟିନ କୁହନ୍ତି ଯେ, ନାନୋ ଟେକ୍ନୋଲୋଜି ହେଉଛି ରୁଷିଆ ପାଇଁ ଏକ ବୈଜ୍ଞାନିକ ନବ ଦିଗନ୍ତ ଯେଉଁଥିପାଇଁ ରୁଷିଆ ଅଜସ୍ର ପୁଞ୍ଜି ବିନିଯୋଗ କରିବା ପାଇଁ ତିଳେମାତ୍ର ପଛଘୁଞ୍ଚା ଦେବନାହିଁ । ଏହି ପାରମାଣବିକ ପ୍ରତିଷ୍ଠାନ ସୋଭିଏତ୍ ପରମାଣୁ ବୋମା ବିକାଶରେ ଏକ୍ତୁତ୍ତିଶାଳ ଥିଲା ଏବଂ ଏବେ ନାନୋ ଟେକ୍ନୋଲୋଜିର ବିକାଶ ପାଇଁ ରୁଷିଆର ପ୍ରମୁଖ କେନ୍ଦ୍ରଭାବେ କାମ କରୁଛି । ରୋଷନା ନାନୋଟେକ୍ (Rosna Nano-Tech) ନାମକ ଏକ ନୂଆ ରାଷ୍ଟ୍ରୀୟ କର୍ପୋରେସନ୍‌ର ପ୍ରତିଷ୍ଠା ହେବାକୁ ଯାଉଛି ଯାହାକି ରୁଷିଆର ସମସ୍ତ ନାନୋ ଟେକ୍ନୋଲୋଜି ସଂକ୍ରାନ୍ତୀୟ ଗବେଷଣାକୁ କୋ-ଅର୍ଡିନେଟ୍ କରିବ । ସରକାର ମଧ୍ୟ ରୁଷିଆର ବିଭିନ୍ନ ଗବେଷଣା ପ୍ରତିଷ୍ଠାନକୁ ଆବଶ୍ୟକୀୟ ପୁଞ୍ଜିପ୍ରଦାନ କରିବେ ଯେଉଁ ଅନୁଷ୍ଠାନଗୁଡ଼ିକ ବିଭିନ୍ନ ବୈଜ୍ଞାନିକ ଯନ୍ତ୍ରପାତିରେ ସ୍ୱୟଂସମ୍ପୂର୍ଣ୍ଣ ଓ ଆତ୍ମନିର୍ଭରଶୀଳ ଥିବେ ।

ରୁଷିଆର ବିଜ୍ଞାନ ଓ ଶିକ୍ଷା ବିଭାଗର ମାନ୍ୟବର ମନ୍ତ୍ରୀ ମହୋଦୟ ଆଣ୍ଡ୍ରେଇ ଫୁରସେନ୍‌କୋ (Andrei Fursenko) କୁହନ୍ତି ଯେ, ୨୦୧୫ ମସିହା ସୁଦ୍ଧା ନାନୋ ଶିଳ୍ପ ସଂସ୍ଥାମାନଙ୍କରୁ ଏକ ଟ୍ରିଲିୟନ ରୁବେଲ ବା ୩୮ ବିଲିୟନ ଆମେରିକୀୟ ଡଲାରର ଅର୍ଥରାଶି ଆୟ ହେବ । ରୁଷ୍ ଓ ଭାରତ ମଧ୍ୟରେ ଥିବା ସୁଦୂର ପ୍ରସାରୀ ବୈଜ୍ଞାନିକ ବନ୍ଧନର ପରିସୀମାକୁ ଆଖି ଆଗରେ ରଖିଲେ ଜଣାଯାଏ ଯେ, ରୁଷର ଏହି ବିଶାଳ ହାଇ-ଟେକ୍ ପରିଯୋଜନାର ରୂପାୟନ କ୍ଷେତ୍ରରେ ଭାରତ ସର୍ବପ୍ରଥମେ ଅହେତୁକ ଆଗ୍ରହ ପ୍ରକାଶ କରିବା ଉଚିତ୍ । ଦ୍ୱିପାକ୍ଷିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଭିତ୍ତିକ ଦୀର୍ଘମିଆଦି କାର୍ଯ୍ୟକ୍ରମ ଜୁଲାଇ - ୨୦୦୭ରେ ତାର ୨୦ ବର୍ଷ ପୂର୍ତ୍ତି ପାଳନ କରୁଥିବା ଅବସରରେ ଉଭୟ ଦେଶର ବରିଷ୍ଠ ବୈଜ୍ଞାନିକମାନେ ଏକତ୍ର ମିଳିତ ହୋଇ ୫୦୦ଟି ଗବେଷଣା ପ୍ରକଳ୍ପର ଚୂଡ଼ାନ୍ତ ରୂପରେଖ ପ୍ରସ୍ତୁତ କରିଛନ୍ତି ଏବଂ ଅନ୍ୟ ୧୪୦ଟି ଗବେଷଣା ପ୍ରକଳ୍ପ ଉପରେ ମଧ୍ୟ ସମ୍ପ୍ରତି କାର୍ଯ୍ୟରତ ଅଛନ୍ତି ।

ରାଷ୍ଟ୍ରର ବହୁମୂଲ୍ୟ ବୈଜ୍ଞାନିକ ଜ୍ଞାନ, ଗାରିମା, ବୈଭବ ଓ ଐତିହ୍ୟର ବ୍ୟବସାୟୀକରଣ ଉପରେ ରୁଷିଆରେ ଏବେ ନୂତନ ଭାବେ ପ୍ରଦାନ କରାଯାଉଥିବା ପ୍ରଚଣ୍ଡ ଗୁରୁତ୍ୱ ଭାରତ ପାଇଁ ଏକ ଅପୂର୍ବ ସୁଯୋଗ ଓ ଯୁଗୋପଯୋଗୀ ଆହ୍ୱାନର ସିଂହଦ୍ୱାର ଉନ୍ମୋଚନ କରିଛି । ଭାରତପାଇଁ ଏହା ଏକ ସୁଯୋଗ ଓ ସମ୍ଭାବନା ଆଣିଦେଇଛି କାରଣ ବିଗତ ୬-୭ ବର୍ଷ ମଧ୍ୟରେ ILTP ଗୋଟିଏ ଦିଗରେ ହିଁ ଗତିକରି ଚାଲିଛି । ଏହା ମଧ୍ୟ ଏକ ବଡ଼ ଚ୍ୟାଲେଞ୍ଜ କାରଣ ରୁଷିଆର ଦ୍ରୁତ ଧାବମାନ ହାଇଟେକ୍ ମାର୍କେଟ୍‌ର ଏକ ସେୟାର ପାଇବା ପାଇଁ ଅଦମ୍ୟ ପ୍ରଚେଷ୍ଟା ଅପରିହାର୍ଯ୍ୟ । ରୁଷୀୟ ବୈଜ୍ଞାନିକମାନଙ୍କ ପାଖରେ ବ୍ୟବସାୟୀକ କଳାକୌଶଳର ସପ୍ତରଙ୍ଗୀ ଗୋଟି ଚଳେଇବା ପାଇଁ ଆବଶ୍ୟକୀୟ ପାରିବାର ପଣିଆରେ ପରିଦୃଷ୍ଟ ହେଉଥିବା ଭୟଙ୍କର ଅଭାବ ଖୁବ୍‌ଶୀଘ୍ର ଅତୀତର ଏକ କାହାଣୀ ମାତ୍ର ହୋଇ ରହିଯିବ । ରୁଷୀୟ ସରକାର ୧.୨ ବିଲିୟନ ଡଲାର ବ୍ୟୟରେ ଏକ ପ୍ରଯୁକ୍ତିବିଦ୍ୟା ପାଣ୍ଠି (Technology Fund)ର ସୃଷ୍ଟି କରିଛନ୍ତି ଯାହାକି ଭେନ୍‌ଚର କମ୍ପାନୀ ମାନଙ୍କୁ ସୁହାଇଲା ଭଳି ସହାୟତା ପ୍ରଦାନ କରିବ । ବୈଦେଶିକ ଭେନଚର ଫଣ୍ଡ ରୁଷିଆରେ ଧିରେ ଧିରେ କମି କମି ଚାଲିଛି । ଅପରନ୍ତୁ ଭାରତ-ରୁଷିଆ ଗବେଷଣା ପ୍ରକଳ୍ପ ଗୁଡ଼ିକର ବ୍ୟବସାୟୀକରଣ ପ୍ରକ୍ରିୟା ଏବେ ବଡ଼ ଧରଣର ରୂପରେଖ ନେବାପାଇଁ ଏବେବି ବାସ୍ତବତା ଠାରୁ ବହୁ ଦୂରରେ ଦଣ୍ଡାୟମାନ ।

ମସ୍କୋରେ ଭାରତ-ରୁଷିଆ ଟେକ୍ନୋଲୋଜି ସେଣ୍ଟରର ପ୍ରତିଷ୍ଠା ମାଧ୍ୟମରେ ଉଭୟ ଦେଶ ଏକତ୍ର ମିଳିମିଶି ସୃଷ୍ଟି କରୁଥିବା ପ୍ରଯୁକ୍ତିବିଦ୍ୟାର ବ୍ୟବସାୟୀକରଣ ପାଇଁ ବର୍ଷକତଳେ ନିଆଯାଇଥିବା ନିଷ୍ପତ୍ତି ଏବେ ବି ଯୋଜନାର ଶୀତଳ ଭଣ୍ଡାରରେ ପଡ଼ି ରହିଛି । ରୁଷିଆ ସହ ଭାରତ ତାର ବୈଜ୍ଞାନିକ କାର୍ଯ୍ୟକ୍ରମକୁ ଖାପଖୁଆଇ ନ ଚଳି ପାରିଲେ ଆଗାମୀକାଲିର ହାଇ-ଟେକ୍ ଯାତ୍ରାପଥରେ ଏହା ମସ୍ତବଡ଼ ବିଡ଼ମ୍ବନା ସୃଷ୍ଟି କରିବ ଏବଂ ଭାରତ ପ୍ରଗତିର ରେଳଗାଡ଼ିରେ ବସିବା ପାଇଁ ଭଲ ଆସନଟିଏ ଆଉ ପାଇପାରିବ ନାହିଁ ।



# ରୁଷୀୟ ମହିଳା ମହାକାଶ ଯାତ୍ରୀ ୟେଲିନା କୋଣ୍ଡାକୋଭା : ଏକ ପୁରୁଷ ପ୍ରାଧାନ୍ୟ ରଣକ୍ଷେତ୍ରରେ ବିଜୟୀନୀ ସାମ୍ରାଜ୍ଞୀ

ରୁଷ୍‌ର ସ୍ୱନାମଧନ୍ୟ ମହିୟସୀ ମହିଳା ଭ୍ୟାଲେଣ୍ଟିନା ତେରେସ୍‌କୋଭା ପୃଥିବୀର କକ୍ଷ ପଥରେ ତିନି ଦିନରୁ କିଛି କମ୍ ସମୟ ବିତାଇଥିଲାବେଳେ ଶ୍ୱେତଲାନା ସାଭିତସ୍କାୟା (Svetlana Savitskaya) ୧୯୮୨ ଓ ୧୯୮୪ ମସିହାରେ ମହାକାଶକୁ ଦୁଇଥର ଯାତ୍ରାକରି ସେଠାରେ ମୋଟ ୨୦ ଦିନ ସମୟ ବିତାଇଥିଲେ । ପରନ୍ତୁ ତା' ପରଠାରୁ ରୁଷ୍‌ର "ମିର୍ ଅର୍ବିଟର" ଏକ ପୁରୁଷ ପ୍ରାଧାନ୍ୟ ମହାକାଶଯାନ ଭାବେ ସାବ୍ୟସ୍ତ ହୋଇଯାଇଛି । ଏହାର ୧୦ବର୍ଷ ପରେ ରୁଷ୍‌ର ୟେଲିନା କୋଣ୍ଡାକୋଭା ମହାକାଶରେ ଦୀର୍ଘ ସମୟ ବିତାଇଥିବା ମହିୟସୀ ମହିଳା ଭାବେ ବିଶ୍ୱ ରେକର୍ଡ଼ ସୃଷ୍ଟିକଲେ ଏବଂ ଏ ଅଭୂତପୂର୍ବ ସଫଳତା ତାଙ୍କ ହାତମୁଠାରେ ଆସି ଧରାଦେଲା । ଏହାର ବର୍ଷକ ପରେ ୟେଲିନା ଆମେରିକାର ସ୍ପେଶ୍ ସଟଲ୍ "ଆଟଲାଣ୍ଟିସ"ର ଅନ୍ୟତମ ଯାତ୍ରୀ ଭାବେ ପୁଣି ମହାକାଶକୁ ଯାତ୍ରାକଲେ ଏବଂ ମିର୍ ଅର୍ବିଟାଲ ଷ୍ଟେସନରେ ନାନାଦି ଗବେଷଣା କର୍ମରେ ଲିପ୍ତ ହେଲେ ।

ୟେଲିନା କୋଣ୍ଡାକୋଭା ବହୁ କ୍ଷେତ୍ରରେ ପ୍ରଥମ ସ୍ଥାନ ଅଧିକାର କରିବାର ମହାନ ଗୌରବ ଅର୍ଜନ କରିଥିଲେ । ଫ୍ଲାଇଟ୍ ଇଞ୍ଜିନିୟର ଭାବେ ମହାକାଶଯାନର ବୈଷୟିକ ରକ୍ଷଣାବେକ୍ଷଣ ଓ ମରାମତି କାର୍ଯ୍ୟ କରିବା ଯାହାକି ଏକଦା ପୁରୁଷ ଇଞ୍ଜିନିୟରମାନଙ୍କ ପ୍ରାଧାନ୍ୟ କ୍ଷେତ୍ର ଭାବେ ସାବ୍ୟସ୍ତ ହୋଇ ଆସିଥିଲା ସେପରି କଷ୍ଟସାଧ କାମକୁ ମଧ୍ୟ ସୁରୁଖୁରୂପେ ସମ୍ପାଦନ କରିବାରେ ସେ ବିଶ୍ୱର ପ୍ରଥମ ମହିଳା ଭାବେ ନିଜର ଅପୂର୍ବ ଦକ୍ଷତା ପ୍ରତିପାଦନ କଲେ । ମହାକାଶରେ ଦୀର୍ଘକାଳ ଓଜନଶୂନ୍ୟ ଭାବେ ରହିବା ଫଳରେ ଜଣେ ମହିଳାଙ୍କ ବିଭିନ୍ନ ଶାରୀରିକ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ତାର କିପରି ପ୍ରଭାବ ପଡୁଛି ସେ ସମ୍ପର୍କରେ ଏକ ନୂତନ ଗବେଷଣା କାର୍ଯ୍ୟକ୍ରମ ହାତକୁ ନେବାରେ ସେ ମଧ୍ୟ ବିଶ୍ୱର ପ୍ରଥମ ମହିଳା ଥିଲେ । ଏବଂ ଶେଷରେ ସେ

ଥିଲେ ରୁଷ୍‌ର ପ୍ରଥମ ମହିଳା ମହାକାଶଯାତ୍ରୀ ଯେ କି, ଆମେରିକାର ସଟଲ ମହାକାଶ ଯାନରେ ମହାକାଶକୁ ଯାତ୍ରା କରିଥିଲେ ।

ଯେଲିନା କୋଣ୍ଡାକୋଭାଙ୍କ ଘର ହେଉଛି ମସ୍କୋ ନଗରୀର ନିକଟବର୍ତ୍ତୀ ସହର ମାଇଟିସ୍‌ଚି । ସେ ମସ୍କୋର ପ୍ରଖ୍ୟାତ ନିକୋଲାଇ ବଉମ୍ୟାନ ଏକାଡେମୀ ଅଫ୍ ଟେକ୍ନୋଲୋଜିରୁ ସ୍ନାତକ ଡିଗ୍ରୀ ଲାଭ କରିଛନ୍ତି ଯେଉଁ ପ୍ରତିଷ୍ଠାନ ରୁଷ୍‌ର ବହୁ ମହାକାଶ ଯାତ୍ରୀଙ୍କ ଶିକ୍ଷାନୁଷ୍ଠାନ ଭାବେ ଅଭିନବ ପ୍ରସିଦ୍ଧି ଲାଭ କରିଛି । ପ୍ରଥିତଯଶା ପ୍ରତିଷ୍ଠାନ ଏନର୍ଜିଆ ଗବେଷଣା ଓ ଉନ୍ନୟନ କର୍ପୋରେସନ୍‌ରେ ଯେଲିନା ଦୀର୍ଘ ୧୩ ବର୍ଷ କାଳ ଜଣେ ଇଂଜିନିୟର୍ ଭାବେ କାମ କରିବାର ବିରଳ ଅଭିଜ୍ଞତା ଅର୍ଜନ କରିଛନ୍ତି, ଯେଉଁ ପ୍ରତିଷ୍ଠାନରୁ କି ପ୍ରାୟ ସମସ୍ତ ସିଭିଲିଆନ୍ କସ୍‌ମୋନଟଙ୍କୁ ମନୋନୀତ କରି ଅଣା ଯାଇଥାଏ । ଯେଲିନା ଉଭୟ ପୃଥିବୀର କକ୍ଷପଥ ତଥା ପୃଥିବୀ ଗ୍ରହ ସହ ଜଡ଼ିତ ମହାକାଶ ପ୍ରଯୁକ୍ତି ବିଦ୍ୟା ଉପରେ ସ୍ୱତନ୍ତ୍ର ଦକ୍ଷତା ଅର୍ଜନ କରିପାରିଥିଲେ ଓ ଏ ସମ୍ବନ୍ଧୀୟ ଜ୍ଞାନ କୌଶଳ ଉପରେ ତାଙ୍କର ପାରଙ୍ଗମତାର କୌଣସି ପଟାନ୍ତର ନଥିଲା ।

ଏନର୍ଜିଆ ପ୍ରତିଷ୍ଠାନରେ ଯେଲିନାଙ୍କ ସ୍ୱାମୀ ତଥା ପୃଥିବୀର କକ୍ଷପଥରେ ପୃଥିବୀକୁ ପ୍ରଦକ୍ଷିଣ କରିବାର ବିଶେଷ କଳା କୌଶଳରେ ନିପୁଣତା ହାସଲ କରିଥିବା ଭାଲେରୀ ର୍‌ୟୁମିନ (Valery Ryumin) କାମ କରନ୍ତି । ସେ ୧୯୭୭, ୧୯୭୯ ଏବଂ ୧୯୮୦ ମସିହାରେ ତିନୋଟି ମିଶନରେ ଅର୍ବିଟର ମହାକାଶଯାନରେ ପୃଥିବୀର କକ୍ଷପଥର ଅତି ନିକଟରେ ପ୍ରଦକ୍ଷିଣ କରିବାରେ ୩୬୨ ଦିନ ବିତାଇଥିଲେ । ର୍‌ୟୁମିନ୍ ସମ୍ପ୍ରତି ଏନର୍ଜିଆ ଜେନେରାଲ ଡିଜାଇନରଙ୍କ ଡେପୁଟି ଭାବେ କାମ କରୁଛନ୍ତି ।

ଏନର୍ଜିଆ ପ୍ରତିଷ୍ଠାନରେ ଯେଲିନାଙ୍କ ସ୍ୱାମୀ ର୍‌ୟୁମିନଙ୍କ ଗୁରୁତ୍ୱପୂର୍ଣ୍ଣ ପଦବୀ ତଥା ଯେଲିନା ଓ ର୍‌ୟୁମିନ୍‌ଙ୍କ ଗୋଟିଏ ପ୍ରତିଷ୍ଠାନ ଏନର୍ଜିଆରେ କାମ କରିବା ଯେ କେହି ବ୍ୟକ୍ତିଙ୍କୁ ସନ୍ଦେହରେ ପକେଇପାରେ ଯେ ଯେଲିନା ତାଙ୍କ ସ୍ୱାମୀଙ୍କ ଗୁରୁତ୍ୱପୂର୍ଣ୍ଣ ପଦମର୍ଯ୍ୟାଦାର ଦୁରୁପଯୋଗ କରି ତାଙ୍କ ପ୍ରତିଯୋଗୀମାନଙ୍କୁ ପଛକୁ ଠେଲିଦେଇ ମହାକାଶଯାତ୍ରୀଙ୍କ ୟୁନିଟ୍ ମୁଖ୍ୟ ହେବାର ବିରଳ ସୌଭାଗ୍ୟ ଅର୍ଜନ କରିବାରେ ସଫଳ ହୋଇଛନ୍ତି ଓ ପାରିବାରିକ ସୁରକ୍ଷା ଲାଭ କରି ସେ ତାଙ୍କ ଜୀବନ ଯାତ୍ରାର ସିଡ଼ି

ଫଳକରେ ଉତ୍ତରୋତ୍ତର ଅଭିବୃଦ୍ଧି ହାସଲ କରିପାରିଛନ୍ତି । କିନ୍ତୁ କୌଣସି ଜ୍ଞାନୀ ଅବା ଅନ୍ତରୀକ୍ଷ ବିଶେଷଜ୍ଞ ୟେଲିନାଙ୍କ ବୃତ୍ତିଗତ ସାଫଲ୍ୟ ଏବଂ ଅଦମ୍ୟ ଆଗ୍ରହ ଓ ନିଷ୍ଠା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବାକୁ ନିଶ୍ଚିତ ରୂପେ ପଶ୍ଚାଦ୍‌ପଦ ହେବେ । ଅପରପକ୍ଷରେ ସମସ୍ତେ ଏକସ୍ୱରରେ ସ୍ୱୀକାର କରିଥାନ୍ତି ଯେ, ୟେଲିନା ଜଣେ ମହାକାଶଯାତ୍ରୀ ହୋଇପାରିଛନ୍ତି ତାଙ୍କ କାର୍ଯ୍ୟଦକ୍ଷତା ଓ ମହତ୍ ଉଦ୍ଦେଶ୍ୟର ପରମ ମହନୀୟତା ପାଇଁ । ସେ ୫ ବର୍ଷରୁ ଊର୍ଦ୍ଧ୍ୱ ସମୟ ଟ୍ରେନିଂ, ଶିକ୍ଷାଲାଭ, କଠିନ ପରିଶ୍ରମ ଓ ଅଧ୍ୟବସାୟ ମଧ୍ୟରେ ବିତାଇଥିଲେ । ସର୍ବୋପରି ତାଙ୍କର ଆଶାତୀତ ଉଦ୍ଦାମତା ଓ ପ୍ରଚଣ୍ଡ କର୍ମଦକ୍ଷତା, ଯାହାକୁ ଦେଖି ଅନ୍ୟ ଯେ କେହି ବି ଈର୍ଷା କରିବେ, ତାଙ୍କ ସଫଳତାର ସପକ୍ଷରେ ହିଁ ଯାଇଥିଲା ।

ଏନର୍ଜିଆ ପ୍ରତିଷ୍ଠାନର କର୍ମକର୍ତ୍ତାମାନେ ୟେଲିନା କୋଣ୍ଡାକୋଭାଙ୍କୁ ଜଣେ ଅତ୍ୟନ୍ତ ଧୁରୀଣ କର୍ମପ୍ରେମୀ ମହିୟସୀ ମହିଳା, ପ୍ରଚଣ୍ଡ ଦକ୍ଷତା ସମ୍ପନ୍ନ ଇଞ୍ଜିନିୟର୍ ତଥା ବ୍ୟକ୍ତିଗତ ଭାବେ ମହାକାଶଯାନର ଅପରେସନ୍ ଏବଂ ପରୀକ୍ଷା ନିରୀକ୍ଷା କରିପାରୁଥିବା ଅଭୂତପୂର୍ବ ମହିଳା ମହାକାଶଯାତ୍ରୀର ମାନ୍ୟତା ପ୍ରଦାନ କରିଥାନ୍ତି । ମହାକାଶଯାତ୍ରା ସମ୍ବନ୍ଧୀୟ ସମସ୍ତ ପରୀକ୍ଷା ନିରୀକ୍ଷାର ଫଳାଫଳ ୟେଲିନାଙ୍କୁ ଯେକୌଣସି ପୁରୁଷ ମହାକାଶଯାତ୍ରୀଙ୍କ ସହ ସମକକ୍ଷ କରାଇ ପାରିଥିଲା । ଗୋଟିଏ ମାତ୍ର କାରଣ ଯେଉଁଥିପାଇଁ କି ନିକିତି ତାଙ୍କ ପଟକୁ ଢଳୁ ନଥିଲା ତା ଥିଲା ମହାକାଶ ଯାତ୍ରା କ୍ଷେତ୍ରରେ ତାଙ୍କର କୌଣସି ପୂର୍ବ ଅନୁଭୂତି ନଥିଲା । ପରନ୍ତୁ ଏପରି ଅଭିଜ୍ଞତା ହାସଲ କରିବା ସମୟର ଏକ ଖେଳ ଓ ସମୟର ପ୍ରବାହ ସହ ତାହା ହାତମୁଠାକୁ ଧିରେ ଧିରେ ଆସିଥାଏ ।

ୟେଲିନାଙ୍କ ସମ୍ପର୍କରେ ୟେଲିନାଙ୍କ କ୍ରିୟୁ କମାଣ୍ଡର ଆଲେକ୍‌ଜାଣ୍ଡାର ଭିକ୍ଟୋରେଙ୍କୋ (Alexander Viktorenko) କୁହନ୍ତି ଯେ, - ଅତ୍ୟନ୍ତ କଠିନରୁ କଠିନତମ କାମ କରିବା କ୍ଷେତ୍ରରେ ୟେଲିନାଙ୍କୁ ସମ୍ପୂର୍ଣ୍ଣ ରୂପେ ବିଶ୍ୱାସ କରାଯାଇପାରେ । ଇଞ୍ଜିନିୟରଙ୍କ କ୍ରିୟା କଳାପ କ୍ଷେତ୍ରରେ ସେ ଅତ୍ୟନ୍ତ ପ୍ରାକୃତିକ ଭାବେ କାମ କରିଥାନ୍ତି ଏବଂ ସବୁ କାମକୁ ହାତରେ ଲୁହାର ହାତୁଡ଼ି ଧରିଲା ପରି ସମ୍ପାଦନ କରିଥାନ୍ତି । ଏହା

ହିଁ ତାଙ୍କ ଚରିତ୍ରର ଏକ ଆକର୍ଷଣୀୟ ଏବଂ ବିଶେଷଦିଗ । ସେ ଯେତେବେଳେ ଏକ ମୋଟରଗାଡ଼ି ଚଳାଉଥାନ୍ତି ସେ ଦୃଶ୍ୟ ଆପଣ ନିହାତି ଦେଖିବାର କଥା । ବିଶେଷତଃ ମହାକାଶରେ ଜଣେ ମହିଳା ସହଯୋଗୀଙ୍କୁ ନେଇ ଯାତ୍ରା କରିବା ଏକ ସହଜସାଧ୍ୟ ବ୍ୟାପାର ନୁହେଁ ଯେତେବେଳେ କି ସେ ମହିଳା ଜଣଙ୍କ ୟେଲିନାଙ୍କ ପରି ଜଣେ ଅତ୍ୟନ୍ତ ପ୍ରଚଣ୍ଡ ଇଚ୍ଛାଶକ୍ତି ସମ୍ପନ୍ନ ଅଦମ୍ୟ ମହିୟସୀ ମହିଳା ହୋଇଥିବେ ।

ଏହା କିନ୍ତୁ ପରମ ସତ୍ୟ ଯେ, ପ୍ରଚଣ୍ଡ ଇଚ୍ଛାଶକ୍ତି ହିଁ ମହାକାଶ ଯାତ୍ରା ପଥର ସମସ୍ତ ଘାତ ପ୍ରତିଘାତ ଓ ବାଧା ବନ୍ଧନକୁ ଅତିକ୍ରମ କରିବାରେ ସହାୟକ ହୋଇଥାଏ ଯାହାକି ୟେଲିନାଙ୍କ କ୍ଷେତ୍ରରେ ସମ୍ଭବପର ହୋଇଥିଲା । ମହାକାଶ ଯାତ୍ରା ପାଇଁ ରୁଷ୍‌ର କଡ଼ା ସ୍ୱାସ୍ଥ୍ୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର ଓ ଏଥିପାଇଁ କୌଣସି ମହାକାଶଯାତ୍ରୀଙ୍କର କୌଣସି ସମ୍ପର୍କୀୟଙ୍କର କୌଣସି ପ୍ରଭାବ ଆଦୌ କାମ କରିବ ନାହିଁ । ବିଦେଶର ମହାକାଶଯାତ୍ରୀମାନେ କହିଥାନ୍ତି ଯେ ରୁଷ୍‌ର ଏହି କଡ଼ା ସ୍ୱାସ୍ଥ୍ୟପରୀକ୍ଷା ଆମେରିକୀୟ ସ୍ୱାସ୍ଥ୍ୟ ପରୀକ୍ଷାଠାରୁ କାହିଁ କେତେ ଗୁଣ ଆବଶ୍ୟକଧର୍ମୀ ଓ କଷ୍ଟସାଧ୍ୟ ।

ୟେଲିନା ସ୍ମୃତିଚାରଣ କରି କୁହନ୍ତି ଯେ, ତାଙ୍କ ସ୍ୱାମୀ ଭାଲେରୀ ୟୁମିନ୍ ତାଙ୍କୁ ମହାକାଶଯାତ୍ରା ପୂର୍ବରୁ କଷ୍ଟସାଧ୍ୟ ପ୍ରଶିକ୍ଷଣ ପ୍ରଦାନ କରିଥିଲେ ଓ ପରବର୍ତ୍ତୀ ମହାକାଶଯାତ୍ରା ସମୟରେ ପ୍ରଶିକ୍ଷଣଲବ୍ଧ ଜ୍ଞାନ କୌଶଳର ବ୍ୟବହାର କ୍ଷେତ୍ରରେ ମଧ୍ୟ ତାଙ୍କର ସମସ୍ତ ସହାୟକ ହୋଇଥିଲେ । ତା ସତ୍ତ୍ୱେ ମଧ୍ୟ ସେ ଜଣେ ମହାକାଶଯାତ୍ରୀ ହେବାରୁ ବଞ୍ଚିତ ହୋଇଥିଲେ । ଯଦିଓ ସେ ୧୯୮୯ ମସିହାରେ କମ୍ପୋନେଟ ୟୁନିଟ୍‌ର ଜଣେ ସଦସ୍ୟ ହେବାରେ ସମର୍ଥ ହୋଇଥିଲେ ଏବଂ ୟୁମିନ୍ ଏହି ଚିନ୍ତାଧାରାର ପ୍ରବର୍ତ୍ତକ ଥିଲେ ତଥାପି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ୟୁମିନ୍ ସନ୍ଦେହରେ ଥିଲେ ଯେ ତାଙ୍କ ସ୍ତ୍ରୀ ଏହି ୟୁନିଟ୍‌ର ସଦସ୍ୟ ହୋଇପାରିବେ ନା ନାହିଁ ?

ୟେଲିନା କଥା କହିବାର କଳାରେ ଅତ୍ୟନ୍ତ ଧୁରୀଣ ଥିଲେ ଓ ଏ ନେଇ ତାଙ୍କ ଜିଭଟି ମଧ୍ୟ ଭାରୀ ଦାଢୁଆ ଥିଲା । ସେ ମଧ୍ୟ ବେଶ୍ ମଜାଳିଆ ପ୍ରକୃତିର ମହିଳା ଥିଲେ । ହସେଇ, ରସେଇ ମଜାଳିଆ କଥା କହିବାର କଳା ତାଙ୍କ ଚରିତ୍ରର ଏକ ଅତି

ସୁନ୍ଦର ଗୁଣ ଥିଲା । ମହାକାଶଯାତ୍ରା ପୂର୍ବରୁ ଆୟୋଜିତ ହୋଇଥିବା ଏକ ସାମ୍ବାଦିକ ସମ୍ମିଳନୀରେ ସେ ହସି ହସି ଏକ ଇଚ୍ଛୁକ ସାମ୍ବାଦିକଙ୍କୁ କହିଥିଲେ ଯେ, ସେ ପୃଥିବୀର କୌଣସି କକ୍ଷପଥକୁ ବି ପରିକ୍ରମା ନକରି ଛାଡ଼ିବେ ନାହିଁ । ୟେଲିନା ତାଙ୍କର ସହ-ମହାକାଶଯାତ୍ରୀ ଭିକ୍ଟୋରେନ୍‌କୋ ଯେ କି ତା ଆଗକୁ ତିନିଥର ମହାକାଶ ଯାତ୍ରା କରିଛନ୍ତି ତାଙ୍କ ଉଦ୍ଦେଶ୍ୟରେ ଏକ ହାଲୁକା ମଜାଦାର କଥା ଉଚ୍ଚା ଉଚ୍ଚାରଣ କରି କୁହନ୍ତି ଯେ, – "ଆପଣ ବିଶ୍ୱାସ କରନ୍ତୁ ଆମେ ଦୁଇଜଣ ଏପରି ଏକ ଉତ୍ତମ ଯୋଡ଼ି ଯେ, ମହାକାଶ ଯାତ୍ରା ସମୟରେ ଆମ ମଧ୍ୟରେ ସେପରି କୌଣସି ଆଶା କରାଯାଉନଥିବା ଭାବ ବିହ୍ୱଳପୂର୍ଣ୍ଣ ସମ୍ପର୍କ ଗଢ଼ି ଉଠିବ ନାହିଁ ।"

ୟେଲିନାଙ୍କ ଚରିତ୍ର ଏପରି ଏକ ସୁନ୍ଦର, ସାବଲିଳ ଓ ମଧୁରିମାପୂର୍ଣ୍ଣ ଥିଲା ଯେ ସେ ପାରିବାରିକ ଓ ସାମାଜିକ ସମ୍ପର୍କର ବନ୍ଧନ ମଧ୍ୟରେ ସମସ୍ତଙ୍କୁ ବାନ୍ଧି ଦେବାକୁ ଚାହୁଁଥିଲେ । ତାଙ୍କ ସହ ଯେ କେହି ଲୋକ ସହଜରେ ଯୋଗସୂତ୍ର ସ୍ଥାପନା କରିପାରିବେ । ଅଖଣ୍ଡ ଧୈର୍ଯ୍ୟ ଓ ଅସୁମାରୀ ସ୍ୱପ୍ନର ଗନ୍ତାଘର ହେଉଛନ୍ତି ୟେଲିନା । ସେ ଯେତେ ଲୋକଙ୍କ ସଂସ୍ପର୍ଶରେ ଆସିଲେ ମଧ୍ୟ ନିଜର ମର୍ଯ୍ୟାଦା ରକ୍ଷା କରି ସମସ୍ତଙ୍କ ସାଙ୍ଗରେ ବନ୍ଧୁତ୍ୱ ବଜାୟ ରଖିଥାନ୍ତି । ତାଙ୍କର ଏହି ଅପୂର୍ବ ଯୋଗ୍ୟତା ମାନସିକ ସ୍ତରରେ ତାଙ୍କୁ ତାଙ୍କର ସହ-ମହାକାଶଯାତ୍ରୀଙ୍କ ସହ ଉତ୍ତମ ବୁଝାମଣା ବଜାୟ ରଖିବାରେ ଅତ୍ୟନ୍ତ ସହାୟକ ହୋଇଥାଏ ।

ଏକ ମହିଳା ମହାକାଶଯାତ୍ରୀଙ୍କ ଜୀବନରକ୍ଷାକାରୀ ବ୍ୟବସ୍ଥା (Life Support System) ପାଇଁ ଏକାଧିକ ନୂତନ ପ୍ରଣାଳୀର ବନ୍ଦୋବସ୍ତ କରିବା ଆବଶ୍ୟକ ପଡ଼ିଥାଏ । ମହାକାଶଯାନ ମଧ୍ୟରେ ଥିବା ତିନି ମିଟର ଚଉଡ଼ା ଓ ଆଠମିଟର ଲମ୍ବ ବିଶିଷ୍ଟ ଏକ କୋଠରୀ ମଧ୍ୟରେ ଏକାଧିକ ପୁରୁଷ ମହାକାଶଯାତ୍ରୀଙ୍କ ସହ ଏକାଧିକ୍ରମେ ଜଣେ ମହିଳା ମହାକାଶଯାତ୍ରୀ ଛଅମାସ ସମୟ ବିତାଇବା  ନିଶ୍ଚିତ ରୂପେ ଏକ ଜଟିଳ ପ୍ରଶ୍ନ । ଦୁଇବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ମିର ଅର୍ବିଟରର ମହାକାଶଯାତ୍ରୀମାନେ ବିନା ଗାଧୁଆରେ ସମୟ ବିତାଇଥିଲେ । ପୁନଶ୍ଚ ପାଣି ସଂଗ୍ରହ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର ଥିଲା ଏବଂ ମହାକାଶଯାନର କାନ୍ଥ ଓ ବିଭିନ୍ନ ଯନ୍ତ୍ରପାତି ଦେହରେ ଏହା

ପ୍ରେସିପିଟେଟ୍ କରିଯାଉଥିଲା । ପୁରୁଷ ମହାକାଶଯାତ୍ରୀମାନେ ସେମାନଙ୍କର ଦେହ, ହାତ, ମୁହଁ ଆଦି ପୋଛି ହେବା ପାଇଁ ଏକ ଓଦା ଟାଓ୍ୱେଲ୍‌ର ବ୍ୟବହାର କରିଥାନ୍ତି । ପରନ୍ତୁ ଜଣେ ମହିଳାଙ୍କ ପାଇଁ ନିତାନ୍ତ ରୂପେ ଜଳ ଓ କିଛି ଔଷଧପତ୍ରର ଆବଶ୍ୟକତା ରହିଛି ଏବଂ ୟେଲିନାଙ୍କ କ୍ଷେତ୍ରରେ ତାଙ୍କର ଦୈନିକ କିଛିମାତ୍ରାରେ ଗରମ ପାଣିର ମଧ୍ୟ ନିତାନ୍ତ ଆବଶ୍ୟକତା ରହିଛି ।

ସପ୍ତାହରେ ଥରେ ମିର ଅର୍ବିଟରର ସମସ୍ତ ମହାକାଶଚାରୀ ଏକ ଶୁଷ୍କ ସଉନାସ୍ନାନ (Dry Sauna Bath) ନେଇଥାଆନ୍ତି ଯାହାକି ରୁଷୀୟ ଜ୍ଞାନ କୌଶଳ ଉପରେ ଆଧାରିତ ଏକ ଅତ୍ୟନ୍ତ ବ୍ୟୟ ବହୁଳ ସ୍ନାନ ବ୍ୟବସ୍ଥା ଅଟେ । ଏକ ବିଶେଷ କୋଠରୀରେ ଶୁଷ୍କ ବାୟୁକୁ ୫୦° ସେଲସିୟସ୍ ତାପମାତ୍ରାରେ ଗରମ କରାଯାଏ । ଏକ ମାନବ ଶରୀର ୧୦ ମିନିଟ୍ ସମୟ ନେଇଥାଏ ଗରମ ହେବା ପାଇଁ, ୧୦ ମିନିଟ୍ ସମୟ ନେଇଥାଏ ଝାଳ ବାହାରିବା ଆରମ୍ଭ ହେବା ପାଇଁ ଓ ଆଉ ୧୦ ମିନିଟ୍ ସମୟ ନେଇଥାଏ ସମ୍ପୂର୍ଣ୍ଣ ରୂପେ ଝାଳ ବାହାରିବା ପାଇଁ । ଏହା ଉଭୟ ପୁରୁଷ ଓ ମହିଳାଙ୍କ ଶରୀର ପାଇଁ ପ୍ରଯୁଜ୍ୟ । ୟେଲିନା ସଉନା ବାଥ ପାଇଁ ଓ୍ୱାନ୍ ପିସ୍ ବାଦିଂ ସୁଟ ବ୍ୟବହାର କରିଥାନ୍ତି ଏବଂ ମଜାରେ ତାଙ୍କ ସହ-ମହାକାଶଯାତ୍ରୀମାନଙ୍କୁ କହିଥାନ୍ତି ଯେ, ମହାକାଶଯାତ୍ରାର ଆୟୋଜକମାନେ ତାଙ୍କ ଗାଧୋଇବା ପୋଷାକର ଡିଜାଇନ ଓ ରଙ୍ଗ ବିଷୟରେ ତାଙ୍କୁ ଆଗରୁ ପଚାରି ବୁଝିଥିଲେ ଭଲ ହୋଇଥାଆନ୍ତା ।

ଏକ ଅତ୍ୟନ୍ତ ସୂକ୍ଷ୍ମ ଏବଂ ଧରାବନ୍ଧା ପ୍ରଶ୍ନଟି ହେଲା ମହାକାଶ ଯାତ୍ରା ସମୟରେ ଶୌଚଗାରର ବ୍ୟବହାର ସମ୍ପର୍କରେ । ଭ୍ୟାକୁମ୍ କ୍ଲିନର୍ ନୀତି ନିୟମ ଉପରେ ପର୍ଯ୍ୟବେସିତ ଥିବା ଗୋଟିଏ ମାତ୍ର ଶୌଚଗାର ପାଇଁ ମିର ଅର୍ବିଟର ମହାକାଶଯାନରେ ବ୍ୟବସ୍ଥା ଅଛି । ମୁଖ୍ୟ କୋଠରୀରୁ ଏହା ଏକ ପରଦା ଦ୍ୱାରା ଅଲଗା ହୋଇଥାଏ । ୟେଲିନା ଏଭଳି ବ୍ୟବସ୍ଥା ସହ ଧିରେ ଧିରେ ପରିଚିତ ହୋଇଗଲେ ଏବଂ ସେ ତାଙ୍କର ପ୍ରାକୃତିକ ମର୍ଯ୍ୟାଦା ଉପରେ ନିୟନ୍ତ୍ରଣ ରକ୍ଷା କରିବାରେ ମଧ୍ୟ ସମର୍ଥ ହେଲେ ।

ମିର ଅର୍ବିଟର ମହାକାଶଯାନ ବ୍ୟବସ୍ଥାରେ ଶକ୍ତି ବ୍ୟବସ୍ଥା ଅତି ସୁଚାରୁରୂପେ ନିୟନ୍ତ୍ରିତ ହୋଇଥାଏ । ପାଓ୍ୱାର ଲାଇନ୍‌ରୁ ପ୍ରାୟତଃ ପୃଥକ ହୋଇଥିବା ଏବଂ ଟ୍ରାନ୍ସପୋର୍ଟ

ମଡ୍ୟୁଲ୍ ମଧ୍ୟରେ ଥିବା ଅନ୍ୟ ଏକ ଶୌଚାଗାରର ବ୍ୟବହାର ଯେଲିନା ତାଙ୍କର ମାସିକ ଋତୁସ୍ରାବ ଦିନ ଗୁଡ଼ିକରେ ହିଁ ବ୍ୟବହାର କରୁଥିଲେ । ଫଳତଃ ଏଥିପାଇଁ ବ୍ୟବହୃତ ହେଉଥିବା ଅତିରିକ୍ତ ଶକ୍ତି ମହାକାଶଯାନଟିର ପୃଥିବୀକୁ ପ୍ରତ୍ୟାବର୍ତ୍ତନ ପାଇଁ ଆବଶ୍ୟକ ହେଉଥିବା କ୍ଷମତାରେ କୌଣସି ପ୍ରଭାବ ପକାଇନଥାଏ ।

ଗୋଟାଏ ନିର୍ଦ୍ଦିଷ୍ଟ ବିଶେଷତ୍ୱ ମହିଳାମାନଙ୍କ ପାଖରେ ପ୍ରାୟ ଦୃଷ୍ଟିଗୋଚର ହୋଇଥାଏ । ତାହା ହେଲା ଶରୀର ସୌନ୍ଦର୍ଯ୍ୟ ବର୍ଦ୍ଧକ ଦ୍ରବ୍ୟ ବା କସ୍‌ମେଟିକ୍‌ର ବ୍ୟବହାର । ମହାକାଶଯାତ୍ରୀମାନେ ବିଭିନ୍ନ କ୍ରିମ୍ ଓ ଲୋସନ୍ ଏଥିପାଇଁ ବ୍ୟବହାର କରିଥାନ୍ତି । ପରନ୍ତୁ ଯେଲିନା କୋଣ୍ଡାକୋଭା ନିଜ ସାଙ୍ଗରେ କିଛି କସ୍‌ମେଟିକ୍ ନେଇଥାନ୍ତି ଯଦିଓ ତାହା ଖୁବ୍ କମ୍ କମ୍ ମାତ୍ରାର ଏବଂ ସମୟ ଅନୁଯାୟୀ ସେ ସେଗୁଡ଼ିକର ସଦୁପଯୋଗ କରିଥାନ୍ତି । କାରଣ କୌଣସି ମହିଳା ବିଶେଷତଃ ଜଣେ ସୁନ୍ଦରୀ ମହିଳା କସ୍‌ମେଟିକ୍ ବ୍ୟବହାର ବିନା ପ୍ରସାଧନ କରିବା ସମ୍ଭବତଃ ଅସମ୍ଭବ ବ୍ୟାପାର ଅଟେ, ତାହା ପୃଥିବୀ ହେଉ କି ମହାକାଶ ହେଉ !



# ସୋଭିଏତ୍ ମହାକାଶ କାର୍ଯ୍ୟକ୍ରମର ଭୀଷ୍ମ ପିତାମହ – ସର୍ଗେ କୋରୋଲେଭ୍

ମହାକାଶକୁ ବିଶ୍ୱର ପ୍ରଥମ ଉପଗ୍ରହ ପ୍ରେରଣ, ମହାକାଶକୁ ବିଶ୍ୱର ପ୍ରଥମ ଜୀବନ୍ତ ପ୍ରାଣୀର ଯାତ୍ରା, ପୃଥିବୀର କକ୍ଷପଥରେ ପହଞ୍ଚିଥିବା ବିଶ୍ୱର ପ୍ରଥମ ମନୁଷ୍ୟ, ମହାକାଶଯାନର ବାହାରକୁ ଆସି ମହାକାଶରେ ବିଚରଣ କରିବାରେ ବିଶ୍ୱର ପ୍ରଥମ ବ୍ୟକ୍ତି, ମହାକାଶରେ ପହଞ୍ଚିଥିବା ବିଶ୍ୱର ପ୍ରଥମ ଉପଗ୍ରହ ଯଥାର୍ଥରେ ସୋଭିଏତ୍ ରୁଷିଆର ମହାକାଶ କାର୍ଯ୍ୟକ୍ରମର ଅସାଧାରଣ ସଫଳତାର ଅନନ୍ୟ ନିଦର୍ଶନ ଯାହାକି ଗଗନସ୍ପର୍ଶୀ ଓ ଅତ୍ୟନ୍ତ ପ୍ରଶଂସାଭାଜନ ଅଟେ । କିନ୍ତୁ ଏ ସମସ୍ତ ବିରଳ ଗୌରବ ଓ ଅସାମାନ୍ୟ ସଫଳତା ପଛରେ କେଉଁ ମଣିଷଟିର ହାତ ଥିଲା ? କେଉଁ ମଣିଷର ଉର୍ବର ମସ୍ତିଷ୍କ ଏ ସମସ୍ତ ଯୋଜନାର ରୂପାୟନ କରିବାରେ ଆଧାରପିଣ୍ଡ ଥିଲା ? ସମସ୍ତ ପ୍ରେରଣା, ସଦିଚ୍ଛା, ଡିଜାଇନ୍ ଓ ପରିଯୋଜନା ପ୍ରକୃତରେ କେଉଁ ମଣିଷର ମାନସପୁତ୍ର ଥିଲା ? ଯେତେବେଳେ କି ବିଶ୍ୱର ପ୍ରତ୍ୟେକଟି ସମ୍ବାଦପତ୍ର ସୋଭିଏତ୍ ରୁଷିଆର ମହାକାଶ କାର୍ଯ୍ୟକ୍ରମର ଶତମୁଖରେ ଭୂୟସୀ ପ୍ରଶଂସା କରୁଥିଲେ ସେତେବେଳେ ଏହି ଅଭୂତପୂର୍ବ ସଫଳତା ପଛରେ ଲୁଚି ରହିଥିବା ମଣିଷଟିର ନାମ ଅବା ମୁଖମଣ୍ଡଳର ଫଟୋଚିତ୍ର କୌଣସି ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରିନଥିଲା । ତାଙ୍କ ଜୀବନକାଳର ସମସ୍ତ ସଫଳତାର ଶୀଖର ଦେଶରେ ଯେତେବେଳେ ସେ ଦଣ୍ଡାୟମାନ ହୋଇଥିଲେ ସେତେବେଳେ ତାଙ୍କ ପରିଚୟ କେବଳ ମାତ୍ର ଜଣେ "ମୁଖ୍ୟ ଡିଜାଇନର" ଭାବେ ପରିବେଷଣ କରାଯାଇଥିଲା ଏବଂ ରାଷ୍ଟ୍ରୀୟ ସୁରକ୍ଷାକୁ ଆଖି ଆଗରେ ରଖି ତାଙ୍କ ଜୀବନ ଲିପିର ପ୍ରତ୍ୟେକଟି ପୃଷ୍ଠାକୁ ଅତ୍ୟନ୍ତ ଗୋପନୀୟ ରଖାଯାଇଥିଲା । ସେ ବ୍ୟକ୍ତି ଜଣକ କିଏ ଥିଲେ ? ସେ କଣ ଜଣେ ବୟସ୍କ ବ୍ୟକ୍ତିଥିଲେ ନା ଯୁବକ ? ତାଙ୍କ ଜୀବନ ପ୍ରତି କୌଣସି ବିପଦ ଆସିପାରେ ବୋଲି ତାଙ୍କ ପରିଚୟକୁ ସୋଭିଏତ୍ ରୁଷ୍ ଅତ୍ୟନ୍ତ ଗୋପନୀୟ ରଖିଥିଲା । ବିପକ୍ଷ ପଟର ଭୟ ଓ ଆଶଙ୍କା ଏହାର ମୂଳ କାରଣ ଥିଲା । ଏପରିକି ତାଙ୍କ ନାମ ଓ ଫଟୋ ମଧ୍ୟ କେଉଁଠି ମିଳୁନଥିଲା । ସେ ବ୍ୟକ୍ତି ଜଣକ ପ୍ରକୃତରେ କିଏ ଥିଲେ ତାହା ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏବଂ ମୃତ୍ୟୁପରେ ମଧ୍ୟ ଏକ ପ୍ରହେଳିକା ହୋଇ ରହିଥିଲା ।

ସୋଭିଏତ୍ ମହାକାଶ କାର୍ଯ୍ୟକ୍ରମର ଏହି ପ୍ରମୁଖ ବ୍ୟକ୍ତିଜଣଙ୍କର ନାମ ଏବଂ ପରିଚୟ ଜନସାଧାରଣଙ୍କ ପାଖରେ ଉନ୍ମୁକ୍ତ ହୋଇଥିଲା ୧୯୬୬ ମସିହା ଜାନୁୟାରୀ ମାସ ୧୪ ତାରିଖ ଦିନ ଯେଉଁଦିନ କି ସୋଭିଏତ୍ ୟୁନିଅନର ରାଷ୍ଟ୍ରପତି ସ୍ୱୟଂ ଲିଓନିଡ ବ୍ରେଜନେଭ ଏହି ଅନାମଧେୟଧାରୀ ସର୍ଗେ ପାଭଲୋଭିଚ କୋରୋଲେଭଙ୍କ ଅନ୍ତ୍ୟେଷ୍ଟି କ୍ରିୟାର ମୁଖ୍ୟ କର୍ଣ୍ଣଧାର ସାଜିଥିଲେ । ସେହିଦିନ ହିଁ ସମଗ୍ର ବିଶ୍ୱବାସୀ ଏହି ଅନାମଧେୟ ମଣିଷଟିର ପ୍ରକୃତ ନାମ ଓ ସ୍ୱରୂପ ସମ୍ବନ୍ଧରେ ଅବଗତ ହେଲେ ଏବଂ ଏହି ମଣିଷଟିର ବୈଜ୍ଞାନିକ ଗୁରୁତ୍ୱ ମଧ୍ୟ ସେହିଦିନ ହିଁ ଫୁଟି ମହକି ଉଠିଲା । କ୍ୟାନସର ରୋଗରେ ପିଡ଼ିତ ହୋଇ ହସପିଟାଲ୍‌ରେ ଅପରେସନ୍ ହେଲାପରେ ମିଷ୍ଟର କୋରୋଲେଭ ୫୯ ବର୍ଷ ବୟସରେ ଶେଷ ନିଶ୍ୱାସ ତ୍ୟାଗ କଲେ । ସୋଭିଏତ୍ ୟୁନିଅନ୍ ମହାକାଶ କାର୍ଯ୍ୟକ୍ରମର ଅଭୂତପୂର୍ବ ସଫଳତା ପାଇଁ କୋରୋଲେଭ ତାଙ୍କ ମୃତ୍ୟୁପରେ ହିଁ ପ୍ରଥମଥର ପାଇଁ ସମ୍ମାନ, ଯଶ ଓ ଖ୍ୟାତି ଲାଭ କରିଥିଲେ । ସୋଭିଏତ୍ ୟୁନିଅନ୍ ତାଙ୍କୁ ଏକ ଯଶସ୍ୱୀ ମହାନାୟକର ଅନ୍ତ୍ୟେଷ୍ଟି ସମ୍ବର୍ଦ୍ଧନା ପ୍ରଦାନ କରିଥିଲା ଏବଂ କୋରୋଲେଭଙ୍କ ମରଶରୀରକୁ କ୍ରେମଲିନ୍‌ର ବିଶାଳ ପ୍ରାଚୀରରେ ସମାଧି ଦିଆଯାଇଥିଲା ଯେଉଁଠାରେ କି ରୁଷ ରାଷ୍ଟ୍ର ବିପ୍ଲବ ସମୟର ମହାନାୟକ ଓ ସୋଭିଏତ୍ ୟୁନିଅନ୍‌ର ବୀରପୁରୁଷମାନଙ୍କୁ ହିଁ ସମାଧି ଦିଆଯାଇଥାଏ ।

କୋରୋଲେଭଙ୍କ ଜୀବନକାହାଣୀ ସୋଭିଏତ୍ ମହାକାଶ ଇତିହାସର ସ୍ୱର୍ଣ୍ଣାଦିତ୍ୟ କାହାଣୀକୁ ହିଁ ବଖାଣି ଥାଏ । ଅତ୍ୟନ୍ତ ଗୋପନୀୟଭାବେ କୋରୋଲେଭ ଏବଂ ତାଙ୍କର ସହକର୍ମୀମାନେ ସ୍ୱତନ୍ତ୍ର ଡିଜାଇନ୍ ବ୍ୟୁରୋ - ୧ (OKB - 1) ରେ ଆଦୌ କିଛି ଆନୁସଂଗିକ ବ୍ୟବସ୍ଥା ନଥାଇ ମଧ୍ୟ ନାନାବିଧ ଡିଜାଇନ୍ ଓ ବିକାଶ କାର୍ଯ୍ୟକ୍ରମମାନ ସମ୍ପାଦିତ କରୁଥିଲେ । ୫ଟନ୍ ଓଜନ ବିଶିଷ୍ଟ ସ୍ୟାଟେଲାଇଟ୍‌କୁ ଲଞ୍ଚ କଲାଭଳି ଶକ୍ତିଶାଳୀ ରକେଟର ନିର୍ମାଣ ଯାହାକି ମଣିଷ ସାଂଗରେ ନେଇ ମହାକାଶକୁ ଯାତ୍ରା କରିପାରିବ ଏବଂ ନିରାପଦରେ ପୃଥିବୀପୃଷ୍ଠରେ ମଧ୍ୟ ଅବତରଣ କରିପାରିବ ତଥା ଚନ୍ଦ୍ରକୁ ଯାତ୍ରାପାଇଁ ମୁନ୍ ମିଶନ୍ ଏବଂ ତତ୍ ଉର୍ଦ୍ଧ୍ୱକୁ ଯାତ୍ରା ଏବଂ ମହାକାଶ କେନ୍ଦ୍ରକୁ ମନୁଷ୍ୟ ପ୍ରେରଣ ଆଦି ବହୁବିଧ କାର୍ଯ୍ୟକ୍ରମ ଅତ୍ୟନ୍ତ ଗୋପନୀୟଭାବେ ସେଠାରେ କାର୍ଯ୍ୟକାରୀ ହେଉଥିଲା । ଡିଜାଇନ୍ ବ୍ୟୁରୋ-୧ରେ କାର୍ଯ୍ୟକରୁଥିବା ସମସ୍ତ ସହକର୍ମୀମାନଙ୍କର କୋରୋଲେଭଙ୍କ ପ୍ରତି ଅହେତୁକ ଡର, ପର୍ଯ୍ୟାପ୍ତ ସମ୍ମାନ, ଅସୁମାରୀ ଭୟ, ପ୍ରଚଣ୍ଡ ମାନ ମର୍ଯ୍ୟାଦା, ତୀବ୍ର ଘୃଣା ଓ

ଅତୁଳନୀୟ ସ୍ନେହ ମମତା ରହିଥିଲା । ସେ ମଧ୍ୟ ତାଙ୍କ ସହକର୍ମୀମାନଙ୍କର ସୁଖଦୁଃଖ ଓ ଭଲମନ୍ଦ କଥା ପଚାରି ବୁଝୁଥିଲେ ତଥା ସେମାନଙ୍କର ପାରିବାରିକ ଜୀବନ ଯେପରି ସୁଖ ସ୍ୱାଚ୍ଛନ୍ଦ୍ୟରେ ଅତିବାହିତ ହେବ ସେଥିପ୍ରତି ମଧ୍ୟ ଯଥେଷ୍ଟ ସଜାଗ ରହୁଥିଲେ । ସେମାନେ ଯେପରି ଅତ୍ୟନ୍ତ ସୁନ୍ଦର ଘରଦ୍ୱାର ପାଇ ଶାନ୍ତିରେ ଜୀବିକା ନିର୍ବାହ କରିବେ, ଉତ୍ତମ ଖାଦ୍ୟପେୟ ପାଇପାରିବେ ତଥା ସ୍ୱାସ୍ଥ୍ୟରକ୍ଷା ପ୍ରତି ଯତ୍ନବାନ୍ ହେବେ ତାହା ସେ ଲକ୍ଷ୍ୟ କରୁଥିଲେ । ଏପରିକି ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ କଠିନ ସମୟରେ ମଧ୍ୟ ସେପରି କାର୍ଯ୍ୟକ୍ରମରୁ ସେ ନିବୃତ ହେଉନଥିଲେ ।

କୋରୋଲେଭ ୧୯୦୬ ମସିହା ଜାନୁୟାରୀ ମାସ ୧୨ ତାରିଖରେ ଏବେକାର ୟୁକ୍ରେନର ଝିଟୋମିର (Zhitomir) ଠାରେ ରୁଷୀୟ ଭାଷା ଶିକ୍ଷାପ୍ରଦାନ କରୁଥିବା ଏକ ଶିକ୍ଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ୧୯୧୦ ମସିହାରେ କୋରୋଲେଭଙ୍କ ପିତାମାତାଙ୍କ ମଧ୍ୟରେ ବିବାହ ବିଚ୍ଛେଦ ଘଟିବାରୁ କୋରୋଲେଭ ତାଙ୍କ ମାଆଙ୍କ ସହ ନିଜ ମାମୁଁଘର ନେଜହିନ (Nezhin) କୁ ଚାଲିଆସି ଅଜା ଆଇଙ୍କ ସହ ରହିଲେ । କୋରୋଲେଭଙ୍କ ପିତାମାତାଙ୍କର ୧୯୧୬ ମସିହା ଅକ୍ଟୋବର ମାସରେ ଅଫିସିଆଲ୍ ସ୍ତରରେ ବିବାହ ବିଚ୍ଛେଦ ଘଟିଲା ଏବଂ କୋରୋଲେଭଙ୍କ ମାଆ ଆଞ୍ଚଳିକ ରେଲୱେରେ କାମ କରୁଥିବା ଜଣେ ବୈଦ୍ୟୁତିକ ଇଞ୍ଜିନିୟର୍ ଗ୍ରିଗୋରୀ ମିଖାଇଲୋଭିଚ (Grigory Mikailavich) ଙ୍କୁ ପୁନର୍ବିବାହ କରିଥିଲେ । ତା'ପରେ କୋରୋଲେଭ ତାଙ୍କ ମାଆ ଓ ସାବତ ବାପାଙ୍କ ସହ ୧୯୧୭ ମସିହାରେ ସପରିବାର ୟୁକ୍ରେନର ଏକ ପ୍ରସିଦ୍ଧ ବନ୍ଦର ସହର ଓଡେଶା (Odessa) କୁ ଚାଲି ଆସିଲେ । କୋରୋଲେଭଙ୍କ ପିଲାଦିନ ପାରିବାରିକ ସମସ୍ୟା ଜର୍ଜରିତ ଅଜସ୍ର ପ୍ରବାହ ମଧ୍ୟରେ ଅତିବାହିତ ହୋଇଥିଲା ଏବଂ ତତ୍ ସଂଗେ ସଂଗେ ଇମ୍ପେରିଆଲ ରୁଷିଆରେ ସଂଗଠିତ ହୋଇଥିବା ରୁଷ ରାଷ୍ଟ୍ରବିପ୍ଳବ ବୋଝ ଉପରେ ନଳିତାବିଡ଼ା ପରି କୋରୋଲେଭଙ୍କ ବାଲ୍ୟ ଜୀବନକୁ ଅତ୍ୟନ୍ତ ସଂଘର୍ଷମୟ କରି ଗଢ଼ି ତୋଳିଥିଲା । ୧୯୨୦ ଦଶକ ପର୍ଯ୍ୟନ୍ତ ଯେତେବେଳେ କି ସୋଭିଏତ୍ ରୁଷ ପରିସ୍ଥିତି ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ଆଣିଲା, ସେ ପର୍ଯ୍ୟନ୍ତ ସ୍ଥାନୀୟ ବିଦ୍ୟାଳୟଗୁଡ଼ିକ ବନ୍ଦ ରହିଥିଲା । ଏକ ଭଗ୍ନ ପରିବାର ଓ ରୁଷ ରାଷ୍ଟ୍ର ବିପ୍ଳବର ସଂଘର୍ଷମୟ ପରିସ୍ଥିତି ମଧ୍ୟରେ ଚାପି ହୋଇଯାଇ କୋରୋଲେଭ ଘରେ ରହି ଯାହା କିଛି ପାଠ ଶାଠ ପଢ଼ିବାକୁ ବାଧ୍ୟ ହେଲେ । ବେସାମରୀକ ଯୁଦ୍ଧର

ଘନଘଟା ଓ ନିଷ୍କେଷିତ ଜୀବନ ଯନ୍ତ୍ରଣାର ଖଟାମିଠା ସ୍ୱାଦକୁ କୋରୋଲୋଭ ପୋଷ ପୋଷ ରଖିଲେ । ଅଣଆୟତ୍ତ ପରିସ୍ଥିତି ମଧ୍ୟରେ ଜୀବନ ନିର୍ବାହ କରି କୋରୋଲେଭ ୧୯୨୨ ମସିହାରେ ଓଡ଼େଶା ପ୍ରଫେସନାଲ କନ୍‌ଷ୍ଟ୍ରକ୍‌ସନ୍ ସ୍କୁଲରୁ ବରିଷ୍ଠ ଯୋଗ୍ୟତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

କୋରୋଲେଭଙ୍କୁ ଯେତେବେଳେ ମାତ୍ର ୭ ବର୍ଷ ବୟସ ୧୯୧୩ ମସିହାରେ ଅନୁଷ୍ଠିତ ହୋଇଥିବା ଏକ "ଏୟାର ସୋ" (Air Show) ତାକୁ ଅତ୍ୟନ୍ତ ବିମୁଗ୍ଧ କରିଥିଲା । ଏହି ଚିତ୍ତାକର୍ଷକ ଏୟାର ସୋ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ଏହି ଘଟଣା ତାଙ୍କୁ ଏତେ ମାତ୍ରାରେ ବିମୋହିତ କରିଥିଲା ଯେ, ସେ ଏକ ପାଇଲଟ୍ ଓ ଏୟାର ପ୍ଲେନ୍‌ର ଡିଜାଇନର ହେବାକୁ ମନ ବଳାଇଥିଲେ । ଜୁନ୍ ୧୯୨୩ ମସିହାରେ କୋରୋଲେଭ ନୂଆକରି ଆରମ୍ଭ ହୋଇଥିବା "ସୋସାଇଟି ଅଫ୍ ଏଭିଏସନ ଯାଣ୍ଡ ଏରିଏଲ ନ୍ୟାଭିଗେସନ ଅଫ୍ ୟୁକ୍ରେନ୍ ଯାଣ୍ଡ ଦି କ୍ରିମିଆ"ରେ ଯୋଗଦାନ ଦେଇଥିଲେ । ତାଙ୍କୁ ଯେତେବେଳେ ୧୭ ବର୍ଷ ବୟସ ସେ "କେ-୫" ନାମକ ଏକ ଗ୍ଲାଇଡରର ଡିଜାଇନ୍ କରିଥିଲେ ଏବଂ ଏରୋନଟିକ୍ସ ପ୍ରତି ଥିବା ତାଙ୍କର ପ୍ରଚଣ୍ଡ ଆଗ୍ରହ, ଦକ୍ଷତା ଓ କାରିଗରୀ ଜ୍ଞାନ କୌଶଳ ପ୍ରଦର୍ଶନ କରିଥିଲେ । ତା'ପରେ ସେ କିଏଭ ପଲିଟେକ୍‌ନିକ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଏଭିଏସନ୍ ପାଠ୍ୟକ୍ରମ ଅଧ୍ୟୟନ କରିଲେ । ତାଙ୍କର ଅସାଧାରଣ ଧୀଶକ୍ତି ଓ ପ୍ରଜ୍ଞା ତାଙ୍କୁ ଅତ୍ୟନ୍ତ ସମ୍ମାନଜନକ ମସ୍କୋ ହାୟର ଟେକ୍‌ନିକାଲ୍ ସ୍କୁଲ୍‌ରେ ଅଧ୍ୟୟନ କରିବାପାଇଁ ସୁଯୋଗ ଦେଇଥିଲା । ୧୯୩୦ ମସିହାରେ ଗ୍ରାଜୁଏସନ୍ ପାଠ୍ୟକ୍ରମ ସମାପ୍ତ କରି ସେ ପ୍ରଖ୍ୟାତ ସୋଭିଏତ୍ ଇଞ୍ଜିନିୟର୍ ଆଣ୍ଡ୍ରେ ନିକୋଲେଭିଚ୍ ଟ୍ୟୁପୋଲେଭଙ୍କ ପାଖରେ ଜେଟ୍ ଇଞ୍ଜିନ୍ ଡିଜାଇନ୍ କରିବା ପାଇଁ ଯୋଗଦାନ କଲେ ।

୧୯୩୧ ମସିହାରେ କୋରୋଲେଭ ରିଆକ୍‌ଟିଭ ମୋସନ୍ (Reactive Motion) ଉପରେ ଅଧିକ ଗବେଷଣା ପାଇଁ ମସ୍କୋର କେନ୍ଦ୍ର ଅର୍ଗାନାଇଜେସନ୍ GIRD (Gruppa Isutcheniya Reaktivnovo Dvisheniya - Group for investigation of Reactive Motion) ଗ୍ରୁପ୍‌ର ସହ-ସଂସ୍ଥାପନା କରିଥିଲେ । GIRD ରେ କାମ କଲାବେଳେ ତାଙ୍କର ଲକ୍ଷ୍ୟ Liquid Propellant ଆଡ଼କୁ ଢଳିଲା । ୧୯୩୩ ମସିହାରେ ତାଙ୍କ ନିର୍ମିତ ପ୍ରଥମ Liquid Propellant Rocket ଲଞ୍ଚ ହୋଇଥିଲା । ସେତେବେଳକୁ ସୋଭିଏତ୍ ମିଲିଟାରୀ, ରକେଟର ଅସାଧାରଣ ଦକ୍ଷତାକୁ ସଠିକ୍ ଅନୁଭବ କଲା ଏବଂ

୧୯୩୦ ଦଶକରେ ରକେଟ୍-ପୋପେଲ୍ଡ ମିଶାଇଲ୍ ଓ ଗ୍ଲାଇଡରର ଡିଜାଇନ୍ ଓ ବିକାଶ ପାଇଁ ପ୍ରଚୁର ପରିମାଣ ପୁଞ୍ଜି ନିବେଶ କଲା ଏବଂ ଫଳସ୍ୱରୂପ ରୁଷ୍‌ର ପ୍ରଥମ ରକେଟ୍ ପ୍ରୋପେଲ୍ଡ ଏୟାର କ୍ରାଫ୍ଟ ଆର୍.ପି-୩୧୮ ର ସୃଷ୍ଟି ହେଲା ।

୧୯୩୮ ମସିହାରେ କୋରୋଲେଭଙ୍କ ଘଟଣା ବହୁଳ ଜୀବନ ପ୍ରବାହରେ ଏକ ପ୍ରଳୟଙ୍କରୀ ଝଡ଼ ଆସିଲା ଯେତେବେଳେ କି ସେ ସୋଭିଏତ୍ ରୁଷ୍ ବିରୋଧି କାର୍ଯ୍ୟକଳାପ ଅଭିଯୋଗରେ ବନ୍ଦୀ ହୋଇ ଜେଲ୍ ଯାଇଥିଲେ । ଯଦିଓ ତାଙ୍କ ବିରୁଦ୍ଧରେ ବ୍ୟକ୍ତିଗତଭାବେ ସେପରି କୌଣସି ରାଷ୍ଟ୍ର ବିରୋଧି ଅଭିଯୋଗ ନଥିଲା ଅବା ସେ କୌଣସି ରାଷ୍ଟ୍ରବିରୋଧି ଗତିବିଧିରେ ଆଦୌ ଜଡ଼ିତ ନଥିଲେ ତଥାପି ସେ ଏବଂ ତାଙ୍କର କେତେକ ସହକର୍ମୀ ଯେଉଁମାନେ କି GIRD ରେ କାମ କରୁଥିଲେ ସମସ୍ତେ ଜେଲ ଦଣ୍ଡ ଭୋଗିଥିଲେ । ଖୁବ୍ ଶୀଘ୍ର ସୋଭିଏତ୍ ରୁଷ୍‌ର ସରକାର ନିଜର ଭୁଲ୍ ବୁଝିପାରିଲେ ଏବଂ କୋରୋଲେଭ ଜେଲ୍ ଦଣ୍ଡରୁ ମୁକ୍ତି ପାଇ ୧୯୩୯ ମସିହାରେ ଷ୍ଟାଲିନଙ୍କ ଦ୍ୱାରା ସ୍ଥାପିତ ଅତ୍ୟନ୍ତ ଗୋପନୀୟ ସାରାସ୍କା (Sarashka) "ଗବେଷଣା ଓ ଉନ୍ନୟନ ପ୍ରୟୋଗଶାଳାକୁ ବଦଳି ହୋଇ ଆସିଲେ । ଜର୍ମାନ ବୀର ହିଟଲରଙ୍କ ବିରୁଦ୍ଧରେ ଯୁଦ୍ଧ ଜିଣିବାପାଇଁ ଷ୍ଟାଲିନ୍ ସେତେବେଳେ ସୋଭିଏତ୍ ରୁଷ୍‌ର ଉର୍ବର ମସ୍ତିଷ୍କଧାରୀ ସର୍ବଶ୍ରେଷ୍ଠ ବୈଜ୍ଞାନିକମାନଙ୍କୁ ଏହି ଗବେଷଣା କେନ୍ଦ୍ରରେ ଗବେଷଣା କରିବାପାଇଁ ନିୟୋଜିତ କରିଥିଲେ । କୋରୋଲେଭଙ୍କ ଏହି "ସାରାସ୍କା" ଗବେଷଣା ଓ ଉନ୍ନୟନ ପ୍ରତିଷ୍ଠାନ ଆଣ୍ଡ୍ରେ ଟୁପୋଲୋଭ (Andrei Tupolov) ଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସୋଭିଏତ୍ ଏୟାର୍ ଫୋର୍ସର ଏକ ପ୍ରମୁଖ ଟୁ- ୨ (Tu-2) ବୋମାବର୍ଷଣକାରୀ ଏୟାରକ୍ରାଫ୍ଟର ବିକାଶ କାର୍ଯ୍ୟକ୍ରମରେ କୋରୋଲେଭ ସଫଳ ଯୋଗଦାନ ଦେଇଥିଲେ ।

ଇତ୍ୟବସରରେ ହିଟଲରଙ୍କ ଗୋପନୀୟ ଅସ୍ତ୍ର ଭି- ୨ ମିଶାଇଲ୍ (V-2 Missile) ଦ୍ୱାରା ଷ୍ଟାଲିନ୍ ଅତ୍ୟନ୍ତ ପ୍ରଭାବିତ ହୋଇଥିଲେ ଯାହାକି ୱେର୍ଣ୍ଣହର ଭନ ବ୍ରଉନ (Wernher Von Braun) ଙ୍କ ଟିମ୍ ମେମ୍ବରମାନଙ୍କ ଦ୍ୱାରା ବିକାଶଲାଭ କରିଥିଲା । ସେ ସମୟରେ ଉଦ୍ରେକ ହେଉଥିବା ଶୀତଳ ଯୁଦ୍ଧର ଭୟଙ୍କର ଘନଘଟାର ପ୍ରକୋପକୁ ପର୍ଯ୍ୟବେକ୍ଷଣ କରି ଷ୍ଟାଲିନ ଭି-୨ ମିଶାଇଲ୍‌ର ଉପାଦେୟତାକୁ ହାଡ଼େ ହାଡ଼େ ଅନୁଭବ କଲେ ଏବଂ ସୋଭିଏତ୍ ରୁଷ୍‌ର ନିଜସ୍ୱ ବାଲିଷ୍ଟିକ୍ ମିଶାଇଲ୍‌ର ବିକାଶ ପାଇଁ ପ୍ରତିଜ୍ଞା କଲେ ।

୧ ୯ ୪ ୪ ମସିହା ବେଳକୁ ନାଜି ଜର୍ମାନୀ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିଲା ଏବଂ ଜର୍ମାନୀର ପିନେମୁଣ୍ଡେଠାରେ ଥିବା ଭି- ୨ ରକେଟ ବ୍ୟବସ୍ଥା ସୋଭିଏତ୍ ରେଡ୍ ଆର୍ମିଙ୍କ କବଜାକୁ ଆସିଗଲା । ଷ୍ଟାଲିନ୍ ଏହି ଗୋପନୀୟ ନାଜି କାରଖାନାକୁ ପର୍ଯ୍ୟବେକ୍ଷଣ କରିବାପାଇଁ ସୋଭିଏତ୍ ରୁଷ୍ର କୌଣସି ଦକ୍ଷ ଇଞ୍ଜିନିୟରଙ୍କୁ ସେଠାକୁ ପଠାଇବାକୁ ଚାହିଁଲେ ଏବଂ ସେ ଯାହା କିଛି ବି ଶିଖିପାରିବ ତାହା ସେଠାରେ ଶିଖି ଆସିବାପାଇଁ ନିର୍ଦ୍ଦେଶ ଦେଲେ । ସେ ଯେତେବେଳେ ଏଭଳି ଏକ ଦକ୍ଷ ଇଞ୍ଜିନିୟରର ସଂଧାନରେ ଥିଲେ ସେତେବେଳେ ସମସ୍ତେ ଏକସ୍ୱରରେ କୋରୋଲେଭଙ୍କ ନାମ ହିଁ ଉଚ୍ଚାରଣ କଲେ ଏବଂ ତାଙ୍କୁ ସେଠାକୁ ପଠାଇବାକୁ ଷ୍ଟାଲିନ୍‌ଙ୍କୁ ସୁପାରିଶ କଲେ ।

ସେପ୍ଟେମ୍ବର ୧ ୯ ୪ ୫ ମସିହାରେ କୋରୋଲେଭ ଷ୍ଟାଲିନ୍‌ଙ୍କ ଇଚ୍ଛାକୁ ସମ୍ମାନ ଦେଇ ଜର୍ମାନୀକୁ ଏକ ମିଶନ କାର୍ଯ୍ୟକ୍ରମରେ ଯାତ୍ରାକଲେ । ଅଗଷ୍ଟ ୧ ୯ ୪ ୬ ମସିହାରେ କୋରୋଲେଭ ଜର୍ମାନୀରେ ଥିଲାବେଳେ ଜର୍ମାନ୍ ହାର୍ଡୱେୟାରକୁ ଆଧାର କରି ମିଶାଇଲ୍‌ର ବିକାଶ ଓ ବ୍ୟବସାୟିକ ଉତ୍ପାଦନ ପାଇଁ ତାଙ୍କୁ ବିଭାଗୀୟ ମୁଖ୍ୟ ଭାବେ ନିଯୁକ୍ତି ଦିଆଯାଇ ତାଙ୍କ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ପରବର୍ତ୍ତୀ ସମୟରେ ଷ୍ଟାଲିନ୍ ଯେତେବେଳେ ଏକ ଦୂରଗାମୀ ମିଶାଇଲ୍‌ର ବିକାଶ କାର୍ଯ୍ୟକ୍ରମର ରୂପାୟନ ପାଇଁ ଆଜ୍ଞା ପ୍ରଦାନ କଲେ କୋରେଲେଭ ତାଙ୍କର ଅନ୍ୟ ଦୁଇଜଣ ସହକର୍ମୀ ଭ୍ୟାଲେଣ୍ଟିନ ପି.ଗ୍ଲୁସ୍‌କୋ (Valentin P. Glushko) ଏବଂ ମିଶାଇଲ୍ ଟିଖୋନ୍‌ରାଭୋଭ (Mikhali Tikhonravov) ଙ୍କ ସହ ଗୋଷ୍ଠୀଗତ ଭାବେ ସମ୍ପୃକ୍ତ ହୋଇ ଏହି ଚ୍ୟାଲେଞ୍ଜକୁ ହସି ହସି ବରଣ କରିନେଇଥିଲେ ।

ପରନ୍ତୁ ଜର୍ମାନ୍ ରକେଟ୍ କାର୍ଯ୍ୟକ୍ରମର ଅଦ୍ୱିତୀୟ ନେତା ୱେର୍ଣ୍ଣହର ଭନ୍ ବ୍ରଉନ ନିଜସ୍ୱ ଚିନ୍ତାଧାରାର ମହାରଥୀ ଥିଲେ । ୧ ୯ ୪ ୫ ମସିହା ସୁଦ୍ଧା ଭନ ବ୍ରଉନ୍‌ଙ୍କ ହୃଦବୋଧ ହୋଇଥିଲା ଯେ ଜର୍ମାନୀ ଯୁଦ୍ଧରେ ପରାଜୟ ବରଣ କରିଛି । ସେ ଏବଂ ତାଙ୍କ ଟିମ୍ ମେମ୍ବରମାନେ ସମସ୍ତେ ରୁଷୀୟ ବଡ଼ ଭୟ କରୁଥିଲେ ସତେ ଯେପରି ଛାତିରେ ତାଙ୍କର ଗୋଟାଏ ବିରାଟ ଛନକା ପଶିଯାଇଛି । ସେମାନେ ଭାବୁଥିଲେ ଯେ, ଫରାସୀମାନେ ତାଙ୍କୁ ପାଦରେ ଦଳି ଭୂଲୁଣ୍ଠିତ କରିଦେବେ । ସମ୍ପୂର୍ଣ୍ଣ ଭାବେ ଏକ ପରିପୂର୍ଣ୍ଣ ରକେଟ କାର୍ଯ୍ୟକ୍ରମକୁ ସହଯୋଗ କରିବାପାଇଁ ଇଂଲଣ୍ଡ ଏକ ଅତ୍ୟନ୍ତ ଦରିଦ୍ର ରାଷ୍ଟ୍ର ବୋଲି ସେମାନଙ୍କର ବିଶ୍ୱାସ ବଳବତ୍ତର ହୋଇଥିଲା । ତେଣୁ ମୁଖ୍ୟ

କାର୍ଯ୍ୟାଳୟର ସିଧାସଳଖ ନିର୍ଦ୍ଦେଶ (Order) ସତ୍ତ୍ୱେ ମଧ୍ୟ ଭନ ବ୍ରଉନ୍ ତାଙ୍କ ରକେଟ ବୈଜ୍ଞାନିକଙ୍କ ଟିମ୍ ମେମ୍ବରମାନଙ୍କ ସହ ଜଣେ ଆମେରିକୀୟ ସୈନିକଙ୍କ ସନ୍ଧାନରେ ବୁଲୁଥିଲେ ଯାହାଙ୍କ ପାଖରେ କି ସେମାନେ ଆତ୍ମ ସମର୍ପଣ କରିପାରିବେ । ଏକ ରୋମାଞ୍ଚକର ସିନେମା ପାଇଁ ଉପଯୁକ୍ତ କ୍ଲୋକ୍ ଏବଂ ଡ୍ୟାଗର ଅପରେସନ୍ (Cloak & Dagger Operation) ପରି ସେ ତାଙ୍କର ଅପରେସନ୍‌ର ନାଁ "ଅପରେସନ୍ ପେପର୍ କ୍ଲିପ୍" ରଖିଥିଲେ ଏବଂ ଅଗ୍ରଗାମୀ ସୋଭିଏତ୍ ସୈନ୍ୟସାମନ୍ତଙ୍କ ହାତରେ ଧରା ନ ପଡ଼ିବା ପାଇଁ ଆମେରିକୀୟ ଗୋପନୀୟ ସେବା (Secret Service) ର ପଥ ଅନୁସରଣ କରିଥିଲେ । ପ୍ରାୟ ୩୦୦ ରୁ ଊର୍ଦ୍ଧ୍ୱ ଟ୍ରେନ୍‌ମୋଟରଗାଡ଼ିରେ ମିଶାଇଲ୍ V-2 ର ନାନାଦି ଯନ୍ତ୍ରପାତି ଆମେରିକାକୁ ସ୍ଥାନାନ୍ତର କରିଦେଇଥିଲେ । କୋରୋଲେଭ ଓ ତାଙ୍କ ଲୋହିତ ସୈନ୍ୟ (Red Army) V-2 ମିଶାଇଲ୍ ଉତ୍ପାଦନ କେନ୍ଦ୍ର ମିଟେଲୱେର୍କରେ ପହଞ୍ଚିବା ପୂର୍ବରୁ ସେଠାରେ ପ୍ରାୟ ଆଉ କୌଣସି ଯନ୍ତ୍ରପାତି ନଥିଲା । ଯାହା ଖାଲି ଛୋଟ ଛୋଟ ଟୁକୁଡ଼ା ଟୁକୁଡ଼ି ଯନ୍ତ୍ରାଦି ସେଠାରେ ପଡ଼ି ରହିଥିଲା । ଭନ ବ୍ରଉନ୍‌ଙ୍କ ୧୧୮ ଜଣ ଟିମ୍ ମେମ୍ବର ଏବଂ ସେମାନଙ୍କର ସମସ୍ତ ଗୋପନୀୟ କାଗଜପତ୍ର ଓ ଦସ୍ତାବିଜ ଆମେରିକା ଚାଲିଯାଇଥିଲା ।

ହେଲେ କୋରୋଲେଭ ଏଥିରେ ଭାଙ୍ଗି ପଡ଼ିନଥିଲେ । ଭି-୨ ମିଶାଇଲ୍ ଉତ୍ପାଦନ କେନ୍ଦ୍ରରେ ଏଣେତେଣେ ବିକ୍ଷିପ୍ତ ଭାବେ ପଡ଼ି ରହିଥିବା ଛୋଟ ମୋଟ ଯନ୍ତ୍ରାଦିଗୁଡ଼ିକୁ ଗୋଟାଇ ସେ ଏକତ୍ରିତ କଲେ ଏବଂ ଜର୍ମାନୀରେ ରହିଥିବା ଏକାଧିକ ଭି-୨ ମିଶାଇଲ୍ ଇଞ୍ଜିନିୟର୍ ଓ ଟେକ୍‌ନିସିଆନ୍ ମାନଙ୍କ ସହ ସାକ୍ଷାତ ଓ ବାର୍ତ୍ତାଳାପ କଲେ । କୋରୋଲେଭଙ୍କ ନିର୍ଦ୍ଦେଶାନୁଯାୟୀ ମିଟେଲୱେର୍କର ଭି-୨ ମିଶାଇଲ୍ କାରଖାନାରେ କାମ କରୁଥିବା ୨୦୦ ଜଣ ଜର୍ମାନୀ କର୍ମଚାରୀଙ୍କୁ ଏକତ୍ରିତ କରି ସୋଭିଏତ୍ ରୁଷିଆକୁ ପଠାଇ ଦିଆଗଲା । କୋରୋଲେଭ ଏବଂ ତାଙ୍କର ଟିମ୍ ମେମ୍ବରମାନେ ତାଙ୍କର ସମସ୍ତ ଦକ୍ଷତା ଓ କାରିଗରୀ ଜ୍ଞାନ କୌଶଳ ମାଧ୍ୟମରେ ଶୂନ୍ୟରୁ ଆରମ୍ଭ କରି ଭି-୨ ମିଶାଇଲ୍ ଡିଜାଇନ୍‌ର ପୁନଃ ଅୟଂଆରମ୍ଭ କଲେ । ଅଳ୍ପ କେତେକ ଭି-୨ ମିଶାଇଲ୍‌ର ଲଞ୍ଚରେ ଆବଶ୍ୟକୀୟ ସହାୟତା ପ୍ରଦାନ କରିବା ବ୍ୟତୀତ ଜର୍ମାନୀର ମିଟେଲ୍‌ୱେର୍କରୁ ଅଣାଯାଇଥିବା କର୍ମଚାରୀମାନେ କେବଳ ଲିଖିତ ପ୍ରଶ୍ନର ଉତ୍ତର ପ୍ରଦାନ କରୁଥିଲେ । ଅବଶେଷରେ ସେମାନଙ୍କୁ ୧୯୫୦-୧୯୫୪ ମସିହା ମଧ୍ୟରେ ଜର୍ମାନୀ ପଠାଇ ଦିଆଯାଇଥିଲା ।

ଭି-୨ ମିଶାଇଲକୁ ଆଧାର କରି ପ୍ରସ୍ତୁତ କରାଯାଇଥିବା ପ୍ରଥମ ସୋଭିଏତ୍ ରକେଟର ନାଆଁ ଥିଲା "ଆର୍-୧" (R-1) । ଏହି ରକେଟ୍‌ର ପରୀକ୍ଷା ନିରୀକ୍ଷା ୧୯୪୭ ମସିହା ଅକ୍ଟୋବର ମାସରେ ସୋଭିଏତ୍ ଇଞ୍ଜିନିୟରଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା । ୧୧ଟି ପରୀକ୍ଷା ନିରୀକ୍ଷା ମଧ୍ୟରୁ ମାତ୍ର ୫ଟି ଲକ୍ଷ୍ୟସ୍ଥଳ ଭେଦ କରିପାରିଥିଲା । କୋରୋଲେଭ ଦେଖିଲେ ଯେ ଭି-୨ ରକେଟ ଆଇ.ସି.ବି.ଏମ୍ ଅବା ଲଞ୍ଚ ଭେହିକିଲ୍ ଭାବେ ତାଙ୍କ ଉଦ୍ଦେଶ୍ୟକୁ ଫଳବତୀ କରିପାରୁ ନାହିଁ ଯାହାର ବ୍ୟବହାର କରି ସେ ଏକ ସ୍ପେଶ୍ କ୍ରାଫ୍ଟକୁ ପୃଥିବୀର କକ୍ଷପଥରେ ସଂସ୍ଥାପିତ କରିପାରିବେ ଏହା ପରିଷ୍କାର ଭାବେ ଜଣାପଡ଼ିଲା ଯେ ତାଙ୍କୁ ହିଁ ତାଙ୍କ ନିଜ ଗନ୍ତବ୍ୟ ପଥ ବାଛିବାକୁ ପଡ଼ିବ ଓ ଅନ୍ୟର ସ୍ୱପ୍ନର ବୁନିୟାଦକୁ ନେଇ ନିଜ ସ୍ୱପ୍ନ ସାମ୍ରାଜ୍ୟ ଗଢ଼ାଯାଇ ପାରିବ ନାହିଁ । ନିଜର ଦକ୍ଷତା ମାଧ୍ୟମରେ ନିଜକୁ ଗତି କରିବାକୁ ପଡ଼ିବ ହିଁ ପଡ଼ିବ ।

କୋରୋଲେଭ ନିଜର ସ୍ୱତନ୍ତ୍ର ମିଶାଇଲ୍ ଡିଜାଇନ୍ ଆରମ୍ଭ କଲେ । ପ୍ରଥମ ସୋଭିଏତ୍ ଡିଜାଇନ୍ ମିଶାଇଲ୍ ଆର୍-୨ ଏ (R-2 A) ୧୯୪୯ ମସିହାରେ ଲଞ୍ଚ କରାଗଲା । ଆର୍-୧ ର ରେଞ୍ଜ ଅପେକ୍ଷା ଆର୍-୨ ର ରେଞ୍ଜ ଦ୍ୱିଗୁଣ ଥିଲା ଏବଂ ଭି-୨ ଓ ଆର୍-୧ରେ ବ୍ୟବହାର କରାଯାଉଥିବା ଇଥାଇଲ୍ ଆଲକୋହଲ୍ ପରିବର୍ତ୍ତେ ଆର୍-୨ ରେ ମିଥାଇଲ୍ ଆଲ୍‌କୋହଲ ବ୍ୟବହାର କରାଗଲା । "ଆର-୨ ଏ" ମିଶାଇଲ୍ ୧୪୦୦ କିଲୋଗ୍ରାମ୍ ଓଜନର ପେ-ଲୋଡ୍ ଧାରଣକରି ୨୦୯ କିଲୋମିଟର ଉର୍ଦ୍ଧ୍ୱମୁଖୀ ଗତି କରିପାରିବ । କୋରୋଲେଭ ଏକାଧିକ ବିକାଶ କାର୍ଯ୍ୟକ୍ରମ ହାତକୁ ନେଲେ ଓ ନାନାଦି କାରିଗରୀ ପ୍ରଗତି ମଧ୍ୟ ହାସଲ କଲେ । ୧୯୪୯ ମସିହାରେ ନୂଆ ଡିଜାଇନ୍‌ରେ ପର୍ଯ୍ୟବେସିତ "ଆର୍-୩ଏ" ର ନିର୍ମାଣ ସମାପ୍ତ ହେଲା ଯାହାର ରେଞ୍ଜ ଥିଲା ୯୦୦ ରୁ ୧୦୦୦ କିଲୋମିଟର ଏବଂ ଏହା ୧୫୩୦ କିଲୋଗ୍ରାମ୍‌ର ପେ-ଲୋଡ୍ ଧାରଣ କରିପାରିବ । ଏହି ସିରିଜର ଏକ ଆଧୁନିକ ରୂପରେଖ ଆର୍-୫ ଇଞ୍ଜିନ୍ ଯାହାକି ଏକ ସ୍ୱତନ୍ତ୍ର ନୋଜଲ୍ ଯୁକ୍ତ ଅଟେ ତାହା ୧୨୦୦ କିଲୋମିଟର ଉର୍ଦ୍ଧ୍ୱଗାମୀ ଯାତ୍ରା କରିପାରିବାର କ୍ଷମତା ରଖିପାରିବ ଓ ଏହା ୧୯୫୩ ମସିହାରେ ଲଞ୍ଚ କରାଯାଇ ସଫଳଭାବେ ପରୀକ୍ଷିତ କରାଗଲା ।

ଘଟଣାକ୍ରମେ ଆର-୫ (R-5) ରକେଟ ଜୀବନ୍ତ ପ୍ରାଣୀ ବିଶେଷତଃ କୁକୁରମାନଙ୍କୁ ମହାକାଶକୁ ପଠାଇ ସେମାନଙ୍କ ଜୀବନଯାତ୍ରା ଉପରେ ମହାକାଶଯାତ୍ରାର

ପ୍ରଭାବ ସମ୍ବନ୍ଧରେ ଟିକିନିଖି ଜ୍ଞାନ ଆହରଣ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ପ୍ରାରମ୍ଭିକ ପର୍ଯ୍ୟାୟରେ ଏହି ରକେଟ ଗୁଡ଼ିକ ତରଳ ଅମ୍ଳଯାନ ଓ ଆଲକୋହଲକୁ ପ୍ରୋପେଲାଣ୍ଟ ଭାବେ ବ୍ୟବହାର କରୁଥିଲେ । ପର୍ଯ୍ୟାୟକ୍ରମେ ଦୁଇ ଷ୍ଟେଜ ବିଶିଷ୍ଟ ଆର୍-୭ (R-7) ରକେଟର ବିକାଶ ସଂଗଠିତ ହେଲା ଯାହାକି ତରଳ ଅମ୍ଳଯାନ, କିରୋସିନି ଓ ତରଳ ଉଦ୍‌ଯାନ ପ୍ରୋପେଲାଣ୍ଟ ଭାବେ ବ୍ୟବହାର କଲା ।

ଏ ମଧ୍ୟରେ କୋରୋଲେଭ ୧୯୫୪ ମସିହାରେ "ଆର୍ଥ ସ୍ୟାଟେଲାଇଟ" ଉପରେ ଏକ ବୈଜ୍ଞାନିକ ନିବନ୍ଧ ପ୍ରକାଶ କଲେ । ଜାନୁୟାରୀ ୧୯୫୫ ମସିହାରେ ଏକ ସୋଭିଏତ୍ ବୈଜ୍ଞାନିକ ସଂଗୋଷ୍ଠୀ କୋରୋଲେଭଙ୍କ ଏହି ବୈଜ୍ଞାନିକ ନିବନ୍ଧ ଅଧ୍ୟୟନ କରି ତଦ୍ୱାରା ଅତ୍ୟନ୍ତ ଉଦ୍‌ବୁଦ୍ଧ ଓ ଜାଗୃତ ହୋଇ ଉଠିଲେ । ସେମାନେ ଏକତ୍ର ସମ୍ମିଳିତ ହୋଇ କୋରୋଲେଭଙ୍କ ସ୍ୱପ୍ନ ପ୍ରକଳ୍ପ - ମହାକାଶକୁ ଏକ ସ୍ପେଶ୍‌କ୍ରାଫ୍ଟର ପ୍ରେରଣ ସମ୍ବନ୍ଧରେ ଗଭୀର ଭାବେ ଗବେଷଣା କଲେ ଏବଂ ୧୯୫୭ ମସିହାରେ ପ୍ରଥମ କରି ବିଶ୍ୱ ଇତିହାସରେ ସ୍ପୁଟ୍‌ନିକର ସଫଳ ରୂପାୟନ ସମ୍ଭବପର ହେଲା ।

ଆର୍-୭ (R-7) ରକେଟର ପରିବର୍ତ୍ତିତ ରୂପରେଖ ସୋଭିଏତ୍‌ମାନଙ୍କ ଦ୍ୱାରା ପ୍ରାରମ୍ଭିକ ପର୍ଯ୍ୟାୟରେ ବ୍ୟବହୃତ ହେଉଥିଲା । ଏପରିକି ଐତିହାସିକ ସ୍ପୁଟନିକ ଏବଂ ଭୋଷ୍ଟକ-୧ ଯାହାକି ବିଶ୍ୱର ପ୍ରଥମ ମଣିଷ ୟୁରି ଗାଗାରିନଙ୍କୁ ମହାକାଶଯାତ୍ରୀ ଭାବେ ନେଇ ମହାକାଶ ଯାତ୍ରା କରିଥିଲା ତାହାମଧ୍ୟ ଏହି ଆର୍-୭ (R-7) ରକେଟ ଦ୍ୱାରା ପରିଚାଳିତ ହୋଇଥିଲା । କୋରୋଲେଭ ମଧ୍ୟ ଭୋଷ୍ଟକ ଓ ଭୋସଖୋଡ୍ ମହାକାଶଯାନର ଡିଜାଇନ୍‌ରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଭୋଷ୍ଟକ ମହାକାଟାନ ଜଣେ ବା ଦୁଇଜଣ ମହାକାଶଯାତ୍ରୀଙ୍କୁ ନେଇ ମହାକାଶଯାତ୍ରା କରିଥିବା ବେଳେ ଭୋସଖୋଡ୍ ମହାକାଶ ଯାନର ଡିଜାଇନ୍ ଏକା ସାଙ୍ଗରେ ୩ ମହାକାଶଯାତ୍ରୀଙ୍କୁ ନେଇ ମହାକାଶ ଅଭିଯାନ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ଭୋଷ୍ଟକ୍ ରକେଟ୍ ଯାହାକି ଏକ ଦୁଇ ଷ୍ଟେଜ୍ ବିଶିଷ୍ଟ ରକେଟ୍ ଥିଲା ତାହା ପୃଥିବୀର ସର୍ବନିମ୍ନ କକ୍ଷପଥରେ ୪୭୨୫ କିଲୋଗ୍ରାମ ବିଶିଷ୍ଟ ଏକ ପେ-ଲୋଡ୍‌କୁ ସୁଚାରୁରୂପେ ସ୍ଥାନିତ କରିବାରେ ସମର୍ଥ ଥିଲା । ଭୋସ୍‌ଖୋଡ୍ ରକେଟ୍ (ସୂର୍ଯ୍ୟୋଦୟ) ଆର୍-୭ ରକେଟର ଏକ

ପରିମାର୍ଜିତ ରୂପାନ୍ତର ମାତ୍ର ଯାହାକି ମନୁଷ୍ୟବାହୀ ମହାକାଶଯାତ୍ରା ପାଇଁ ଉଦ୍ଦିଷ୍ଟ ଏବଂ ପୃଥିବୀର ସର୍ବନିମ୍ନ କକ୍ଷପଥରେ ଏହାର ପେ-ଲୋଡ଼୍ ଦକ୍ଷତା ୫୯୦୦ କିଲୋଗ୍ରାମ୍ ଅଟେ । ଏହା ଚନ୍ଦ୍ରକୁ ୫୦୦ କିଲୋଗ୍ରାମ୍ ଓଜନ ବହନ କରି ଯାତ୍ରା କରିପାରିବ । ଏହି ଲଞ୍ଚ ଭେହିକିଲ୍ ୧୯୬୩ ମସିହାରୁ ୧୯୭୬ ମସିହା ମଧ୍ୟରେ ଉଭୟ ମନୁଷ୍ୟବାହୀ ଓ ମନୁଷ୍ୟ ବହନ କରିନଥିବା ଅବସ୍ଥାରେ ୩୦୦ ଥର ବ୍ୟବହୃତ ହୋଇଅଛି । ସୋୟୁଜ ଲଞ୍ଚ ଭେହିକିଲ ଯାହାକି ଏକ ବିପୁଳ ଅର୍ଥ ବ୍ୟୟକାରୀ ବ୍ୟବସ୍ଥା ଅଟେ ତହିଁରେ ଏବେ ବି କୌଣସି ମଣିଷ ନ ନେଇ ପ୍ରୋଗ୍ରେସ୍ ସପ୍ଲାଇ ସ୍ପେଶକ୍ରାଫ୍ଟ ମାଧ୍ୟମରେ ଆନ୍ତର୍ଜାତିକ ମହାକାଶ କେନ୍ଦ୍ରକୁ ବିଭିନ୍ନ ବ୍ୟବସାୟୀକ ଯାତ୍ରା କରୁଅଛି ।

କୋରୋଲେଭଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିବା ସୋଭିଏତ୍ ମହାକାଶ କାର୍ଯ୍ୟକ୍ରମ ଅତ୍ୟନ୍ତ ସତର୍କତା ଓ ନିରାପଦ ବ୍ୟବସ୍ଥା ସହ କାର୍ଯ୍ୟକାରୀ ହେଉଥିଲା ଯାହାକି ଆମେରିକୀୟ ବ୍ୟବସ୍ଥାଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା । ରୁଷୀୟ ମହାକାଶ ଅଭିଯାନ ନିଶ୍ଚିତ ରୂପେ ମହାକାଶର ଆବିଷ୍କାର ଓ ଉଦ୍‌ଭାବନ ପାଇଁ ପୂର୍ଣ୍ଣମାତ୍ରାରେ ଉଦ୍ଦିଷ୍ଟ ଓ ଉତ୍ସର୍ଗୀକୃତ ଥିଲା । ପରନ୍ତୁ ସଦାସର୍ବଦା ନିରାପଦତାକୁ ଅତ୍ୟନ୍ତ ପ୍ରାଧାନ୍ୟ ଦିଆଯିବା ଏହି କାର୍ଯ୍ୟକ୍ରମର ବିଶେଷତ୍ୱ ଥିଲା । ଯେହେତୁ ନିରାପଦତା ମହାକାଶ କାର୍ଯ୍ୟକ୍ରମରେ ସର୍ବୋଚ୍ଚ ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରୁଥିଲା ତେଣୁ କୋରୋଲେଭ ସଦାସର୍ବଦା ନିଶ୍ଚିତ ହେବାକୁ ଚାହୁଁଥିଲେ ଯେ ତାଙ୍କର ଡିଜାଇନ୍ ଗୁଡ଼ିକ ପାହାଚ ପରେ ପାହାଚ ଅତିକ୍ରମ କରି ଫଳପ୍ରଦ ହେବାକୁ ବରଂ କିଛିଟା ଅଧିକ ସମୟ ନେଉ ହେଲେ ଏହା ସବୁ ଦିଗରୁ ଫୁଲ ପ୍ରୁଫ୍ ହେବା ନିତାନ୍ତ ବାଞ୍ଛନୀୟ । ସେଇଥିପାଇଁ ତାଙ୍କର ମହାକାଶଯାନ ଡିଜାଇନ୍ ଅତ୍ୟନ୍ତ ନିରାପଦ ଭାବେ କାମ କରୁଥିଲା ଓ ସଫଳତା ସର୍ବଦା ତାଙ୍କ ପଦବନ୍ଦନା କରୁଥିଲା । ଭୋଷ୍ଟକ କ୍ୟାପସୁଲ ନାନାଦି ଡିଜାଇନ ଦେଇ ଗତିକରି ସୋୟୁଜ କ୍ୟାପସୁଲରେ ରୂପାନ୍ତରୀତ ହୋଇଥିଲା ଯାହାକି ପରେ ପୁଣି ନାନାଦି ପରିବର୍ତ୍ତିତ ଡିଜାଇନ୍ ଦେଇ ଗତିକରି ଏବେ ବି ବ୍ୟବହୃତ ହେଉଅଛି ।

ସୋଭିଏତ୍ ମହାକାଶ କାର୍ଯ୍ୟକ୍ରମ ନିଶ୍ଚିତ ରୂପେ ଏକ ନିର୍ଦ୍ଧାରିତ ଓ ଶୃଙ୍ଖଳିତ ବ୍ୟବସ୍ଥା ମଧ୍ୟରେ ସଦାସର୍ବଦା ପରିଚାଳିତ ହୋଇଥାଏ । ପ୍ରାରମ୍ଭିକ ପର୍ଯ୍ୟାୟରେ ଲୁନା-୧, ଲୁନା-୨ ଓ ଲୁନା-୩ ଦ୍ୱାରା ଚନ୍ଦ୍ର ଅଭିଯାନକ କାର୍ଯ୍ୟକ୍ରମକୁ ଛାଡ଼ିଦେଲେ କୋରୋଲେଭ ତିନୋଟି ସ୍ୱତନ୍ତ୍ର ପ୍ରଚେଷ୍ଟା ମାଧ୍ୟମରେ ଚନ୍ଦ୍ରପୃଷ୍ଠରେ ସୋଭିଏତ୍

ମହାକାଶଯାନର ଅବତରଣ ପାଇଁ ଉଚିତ୍ ପଦକ୍ଷେପ ନେଇଥିଲେ । ପ୍ରଥମ ଲକ୍ଷ୍ୟଟି ଥିଲା ଭୋଷ୍କକ ଓ ଭୋସଖୋଡ୍ ମହାକାଶ ଯାନର ମହାକାଶ ଅଭିଯାନ - ଏହା ପ୍ରମାଣ କରିବାକୁ ଉଦ୍ଦିଷ୍ଟ ଥିଲା ଯେ ମନୁଷ୍ୟବାହୀ ମହାକାଶ ଯାନର ମହାକାଶଯାତ୍ରା ସମ୍ଭବ । ଦ୍ୱିତୀୟ ଲକ୍ଷ୍ୟଟି ଥିଲା ଏପରି ଏକ ଚନ୍ଦ୍ରଯାନର ବିକାଶ କରାଯିବ ଯାହାକି ଚନ୍ଦ୍ରର ଉପରି ଭାବରେ ଅତ୍ୟନ୍ତ ସୁରୁଖୁରୁରେ ଅବତରଣ କରିପାରିବ ଏବଂ ଘରି ବିଲିୟନ ବର୍ଷ ପୂର୍ବେ ଚନ୍ଦ୍ରପୃଷ୍ଠରେ ଗ୍ରହାଣୁପୁଞ୍ଜର ଗଭୀର ଆଘାତ ଫଳରେ ଜମାହୋଇ ରହିଥିବା ଅଜସ୍ର ଧୂଳୀଧୂଳା ମଧ୍ୟରେ ମହାକାଶଘରୀଟି ଯେପରି ପୋତି ହୋଇ ନଯିବ । ତୃତୀୟ ଲକ୍ଷ୍ୟଟି ଯାହାକି ଅତ୍ୟନ୍ତ କଷ୍ଟସାଧ ବ୍ୟାପାର ତାହାଥିଲା ଏକ ବୃହତ୍ ବୁଷ୍ଟରର ବିକାଶ କରି ତହିଁରେ ଚନ୍ଦ୍ରପୃଷ୍ଠକୁ ମଣିଷ ପଠେଇବା । ୧୯୬୨ ମସିହାରେ କୋରୋଲେଭଙ୍କ ଡିଜାଇନ୍ ବ୍ୟୁରୋ ଏନ୍ -୧ ଲଞ୍ଚ ଭେହିକିଲ୍‌ର ବିକାଶ ପାଇଁ କାମ ଆରମ୍ଭ କରିଦେଲେ ଯାହାକି ଆମେରିକାର "ସାଟର୍ଣ୍ଣ-ଭି"ର ଅନ୍ୟ ଏକ ରୂପରେଖ ଅଟେ । ପରନ୍ତୁ ଏନ୍-୧ ଲଞ୍ଚ ଭେହିକିଲ୍ କେବେ ବି ସଫଳ ମହାକାଶଯାତ୍ରା କରିପାରି ନାହିଁ ।

୫୯ ବର୍ଷ ବୟସରେ କୋରୋଲେଭଙ୍କ ମୃତ୍ୟୁ ଆଦୌ ସମୟୋପଯୋଗୀ ନଥିଲା । ଯଦି ସେ ଜୀବିତ ରହିଥାଆନ୍ତେ ତେବେ ସେ ନିଶ୍ଚିତ ରୂପେ ଚନ୍ଦ୍ର ଅଭିଯାନ ଦୌଡ଼ରେ ଜିତିଯାଇ ଥାଆନ୍ତେ । ଚନ୍ଦ୍ରର ସୁଦୂରପେଟରେ ଥିବା ଏକ ବୃହତ୍ ଗର୍ତ୍ତ ତଥା ଏକ କ୍ଷୁଦ୍ର ଗ୍ରହ ନମ୍ବର ୧୮୫୫କୁ କୋରୋଲେଭଙ୍କ ଅବିସ୍ମରଣୀୟ ସ୍ମୃତି ଉଦ୍ଦେଶ୍ୟରେ ନାମକରଣ କରାଯାଇଛି । ରୁଷୀୟ ମହାକାଶ ଯୁଗର ପ୍ରାରମ୍ଭରେ ସୋକୋଲେଭଙ୍କ ଦ୍ୱାରା ପରିକଳ୍ପନା କରାଯାଇଥିବା ସୋୟୁଜ ମହାକାଶଯାନ ୨୦୦୬ ମସିହାରେ ତାର ୪୦ ବର୍ଷର କର୍ମ କୁଶଳତା ସମ୍ପାଦନ କରିଛି ଯାହାକି ସୋକୋଲେଭଙ୍କ ପ୍ରଜ୍ଞା ଓ ଦକ୍ଷତାର ଏକ ଜ୍ୱଳନ୍ତ ନିଦର୍ଶନ । ସୋୟୁଜ ସମଗ୍ର ବିଶ୍ୱର ସର୍ବାଧିକ ଥର ମହାକାଶଯାତ୍ରା କରିଥିବା ମହାକାଶଯାନର ଶ୍ରେଷ୍ଠତ୍ୱ ଓ ମାନ୍ୟତା ଲାଭ କରିପାରିଛି । ଏହା ୧୭୦୦ ରୁ ଉର୍ଦ୍ଧ୍ୱ ମହାକାଶ ମିଶନ ସଫଳଭାବେ ସମ୍ପାଦିତ କରିଛି ଯାହାକି ଏକ ବିଶ୍ୱ ରେକର୍ଡ଼ । ଏହା ଅତି ପୁରାତନ ଡିଜାଇନ୍ ଉପରେ ପର୍ଯ୍ୟବେସିତ କିନ୍ତୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ଏହା ସ୍ୱଳ୍ପ ବ୍ୟୟସାପେକ୍ଷ ଏବଂ ଉଡ଼ମାନର ନିର୍ଭରଶୀଳତା ଓ ନିରାପଦତା ଉପରେ ପ୍ରତିଷ୍ଠିତ ଯାହାକି ବ୍ୟବସାୟୀକ ଦୃଷ୍ଟିକୋଣରୁ ଅତ୍ୟନ୍ତ

ଆଦରଣୀୟ ଓ ଗ୍ରହଣଯୋଗ୍ୟ ହୋଇପାରିଛି । ଅତ୍ୟନ୍ତ ବିଶ୍ୱାସଯୋଗ୍ୟ ଓ ନିରାପଦ ମହାକାଶଯାତ୍ରା ପାଇଁ ଏହା ସର୍ବଜନ ଆଦୃତ ହୋଇପାରିଛି । ୨୦୦୩ ମସିହା ଫେବୃୟାରୀ ଏକ ତାରିଖରୁ ୨୦୦୫ ମସିହା ଜୁଲାଇ ମାସ ୨୬ ତାରିଖ ପର୍ଯ୍ୟନ୍ତ ଯେତେବେଳେ କି ଚ୍ୟାଲେଞ୍ଜର ଦୁର୍ଘଟଣାପରେ ଆମେରିକାର ସମସ୍ତ ମହାକାଶଯାତ୍ରା କାର୍ଯ୍ୟକ୍ରମ ଠୁକୁଲ ପଡ଼ିଯାଇଥିଲା ସେତେବେଳେ ଭୂପୃଷ୍ଠରୁ ଇଣ୍ଟରନ୍ୟାସନାଲ୍ ସ୍ପେଶ୍ ଷ୍ଟେସନ୍‌କୁ ଯିବା ଆସିବା ପାଇଁ ସୋୟୁଜ ହିଁ କେବଳ ଏକମାତ୍ର ମହାକାଶଯାନ ଭାବେ ବ୍ୟବହୃତ ହେଉଥିଲା । ସାଲ୍ୟୁଟ ଓ ମିର୍ ପରି ସ୍ପେଶ୍ ତଥା ଇଣ୍ଟରନ୍ୟାସ୍‌ନାଲ୍ ସ୍ପେଶ୍ ଷ୍ଟେସନ୍ ଆଦି ଯାହାକି କୋରୋଲେଭଙ୍କ ସ୍ୱପ୍ନ ଥିଲା ତାହା ନିଶ୍ଚିତରୂପେ ସାକାର ହୋଇପାରିଛି ।

## କାହାଣୀର ଆରପଟ !

ଏପଟରେ ସୋଭିଏତ ୟୁନିଅନରେ କୋରୋଲେଭ ସ୍ପେଶ ଓଡ଼େଶୀ (Space Odyssey) କାର୍ଯ୍ୟକ୍ରମରେ ବୀରଦର୍ପରେ ମହାଦକ୍ଷତା ପ୍ରଦର୍ଶନ କରିଚାଲିଥିଲାବେଳେ ସେ ପଟରେ ଆମେରିକାରେ ଓ୍ୱେର୍ଣ୍ଣହର ଭନ ବ୍ରଉନ ଯୁକ୍ତରାଷ୍ଟ୍ର ଆମେରିକାର ମହାକାଶ କାର୍ଯ୍ୟକ୍ରମର ଜନକ ଭାବେ ସର୍ବଜନ ବିଦିତ ହୋଇ ଚାଲିଥାନ୍ତି । ଜର୍ମାନରେ ଜନ୍ମଲାଭ କରିଥିବା ଭନ ବ୍ରଉନ ନିଜ ଉର୍ବର ମସ୍ତିଷ୍କର ବୈଜ୍ଞାନିକ ଚମତ୍କାରୀତାର ମହାର୍ଘ ପ୍ରଦର୍ଶନ କରି ଆମେରିକାର ଗର୍ବ ଓ ଗାରୀମାକୁ ଗଗନଚୁମ୍ୱୀ ସଫଳତା ପ୍ରଦାନ ପାଇଁ ନିଜକୁ ବାଜି ଲଗେଇ ଦେଇଥାନ୍ତି । ବିଶେଷତଃ ସେ ହିଁ ତ ଥିଲେ ନାଜି ଜର୍ମାନୀର ପ୍ରବଳ ପରାକ୍ରମଶାଳୀ V-2 ରକେଟର ମୁଖ୍ୟ ଆର୍କିଟେକ୍ଟ ।

ଭନ ବ୍ରଉନ ୧୯୧୨ ମସିହା ମାର୍ଚ୍ଚ ମାସ ୨୩ ତାରିଖ ରେ ଏକ ଧନାଢ୍ୟ ଓ ଅତ୍ୟନ୍ତ ପ୍ରଭାବଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ବର୍ଲିନ ଇନ୍‌ଷ୍ଟିଚ୍ୟୁଟ ଅଫ ଟେକ୍ନୋଲୋଜିର ଛାତ୍ର ହୋଇ ସ୍ପେଶ୍ ଫ୍ଲାଇଟ ସୋସାଇଟି – ଭି.ଏଫ୍.ଆର୍ ରେ ଯୋଗଦାନ କରିଥିଲେ ଏବଂ ମହାକାଶ ବିଶେଷଜ୍ଞ ଓ କିମ୍ବଦନ୍ତୀ ପୁରୁଷ ହରମାନ୍ ଓବେର୍ଥ (Hermann Oberth) ଙ୍କ ପ୍ରମୁଖ ସହାୟକ ଭାବେ କାର୍ଯ୍ୟ କରିଥିଲେ ଯେ କି ତରଳ ଜାଳେଣୀ ଯୁକ୍ତ ରକେଟ ମୋଟର ଟେଷ୍ଟରେ ଅତ୍ୟନ୍ତ ଦକ୍ଷ ଓ ଧୁରନ୍ଧର ଥିଲେ । ରୁମାନିଆରେ ଜନ୍ମଗ୍ରହଣ କରିଥିବା ହରମାନ୍ ଓବେର୍ଥ ୧୯୨୩ ମସିହାରେ

The Rocket in to Interplanetary Space ନାମକ ଏକ ଅତ୍ୟନ୍ତ ଚମତ୍କାର ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକଟି ପାଠ କଲେ ଯେକୌଣସି ବ୍ୟକ୍ତି ମହାକାଶ ଯାତ୍ରାରେ ଭାଗ ନେବା ପାଇଁ ଅତ୍ୟନ୍ତ ଲାଳାୟୀତ ଓ ଭାବୋଦ୍ଦୀପକ ହୋଇ ଉଠିବ ଯାହାକି ଜର୍ମାନୀ ଯୁବକ ଭନ ବ୍ରଉନଙ୍କ କ୍ଷେତ୍ରରେ ଘଟିଥିଲା । ସେ ଏହି ପୁସ୍ତକଟିକୁ ୧୯୨୫ ମସିହାରେ ପାଠ କଲାପରେ ତାଙ୍କ ମାନସ ରାଜ୍ୟରେ ମହାକାଶ ଯାତ୍ରା ଓ ତତ୍ ସଂକ୍ରାନ୍ତୀୟ ନାନାଦି ଅନୁଶୀଳନ ପର୍ବକୁ ନେଇ ଏକ ବିରାଟ ବୈଜ୍ଞାନିକ ଝଡ଼ସୃଷ୍ଟି ହେଲା । ଏହାର ଠିକ୍ ପାଞ୍ଚ ବର୍ଷ ପରେ ଭନ ବ୍ରଉନ୍ ବିଧିବଦ୍ଧ ଭାବେ ହରମାନ ଓବେର୍ଥଙ୍କ ଗ୍ରୁପ୍‌ରେ ଯୋଗଦାନ କଲେ ଏବଂ ତାଙ୍କୁ ରକେଟ ସଂକ୍ରାନ୍ତୀୟ ନାନାବିଧ ପରୀକ୍ଷା ନିରୀକ୍ଷାରେ ପୂର୍ଣ୍ଣମାତ୍ରାରେ ସହଯୋଗ କଲେ ।

୧୯୩୨ ମସିହା ସୁଦ୍ଧା ଜର୍ମାନ୍ ରକେଟ ସୋସାଇଟିର ଏଭଳି ବୈଜ୍ଞାନିକ ପ୍ରଚେଷ୍ଟା ଜର୍ମାନ ଆର୍ମିର ସଦୟ ଦୃଷ୍ଟିଗୋଚର ହେଲା ଏବଂ ସେହିବର୍ଷ ଜୁଲାଇ ମାସରେ ଏକ ଡେମନଷ୍ଟ୍ରେସନ୍ କାର୍ଯ୍ୟକ୍ରମ ଭିତ୍ତିରେ ଏକ ମିରାକ (Mirak) ରକେଟ ମହାକାଶକୁ ଲଞ୍ଚ କରାଯାଇଥିଲା । ଏହି ଡେମନଷ୍ଟ୍ରେସନ ଫ୍ଲାଇଟ୍‌ର ତିନିମାସ ପରେ ଭନ ବ୍ରଉନ ଜର୍ମାନ ଆର୍ମି ପାଇଁ ତରଳ ଜାଳେଣୀ ଭିତ୍ତିକ ରକେଟ (Liquid Propelled Rocket) ର ବିକାଶ ଉପରେ ଗୁରୁତ୍ୱପୂର୍ଣ୍ଣ କର୍ମଯୋଜନା ହାତକୁ ନେଲେ । ସେହି ସମୟରେ ଜର୍ମାନୀରେ ଜର୍ମାନବୀର ଆଡଲ୍ଫ ହିଟଲରଙ୍କ ଅଗ୍ରଗାମୀ ଅଶ୍ୱ ଦ୍ରୁତ ଗତିରେ ଆଗକୁ ଆଗକୁ ମାଡ଼ି ଚାଲିଥାଏ । ଏଭଳି ପରିସ୍ଥିତିରେ ଭନ ବ୍ରଉନ ନାଜିଙ୍କ ପାଖରେ କାମ କରିବାକୁ ଅଧିକ ପସନ୍ଦ ମଣିଲେ ଏବଂ ଭୟାବହ ପୂର୍ଣ୍ଣ ସ୍ପେଶ ଫ୍ଲାଇଟ ସୋସାଇଟିରେ ମଧ୍ୟ ଯୋଗଦାନ ଦେଲେ । ସ୍ପେଶ ଫ୍ଲାଇଟ ସୋସାଇଟିର ଏକ ସମ୍ମାନାସ୍ପଦ ସଦସ୍ୟ ପ୍ରଫେସର ୱିଲି ଲେ (Willey Ley) ନାଜିଙ୍କ ପାଖରେ କାମ କରିବା ପରିବର୍ତ୍ତେ ଜର୍ମାନୀ ଛାଡ଼ି ଚାଲିଯିବାକୁ ଅଧିକ ପସନ୍ଦ ମଣିଲେ । ପରନ୍ତୁ ଜର୍ମାନ ରକେଟ ସୋସାଇଟିର ଅଧିକାଂଶ ସଦସ୍ୟ ଭନ ବ୍ରଉନଙ୍କ ପଥ ଅନୁସରଣ କରି ନାଜିଙ୍କ ପାଖରେ କାମ କରିବାକୁ ସ୍ଥିରିକୃତ କଲେ ।

ହିଟଲର ରକେଟକୁ ମିଶାଇଲ ଭାବେ ବ୍ୟବହାର କରିବାକୁ ଅତ୍ୟନ୍ତ ଆଗ୍ରହୀ ଥିଲେ । ହିଟଲରଙ୍କ ପୂର୍ଣ୍ଣ ସହଯୋଗ ଲାଭ କରି ଭନ ବ୍ରଉନ ଭୟାବହ ଯୁଦ୍ଧ (Warfare) ପାଇଁ ଆବଶ୍ୟକୀୟ ରକେଟ ପ୍ରଯୁକ୍ତି ବିଦ୍ୟା କାର୍ଯ୍ୟକ୍ରମର ପରିଯୋଜନା

ହାତକୁ ନେଲେ । ପ୍ରାରମ୍ଭିକ ଡିଜାଇନ ଭିତ୍ତିକ ରକେଟ ଏ-୨ (A-2) ଯାହାକି ଇଥାଇଲ ଆଲକୋହଲ (ଇଥାନଲ୍) ଓ ତରଳ ଅମ୍ଳଜାନ ଜାଳେଣୀ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲା ଏବଂ ଯାହାକି ୧୯୩୪ ମସିହାରେ ପରୀକ୍ଷାମୂଳକ ଭାବେ ମଧ୍ଯ ଡେମନ୍‌ଷ୍ଟ୍ରେସନ୍ କରାଯାଇଥିଲା ଅବା ଏ-୩ (A-3) ରକେଟ କେବଳ ରିସର୍ଚ୍ଚ ଟୁଲ ଭାବେ ହିଁ ଅଭିହିତ ହେଉଥିଲା । ପରନ୍ତୁ ଏ-୪ (A-4) ରକେଟ ଯାହାକୁକି ପରେ ଭି-୨ (V-2) ଭାବେ ନାସିତ କରାଯାଇଥିଲା ତାହା ଏକ ବ୍ୟବହାରିକ ଅସ୍ତ୍ର ଶସ୍ତ୍ର (Practical Weapon) ଭାବେ ପରିପ୍ରୟୋଗ କରିବା ପାଇଁ ହିଁ ଉଦ୍ଦିଷ୍ଟ ଥିଲା ।

୧୯୩୪ ମସିହାର ଶେଷସୁଦ୍ଧା ଭନ୍ ବ୍ରଉନଙ୍କ ଗ୍ରୁପ ଦୁଇଟି ରକେଟ ଅତ୍ୟନ୍ତ ସଫଳତାର ସହ ଲଞ୍ଚ କରିଥିଲେ ଯାହାକି ୨.୨ ଓ ୩.୫ କିଲୋମିଟର ଉଚ୍ଚକୁ ଯାତ୍ରା କରିବାରେ ସମର୍ଥ ହୋଇଥିଲା । ୧୯୩୭ ରୁ ୧୯୪୧ ମସିହା ମଧ୍ୟରେ ଭନ ବ୍ରଉନଙ୍କ ଗ୍ରୁପ ସତୁରୀଟି ଏ-୩ ଓ ଏ-୫ ରକେଟ ଲଞ୍ଚ କରିବାରେ ସଫଳତା ହାସଲ କରିଥିଲେ ଯାହାକି ପ୍ରସ୍ତାବିତ ଏ-୪ ରକେଟର ଲଞ୍ଚିଙ୍ଗ ପାଇଁ ବ୍ୟବହୃତ ହେବାକୁ ଥିବା ପ୍ରତ୍ୟେକଟି ଯନ୍ତ୍ରପାତିର ସଠିକ ପରୀକ୍ଷା ନିରୀକ୍ଷା କରିଥିଲା । ମାର୍ଚ୍ଚ ୧୯୪୨ରେ ପ୍ରଥମ ଏ-୪ ରକେଟଟି ଉଡ଼ାଣ ଭରିଥିଲା । ରକେଟଟି ନିମ୍ନ ମେଘମାଳା ଭିତରକୁ ମାତ୍ର ପ୍ରବେଶକରି ଲଞ୍ଚିଂ ସ୍ଥାନରୁ ପ୍ରାୟ ଏକ କିଲୋମିଟର ଦୂରରେ ସମୁଦ୍ର ଗର୍ଭରେ ପଡ଼ି ଧ୍ୱଂସ ହୋଇଯାଇଥିଲା । ଅଗଷ୍ଟ ୧୯୪୨ ମସିହାରେ ସଂଗଠିତ ହୋଇଥିବା ଦ୍ୱିତୀୟ ଲଞ୍ଚିଂ କାର୍ଯ୍ୟକ୍ରମରେ ଏ-୪ ରକେଟଟି ମହାକାଶରେ ୧୧ କିଲୋମିଟର ଉର୍ଦ୍ଧ୍ୱକୁ ଗତିକଲାପରେ ବିସ୍ଫୋରିତ ହୋଇ ଧ୍ୱଂସ ପାଇଯାଇଥିଲା । କିନ୍ତୁ ତୃତୀୟ ପ୍ରଚେଷ୍ଟାଟି ଫଳବତୀ ହୋଇଥିଲା । ୧୯୪୨ ମସିହା ଅକ୍ଟୋବର ମାସ ୩ ତାରିଖରେ ଏ-୪ ରକେଟର ତୃତୀୟ ଉଡ଼ାଣ ପ୍ରକ୍ରିୟା କାର୍ଯ୍ୟକ୍ରମ ଅନୁଯାୟୀ ଠିକ୍ ଠିକ୍ ସଂଗଠିତ ହୋଇଥିଲା ଏବଂ ୧୯୩ କିଲୋମିଟର ଦ୍ୱରତ୍ୱରେ ଯଥା ସ୍ଥାନରେ ଅବତରଣ କରିଥିଲା ।

ତେଣୁ ଏହା ସ୍ପଷ୍ଟରୂପେ କୁହାଯାଇପାରେ ଯେ ୧୯୪୨ ମସିହାରେ ଲଞ୍ଚ କରାଯାଇଥିବା ଜର୍ମାନ ଏ-୪ ରକେଟ ପ୍ରଥମ ପ୍ରୋଜେକ୍ଟାଇଲ ଭାବେ ସବ୍-ଅର୍ବିଟାଲ ସ୍ପେସ୍‌ରେ ପହଞ୍ଚି ପାରିଥିବାର ବିରଳ ଗୌରବର ଅଧିକାରୀ ହୋଇପାରିଥିଲା । ଏହାର ଡିଜାଇନରେ ଧିରେ ଧିରେ ଉନ୍ନତି ଅଣାଗଲା ଏବଂ **Ballastic Missile**

Vergeltungswaffe-2 ବା ଏହା ସର୍ବସାଧାରଣରେ ପରିଚିତି ଲାଭ କରିଥିବା ନାମ V-2 ର ଜନ୍ମଲାଭ ହେଲା । ଏହାର ବ୍ୟବସାୟୀକ ଉତ୍ପାଦନ ୧୯୪୩ରେ ଆରମ୍ଭ ହେଲା । ଭି-୨ (V-2) ମିଶାଇଲ ବ୍ରିଟେନ ଓ ବେଲିଜିୟମ ବିରୁଦ୍ଧରେ ମୁଖ୍ୟତ ପ୍ରୟୋଗ କରାଯାଇଥିଲା ଯାହାକି ଧ୍ୱଂସର ସୁଦୂରପ୍ରସାରୀ ତାଣ୍ଡବଲୀଳା ସଂଗଠିତ କରିଥିଲା । ଭି-୨ (V-2) ମିଶାଇଲରେ ଇଥାନଲ ଓ ଜଳର ମିଶ୍ରଣ ତରଳ ଅମ୍ଳଯାନ ସହ ଯୁକ୍ତ ହୋଇ ଜାଳେଣୀ ଭାବରେ ବ୍ୟବହାର ହୋଇଥାଏ ଯାହାର କାର୍ଯ୍ୟକାରୀ ଦକ୍ଷତା ପ୍ରାୟ ୩୦୦ କିଲୋମିଟର ପର୍ଯ୍ୟନ୍ତ ରହିଥାଏ ଏବଂ ଏହା ନିର୍ଦ୍ଦିଦ୍ୱରେ ୧୦୦୦ କିଲୋଗ୍ରାମ୍‌ର ୱାରହେଡ୍ ଧାରଣ କରି ଯାତ୍ରାକରି ପାରିବ । ଭନ ବ୍ରଉନଙ୍କ ନିର୍ଦ୍ଦେଶନାରେ ମିଟେଲୱେର୍କ (Mittelwerk) ସ୍ଥିତ V-2 ମିଆଇଲ ଫ୍ୟାକ୍ଟୋରୀ ଅଗଷ୍ଟ - ୧୯୪୪ ଓ ମାର୍ଚ୍ଚ ୧୯୪୫ ମସିହା ମଧ୍ୟରେ ୪୫୭୫ ସଂଖ୍ୟକ V-2 ମିଥାଇଲ ପ୍ରସ୍ତୁତ କରିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟରେ "ଅପରେସନ ପେପର କ୍ଲିପ" ନାମକ ଏକ ଗୋପନୀୟ ଯୋଜନା ମାଧ୍ୟମରେ ଭନ ବ୍ରଉନ ଆମେରିକା ଚାଲିଗଲେ ଏବଂ ଆମେରିକାର ରକେଟ ଓ ମହାକାଶ କାର୍ଯ୍ୟକ୍ରମର ସେ ମୁଖ୍ୟ ପରିଚାଳନା ଶକ୍ତିଭାବେ ଉଦ୍‌ଭାସିତ ହେଲେ । ଭନ ବ୍ରଉନ ଏବଂ ତାଙ୍କ ଟିମ ମେମ୍ବରମାନେ ନିୟୁ ମେକ୍ସିକୋର ହ୍ୱାଇଟ ସ୍ୟାଣ୍ଡକୁ ଯାତ୍ରାକରି ସେଠାରେ ଭି-୨ ମିଶାଇଲର ବିଭିନ୍ନ ଅଂଶ ବିଶେଷର ଆସେମ୍ବ୍ଲି କରିବା ସଂଗେ ସଂଗେ ଏହାର ଲଞ୍ଚ ପାଇ ମଧ କାର୍ଯ୍ୟ କରବା ଆରମ୍ଭ କରିଦେଲେ । ଫେବୃୟାରୀ ୧୯୪୬ ସୁଦ୍ଧା ଭନ ବ୍ରଉନଙ୍କ ସମସ୍ତ ଟିମମେମ୍ବରମାନେ ହ୍ୱାଇଟ ସ୍ୟାଣ୍ଡରେ ଏକତ୍ରିତ ହୋଇଗଲେ ଏବଂ ୧୬ ଏପ୍ରିଲ ୧୯୪୬ରେ ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଥମ ଭି-୨ ମିଶାଇଲର ଲଞ୍ଚ କରାଗଲା । ଆମେରିକାର ମହାକାଶ କାର୍ଯ୍ୟକ୍ରମର ନିଶ୍ଚିତ ରୂପେ ଏହା ଥିଲା ଏକ ଶୁଭବେଳା ଏବଂ ତାପରେ ଗୋଟିଏ ପରେ ଗୋଟିଏ ମହାକାଶ ଅଧ୍ୟାୟର ଉନ୍‌ମୋଚନ ପର୍ବ ଆରମ୍ଭ ହୋଇଥିଲା ।

ସୋଭିଏତ୍ ୟୁନିଅନ୍‌ର ମହାକାଶଯାନ ସ୍ପୁଟନିକର ଐତିହାସିକ ଲଞ୍ଚ ଓ ଏହାର ଅସାଧାରଣ ସଫଳତାକୁ ଅବଲୋକନ କରି ଆମେରିକା ଅତ୍ୟନ୍ତ ଆଘାତ ପ୍ରାପ୍ତ ହୋଇଥିଲା ଓ ଯନ୍ତ୍ରଣାର କରୁଣ ରାଗ ଆମେରିକାର ଜନଜୀବନକୁ ବ୍ୟଥିତ ଓ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା । ୧୯୫୮ ମସିହାରେ ନ୍ୟାସନାଲ ଏରୋନଟିକ୍

ଯାଣ୍ଡ ସ୍ପେସ ଆଡମିନିଷ୍ଟ୍ରେସନ (NASA)ର ସ୍ଥାପନା କରାଯାଇଥିଲା ଏବଂ ଏହାର ଦୁଇବର୍ଷ ପରେ ଭନ ବ୍ରଉନ ଏବଂ ତାଙ୍କର ସମସ୍ତ ଟିମ ମେମ୍ବରମାନେ ତଥା ସମଗ୍ର ଆର୍ମି ବାଲିଷ୍ଟିକ ମିଶାଇଲ ଏଜେନ୍ସୀ ନାସାକୁ ସ୍ଥାନାନ୍ତରୀତ ହୋଇଥିଲେ ଯାହାକି ଆମେରିକାର ମହାକାଶ କାର୍ଯ୍ୟକ୍ରମର ପ୍ରମୁଖ କେନ୍ଦ୍ରବିନ୍ଦୁ ଭାବେ ପରିଗଣିତ ହେଲା । ସେତେବେଳକୁ ଭନ ବ୍ରଉନ ଆମେରିକାର ପ୍ରାକୃତିକ ନାଗରିକତ୍ୱ ହାସଲ କରିସାରିଥିଲେ ଏବଂ ଆମେରିକାର ଆଇ.ସି.ବି.ଏମ୍ (ICBM) କାର୍ଯ୍ୟକ୍ରମରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ ।

ପରନ୍ତୁ ଆମେରିକା ପାଇଁ ଅତ୍ୟନ୍ତ ବିଚଳିତ ଓ ହତବୁଦ୍ଧିତାର ପରିଚ୍ଛୟ ଥିଲା ଏହି ଯେ ୬ ଡିସେମ୍ବର ୧୯୫୭ ମସିହାରେ ଭ୍ୟାନଗାର୍ଡ଼ ରକେଟ ଲଞ୍ଚିଂ ପ୍ରକ୍ରିୟା ବିଫଳତାର ସ୍ୱାଦ ଚାଖିଲା ଯାହାକି ଲଞ୍ଚିଂ ପ୍ୟାଡ଼ରେ ହିଁ ବିସ୍ଫୋରଣ ହୋଇ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ପୁନଶ୍ଚ ଏହି ରକେଟଟି ୧.୩୬ କିଲୋଗ୍ରାମର ସ୍ୟାଟେଲାଇଟକୁ ବହନ କରିବା ପାଇଁ ଡିଜାଇନ କରାଯାଇଥିଲା ଯାହାକି ସୋଭିଏତ୍ ୟୁନିଅନର ସ୍ପୁଟନିକ ତୁଳନାରେ କେବଳ ମାତ୍ର ଦ୍ରାକ୍ଷାଫଳ ସଦୃଶ୍ୟ ଥିଲା କହିଲେ ଚଳେ । ଏପରିକି ଭ୍ୟାନଗାର୍ଡ଼ର ଉନ୍ନତ ରୂପରେଖର ଡିଜାଇନ ଦକ୍ଷତା ମାତ୍ର ୯ କିଲୋଗ୍ରାମ ଓଜନର ପେ-ଲୋଡ଼ ଧାରଣ ପାଇଁ ଉଦ୍ଦିଷ୍ଟ ଥିଲାବେଳେ ସୋଭିଏତ୍ ୟୁନିଅନ୍ ୧୦୦୦ କିଲୋଗ୍ରାମ ଓଜନର ପେ-ଲୋଡ଼ ଧାରଣ କରିବାର ଦକ୍ଷତା ସମ୍ପନ୍ନ ରକେଟ ଡିଜାଇନ କରି ଅତ୍ୟନ୍ତ ସହଜ ଉପାୟରେ ଏହାର ସଫଳ ଲଞ୍ଚ କରିପାରିଥିଲା । ସୋଭିଏତ R-7 ବୁଷ୍ଟର ୫୦୦ ମେଟ୍ରିକ ଟନ୍‌ର ଥ୍ରଷ୍ଟ ସୃଷ୍ଟିକରିବାରେ ସକ୍ଷମ ଥିଲା । ଅପର ପକ୍ଷରେ ଆଟଲାସ ବୁଷ୍ଟର ଯାହାକି ସେତେବେଳେ ଆମେରିକାର ଅତ୍ୟନ୍ତ ଶକ୍ତିଶାଳୀ ରକେଟ ବୋଲି ପରିଗଣିତ ହେଉଥିଲା ତାହା ମାତ୍ର ୨୦୦ ମେଟ୍ରିକ ଟନର ଥ୍ରଷ୍ଟ ବିଶିଷ୍ଟ ଥିଲା । ଆମେରିକା ପାଇଁ ପ୍ରଥମ ସଫଳତା ୧୯୫୮ ମସିହାରେ ହିଁ ଆସିଥିଲା । ଭନ ବ୍ରଉନଙ୍କ Jupiter - C ଲଞ୍ଚ ଭେହିକିଲରେ ଆରୋହଣ କରି ପରିବର୍ତ୍ତିତ ରୂପରେଖକୁ ଧାରଣ କରି ରେଡ଼ ଷ୍ଟୋନ ବାଲିଷ୍ଟିକ ମିଶାଇଲ : "ଏକ୍ସପ୍ଲୋରର - ୧" ୧୯୫୮ ମସିହା ଜାନୁୟାରୀ ୩୧ ତାରିଖ ଦିନ ଆମେରିକାର ପ୍ରଥମ ସ୍ୟାଟେଲାଇଟ ଭାବେ ସଫଳତାର ସହ ଲଞ୍ଚିଂ ହୋଇଥିଲା । ଜେଟ ପ୍ରୋପଲସନ ଲାବୋରାଟୋରୀ (Jet Propulsion Laboratory) ରେ ଡିଜାଇନ ହୋଇଥିବା ଏକ୍ସପ୍ଲୋରର -୧ ଜାଗତିକ ରଶ୍ମି (Cosmic Ray) କୁ ମାପିବା ପାଇଁ ଭ୍ୟାନ ଆଲ୍ଲେନ (Van Allen) ଙ୍କ ପରୀକ୍ଷା ନିରୀକ୍ଷାକୁ ସାଂଗରେ ଧରି ଯାତ୍ରା କରିଥିଲା ।

ଏହି ପରୀକ୍ଷା ନିରୀକ୍ଷାର ଫଳାଫଳ ଏବଂ ସେହିପରି ଅନ୍ୟାନ୍ୟ ଆମେରିକୀୟ ଓ ସୋଭିଏତ୍ ୟୁନିଅନ ସ୍ୟାଟେଲାଇଟ ଯାହାକି ସେହିବର୍ଷ ହିଁ ଲଞ୍ଚ କରାଯାଇଥିଲା, ତହିଁରୁ ଉପଲବ୍ଧ ହୋଇଥିବା ଫଳାଫଳ ମିଳିମିଶି ପରିପ୍ରକାଶ କରେ ଯେ ପୃଥିବୀ ଦୁଇଟି ରେଡିଏସନ୍ ଜୋନ୍ ଦ୍ୱାରା ଆଚ୍ଛାଦିତ ହୋଇ ରହିଛି ଯାହାକି ବର୍ତ୍ତମାନ ଭ୍ୟାନ ଆଲ୍ଲେନ ରେଡ଼ିଏସନ୍ ବେଲ୍ଟ (Van Allen Radiation Belts) ଭାବେ ଜଣା । ଏହି ଭ୍ୟାନ ଆଲେନ ରେଡ଼ିଏସନ୍ ବେଲ୍ଟରେ ଶକ୍ତିପୂର୍ଣ୍ଣ କଣିକା (Energetic Particles) ଭରପୂର ହୋଇ ରହିଛି ଯାହାକି ପୃଥିବୀର ଚୁମ୍ବକୀୟ କ୍ଷେତ୍ର ଦ୍ୱାରା ପରିବେଷ୍ଟିତ ହୋଇ ରହିଛି । ଏହି ସମୟ ମଧ୍ୟରେ ସୋଭିଏତ ୟୁନିଅନ ସ୍ପୁଟନିକ – ୨ ଲଞ୍ଚ କରିସାରିଥିଲା ଯାହାକି କୁକୁର "ଲାଇକା"କୁ ସାଂଗରେ ନେଇ ୩ ନଭେମ୍ବର ୧୯୫୭ ମସିହାରେ ମହାକାଶକୁ ଯାତ୍ରା କରିଥିଲା ।

୧୯୬୧ ମସିହାରେ ଆମେରିକାର ପ୍ରଥମ ମହାକାଶଯାତ୍ରୀ ମହାକାଶ ପରିଭ୍ରମଣ ପରିସମାପ୍ତ କରି ଆଟଲାଣ୍ଟିକ ସମୁଦ୍ରରେ ଅବତରଣ କଲାପରେ ରାଷ୍ଟ୍ରପତି କେନେଡ଼ି ଅତ୍ୟନ୍ତ ଭାବ ବିହ୍ୱଳ ହୋଇ ଘୋଷଣା କରିଥିଲେ ଯେ ଆମେରିକାର ନାଗରିକ ହିଁ ପ୍ରଥମେ ଚନ୍ଦ୍ରପୃଷ୍ଠରେ ଅବତରଣ କରିବ । ନାସାର ମାର୍ଶାଲ ସେଣ୍ଟରକୁ ଏକ ବିଶାଳକାୟ ରକେଟ ପରିବାର (A family of giant rockets)ର ବିକାଶ ପାଇଁ ଦାୟିତ୍ୱ ଦିଆଯାଇଥିଲା ଯାହାକି ଆମେରିକୀୟ ମୁନ ମିଶନକୁ ଫଳପ୍ରଦ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ଭନ ବ୍ରଉନ ନାସାର ମାର୍ଶାଲ ସ୍ପେଶ ଫ୍ଲାଇଟ ସେଣ୍ଟରର ନିର୍ଦ୍ଦେଶକ ଥିବା ସଂଗେ ସଂଗେ Saturn-V ଲଞ୍ଚ ଭେହିକିଲର ମୁଖ୍ୟ ଆର୍କିଟେକ୍ଟ ଥିଲେ ଯେଉଁ ସୁପର ବୁଷ୍ଟର ସାହାଯ୍ୟରେ ଯୁକ୍ତରାଷ୍ଟ୍ର ଆମେରିକା ଚନ୍ଦ୍ରପୃଷ୍ଠରେ ପହଞ୍ଚିଯାଇ ପାରିଥିଲା । କେନେଡ଼ିଙ୍କ ଅଗ୍ନିବର୍ଷୀ ଭାଷଣ ଓ ଓଜସ୍ୱିନୀ ଜାତୀୟ ଉଦ୍‌ବୋଧନ ଆମେରିକାବାସୀଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲା ଏବଂ ଫଳସ୍ୱରୂପ ବିଶ୍ୱର ପ୍ରଥମ ମଣିଷ – ଦୁଇଜଣ ଆମେରିକୀୟ - ୧୬୬୯ ମସିହାରେ ଚନ୍ଦ୍ରପୃଷ୍ଠରେ ପାଦ ରଖିଲେ । ଏପର୍ଯ୍ୟନ୍ତ ବିଶ୍ୱରେ ଆମେରିକା ହିଁ ପ୍ରଥମ ରାଷ୍ଟ୍ର ହୋଇ ରହିଛି ଯାହାର ଦୁଇ ନାଗରିକଙ୍କ ପଦଯୁଗଳ ଚନ୍ଦ୍ର ପୃଷ୍ଠ ସ୍ପର୍ଶ କରି ପାରିଛି ଓ ଏପରି ଅସାମାନ୍ୟ ଓ ଅଭୂତପୂର୍ବ ଗୌରବ କେବଳ ଓ୍ୱେର୍ଣ୍ଣହର ଭନ ବ୍ରଉନ୍‌ଙ୍କ ପାଇଁ ହିଁ ସମ୍ଭବପର ହୋଇପାରିଛି ।

## ଘଟଣାବହୁଳ ମହାକାଶ କାର୍ଯ୍ୟକ୍ରମର ଦିଗ ଦିଗନ୍ତ
## (୧୯୫୭ - ୧୯୫୮)

| | | |
|---|---|---|
| ୪ ଅକ୍ଟୋବର | - | ସୋଭିଏତ୍ ୟୁନିଅନ : ସ୍ପୁଟନିକ - ୧ (୮୩.୬ କିଲୋଗ୍ରାମ) - ଲଞ୍ଚ୍ କରାଗଲା |
| ୩ ନଭେମ୍ବର | - | ସୋଭିଏତ୍ ୟୁନିଅନ : ସ୍ପୁଟନିକ - ୨ (୫୦୮.୩ କିଲୋଗ୍ରାମ), କୁକୁର ଲାଇକା ଯାତ୍ରୀ ହିସାବରେ ଥାଇ ଲଞ୍ଚ୍ କରାଗଲା । |
| ୬ ଡିସେମ୍ବର | - | ଯୁକ୍ତରାଷ୍ଟ୍ର ଆମେରିକା : ଭ୍ୟାନଗାର୍ଡ୍ ଟିଭି-୩ର ଲଞ୍ଚ ପ୍ୟାଡ୍‌ରେ ବିସ୍ଫୋରଣ |

## ୧୯୫୮

| | | |
|---|---|---|
| ୩୧ ଜାନୁୟାରୀ | - | ଯୁକ୍ତରାଷ୍ଟ୍ର ଆମେରିକା : ଆମେରିକାର ପ୍ରଥମ ସ୍ୟାଟେଲାଇଟ ଏକ୍ସପ୍ଲୋରର - ୧ (୧୪ କିଲୋଗ୍ରାମ), ଭ୍ୟାନ ଆଲ୍ଲେନ ରେଡ଼ିଏସନ୍ ବେଲ୍ଟର ଆବିଷ୍କାର କଲା । |
| ୩ ଫେବୃୟାରୀ | - | ସୋଭିଏତ ୟୁନିଅନ - ସ୍ପୁଟନିକ -୩ର ଲଞ୍ଚ୍ ପାଇଁ ପ୍ରଥମ ପ୍ରଚେଷ୍ଟା ବିଫଳ |
| ୫ ଫେବୃୟାରୀ | - | ଯୁକ୍ତରାଷ୍ଟ୍ର ଆମେରିକା - ଦ୍ୱିତୀୟ ଭ୍ୟାନଗାର୍ଡ୍ ଲଞ୍ଚ୍ ବିଫଳ |
| ୫ ମାର୍ଚ୍ଚ | - | ଯୁକ୍ତରାଷ୍ଟ୍ର ଆମେରିକା - ଏକ୍ସପ୍ଲୋରର - ୨ ପୃଥିବୀର କକ୍ଷପଥରେ ପରିକ୍ରମାରେ ବିଫଳ |
| ୧୭ ମାର୍ଚ୍ଚ | - | ଯୁକ୍ତରାଷ୍ଟ୍ର ଆମେରିକା - ଭ୍ୟାନଗାର୍ଡ୍ - ୧ (୧.୪୭ କିଲୋଗ୍ରାମ) ପୃଥିବୀର କକ୍ଷପଥରେ ସଫଳତାର ସହ ସ୍ଥାପିତ |

| | |
|---|---|
| ୨୬ ମାର୍ଚ୍ଚ | - ଯୁକ୍ତରାଷ୍ଟ୍ର ଆମେରିକା - ଏକ୍ସପ୍ଲୋରର - ୩ ପୃଥିବୀର କକ୍ଷପଥକୁ ଲଞ୍ଚ୍ କରାଗଲା । ଏହା ରେଡ଼ିଏସନ୍ ଓ ମାଇକ୍ରୋ ମେଟିଓରଏଡ୍ (Micrometoroid) ସଂକ୍ରାନ୍ତୀୟ ତଥ୍ୟ ସଂଗ୍ରହ । |
| ୨୮ ଏପ୍ରିଲ୍ | - ଯୁକ୍ତରାଷ୍ଟ୍ର ଆମେରିକା - ଆଉ ଏକ ଭ୍ୟାନଗାର୍ଡ୍ର ଲଞ୍ଚ୍ ଫେଲ୍ ମାରିଲା । ଏହା ଥିଲା ତୃତୀୟଥର ବିଫଳତା । |
| ୧୫ ମଇ | - ସୋଭିଏତ ୟୁନିଅନ - ନାନାବିଧ ବୈଜ୍ଞାନିକ ଯନ୍ତ୍ରପାତି ବହନ କରି ସ୍ପୁଟନିକ-୩ (୧୩୨୭ କିଲୋଗ୍ରାମ) ପୃଥିବୀର କକ୍ଷପଥରେ ସ୍ଥାପିତ ହେଲା । |
| ୨୭ ମଇ | - ଯୁକ୍ତରାଷ୍ଟ୍ର ଆମେରିକା - ୪ର୍ଥ ଥର ପାଇଁ ଭ୍ୟାନଗାର୍ଡ୍ ବିଫଳ |
| ୨୬ ଜୁନ | - ଯୁକ୍ତରାଷ୍ଟ୍ର ଆମେରିକା - ୫ମ ଥର ପାଇଁ ଭ୍ୟାନଗାର୍ଡ୍ ବିଫଳ |
| ୨୬ ଜୁଲାଇ | - ଯୁକ୍ତରାଷ୍ଟ୍ର ଆମେରିକା - ଏକ୍ସପ୍ଲୋରର -୪ କୁ ପୃଥିବୀର କକ୍ଷପଥରେ ସ୍ଥାପିତ କରାଯିବା ସଂଗେ ସଂଗେ ଭ୍ୟାନ ଆଲ୍ଲେନ ରେଡ଼ିଏସନ୍ ବେଲ୍ଟର ଅଢ଼େଇ ମାସ ପାଇଁ ମ୍ୟାପିଂ ହେଲା । |
| ୨୪ ଅଗଷ୍ଟ | - ଯୁକ୍ତରାଷ୍ଟ୍ର ଆମେରିକା - ଏକ୍ସପ୍ଲୋରର - ୫ ପୃଥିବୀର କକ୍ଷପଥକୁ ଯିବାରେ ବିଫଳ ହେଲା । |
| ୨୬ ସେପ୍ଟେମ୍ବର | - ଯୁକ୍ତରାଷ୍ଟ୍ର ଆମେରିକା - ଭ୍ୟାନଗାର୍ଡ୍ ୬ଷ୍ଠ ଥର ପାଇଁ ବିଫଳ ହେଲା । |

●

# ଭାରତୀୟ ସଂସ୍କୃତିରେ ବିଜ୍ଞାନର ପଦ ଚିହ୍ନ

ଭାରତୀୟ ସଂସ୍କୃତି ବିଶ୍ୱର ସର୍ବ ପୁରାତନ ସଂସ୍କୃତି ମଧ୍ୟରୁ ଅନ୍ୟତମ । ଭାରତୀୟ ସଂସ୍କୃତିର ମୂଳଦୁଆ ଅତ୍ୟନ୍ତ ସୁଦୃଢ଼ ଓ ଚୀରସ୍ଥାୟୀ । ଭାରତୀୟ ସଂସ୍କୃତିର ଐତିହ୍ୟ ଅନନ୍ୟସାଧାରଣ ଓ ମାନବୀୟ ଭିତ୍ତିଭୂମୀ ଉପରେ ପର୍ଯ୍ୟବେଶିତ । ବିଶ୍ୱ ସଭ୍ୟତାର ମାନଦଣ୍ଡରେ ଭାରତୀୟ ସଭ୍ୟତା ଓ ସଂସ୍କୃତି ମହନୀୟ ସ୍ୱାକ୍ଷର ବହନ କରିଥାଏ । ଏହି ଶଶା-ଗରା-ଧରଣୀ ବକ୍ଷରେ ଭାରତ ଓ ଭାରତୀୟତାର ସ୍ୱାତନ୍ତ୍ୟ ବିଶ୍ୱ ଐତିହାସିକ ଦୃଶ୍ୟପଟ୍ଟକୁ ପ୍ରଲୋଭିତ ଓ ସୁଶୋଭିତ କରିଥାଏ । ଭାରତର ପାଣି, ପବନ, ମାଟି, ଆକାଶ, ଅଗ୍ନି ତାର ଆଗଙ୍ଗା କୁମାରିକା ଅବୟବକୁ ପୁତପବିତ୍ରମୟ କରିଥାଏ । ଏହି ଗଗନଚ୍ଛୁମ୍ୱୀ ଐତିହ୍ୟ ସମ୍ପର୍ଣ୍ଣ ଭାରତବର୍ଷର ଗୁଣଗାନ କରିବାରେ ଯେଉଁ ଆନନ୍ଦ, ଉଦ୍ଦୀପନା ଓ ଶିହରଣ ପ୍ରକଟିତ ହୋଇଥାଏ ତାର କୌଣସି ପଟାନ୍ତର ନାହିଁ ।

ସଭ୍ୟତାର କ୍ରମବିକାଶରେ ଭାରତୀୟ ସଂସ୍କୃତି ବହୁ ଉତ୍‌ଥାନ ପତନ ଦେଇ ଗତିକରି ଆଜି ତାର ସାମ୍ପ୍ରତିକ ଦୃଶ୍ୟପଟ୍ଟକୁ ଆମ ସମ୍ମୁଖରେ ପ୍ରତିଭାତ କରୁଛି । ବର୍ଷ, ମାସ, ଦିନ, ଦଣ୍ଡ ଓ ଋତୁ ଚକ୍ରକୁ ପରିକ୍ରମାକରି ଆଜି ତାର ସାମ୍ପ୍ରତିକ ରୂପରେଖକୁ ପରିପ୍ରକଟ କରୁଛି । ସଭ୍ୟତାର ଝଡ଼ଝଞ୍ଜା, ଉତ୍‌ଥାନପତନ ଓ ବିବର୍ତ୍ତନବାଦ ଦେଇ ଗତିକରି ଭାରତୀୟ ସଭ୍ୟତା ଓ ସଂସ୍କୃତି ଆଜି ନୂଆ ବେଶରେ ନୂଆ ରୂପରେ ଉଲ୍ଲସିତ ହେଉଛି । ସମୟର କାଳଚକ୍ର ଓ ପରିବର୍ତ୍ତନଶୀଳ ସଭ୍ୟତାର ବିବର୍ତ୍ତନବାଦ ଭିତରେ ତଥା ଅସୁମାରୀ ଗ୍ରହ ନକ୍ଷତ୍ରମାନଙ୍କର ଜୀବନବ୍ୟାପୀ ପରିକ୍ରମା ମଧ୍ୟରେ ସଭ୍ୟତାର ରୂପରେଖ ବଦଳିଚାଲିଛି ।

ଏହି ଜ୍ଞାନଦୀପ୍ତ ସଭ୍ୟତାର ବିବର୍ତ୍ତନରେ ବିଜ୍ଞାନର ଦାନ ଅସୀମ ଓ କାଳଜୟୀ । ସଭ୍ୟତାର ପଟ୍ଟପରିବର୍ତ୍ତନ, ସଭ୍ୟତାର ଆରୋହଣ, ସଭ୍ୟତାର ନୂତନ ପର୍ବ ଓ ସଭ୍ୟତାର ସ୍ୱର୍ଣ୍ଣାଦିତ୍ୟ ଅଧ୍ୟାୟରେ ବିଜ୍ଞାନର ପରିବର୍ତ୍ତିତ ରୂପରେଖ ସ୍ପଷ୍ଟଭାବେ ପ୍ରତିଫଳିତ । ସୃଷ୍ଟିର ଆଦିମ କାଳରୁ ଆଜିପର୍ଯ୍ୟନ୍ତ ଗଡ଼ିଆସିଥିବା ସମୟର କାଳଚକ୍ର

ମଦ୍ଧ୍ୟରେ ବିଜ୍ଞାନର ବିବର୍ତ୍ତନବାଦ ସଭ୍ୟତା ଓ ସଂସ୍କୃତି ସହ ମଣିଷକୁ ଓତଃପ୍ରୋତଭାବେ ଜଡ଼ିତ କରାଇବାରେ ସଫଳ ଭୂମିକା ସମ୍ପାଦିତ କରିଆସିଛି । ଭାରତର ଜ୍ଞାନଦୀପ୍ତ ଐତିହ୍ୟ, ପ୍ରଜ୍ଞାଶୀଳ ମାନସ ମନ୍ଥନ ମଧ୍ୟରେ ପ୍ରସ୍ଫୁଟିତ ହୋଇପାରିଛି । ସଭ୍ୟତାର ବାଲ୍ୟକାଳରେ ଜ୍ୟୋତିର୍ବିଜ୍ଞାନ ପ୍ରଥମେ ମଣିଷ ମନକୁ ସମ୍ପୂର୍ଣ୍ଣଭାବେ ଆଚ୍ଛାଦିତ କରି ରଖିଥିଲା ଓ ଗ୍ରହ ନକ୍ଷତ୍ରମାନଙ୍କର ଗତିପ୍ରଗତିଉପରେ ବୈଜ୍ଞାନିକ ଆକର୍ଷଣ କେନ୍ଦ୍ରିଭୂତ ହୋଇଥିଲା । ଧୀରେଧୀରେ ଜ୍ୟୋତିର୍ବିଜ୍ଞାନ ସହ ଅଙ୍କଶାସ୍ତ୍ର ଯୋଡ଼ିହୋଇଗଲା ଓ ଜ୍ୟୋତିର୍ବିଜ୍ଞାନୀମାନେ ସେମାନଙ୍କର ପ୍ରଜ୍ଞା ଓ ଧୀଶକ୍ତିକୁ ସମୟର ବିବର୍ତ୍ତନବାଦ ମଧ୍ୟରେ ପରିଚାଳିତ କରିବାକୁ ଲାଗିଲେ । ଏହା ଥିଲା ବିଜ୍ଞାନର ଏକ ପ୍ରମୁଖ ଉତ୍ତରଣ ପର୍ବ ଓ ଭାରତୀୟ ବିଜ୍ଞାନର ଅବଦାନ ଏଥିପାଇଁ ଅନନ୍ୟ ସାଧାରଣ । ଆର୍ଯ୍ୟଭଟ୍ଟ, ବରାହମିହିର, ପାଣିନି, ଗାର୍ଗି ଓ ସାମନ୍ତ ଚନ୍ଦ୍ରଶେଖରଙ୍କ ପରି ଅସାମାନ୍ୟ ଧୀଶକ୍ତି ସମ୍ପନ୍ନ ବୈଜ୍ଞାନିକ ମହାମନୀଷିମାନେ ଭାରତବର୍ଷର ବୈଜ୍ଞାନିକ ଐତିହ୍ୟ ଓ ସଂସ୍କୃତିକୁ ଗଗନଚୁମ୍ବୀ ସଫଳତା ପ୍ରଦାନ କରିଥିଲେ ।

ଚିକିତ୍ସା କ୍ଷେତ୍ରରେ ଶୁଶ୍ରୁତ ଓ ଚରକଙ୍କ ପରି ଭାରତୀୟ ବୈଜ୍ଞାନିକ ସୁରୀମାନଙ୍କ ଅସାମାନ୍ୟ ପ୍ରତିଭା ଆଜିପର୍ଯ୍ୟନ୍ତ ବିଶ୍ୱ ଐତିହ୍ୟର ମାନଚିତ୍ରରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଅଛି । ଆୟୁର୍ବେଦ ବିଜ୍ଞାନ ଥିଲା ବିଶ୍ୱ ଚିକିତ୍ସା ବିଜ୍ଞାନକୁ ଭାରତବର୍ଷର ଅନନ୍ୟ ଅବଦାନ । ମଣିଷ ଯେତେବେଳେ ପ୍ରକୃତି କୋଳରେ ନିଜକୁ ଆବିଷ୍କାର କଲା, ପ୍ରକୃତି କୋଳରେ ହସିଲା, ଖେଳିଲା, ବୁଲିଲା, ଡେଇଁଲା ସେତେବେଳେ ଧୀରେ ଧୀରେ ତା ଭିତରେ ପ୍ରକୃତିର ସବୁଜିମା, ଝର, ବନାନୀ, ପାହାଡ଼, ପର୍ବତ ଅଦମ୍ୟ ଆକର୍ଷଣ ସୃଷ୍ଟିକଲା, ତାକୁ ବାନ୍ଧିରଖିଲା, ତାକୁ ଧରିରଖିଲା । ମଣିଷ ପ୍ରକୃତିକୁ ଭଲପାଇଲା, ଶ୍ରଦ୍ଧାକଲା, ପୂଜାକଲା, ଉପାସନା କଲା । ମଣିଷ ପ୍ରକୃତିଭିତରେ ନିଜକୁ ଆବିଷ୍କାରକଲା । ଆକାଶ, ଜଳ, ପୃଥିବୀ, ଅଗ୍ନି, ବାୟୁ ଓ ପ୍ରକୃତିକୁ ମଣିଷ ଚିହ୍ନିଲା ଓ ତା ଭିତରୁ ସେ ଆୟୁର୍ବେଦ ବିଜ୍ଞାନ ସୃଷ୍ଟିକଲା ମଣିଷପାଇଁ, ମଣିଷ ସେବାରେ ନିୟୋଜନପାଇଁ । କାହିଁ କେଉଁ ଆବାହମାନ କାଳରୁ ଆୟୁର୍ବେଦ ବିଜ୍ଞାନ ସହ ଭାରତୀୟ ସଂସ୍କୃତିର ପରିଚୟ, ଚିହ୍ନାଜଣା । ଏ ପରିଚୟ ଏକ ନିବିଡ଼ ସମ୍ପର୍କ ଓ ଅନ୍ତରଙ୍ଗ ବନ୍ଧୁତ୍ୱ ଉପରେ ପର୍ଯ୍ୟବେସିତ ।

ଭାରତୀୟ ବୈଜ୍ଞାନିକ କଳା ଭାସ୍କର୍ଯ୍ୟର ପଟ୍ଟାନ୍ତର ଅନନ୍ୟ ସାଧାରଣ । ହାତରେ ଖଣ୍ଡିଏ ପଥର ଧରି ଲିହାଣ ମୁନରେ ଶିଳ୍ପୀ ଜଣକ ତାର ସ୍ୱପ୍ନ ଓ କଳ୍ପନାକୁ ବାସ୍ତବତାର ରୂପ ଦେଇଥାଏ । ପଥର ମୁହଁରେ ସେ ହସ ଫୁଟାଏ, ପାଦରେ ତାର ଭରିଦିଏ ଦୋଳାଇତ ଛନ୍ଦ, ହୃଦୟରେ ଜଗାଏ ଅସୁମାରୀ କମ୍ପନ ଓ ଜାଗରଣ । ଶିଳ୍ପୀଟିଏ ଖାଲି କଳାକାରଟିଏ ନୁହେଁ, ସେ ଜଣେ ସ୍ୱପ୍ନିଳ ବୈଜ୍ଞାନିକ ବ୍ୟକ୍ତିଟିଏ ମଧ୍ୟ । ପଥର କଥା କୁହେ, ହସେ, ନାଚେ, ବିଜ୍ଞାନୀ ହାତର ପରଶ ପାଇ, ସ୍ୱପ୍ନର କମ୍ପନ ପାଇ, ବାସ୍ତବତାର ଅସ୍ତିତ୍ୱ ପାଇ । ବିଜ୍ଞାନର ମାନସ ପୁତ୍ରୀ ହେଲା କଳା ଓ ସଂସ୍କୃତି । କଳା ଓ ସଂସ୍କୃତିକୁ ଭାରତୀୟ ବୈଜ୍ଞାନର ଦାନ ଗଗନଚୁମ୍ବୀ ସଫଳତା ପ୍ରଦାନ କରିଛି । କୋଣାର୍କର ସୂର୍ଯ୍ୟମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଭଳି କାହିଁ କେତେ କୀର୍ତ୍ତିମାନ ଐତିହ୍ୟ ସ୍ଥାପନ କରିଛି ଭାରତୀୟ କଳା ଓ ସଂସ୍କୃତି ଯାହାକି ବିଜ୍ଞାନର ଅବଦାନରେ ଚୀର ଭାସ୍କର୍ଯ୍ୟମୟ ଓ ଯାଯୁଲ୍ୟମାନ ।

ଧୀରେ ଧୀରେ ସମୟ ଗଡ଼ିଚାଲିଲା । ସମୟର ବୋଇତବନ୍ଦାଣ ପର୍ବ ନୂଆ ରୂପ ନେଲା, ନୂଆ କଥା କହିଲା, ନୂଆ ସଭ୍ୟତାର କଳେବର ଆମ ଆଗରେ ଉପସ୍ଥାପନ କଲା । ବିଜ୍ଞାନର ଅଭ୍ୟୁଦୟରେ ଉନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ଅବଦାନ ଅନନ୍ୟସାଧାରଣ ଓ କାଳଜୟୀ । ସାହିତ୍ୟ ଓ ସଂସ୍କୃତି ସହ ବିଜ୍ଞାନ ଓତଃପ୍ରୋତଃଭାବେ ଜଡ଼ିତହୋଇ ସମୟ ରାଣୀକୁ ନୂଆ ସବାରିରେ ବସାଇ ଆମ ମନ ଅଗଣାରେ ଆଣି ବସେଇଦେଲା । ସମୟର ଶୀତଳ ପରଶ ପାଇ, ସମୟର ସ୍ନେହ ଓ ଆଶୀର୍ବାଦ ପାଇ ବିଶ୍ୱ ବୈଜ୍ଞାନିକ ମାନଚିତ୍ର ବହୁବିଧ ରୂପରେଖ ଦେଇ ଗଡିଗଲା । ନାନାବିଧ ଆବିଷ୍କାର ଓ ଉଦ୍ଭାବନରେ ସମୃଦ୍ଧ ହେଲା ବିଶ୍ୱ ସଂସ୍କୃତି ଓ ମଣିଷର ଜୀବନ ଯାତ୍ରା ଶୈଳୀ । ମଣିଷର ପରିଚୟ ବଦଳିଗଲା, ମଣିଷର ସ୍ୱପ୍ନ ବଦଳିଗଲା, ମଣିଷର ବାସ୍ତବିକତାବି ବଦଳିଗଲା । ବିଜ୍ଞାନର ସୁନାମୀ ଢେଉ ଏତେ ମାତ୍ରାରେ ପ୍ରଭାବିତ ହେଲା ଯେ ମଣିଷର ରୂପ, ରଙ୍ଗ, ଛଟା ଓ ଚରିତ୍ର ଗୋଟାପଣ ଓଲଟପାଲଟ ହୋଇଗଲା । ମଣିଷର ରୂପ ଭେକ ବଦଳିଗଲା, ମଣିଷର ସଂସ୍କୃତି ବଦଳିଗଲା, ମଣିଷର ପରିଚୟ ମଧ୍ୟ ବଦଳିଗଲା । ଏହି ବୈଜ୍ଞାନିକ ପରିବର୍ତ୍ତନର ମହା ବିବର୍ତ୍ତନବାଦ ଭିତରେ ମଣିଷର ମଣିଷପଣିଆବି ବଦଳିଗଲା, ମଣିଷର ସଜ୍ଞାବି ବଦଳିଗଲା ।

ଆଜି ଏକବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିର ଅଷ୍ଟମ ପାହାଚରେ ଆମେ ପାଦ ଥାପିଛେ । ବିଜ୍ଞାନର ବହୁ ଆବିଷ୍କାର ଓ ଉଦ୍ଭାବନ ଧନ୍ୟ ମାନବ ସଭ୍ୟତା ଆଜି ପ୍ରଗତିର ରାଜରାସ୍ତାରେ ମହାଦୌଡ ଲଗେଇଦେଇଛି । ଏହି ମହାଦୌଡରେ ମହାଭାରତୀୟ ସଭ୍ୟତା ମଧ୍ୟ ପଛରେ ପଡ଼ିନାହିଁ । ବହୁ ସ୍ୱପ୍ନ ଓ ବାସ୍ତବତାକୁ କୋଳେଇନେଇ ମହାରାଜ ଭରତଙ୍କ ଏ ଭାରତବର୍ଷ ପ୍ରଗତିର ମହାସିଂହାସନରେ ଉପବିଷ୍ଟ ହେବାପାଇଁ ତାର ଅକ୍ଲାନ୍ତ ଚେଷ୍ଟା ଜାରିରଖିଛି । ମହାକାଶ ବିଜ୍ଞାନର ଜୟଯାତ୍ରା, ଅସୁମାରୀ ଶିଳ୍ପ ସାମ୍ରାଜ୍ୟର ପ୍ରତିଷ୍ଠା, ଉନ୍ନତ ଅର୍ଥନୈତିକ ମାନଦଣ୍ଡ, ଅହେତୁକ ବାଣିଜ୍ୟିକ ଅଗ୍ରଗତି, ଗବେଷଣା ଓ ଉନ୍ନୟନର ଗଗନଚୁମ୍ବୀ ସଫଳତା, ଶିକ୍ଷା ସଂସ୍କୃତିରେ ଆମୂଳଚୂଳ ପରିବର୍ତ୍ତନ, ଉଚ୍ଚତର ସାମାଜିକ ବ୍ୟବସ୍ଥା, କୃଷି ଉତ୍ପାଦନରେ ସାଫଲ୍ୟତା, ସନ୍ତୁଳିତ ପରିବେଶ ଓ ସର୍ବୋପରି ଭାରତୀୟ ଜନଜୀବନର ଅଖଣ୍ଡ ସ୍ୱପ୍ନ ଓ ନିଛକ ବାସ୍ତବତାର ଜୀବନଚର୍ଯ୍ୟା ଏହି ଶଶାଗରା ଧରଣୀକୁ କରିଛି ଅମୃତମୟ, ଗୌରବମୟ ଓ ବିଶ୍ୱମୟ ।

ସଭ୍ୟତାର ସମସ୍ତ ଶିଢ଼ି ପାହାଚ ଅତିକ୍ରାନ୍ତ କରିବାକୁ ଭାରତୀୟମାନେ ଅଜି ଅଣ୍ଟାଭିଡ଼ିଦେଇଛନ୍ତି । ଭାରତ ଓ ଭାରତୀୟମାନଙ୍କର ବିଜୟ ପତାକା ଆଜି ସମଗ୍ର ବିଶ୍ୱବ୍ରହ୍ମାଣ୍ଡରେ ଉଡ୍ଡୀୟମାନ । ଭାରତର ବିସ୍ମୟ ଓ ଗୌରବଶାଳୀ ପ୍ରଭାବ ସମଗ୍ର ଭାରତୀୟମାନଙ୍କର ପ୍ରଜ୍ଞା ଓ ଧୀଶକ୍ତି ଯୁଗେ ଯୁଗେ କରିଛି ଭାରତକୁ ମହୀୟାନ ଓ ପ୍ରଭାବଶାଳୀ । ଭାରତୀୟ ବିଜ୍ଞାନ ଓ ଦର୍ଶନ ଭାରତୀୟ ପ୍ରଜ୍ଞା ଓ ପାଣ୍ଡିତ୍ୟ ଭାରତକୁ ଏକ ଐତିହ୍ୟ ସମ୍ପନ୍ନ ରାଷ୍ଟ୍ରଭାବେ ବିଶ୍ୱ ଦରବାରରେ ନିର୍ଘୋଷିତ କରୁଛି । ଭାରତୀୟ ବିଜ୍ଞାନ, ସାହିତ୍ୟ, କଳା ଚାତୁର୍ଯ୍ୟ ଭାରତ ଓ ଭାରତୀୟମାନଙ୍କୁ ଅତ୍ୟୁଚ୍ଚ ସିଂହାସନରେ ଉପବେସନ କରାଇପାରିଛି । ଭାରତ କେବଳ ଗୋଟିଏ ରାଷ୍ଟ୍ର ନୁହେଁ ଏହାଗୋଟିଏ ମହାରାଷ୍ଟ୍ର । ଏହି ମହାରାଷ୍ଟ୍ରର ଗୌରବ ଆଗଙ୍ଗା କୁମାରୀକା ପ୍ରକମ୍ପିତ ଓ ନିନାଦିତ । ଏହି ମହାଭାରତୀୟ ମହାରାଷ୍ଟ୍ରରେ ଆମେ ଜନ୍ମଲାଭକରି ନିଜକୁ ଗର୍ବ ଅନୁଭବ କରୁଛୁ ।

ଆଗାମୀ କାଲିର ସକାଳ, ଆଗାମୀ କାଲିର ସୂର୍ଯ୍ୟୋଦୟ, ଆଗାମୀ କାଲିର ସୂର୍ଯ୍ୟାସ୍ତ ଓ ଆଗାମୀ କାଲିର ସମୟ ଭାରତର ହିଁ ହେବ । ଆଗାମୀ କାଲିର ଭାରତୀୟ

ନିଜକୁ ବିଶ୍ୱ ଭାରତୀୟଭାବେ ନିଜକୁ ପ୍ରତିପାଦିତ କରିବ । ଆଗାମୀ କାଲିର ସ୍ୱପ୍ନ ଭାରତୀୟମାନେ ହିଁ ଦେଖିବେ । ଆଗାମୀ କାଲିର ବାସ୍ତବତା ଭାରତୀୟମାନଙ୍କ ହାତମୁଠାକୁ ଆସିଯିବ । ସମୟ ସବୁଠୁଁ ବଳବାନ୍ । ସମୟର ଏହି ପଟ୍ଟ ପରିବର୍ତ୍ତନ, ସମୟର ଏହି ବିବର୍ତ୍ତନବାଦ ଭାରତବର୍ଷକୁ ନୂତନରୂପରେ ବିଶ୍ୱ ଦରବାରରେ ପରିବେଷଣକରିବ, ପ୍ରତିପାଦିତ କରିବ, ପ୍ରତିନିବିଷ୍ଟ କରିବ ।

ଭାରତର ଜୟ ହେଉ, ମହାଭାରତର ଜୟ ହେଉ, ସମୟର ଜୟ ହେଉ - ଏତିକି ନିବେଦନ, ଏତିକି ଉଚ୍ଛ୍ୱାସ, ଏତିକି କାମନା ।

**National Conference Proceedings :**
"Impact of Indian Culture on Contemporary Oriya Literature",
Bhubaneswar

P.101-104, Dt. 18.02.2008



# ବିଜ୍ଞାନୀ ଓ ଆତ୍ମଜ୍ଞାନୀ - ଇଂଜିନିୟର ପ୍ରିୟବ୍ରତ ଦାସ

ଜ୍ଞାନର ପରିସୀମା ଅସୀମ । ଜ୍ଞାନୀ ଓ ଜ୍ଞାନର ସମ୍ପର୍କ କାଳଜୟୀ ଓ ସୁଦୂରପ୍ରସାରୀ । ଆଧିଭୌତିକ, ଆଧ୍ୟାତ୍ମିକ, ଆଦ୍ୟାଶକ୍ତି ମା' ସରସ୍ୱତୀଙ୍କ ଆଶୀର୍ବାଦରୁ ଜ୍ଞାନର ବୈତରଣୀ ପ୍ରବାହିତ ହୋଇଥାଏ ଓ ଏହି ପ୍ରବାହମାନ ଖରସ୍ରୋତାର ବିନ୍ଦୁଏ ଜଳ ପାନ କରି ଜ୍ଞାନ ପିପାସୁ ମଣିଷଟି ପରମ ଆତ୍ମସନ୍ତୋଷ ଲାଭ କରିଥାଏ । ମା, ମାଟି, ଜଳ, ଅଗ୍ନି, ଖଗୋଳ, ଭୂଗୋଳର ପରିବ୍ୟାପ୍ତ ପରିସୀମାକୁ ଟପି ଜ୍ଞାନଦୀପ୍ତ ମଣିଷଟି ଜ୍ଞାନ-ସାଗରରେ ଅବଗାହନ କରିଥାଏ । ଜ୍ଞାନର ପରମ ଜ୍ୟୋତି ମାଧ୍ୟମରେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ବ୍ୟକ୍ତିଟି ନିଜର ଜ୍ଞାନ ଆକାଶରେ ଆଚ୍ଛାଦିତ କରିଥାଏ । ଜ୍ଞାନର ସପ୍ତରଙ୍ଗ ଛଟା, ନିଜର ବଳ, ବୀର୍ଯ୍ୟ ଓ ଶୌର୍ଯ୍ୟ ମାଧ୍ୟମରେ ଜ୍ଞାନାଶ୍ରୟୀ ବ୍ୟକ୍ତି ବିଶେଷଟି ସମଗ୍ର ସଂସାରକୁ ନିଜର ଜ୍ଞାନ ବଳରେ ବଳୀୟାନ କରିଥାଏ । ସେହିପରି ଜଣେ ଜ୍ଞାନଦୀପ୍ତ ପରମ ପୁରୁଷ, ଶୌର୍ଯ୍ୟଶାଳୀ ପଣ୍ଡିତ, ଦେବବିଜ୍ଞାନରେ ଧୁରୀଣ, ଓଡ଼ିଶାର ବରପୁତ୍ର ଭାବେ ସର୍ବତ୍ର ପରିଚିତ, ସରଳ, ନିଷ୍କପଟ ମଣିଷଟିଏ ହେଲେ ଇଂଜିନିୟର ଡକ୍ଟର ପ୍ରିୟବ୍ରତ ଦାସ ।

ଇଂଜିନିୟର ଡକ୍ଟର ପ୍ରିୟବ୍ରତ ଦାସ ଜଣେ ବିଜ୍ଞାନର ବିଦ୍ୟାର୍ଥୀ ଭାବେ ତାଙ୍କର ଶିକ୍ଷା ଜୀବନ ଆରମ୍ଭ କରିଥିଲେ । ସେ ଗଞ୍ଜାମ ଜିଲ୍ଲାର ପୋଲସରାରେ ଜନ୍ମଗ୍ରହଣ କରି ୧୯୪୮ ମସିହାରେ ମାଟ୍ରିକ୍ୟୁଲେସନ୍ ଓ ୧୯୫୦ ମସିହାରେ ଆଇ.ଏସ୍.ସି. ପରୀକ୍ଷାରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଦଶଜଣଙ୍କ ମଧ୍ୟରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୫୪ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ସିଭିଲ ଇଂଜିନିୟରିଂ ଡିଗ୍ରୀ ପରିକ୍ଷାରେ ପ୍ରଥମ ଶ୍ରେଣୀରେ ଅନର୍ସ ଲାଭ କରିଥିଲେ । ୧୯୫୫ ମସିହାରେ ରାଜ୍ୟ ସରକାରୀ ସେବାରେ ଯୋଗଦାନ କରି ୧୯୬୬ ମସିହାରେ କଲମ୍ବୋ ଯୋଜନା ମାଧ୍ୟମରେ ଇଂଲଣ୍ଡରେ ସ୍ନାତକୋତ୍ତର ଶିକ୍ଷାଲାଭ କରିଥିଲେ । ରାଜ୍ୟ ପୂର୍ତ୍ତ ବିଭାଗର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଯୋଜନାରେ ୧୯୫୫ ମସିହାରୁ ୧୯୮୯ ମସିହା ପର୍ଯ୍ୟନ୍ତ ସେବାରତ ଓ ବହୁ ବର୍ଷ ମୁଖ୍ୟଯନ୍ତ୍ରୀ ରହି ୧୯୮୯ ମସିହାରେ ଅବସର ଗ୍ରହଣ କରିଛନ୍ତି । ୧୯୬୮ ମସିହାରେ ବିଶ୍ୱ ସଡ଼କ କଂଗ୍ରେସର ଲଣ୍ଡନ ଅଧିବେଶନରେ ଭାରତୀୟ ପ୍ରତିନିଧି ରୂପେ ସେ ଯୋଗଦାନ ଦେଇଥିଲେ । ୧୯୬୮ ରୁ ୧୯୮୯ ପର୍ଯ୍ୟନ୍ତ ଭାରତୀୟ ସଡ଼କ କଂଗ୍ରେସ (ଦିଲ୍ଲୀ)ର ବିଭିନ୍ନ

ବୈଷୟିକ କମିଟିର ସଭ୍ୟ ରହି ସଡ଼କ ନିର୍ମାଣ ସମ୍ବନ୍ଧୀୟ ଜାତୀୟ କୋଡ଼ ପ୍ରସ୍ତୁତିରେ ତଥା ସାଧାରଣ ଅଧିବେଶନମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରି ଭାରତୀୟ ବୈଷୟିକ ବିଦ୍ୟା କ୍ଷେତ୍ରରେ ନିଜର ଅନନ୍ୟ ତଥା ଅସାଧାରଣ ଛାପ ଛାଡ଼ି ଯିବାରେ ସଫଳ ଯୋଗଦାନ ଦେଇଛନ୍ତି ।

ଜଣେ ବିଜ୍ଞାନ ଛାତ୍ର ହୋଇ ପରବର୍ତ୍ତୀ କାଳରେ ପ୍ରୋଦ୍ୟୋଗିକୀ କ୍ଷେତ୍ରରେ ପ୍ରବେଶ କରି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ମଧ୍ୟରେ ସଫଳ ସମନ୍ୱୟତା ସ୍ଥାପନ କରିବାରେ ଉତ୍କର୍ଷ ସାଧନ କରିଥିଲେ । ଓଡ଼ିଶାର ପୂର୍ତ୍ତ ବିଭାଗର ଗବେଷଣା ବିଭାଗର ମୁଖ୍ୟଯନ୍ତ୍ରୀ ଭାବରେ ଅବସ୍ଥାପିତ ହୋଇ ପ୍ରୟୋଗାତ୍ମକ ବିଜ୍ଞାନରେ ଦେଶ ଓ ବିଦେଶରେ ଗବେଷଣା କରି ଇଂଜିନିଏର ଶ୍ରୀ ଦାସ ଓଡ଼ିଶାର ଗର୍ବ ଗୌରବକୁ ଗଗନଚୁମ୍ବୀ ମାନ୍ୟତା ପ୍ରଦାନ କରିଥିଲେ ।

ଓଡ଼ିଶାରେ ସଡ଼କ ଗବେଷଣା ପ୍ରତିଷ୍ଠାନ ତାଙ୍କ ବ୍ୟକ୍ତିତ୍ୱର ଏକ ଅନନ୍ୟ ପରାକାଷ୍ଠା ଓ ସଫଳତାର ଏକ ଅବିସ୍ମରଣୀୟ ସିଡ଼ି ପାହାଚ । ଯୁକ୍ତିବାଦୀ ପ୍ରମାଣର ଉପସ୍ଥାପନା ଓ ବେଦ ବିଜ୍ଞାନ ପ୍ରତି ତାଙ୍କର ଅହେତୁକ ଆକର୍ଷଣ ତାଙ୍କ ଭିତରେ ଲୁଚି ରହିଥିବା ଏକ ସରସ ସୁନ୍ଦର ବିଜ୍ଞାନୀ ମନକୁ ମହର୍ଷି ଦୟାନନ୍ଦଙ୍କ ସଂସ୍କାର ଆନ୍ଦୋଳନ ଓ ଆଧ୍ୟାତ୍ମିକତାର ଅବର୍ଣ୍ଣନୀୟ ଅଭିଜ୍ଞତା ଆଡ଼କୁ ହାତ ବଢ଼େଇ ଟାଣି ନେଇଥିଲା । ବେଦ କେବଳ କର୍ମକାଣ୍ଡର ବହି ନୁହେଁ, ସେଥିରେ ଜ୍ଞାନବିଜ୍ଞାନର ଯେ ସୁନ୍ଦର ସଙ୍ଗମ ସଙ୍ଗଠିତ ହୋଇଛି, ତାହା ଅନୁଭବ କରି ସେ ତାଙ୍କ ଆତ୍ମଜ୍ଞାନ ଆଡ଼କୁ ଢଳିଲେ ଏବଂ ଏହା କେବଳ ସମ୍ଭବ ହୋଇପାରିଲା ତାଙ୍କ ଭିତରେ ଲୁଚି ରହିଥିବା ବୈଜ୍ଞାନିକ ପ୍ରତିଭାର ସ୍ୱୟଂକ୍ରିୟ ଉଦ୍ଘାରଣ ଯୋଗୁଁ ।

'ବିଜ୍ଞାନ ପ୍ରଚାର ସମିତି' ଭୁବନେଶ୍ୱର ଶାଖାର ଏକ ସମ୍ବର୍ଦ୍ଧନା ସଭାରେ ଥରେ ସେ ସୁପ୍ରସିଦ୍ଧ ବୈଜ୍ଞାନିକମାନଙ୍କର ମନର କଥା ଚମତ୍କାର ଭାବରେ ପ୍ରକାଶ କରିଥିଲେ । କହିଥିଲେ - ବୈଜ୍ଞାନିକ କେଲଭିନ୍ ମତ ପ୍ରକାଶ କରିଛନ୍ତି - 'ବ୍ରହ୍ମାଣ୍ଡରେ ପ୍ରାକୃତିକ ଓ ବୈଦ୍ୟୁତିକ ଶକ୍ତି ଅତିରିକ୍ତ ଏକ ନିର୍ଦ୍ଦେଶକ ଚେତନା ଶକ୍ତିର ଅସ୍ତିତ୍ୱକୁ ବିଜ୍ଞାନ ପୂର୍ଣ୍ଣ ଆସ୍ଥାର ସହିତ ବିଶ୍ୱାସ କରେ ।' ବିର୍ଲସ ଲିନାକସ୍ ନିଜ ଅନୁଭୂତିରୁ ଲେଖିଛନ୍ତି - 'ଉଦ୍ଭିଦ ଜଗତର ଗବେଷଣା କରିବା ସମୟରେ ମୁଁ ସର୍ବତ୍ର ଈଶ୍ୱରଙ୍କୁ ଦେଖୁଅଛି ।' ଲୁଇ ପାଶ୍ଚରଙ୍କ ଭାଷାରେ - 'ମୁଁ ପ୍ରକୃତିକୁ ଯେତେ ଅନୁଶୀଳନ କରେ, ସେତେ ଅଧିକ ସ୍ରଷ୍ଟାଙ୍କ କଳା ଚାତୁର୍ଯ୍ୟରେ ବିସ୍ମିତ ହୁଏ ।' ପଲ୍ କେଲମ୍ ବିଜ୍ଞାନ ଓ

ଆସ୍ତିକବାଦ ବିଷୟରେ ଲେଖିଛନ୍ତି – 'ବିଜ୍ଞାନ ଈଶ୍ୱରଙ୍କ ନାମ ଉଚ୍ଚାରଣ କରେ ନାହିଁ, ବିଜ୍ଞାନ ଈଶ୍ୱରଙ୍କ ବିଷୟରେ ଶିକ୍ଷାଦାନ କରେ ।' ଏସବୁ ମନ୍ତବ୍ୟ ତାଙ୍କୁ ବିଜ୍ଞାନ ଓ ଆତ୍ମଜ୍ଞାନୀ ଭାବରେ ଆତ୍ମବିଶ୍ୱାସ ଦେଇଥିଲା ।

ଓଡ଼ିଶାର ଯୁବ ବୈଜ୍ଞାନିକ ଓ ବିଜ୍ଞାନ ଲେଖକମାନଙ୍କୁ ପ୍ରୋତ୍ସାହନ ଦେବାପାଇଁ ଇଂଜିନିୟର ପ୍ରିୟବ୍ରତ ଦାସ ମହୋଦୟ 'ବିଜ୍ଞାନ ପ୍ରଚାର ସମିତି' ଭୁବନେଶ୍ୱର ଶାଖାକୁ କୋଡ଼ିଏ ହଜାର ଜମାରାଶି ପ୍ରଦାନ କରିଛନ୍ତି ଯାହାର ସୁଧରୁ ପ୍ରତି ବର୍ଷ ଲେଖକ ଓ ଲେଖିକାମାନଙ୍କୁ ପୁରସ୍କାର ପ୍ରଦାନ କରାଯାଇଛି । ପ୍ରାୟ ଦୁଇଶହ ସ୍କୁଲ କଲେଜରେ ସେ ବୈଜ୍ଞାନିକ ଅଭିଭାଷଣ ପ୍ରଦାନ କରିଛନ୍ତି । ବିଜ୍ଞାନ ଓ ଇଂଜିନିୟରିଂ କ୍ଷେତ୍ରରେ ତାଙ୍କର ଗବେଷଣା ଅବଦାନ ଅନନ୍ୟ ସାଧାରଣ ।

ଏହିପରି ଜଣେ ଅସାଧାରଣ ବୈଜ୍ଞାନିକ ବ୍ୟକ୍ତିତ୍ୱ, ବୈଷୟିକ ଜ୍ଞାନ ବିଶାରଦ ଓ ପ୍ରଜ୍ଞାନୀ ବେଦପୁରୁଷ ଇଂଜିନିଏର ଡକ୍ଟର ପ୍ରିୟବ୍ରତ ଦାସଙ୍କ ବିଷୟରେ କିଛି ଲେଖିବା ଧୃଷ୍ଟତା ମାତ୍ର । ହେଲେ କଲମର ବୋଲ ମାନି ବାଟ ଚାଲିବା ମୋ' ଭଳି ଜଣେ ସାଧାରଣ ଲେଖକର କର୍ମଭୂମି ହୋଇଥିବାରୁ ସେହି ବାଟରେ ଦୁଇପାଦ ଆଗେଇ ଚାଲିଛି । ବର୍ଷେ ଦୁଇବର୍ଷ ତଳେ ଆମେ ଇଂଜିନିୟର ପ୍ରିୟବ୍ରତ ଦାସ ମହୋଦୟଙ୍କୁ ଭୁବନେଶ୍ୱରସ୍ଥିତ ନାଲ୍‌କୋର ନିଗମ କାର୍ଯ୍ୟାଳୟକୁ 'ବିଶ୍ୱ ପରିବେଶ ଦିବସ' ପାଳନ ଅବସରରେ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥିଭାବେ ସ୍ୱାଗତ କରିଥିଲୁ । ଏହି ଅଧିବେଶନରେ ସେ ନିଜର ସାଗରଗର୍ଭିକ ବକ୍ତବ୍ୟ ଉପସ୍ଥାପନା କରି କହିଥିଲେ - 'ସୃଷ୍ଟି ରଚନା ବିଷୟରେ ବୈଦିକ ଦର୍ଶନ ଯାହା କହିଛି, ତାହା ଯୁକ୍ତିଯୁକ୍ତ ଓ ବିଜ୍ଞାନ ସମ୍ମତ । ଯେପରି ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ କ୍ରମଶଃ ବିକାଶଲାଭ କରେ, ସେହିପରି ପ୍ରଳୟ ବେଳେ ପୃଥିବୀ ଜଳରେ, ଜଳ ଅଗ୍ନିରେ, ଅଗ୍ନି ବାୟୁରେ ଓ ବାୟୁ ଆକାଶରେ ଲୀନ ହୁଏ ।' ଏ ସମ୍ବନ୍ଧରେ ସେ ଚମତ୍କାର ଭାବରେ ଯୁକ୍ତିଯୁକ୍ତ ଓ ଅକାଟ୍ୟ ପ୍ରମାଣ ଉପସ୍ଥାପନା କରିଥିଲେ । ବେଦର 'ମିତ୍ର' ଶବ୍ଦକୁ ଅମ୍ଳଜାନ ଓ 'ବରୁଣ' ଶବ୍ଦକୁ ଉଦ୍‌ଯାନ ଅର୍ଥ କରି ନିଜର ପାଣ୍ଡିତ୍ୟର ପରାକାଷ୍ଠା ମାଧ୍ୟମରେ ସେ ଜଳର ଉତ୍ପତ୍ତି ସମ୍ବନ୍ଧରେ ପ୍ରାଞ୍ଜଳ ଭାବରେ ବିଶ୍ଳେଷଣ କରିଥିଲେ ।

ଠିକ୍ ସେହିପରି ବେଦଜ୍ଞ ଦାସ ମହୋଦୟଙ୍କ ପାଣ୍ଡିତ୍ୟର ପରମ ପର ଲାଭ କରିବା ପାଇଁ ନାଲ୍‌କୋର ଦାମନଯୋଡ଼ି ଶାଖା ତରଫରୁ ତାଙ୍କୁ ଏକ ବିଶେଷ ଅଧିବେଶନରେ ମଧ୍ୟ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ଏହି ସମ୍ବର୍ଦ୍ଧନା

ସଭାରେ ଦାସ ମହୋଦୟ କହିଥିଲେ – 'ଭାରତର ପ୍ରାଚୀନ ସାହିତ୍ୟରେ ଭୌତିକ ବିଦ୍ୟାକୁ ଜ୍ଞାନ ଓ ଅଧ୍ୟାତ୍ମ ବିଦ୍ୟାକୁ ବିଜ୍ଞାନ କୁହାଯାଇଛି । ଏହି ଦୁଇ ବିଦ୍ୟା ଇଂରେଜ ଭାଷାରେ ଯଥାକ୍ରମେ ଫିଜିକ୍ସ (ଇନ୍ଦ୍ରିୟାଭୂତ ଜ୍ଞାନ) ଓ ମେଟା ଫିଜିକ୍ସ (ଇନ୍ଦ୍ରିୟାତୀତ ଜ୍ଞାନ) ନାମରେ ପରିଚିତ ହେଉଛି । ପାଶ୍ଚାତ୍ୟ ଜଗତରେ ପଞ୍ଚଦଶ ଶତାବ୍ଦୀ ପରେ ସୃଷ୍ଟିର ଭୌତିକ ନିୟମଗୁଡ଼ିକୁ (ସାଇନ୍‌ସ) କୁହାଗଲା । ଭାରତରେ ଆମେ ତାର ନାମ ଦେଲୁ ବିଜ୍ଞାନ । ସଂଶିତ ଆଲୋଚନାରେ ବିଜ୍ଞାନକୁ ସେହି ଅର୍ଥରେ ବ୍ୟବହାର କରାଯାଉଛି ।'

'ବିଜ୍ଞାନ ଓ ଈଶ୍ୱର' ଶୀର୍ଷକ ତାଙ୍କ ରଚିତ ଓ ପ୍ରକାଶିତ ପ୍ରବନ୍ଧରେ ଉଲ୍ଲେଖ ଅଛି – "ବୈଜ୍ଞାନିକ ନିଜର ଆଖି କାନ ଖୋଲି ଜଡ଼ ସୃଷ୍ଟିକୁ ନିରୀକ୍ଷଣ କରେ । ସେତେବେଳେ ସେ ସୃଷ୍ଟିର ପ୍ରତ୍ୟେକ କ୍ରିୟାରେ କ୍ରମ, ନିୟମ ଓ ପ୍ରୟୋଜନ ଅନୁଭବ କରେ । ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର ଆଦି ଆକାଶୀୟ ପିଣ୍ଡର ଗତିରେ ଥିବା କ୍ରମ ଓ ନିୟମ ଅନୁଧ୍ୟାନ କରି ସୂର୍ଯ୍ୟପରାଗ ବା ଚନ୍ଦ୍ରଗ୍ରହଣ ନିର୍ଭୁଲ ସମୟ ନିର୍ଦ୍ଧାରଣ କରେ । ଯଦି ସେଗୁଡ଼ିକର ଗତିରେ ବିଶୃଙ୍ଖଳା ରହୁଥାନ୍ତା, ତାହାହେଲେ ବିଜ୍ଞାନ ପକ୍ଷରେ ଶହ ଶହ ବର୍ଷର କ୍ୟାଲେଣ୍ଡର ପ୍ରସ୍ତୁତ କରିବା ଆଦୌ ସମ୍ଭବ ହୁଅନ୍ତା ନାହିଁ । ବୈଜ୍ଞାନିକ ନିଜର ସୀମା ଓ ଦୁର୍ବଳତା ଜାଣେ । ସେ ଉପଲବ୍ଧି କରେ ଯେ ସେ ଯେତିକି ଜାଣେ, ତା'ଠାରୁ ବହୁ ଅଧିକ ଅଜଣା ବିଷୟ ରହିଛି । ସେ ଯେଉଁ ନିୟମଗୁଡ଼ିକୁ ଆବିଷ୍କାର କରେ, ପୂର୍ବରୁ ସେସବୁ ବିଦ୍ୟମାନ ଥିଲା । ଜେମ୍‌ସ ୱାଟଙ୍କ ଆବିଷ୍କାର ପୂର୍ବରୁ ବାଷ୍ପର ଶକ୍ତି ଥିଲା । ନିଉଟନଙ୍କ ଘୋଷଣା ପୂର୍ବରୁ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଥିଲା । ଆତଫଳ ଉପରକୁ ନ ଯାଇ ତଳକୁ ହିଁ ଖସୁଥିଲା । ଯାହାକୁ ଆମେ ବିଜ୍ଞାନର ବାର୍ତ୍ତା କହୁ ତାହା ସ୍ରଷ୍ଟାଙ୍କ କଳା ଚାତୁର୍ଯ୍ୟର ଅଧ୍ୟୟନ ମାତ୍ର । ବୈଜ୍ଞାନିକ ସ୍ରଷ୍ଟା ନୁହେଁ ସେ ଜଣେ ଦ୍ରଷ୍ଟା । ସୃଷ୍ଟି ଅନନ୍ତ; ସୃଷ୍ଟିର ନିୟମ ମଧ୍ୟ ଅନନ୍ତ । ନିଉଟନ କହିଥିଲେ - ଆମେ ସମୁଦ୍ରର ବେଳାଭୂମିରେ ବସି ବାଲି ଗଣିବା ଆରମ୍ଭ କରିଛୁ ।"

ଏହି ପରମ ବେଦପୁରୁଷ, ପ୍ରାଜ୍ଞ-ମହାମନିଷୀ ତଥା ଜନହିତୈଷୀ ବିଜ୍ଞାନବିଶାରଦ ଇଂଜିନିଏର ପ୍ରିୟବ୍ରତ ଦାସ ୧୯୯୫ ମସିହାରେ ଓଡ଼ିଶାରେ ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ 'ସ୍ୱାମୀ ସତ୍ୟପ୍ରକାଶ ବିଜ୍ଞାନ ସମ୍ମାନ' ଆରମ୍ଭ କରିଥିଲେ । ଆଜି ପର୍ଯ୍ୟନ୍ତ ଓଡ଼ିଶାର ବହୁ ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ଏହି ସମ୍ମାନରେ ସମ୍ମାନିତ କରାଯାଇଛି । ଧର୍ମ ଓ ବିଜ୍ଞାନ ମଧ୍ୟରେ ସଫଳ ସମନ୍ୱୟ ପ୍ରତିଷ୍ଠା କରିଥିବା ଆନ୍ତର୍ଜାତିକ

ଖ୍ୟାତିସମ୍ପନ୍ନ ରସାୟନବିତ୍ ଡକ୍ଟର ସତ୍ୟପ୍ରକାଶ ତାଙ୍କର ମାର୍ଗଦର୍ଶକ ଥିଲେ । ସତ୍ୟପ୍ରକାଶ ଥିଲେ ହିନ୍ଦୀ ଦାର୍ଶନିକ ସାହିତ୍ୟର ମୂର୍ଦ୍ଧନ୍ୟ ବିଦ୍ୱାନ ଓ ପ୍ରସିଦ୍ଧ ଆର୍ଯ୍ୟସମାଜୀ ପଣ୍ଡିତ ଗଙ୍ଗାପ୍ରସାଦ ଉପାଧ୍ୟାୟଙ୍କର ଜ୍ୟେଷ୍ଠ ପୁତ୍ର । ସେ ଏହ୍ଲାବାଦ ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗର ପୂର୍ବତନ ଅଧ୍ୟକ୍ଷ ପଦ ମଧ୍ୟ ଅଳଙ୍କୃତ କରିଥିଲେ ।

ଯୋଗଜନ୍ମା ପରମ ବେଦସାଧକ, ଯଶସ୍ୱୀ ବିଜ୍ଞାନୀ ଓ ପ୍ରଯୁକ୍ତି ବିଦ୍ୟାବିତ୍ ଇଂଜିନିୟର ଡକ୍ଟର ପ୍ରିୟବ୍ରତ ଦାସ ମହୋଦୟ ଭାରତୀୟ ସଡ଼କ କଂଗ୍ରେସର ଜାତୀୟ କୋଡ୍ ପ୍ରସ୍ତୁତିରେ ପ୍ରାୟ କୋଡ଼ିଏ ବର୍ଷ ଧରି ବିଭିନ୍ନ କମିଟିର ସଭ୍ୟ ଥାଇ ଏହାର ସଫଳ ରୂପାୟନ କରିଥିଲେ । ଓଡ଼ିଶାର ବିଭିନ୍ନ ପାହାଡ଼ ପର୍ବତରେ ଥିବା ପଥରର ନିର୍ମାଣ କ୍ଷେତ୍ରରେ ଉପଯୋଗିତା ସମ୍ବନ୍ଧରେ ସେ ପାଞ୍ଚବର୍ଷ ଗବେଷଣା କରିଥିଲେ । ତା' ସହିତ ଇଟା, ଛଡ଼, ସିମେଣ୍ଟର ଉପଯୋଗ ସମ୍ବନ୍ଧରେ ସେ କରିଥିବା ଗବେଷଣା ଓଡ଼ିଶା କ୍ଷେତ୍ରରେ ସଫଳ ପରିପ୍ରୟୋଗ ହୋଇଥିଲା । ବିଭିନ୍ନ ପ୍ରକାର ବାଲି ଓ ମାଟିର ପରୀକ୍ଷା ନିରୀକ୍ଷା କରି ସେ ଉଚ୍ଚକୋଟିର ଗବେଷଣା ପତ୍ର ପ୍ରସ୍ତୁତ କରିଥିଲେ ।

ଓଡ଼ିଶା ଏକ୍ସପ୍ରେସ ରାଜପଥର, ସଡ଼କ ଓ ପୋଲ ଆଦିର ନକ୍ସା ପ୍ରସ୍ତୁତି କ୍ଷେତ୍ରରେ ସେ ବିଶେଷ ଅଂଶ ଗ୍ରହଣ କରିଥିଲେ । ସେ ଓଡ଼ିଶାର ପୂର୍ବତନ ରାଜ୍ୟପାଳ ମାନ୍ୟବର ଅଯୋଧ୍ୟା ନାଥ ଖୋସଲା ଓ ଭାରତ ରତ୍ନ ଏମ୍.ବିଶ୍ୱେସ୍ୱରେୟାଙ୍କ ଜୀବନୀ ରଚନା କରିଥିଲେ ଯାହାକି ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଂଜିନିୟର୍ସ ତରଫରୁ ପ୍ରକାଶ କରାଯାଇଥିଲା ।

ପରମ ପୂଜ୍ୟ ପ୍ରାତଃସ୍ମରଣୀୟ ବେଦବିଜ୍ଞାନୀ ତଥା ଓଡ଼ିଶାର ସୁଯୋଗ୍ୟ ସନ୍ତାନ ଇଂଜିନିୟର ଡକ୍ଟର ପ୍ରିୟବ୍ରତ ଦାସ ବହୁ ସମ୍ମାନ ଓ ଯଶର ଅଧିକାରୀ ହୋଇଛନ୍ତି । ନିକଟ ଅତୀତରେ ଓଡ଼ିଶାର ସର୍ବ ପୁରାତନ ବିଶ୍ୱବିଦ୍ୟାଳୟ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନଜନକ ଡକ୍ଟରେଟ ଉପାଧିରେ ଭୂଷିତ କରି ତାଙ୍କର ସର୍ବକାଳୀନ ଅବଦାନକୁ ସ୍ୱୀକୃତି ଓ ସମ୍ମାନ ପ୍ରଦାନ କରିଛି । ଏହି ନମସ୍ୟ, ଗୁଣୀ, ବିଜ୍ଞ ପଣ୍ଡିତଙ୍କୁ ମୁଁ ଭକ୍ତିପୂତ ପ୍ରଣାମ କରି ଏହି କ୍ଷୁଦ୍ର ରଚନାଟି ତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଛି ।

ବେଦ ପଥିକ

ପ୍ରଥମ ସଂସ୍କରଣ, ଡିସେମ୍ବର-୨୦୦୭



# ୟୁନେସ୍କୋ କଳିଙ୍ଗ ପୁରସ୍କାର ବିଜେତା
## (୧୯୫୨ -୨୦୦୫)

୧୯୫୨ : ପ୍ରିନ୍ସ୍ ଲୁଇ ଭିକ୍ଟର୍ ଡି. ବ୍ରଗ୍ଲି (୧୮୯୨-୧୯୮୭), ଫ୍ରାନ୍ସ



ଫରାସୀ ତାତ୍ତ୍ୱିକ ତଥା କ୍ୱାଣ୍ଟମ୍ ଭୌତିକୀ ବିଜ୍ଞାନୀ: ଇଲେକ୍ଟ୍ରନ୍'ର ତରଙ୍ଗ ଗୁଣ ଆବିଷ୍କାର ପାଇଁ ୧୯୨୯ ମସିହାରେ ପଦାର୍ଥବିଜ୍ଞାନ ପାଇଁ ନୋବେଲ୍ ପୁରସ୍କାର ବିଜେତା : ତା'ଛଡ଼ା ଅନେକ ଆନ୍ତର୍ଜାତୀୟ ସମ୍ମାନ ଲାଭ ସଙ୍ଗେ ସଙ୍ଗେ ବିଖ୍ୟାତ ଗଣିତଜ୍ଞ 'ହେନ୍‌ରି ପୟନ୍‌କେଆରେ'ଙ୍କ 'ସ୍ମାରକୀ ପଦକ' (୧୯୨୯)ର ପ୍ରଥମ ବିଜେତା : ତାଙ୍କ ଦ୍ୱାରା ରଚିତ ୨୫ ଖଣ୍ଡ ପୁସ୍ତକ ମଧ୍ୟରେ 'Waves & Motions' ଓ 'Wave Mechanics' ଅନ୍ୟତମ ।

୧୯୫୩ : ସାର୍ ଜୁଲିଆନ୍ ସରେଲ୍ ହକ୍ସଲେ (୧୮୮୭-୧୯୭୫), ୟୁନାଇଟେଡ଼୍ କିଙ୍ଗ୍‌ଡ଼ମ୍



ବ୍ରିଟିଶ୍ ଜୀବବିଜ୍ଞାନୀ ପ୍ରଖ୍ୟାତ ସାହିତ୍ୟିକ ଆଲ୍‌ଡସ୍ ହକ୍ସଲେ ଏବଂ ଶରୀରତତ୍ତ୍ୱବିତ୍ ଆଣ୍ଡ୍ରୁ.ଏଫ୍. ହକ୍ସଲେଙ୍କ ଭାଇ : ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ୍ ସେନାବାହିନୀରେ ଯୋଗଦାନ : ଲଣ୍ଡନ୍‌ସ୍ଥ ପ୍ରଖ୍ୟାତ 'କିଙ୍ଗ୍‌ସ କଲେଜ'ରେ ପ୍ରାଣବିଜ୍ଞାନ ପ୍ରଫେସର ଭାବେ ଦାୟିତ୍ୱ ସମ୍ପାଦନ : ୨୦ ରୁ ଊର୍ଦ୍ଧ୍ୱ ପୁସ୍ତକର ପ୍ରଣେତା : କେତୋଟି ଅତ୍ୟନ୍ତ ଲୋକପ୍ରିୟ ପୁସ୍ତକ 1) The Science of Life 2) Man in the Modern World 3) Essays of a Humanist.

୧୯୫୪ ଓ୍ୱାଲଡେମାର୍ କ୍ୟାମଫର୍ଟ (୧୮୭୭-୧୯୫୬), ଆମେରିକା

ଆମେରିକୀୟ ଲୋକପ୍ରିୟ ବିଜ୍ଞାନ ଲେଖକ : ବିଖ୍ୟାତ ପତ୍ରିକା 'Scientific American' ର ବହୁକାଳ ଅବଧି ମେନେଜିଂ ଏଡିଟର୍ : 'The New York Times'ର ବିଜ୍ଞାନ ଓ ଇଂଜିନିଅରିଂ ବିଭାଗର ସମ୍ପାଦକ : ଆମେରିକାନ୍ ନେଶନାଲ୍ ଏସୋସିଏସନ୍ ଅଫ୍ ସାଇନ୍ସ ରାଇଟର୍ସ'ର ସଭାପତି : ବିଭିନ୍ନ ଆମେରିକୀୟ ମ୍ୟୁଜିଅମ୍ ମାନଙ୍କରେ ତତ୍ତ୍ୱାବଧାରକ ଦାୟିତ୍ୱ ସମ୍ପାଦନ ।

୧୯୫୫ ଡାକ୍ତର ଅଗଷ୍ଟୋ ପାୟ୍ ସୁନେର୍ (୧୮୭୯-୧୯୬୫), ଭେନେଜୁଏଲା



ଶରୀରତତ୍ତ୍ୱ ବିଶେଷଜ୍ଞ ଡାକ୍ତର ସ୍ପେନ୍‌ର ବାର୍ସେଲୋନା ସହରରେ ଜନ୍ମ ପିତାମାତା ସ୍ପେନ୍‌ର ନାଗରିକ : ବାର୍ସେଲୋନା ମେଡ଼ିକାଲ୍ ବିଶ୍ୱବିଦ୍ୟାଳୟରେ ଶରୀରତତ୍ତ୍ୱ ବିଭାଗୀୟ ପ୍ରଫେସର୍ ରୂପେ ପ୍ରଥମାବସ୍ଥାରେ କାର୍ଯ୍ୟ ନିର୍ବାହ : ପରବର୍ତ୍ତୀ କାଳରେ ଭେନେଜୁଆଲାର ନାଗରିକତ୍ୱ ଗ୍ରହଣ ଏବଂ ତତ୍ରତ୍ୟ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ ଓ ଗବେଷଣା ଅନେକ ଲୋକପ୍ରିୟ ବିଜ୍ଞାନ ରଚନାର ପ୍ରଣେତା ।

୧୯୫୬ : ଜର୍ଜ ଗେମୋ (୧୯୦୪-୧୯୬୮), ଆମେରିକା



ରୁଷିଆର ଇଉକ୍ରେନ୍‌ରେ ରୁଷୀୟ ପିତାମାତାଙ୍କଠାରୁ 'ଜର୍ଜି ଏଣ୍ଟନୋଭିଚ୍ ଗେମୋଭ' (Georgiy Antonovich Gamov) ନାମରେ ଜନ୍ମିତ : ବାଲ୍ୟଶିକ୍ଷା ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ରୁଷିଆର 'ଓଡେସା' ସ୍ଥିତ ବିଦ୍ୟାଳୟ ଏବଂ ଲେନିନ୍‌ଗ୍ରାଡ୍ ବିଶ୍ୱବିଦ୍ୟାଳୟରେ : ତାତ୍ତ୍ୱିକ ପଦାର୍ଥବିଜ୍ଞାନୀ ତଥା ମହାକାଶ ବିଜ୍ଞାନ ବିଶେଷଜ୍ଞ 'ବିଗ୍‌ବେଙ୍ଗ୍' ତତ୍ତ୍ୱ

(ମହାବିସ୍ଫୋରଣ ତତ୍ତ୍ୱ)ର ଜନକ : "Cosmic microwave background radiation" ଆଧାରୀ ତାଙ୍କର ପ୍ରଖ୍ୟାତ ଗବେଷଣା ଧର୍ମୀ ପ୍ରବନ୍ଧ (Physical Review, April 1, 1948) କୁ 'ଆଲ୍‌ଫର୍-ବେଥେ-ଗେମୋ ତଥ୍ୟ' (ବେଳେବେଳେ ନାମତ୍ରୟର ପ୍ରଥମ ଅକ୍ଷରକୁ ଆଙ୍ଗିକ ଭାବେ ନେଇ "ଆଲଫା-ବିଟା-ଗାମା ତତ୍ତ୍ୱ") ଭାବେ ଉପସ୍ଥାପିତ କରାଯାଇଥାଏ । ପରବର୍ତ୍ତୀ କାଳରେ ଗେମୋ ଆଣବିକ ଜୀବବିଜ୍ଞାନ ଚର୍ଚ୍ଚାରେ ମନୋନିବେଶ କରିଥିଲେ : 'ଜେନେଟିକ୍ କୋଡ୍'ର ପ୍ରଥମ ପରିକଳ୍ପନା ସେ କରିଥିଲେ । ଲୋକପ୍ରିୟ ବିଜ୍ଞାନ ସାହିତ୍ୟକୁ ତାଙ୍କର ଅନନ୍ୟ ରଚନା - "Mr. Tompkins..." ଗ୍ରନ୍ଥମାଳା ଏବଂ "One Two Three...Infinity" ପରି ପୁସ୍ତକ ଅମୂଲ୍ୟ ଅବଦାନ । ପରବର୍ତ୍ତୀ କାଳରେ ଆମେରିକାରେ ନାଗରିକତ୍ୱ ଗ୍ରହଣ ।

୧୯୫୭ : ବରର୍ଟ୍ରାଣ୍ଡ ରସେଲ୍ (୧୮୭୨-୧୯୭୦), ୟୁନାଇଟେଡ୍ କିଙ୍ଗଡ୍‌ମ୍



ବିଖ୍ୟାତ ବ୍ରିଟିଶ ଗଣିତଜ୍ଞ, ଦାର୍ଶନିକ, ସମାଜବିଜ୍ଞାନୀ, ସାମ୍ୟବାଦ ବିଶ୍ୱାସୀ ଓ ସାହିତ୍ୟିକ : କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ଟ୍ରିନିଟି କଲେଜରୁ ଗଣିତରେ ସ୍ନାତକ : ତାଙ୍କ ରଚିତ ଅର୍ଦ୍ଧଶତାଧିକ ପୁସ୍ତକମାନଙ୍କ ମଧ୍ୟରେ ତାଙ୍କର 'The Principles of Mathematics' (1903) ପ୍ରଥମେ ଜଣେ ମହାନ୍ 'ଚିନ୍ତକ' ରୂପେ ତାଙ୍କୁ ଉପସ୍ଥାପିତ କରିଥିଲା । Introduction to Mathematical Philosophy (1919), The Analysis of Mind (1921), The ABC of Atoms (1923), The ABC of Relativity (1925), Marriage & Morals (1929), The Scientific Outlook (1931), Religion & Science (1935), The Impact of Science on Society (1952) ଆଦି ପୁସ୍ତକ ତାଙ୍କୁ ସାରା ପୃଥିବୀରେ ଜଣେ ମହାନ୍ ଚିନ୍ତାଶୀଳ ପ୍ରଜ୍ଞାପୁରୁଷ ତଥା ବିଜ୍ଞାନବେତ୍ତା ସାହିତ୍ୟିକର ମର୍ଯ୍ୟାଦା ଦେଇଛି । ୧୯୫୦ ମସିହାରେ ସେ ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ପାଇଥିଲେ ।

୧୯୫୮ : କାର୍ଲ ଭନ୍ ଫ୍ରିସ୍ (୧୮୮୬-୧୯୮୨), ଜର୍ମାନୀ



ଜର୍ମାନ୍ ପ୍ରାଣୀବିଜ୍ଞାନୀ : ମ୍ୟୁନିକ୍ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥିଲେ; ମହୁମାଛିଙ୍କର ଦୋଳାୟିତ ନୃତ୍ୟର ବିଜ୍ଞାନସମ୍ମତ ହେତୁ ନିର୍ଦ୍ଧାରଣ କରିଥିଲେ : କୀଟ ପତଙ୍ଗ ଠାରେ ସଂବେଦୀ ଅନୁଭବ ଥିବା ପ୍ରମାଣ କରିଥିଲେ । ୧୯୭୩ ମସିହାର ମେଡିସିନ୍ ନୋବେଲ୍ ପୁରସ୍କାର ଲାଭ କରିଥିଲେ : ପ୍ରଣୀତ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ଗୁଡ଼ିକ ମଧ୍ୟରେ Dancing Bees, Decoding the Language of the Bee ଆଦି ପ୍ରଧାନ ।

୧୯୫୯ : ଜିନ୍ ରୋସ୍ତାଁ (୧୮୯୪-୧୯୭୭), ଫ୍ରାନ୍ସ



ପରୀକ୍ଷଣଧର୍ମୀ ଫରାସୀ ଜୀବବିଜ୍ଞାନୀ : ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ସ୍ରଷ୍ଟା : ବିଜ୍ଞାନର ଐତିହ୍ୟ ଓ ଦର୍ଶନ ସମ୍ବନ୍ଧୀୟ ଅନେକ ପୁସ୍ତକର ପ୍ରଣେତା : ଉଭୟଚର ପ୍ରାଣୀ ସମ୍ପର୍କିତ ଭ୍ରୂଣବିଦ୍ୟା, ଅନିଷିକ୍ତ ଜନନ (parthenogenesis) ପ୍ରକ୍ରିୟା ସମ୍ବନ୍ଧରେ ବିସ୍ତୃତ ଗବେଷଣା ସେ କରିଥିଲେ । ତା'ଛଡ଼ା ନିଉକ୍ଲିଅର ଯୁଦ୍ଧାସ୍ତ୍ରର ପ୍ରସ୍ତୁତି ଓ ପ୍ରସାରଣ ବିରୋଧରେ ସେ ସକ୍ରିୟ ଅନ୍ଦୋଳନ ଚଳାଇଥିଲେ : ୬୦ରୁ ଉର୍ଦ୍ଧ୍ୱ ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ From Fly to Man, Biology and Medicine, Life and its Problems, Man in the Year 2000, Atomism in Biology, What is a Child ? ଆଦି ଅତ୍ୟନ୍ତ ଜନାଦୃତ ।

୧୯୬୦: ବେରନ୍ ରିଚି କାଲଡର (୧୯୦୬ - ୧୯୮୨), ୟୁନାଇଟେଡ଼ କିଙ୍ଗଡ଼ମ



ପ୍ରଖ୍ୟାତ ବ୍ରିଟିଶ୍ ଗ୍ରନ୍ଥକାର, ସାମ୍ବାଦିକ ଓ ବିଜ୍ଞାନ ଲେଖକ : ୨ୟ ବିଶ୍ୱଯୁଦ୍ଧ ବେଳେ ତାଙ୍କ ପ୍ରଣୀତ "Carry on London" ପୁସ୍ତକ ବ୍ରିଟେନ୍‌ବାସୀଙ୍କ ଠାରେ ତାଙ୍କୁ ଅତିପ୍ରିୟ କରିଥିଲେ । ଯୁଦ୍ଧର ଅବସାନ ପରେ ବିଶ୍ୱ ଶାନ୍ତି ପାଇଁ

ପ୍ରଚାର ଓ ବିଜ୍ଞାନକୁ ଲୋକାଭିମୁଖୀ ଓ ଜନପ୍ରିୟ କରିବାରେ ତାଙ୍କର ସମସ୍ତ ଉଦ୍ୟମ ନିୟୋଜିତ ହୋଇଥିଲା । ତାଙ୍କ ପ୍ରଣୀତ ୨୫ ଖଣ୍ଡ ପୁସ୍ତକ ମଧ୍ୟରେ Carry on London (1941), Living with the Atom, Medicine & Man, Man and the Cosmos, Science and Socialism ଆଦି ଅତ୍ୟନ୍ତ ଜନପ୍ରିୟ ।

୧୯୬୧ : ଆର୍ଥର୍ ଚାର୍ଲସ୍ କ୍ଲାର୍କ (୧୯୧୭-୨୦୦୮), ୟୁନାଇଟେଡ୍ କିଙ୍ଗଡ଼ମ



ପ୍ରଖ୍ୟାତ ବ୍ରିଟିଶ୍ ବିଜ୍ଞାନ ଉପନ୍ୟାସ ଲେଖକ; ବିଜ୍ଞାନ ଆଧାରୀ ଚଳଚିତ୍ର ନିର୍ମାତା ନିର୍ଦ୍ଦେଶକ : ତାଙ୍କ ଉପନ୍ୟାସ, 2001 : A Space Odyssey (୨୦୦୧ - ମହାକାଶକୁ ଏକ ଦୁଃସାଧ ଯାତ୍ରା)ଘୁ ଚଳଚ୍ଚିତ୍ର ରୂପ ଦେଇ ସେ ନିଜେ ଏହାର ନିର୍ଦ୍ଦେଶନା ଭାର ଗ୍ରହଣ କରିଥିଲେ : ଏହା ଆଶାତୀତ ଆଦୃତି ଲାଭ କରିଥିଲା । ରବର୍ଟ ଏ. ହିନ୍‌ଲିନ୍, ଆଇଜାକ୍ ଆସିମୋଭ୍ ଓ ଆର୍ଥର୍ କ୍ଲାର୍କଙ୍କୁ ଏକଦା ବିଜ୍ଞାନ-କଳ୍ପିତ କାହାଣୀକାର ମାନଙ୍କ ମଧ୍ୟରେ 'ଗୁରୁତ୍ରୟୀ'(Big Three) ଭାବେ ବିବେଚନା କରାଯାଉଥିଲା; କ୍ଲାର୍କ ହିଁ ଏବେ ଏକମାତ୍ର ଜୀବିତ : ଏଚ୍.ଜି. ଓ୍ୱେଲସ୍‌ଙ୍କ ପ୍ରଭାବ କ୍ଲାର୍କଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା : ନିଜଦେଶର କେତେକ ନିନ୍ଦୁକ ବ୍ୟକ୍ତିଙ୍କ ଦ୍ୱାରା କପୋଳ-କଳ୍ପିତ ଭାବେ ତାଙ୍କ ଚରିତ୍ର ସଂହାର କରାଯିବା ପରେ ସେ ନିଜ ଦେଶ ପରିତ୍ୟାଗ କରି ସିଂହଳରେ ସେ ଦେଶର ଜାତୀୟତା ଗ୍ରହଣ କରି ରହିଥିଲେ । ତାଙ୍କର ୩୨ ଖଣ୍ଡ ଉପନ୍ୟାସ ଓ ୧୪ କ୍ଷୁଦଗଳ୍ପ ସଂଗ୍ରହ ପ୍ରକାଶିତ ହୋଇଛି । ୧୯ ମାର୍ଚ୍ଚ ୨୦୦୮ରେ ସେ ଦେହତ୍ୟାଗ କରିଥିଲେ ।

୧୯୬୨ : ଡ. ଜେରାର୍ଡ ପିଏଲ୍ (୧୯୧୫-୨୦୦୪), ଆମେରିକା



ପ୍ରଖ୍ୟାତ ଆମେରିକୀୟ ବିଜ୍ଞାନ ସ୍ତମ୍ଭକାର ଓ ସାମ୍ବାଦିକ : "ସାଇଣ୍ଟିଫିକ୍ ଆମେରିକାନ୍" ପତ୍ରିକାର ସ୍ୱତ୍ୱାଧିକାରୀ ଓ ଚେୟାରମେନ୍ ଭାବେ ସର୍ବତ୍ର ସୁପରିଚିତ ଥିଲେ : ଗତାନୁଗତିକ ଭାବେ ବିଜ୍ଞାନ ଶିକ୍ଷା ନଥାଇ ବି ନିଜ ପ୍ରଚେଷ୍ଟାରେ ବିଜ୍ଞାନ ତଥ୍ୟ

ଓ ତତ୍ତ୍ୱକୁ ଆତ୍ମସ୍ଥ କରି ସେ ଏକାଧିକ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ରଚନା କରିଯାଇଛନ୍ତି; ସେଗୁଡ଼ିକ ମଧ୍ୟରେ - The Age of Science, Science in the Cause of Man, The Acceleration of History, Only One World ଆଦି ପ୍ରଧାନ । ୧୯୮୬ ମସିହାରେ ସେ "ଆମେରିକାନ୍ ଏସୋସିଏସନ୍ ଫର୍ ଦି ଆଡ୍‌ଭାନ୍‌ସମେଣ୍ଟ ଅଫ୍ ସାଇନ୍ସ" (AAAS) ର ସଭାପତି ଭାବେ ମନୋନୀତ ହୋଇଥିଲେ ।

## ୧୯୬୩ : ଜଗଜିତ୍ ସିଂହ (୧୯୧୨ - ୨୦୦୨), ଭାରତ



ଭାରତୀୟ ଗଣିତବିଜ୍ଞାନୀ ତଥା ରେଳବାଇ ପ୍ରଶାସକ : ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ସେ ପ୍ରମୁଖ ଭୂମିକା ନିର୍ବାହ କରିଛନ୍ତି । 'ଭାରତୀୟ ରେଳବାଇ ବୋର୍ଡ'ର ସଭାପତି ପଦ ସେ ୧୯୬୦ ମସିହାରେ ମଣ୍ଡନ କରିଥିଲେ ଏବଂ ପରବର୍ତ୍ତୀ କାଳରେ 'ଉତ୍ତର-ପୂର୍ବ-ସୀମାନ୍ତ ରେଳବାଇ ମଣ୍ଡଳ'ର ସର୍ବୋଚ୍ଚ ପ୍ରଶାସକ ପଦବୀକୁ ମଧ୍ୟ ଉନ୍ନୀତ ହୋଇଥିଲେ । ପ୍ରଖ୍ୟାତ ସ୍ତମ୍ଭକାର ତଥା ସାହିତ୍ୟିକ ଖୁସବନ୍ତ ସିଂହଙ୍କର ସେ ବନ୍ଧୁ ଥିଲେ । ପାକିସ୍ତାନ୍‌ର ନୋବେଲ୍ ବିଜେତା ପଦାର୍ଥବିଜ୍ଞାନୀ ଅବଦୁସ୍ ସଲାମ୍‌ଙ୍କ ଅନୁରୋଧ ରକ୍ଷାକରି ତାଙ୍କ 'ଜୀବନୀ' ରଚନା କରିଥିଲେ ଜଗ୍‌ଜିତ୍ ସିଂହ ୧୯୭୯ ମସିହାରେ । ତାଙ୍କ ରଚିତ ବହୁ ପୁସ୍ତକ ମାନଙ୍କ ମଧ୍ୟରୁ ନିମ୍ନୋଦ୍ଧୃତ ଗୁଡ଼ିକ ବହୁ ଆଦୃତି ପାଇଛି । Great Ideas of Modern Mathematics, Great Ideas & Theories of Modern Cosmology, Great Ideas in Information Theory, Language and Cybermetics, Reminisciences of a Mathematician Monk.

## ୧୯୬୪ : ୱାରେନ୍ ୱିଭର୍ (୧୮୯୪-୧୯୭୮), ଆମେରିକା



ଆମେରିକୀୟ ଗଣିତ ବିଜ୍ଞାନୀ, ସିଭିଲ୍ ଇଂଜିନିୟର, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଏକାଧିକ ଅନୁଷ୍ଠାନରେ ପ୍ରଶାସକ ଦାୟିତ୍ୱ ସମ୍ପାଦନ : ପୃଥିବୀ ବିଖ୍ୟାତ 'ରକେଫେଲର୍ ଫାଉଣ୍ଡେସନ୍'ର ବିଜ୍ଞାନ ବିଭାଗୀୟ ନିର୍ଦ୍ଦେଶକ (୧୯୩୨ - ୧୯୫୫) ସୁପ୍ରସିଦ୍ଧ 'ସ୍ଲୋଆନ୍‌କେଟେରିଂ କର୍କଟ ରୋଗ ଚିକିତ୍ସା ଓ ଗବେଷଣା ପ୍ରତିଷ୍ଠାନ'ର ଉପସଭାପତି : 'କ୍ଲଡ୍ ସେନ୍ନନ୍'ଙ୍କ ସହ ମିଶି ୧୯୪୯ ମସିହାରେ କମ୍ପ୍ୟୁଟର ସୂଚନା ଭିତ୍ତିକ ପ୍ରାବିଧିକ କୌଶଳ ବର୍ଣ୍ଣିତ ପୁସ୍ତକ "The Mathematical Theory of Communication" ରଚନା : 'ଆଣବିକ ଜୀବବିଜ୍ଞାନ' (Molecular Biology) କ୍ଷେତ୍ରରେ ଆଧୁନିକତମ ଗବେଷଣା ପାଇଁ ସବୁପ୍ରକାର ପ୍ରୋତ୍ସାହନ ଓ ପ୍ରେରଣାଦାତା ଭାବେ ପରିଚିତ : ବହୁକାଳ ଧରି 'The American Association for the Advancement of Science' ର ଦାୟିତ୍ୱ ସମ୍ପାଦନ କରିଥିଲେ ।

## ୧୯୬୫ : ଇଉଜିନ୍ ରାବିନୋବିଚ୍ (୧୯୦୧-୧୯୭୩), ଆମେରିକା



ରୁଷିଆରେ ଜନ୍ମିତ ଆମେରିକୀୟ ଜୈବପଦାର୍ଥ ବିଦ୍ୟାବିତ୍ : ୨ୟ ବିଶ୍ୱଯୁଦ୍ଧ କାଳରେ ମ୍ୟାନ୍‌ହଟାନ୍ ସ୍ଥିତ 'Met-Lab' ରେ ଯନ୍ତ୍ରପାତି ନିର୍ମାଣ କାର୍ଯ୍ୟରେ ଯୋଗଦାନ ଆଣବିକ ଶକ୍ତିର କଲ୍ୟାଣକାରୀ ଉପଯୋଗ ପାଇଁ ଆନ୍ତର୍ଜାତିକ ସ୍ତରରେ ସ୍ୱର ଉତ୍ତୋଳନ : ଯୁଦ୍ଧର ଅବସାନ ପରେ "ଇଲ୍ଲିନୟ ବିଶ୍ୱବିଦ୍ୟାଳୟ"ରେ ପ୍ରଫେସର ଭାବେ ଦାୟିତ୍ୱ ନିର୍ବାହ : ତାଙ୍କ ପରବର୍ତ୍ତୀ ଗବେଷଣା ମୁଖ୍ୟତଃ ଆଲୋକ ସଂଶ୍ଲେଷଣ ପ୍ରକ୍ରିୟା ଉପରେ ଆଧାରିତ ଥିଲା : ଜଣେ ସୁଦକ୍ଷ ଶିକ୍ଷକ, ଲୋକପ୍ରିୟ ବିଜ୍ଞାନ ଲେଖକ, ମନନଧର୍ମୀ ସ୍ତମ୍ଭକାର ଭାବେ ତାଙ୍କର ସୁଖ୍ୟାତି ଥିଲା ।

୧୯୬୬ : ପଲ୍ କୁଦର୍କ (୧୮୯୯-୧୯୮୧), ଫ୍ରାନ୍ସ



ଫରାସୀ ଜ୍ୟୋତିର୍ବିଜ୍ଞାନୀ; ପ୍ୟାରିସ୍ ପର୍ଯ୍ୟବେକ୍ଷଣ ଶାଳାରେ ଦୀର୍ଘକାଳ କର୍ମନିର୍ବାହ; ପ୍ରଥମେ ଜଣେ ସ୍କୁଲଶିକ୍ଷକ ଭାବେ କର୍ମଜୀବନ ଆରମ୍ଭ କରି ବିଦ୍ୟାଳୟ ଛାତ୍ରଛାତ୍ରୀଙ୍କୁ ଗଣିତ ଓ Solid Geometry ପଢ଼ାଉଥିଲେ : ପରବର୍ତ୍ତୀ କାଳରେ ପର୍ଯ୍ୟବେକ୍ଷଣଶାଳାରେ ନିଯୁକ୍ତି ପାଇ ବିଜ୍ଞାନ ଭିତ୍ତିକ ବିଭିନ୍ନ ବିଷୟ, ଯଥା-ଆପେକ୍ଷିକ ତତ୍ତ୍ୱ, ଜ୍ୟୋତିର୍ବିଦ୍ୟା, ଜ୍ୟୋତିଃ-ପଦାର୍ଥ ବିଜ୍ଞାନ, ଜ୍ୟାମିତି ଆଦି ବିଷୟବସ୍ତୁ ଉପରେ ଅନେକ ଲୋକପ୍ରିୟ ବିଜ୍ଞାନ-ପୁସ୍ତକ ରଚନା କରିଛନ୍ତି ।

୧୯୬୭ : ସାର୍ ଫ୍ରେଡେରିକ୍ ହୟଲ୍ (୧୯୧୫-୨୦୦୧), ୟୁନାଇଟେଡ୍ କିଙ୍ଗଡ଼ମ



ପୃଥିବୀ ବିଖ୍ୟାତ ବ୍ରିଟିଶ୍ ଜ୍ୟୋତିଃପଦାର୍ଥ ବିଜ୍ଞାନୀ ତଥା ମହାକାଶ ବିଜ୍ଞାନୀ : ଜଣେ ଗଣିତ ବିଶେଷଜ୍ଞ ଭାବେ ପ୍ରଶିକ୍ଷିତ ହୋଇ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପରବର୍ତ୍ତୀ କାଳରେ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଉତ୍କୃଷ୍ଟମାନର ଗବେଷଣା କରିଥିଲେ : ମୂଳରୁ ସେ "ମହାବିସ୍ଫୋରଣ ତତ୍ତ୍ୱ"କୁ ବିରୋଧ କରୁଥିଲେ ଏବଂ ନିଜେ "Quasi Steady State" (QSS), ନାମକ ଏକ ନୂତନ ତତ୍ତ୍ୱର ପ୍ରବକ୍ତା ହୋଇଥିଲେ : କିନ୍ତୁ ପରବର୍ତ୍ତୀ କାଳରେ "ମହାବିସ୍ଫୋରଣ ତଥ୍ୟ" ମୁଖ୍ୟତଃ ମହାକାଶ ବିଜ୍ଞାନୀମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ତାଙ୍କ ସହକର୍ମୀ ଉଇଲିଅମ୍ ଆଲ୍‌ଫ୍ରେଡ୍ ଫାଉଲର ଘଟଣାକ୍ରମେ ୧୯୮୩ ମସିହାର ପଦାର୍ଥ ବିଜ୍ଞାନ ନୋବେଲ୍ ପୁରସ୍କାର ସୁବ୍ରମନିଅନ୍ ଚନ୍ଦ୍ରଶେଖରଙ୍କ ସହ ଲାଭ କଲେ; କିନ୍ତୁ ହୟଲଙ୍କ ଭାଗ୍ୟରେ ତାହା ଜୁଟିଲାନାହିଁ । ବିଜ୍ଞାନକୁ ବୋଧଗମ୍ୟ ତଥା ଲୋକପ୍ରିୟ କରିବା ପାଇଁ ସେ ଅନେକ କାଳଜୟୀ ପୁସ୍ତକ ରଚନା କରିଛନ୍ତି । ସେଥିରୁ ପ୍ରମୁଖ କେତୋଟି ହେଲା - 'Seven Steps to the Sun', 'Mathematics of Evolution', 'The Black Cloud: ତାଙ୍କ ସ୍ମୃତି ଓ ସମ୍ମାନରେ ଏକ 'ଗ୍ରହାଣୁପୁଞ୍ଜ'କୁ 'Asteroid 8077 Hoyle' ଭାବରେ ନାମିତ କରାଯାଇଛି ।

୧୯୬୮ : ଗାଭିନ୍ ଡି. ବିଅର୍ (୧୮୯୯-୧୯୭୨), ୟୁନାଇଟେଡ଼ କିଙ୍ଗଡ଼ମ



ବ୍ରିଟିଶ୍ ଜୀବବିଜ୍ଞାନୀ; ବାଲ୍ୟଶିକ୍ଷା ପ୍ୟାରିସ ସ୍ଥିତ ଇକଲ୍ ପାସ୍କଲ୍, ପରେ ଲଣ୍ଡନସ୍ଥ ହେରୋର ପ୍ରସିଦ୍ଧ ଶିକ୍ଷାନୁଷ୍ଠାନମାନଙ୍କରେ ସମାପ୍ତ କରିଥିଲେ; ଜୀବବିଜ୍ଞାନ ଓ ଅନୁବଂଶିକୀ ବିଦ୍ୟାରେ ଉଚ୍ଚଶିକ୍ଷା ପରେ ୧୯୩୮ ମସିହାରେ ଲଣ୍ଡନସ୍ଥ 'ଇଉନିଭରସିଟି କଲେଜ'ରେ ଅନୁବଂଶିକୀ ବିଜ୍ଞାନର ପ୍ରାଧ୍ୟାପକ ଭାବେ ଯୋଗଦାନ : ଶିକ୍ଷାଦାନ ବେଳେ ଜେ.ବି.ଏସ୍. ହାଲଡେନ୍ ଓ ଜୁଲିଏନ୍ ଏସ୍. ହକ୍ସଲେଙ୍କ ଗବେଷଣାର ଫଳାଫଳ ତାଙ୍କୁ ବିଶେଷ ଭାବେ ପ୍ରଭାବିତ କରିଛି । ସେମାନଙ୍କ ଦ୍ୱାରା ପ୍ରଣୋଦିତ ହୋଇ ସେ ଅନେକ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ପ୍ରଣୟନ କରିଛନ୍ତି । ମୁଖ୍ୟ ପୁସ୍ତକ ଗୁଡ଼ିକ ହେଲା – Early Travellers in the Alps, Alps and Man, Escape to Switzerland.

୧୯୬୯ : କନ୍‌ରାଡ୍ ଜାକାରିଆସ୍ ଲରେଞ୍ଜ୍ (୧୯୦୩-୧୯୮୯), ଅଷ୍ଟ୍ରିଆ



ଅଷ୍ଟ୍ରିଆବାସୀ ପ୍ରାଣୀବିଜ୍ଞାନୀ, ପ୍ରାଣୀ ମନସ୍ତତ୍ତ୍ୱବିତ୍ ଓ ପକ୍ଷୀବିଜ୍ଞାନ ବିଶାରଦ ମଣିଷଜାତି ତତ୍ତ୍ୱ ଓ ପ୍ରାଣୀମାନଙ୍କର ଗୋଷ୍ଠୀ ପ୍ରବୃତ୍ତି ତଥା ଆଚାର ବ୍ୟବହାର ସମ୍ପର୍କିତ ଗଭୀର ଅନୁଧ୍ୟାନ ପାଇଁ ସେ ଜଣେ ପୃଥିବୀ ପ୍ରସିଦ୍ଧ ପ୍ରକୃତି ବିଜ୍ଞାନୀର ମର୍ଯ୍ୟାଦା ପାଇଛନ୍ତି : ୧୯୭୩ ମସିହାର ମେଡିସିନ୍ ନୋବେଲ୍ ବିଜେତା' : ତାଙ୍କ ସମ୍ମାନାର୍ଥେ ଜର୍ମାନୀରେ 'ମାକ୍ସ ପ୍ଲାଙ୍କ୍ ସୋସାଇଟି' ଦ୍ୱାରା Lorenz Institute for Behavioral Physiology ସ୍ଥାପନ କରାଯାଇଛି । ସାମୟିକ ଭାବେ ନାଜି ରାଜନୈତିକ ଚିନ୍ତାଧାରାର ବଶବର୍ତ୍ତୀ ହେବା ଯୋଗୁଁ ରୁଷିଆ ଶାସକଗଣ ତାଙ୍କୁ ୧୯୪୨-୪୬ରେ ରୁଷିଆ ଜେଲ୍‌ରେ ବନ୍ଦୀ କରି ରଖିଥିଲେ; ବନ୍ଦୀ ଅବସ୍ଥାରେ ସେ ତାଙ୍କର ବିଖ୍ୟାତ ପୁସ୍ତକ 'Behind the Mirror' ର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ, ଯାହା ତାଙ୍କ ଜେଲ୍‌ମୁକ୍ତି

ପରେ ପ୍ରକାଶିତ ହୋଇଥିଲା : ତାଙ୍କର ଲୋକପ୍ରିୟ ବିଜ୍ଞାନ ପୁସ୍ତକ ମାନଙ୍କ ମଧ୍ୟରେ 1) Civilised Man's Eight Deadly Sins, 2) On Aggression, 3) Studies in Animal & Human Behavior (Vol. I & II), 4) Man Meets Dog ଏବଂ 5) King Solomon's Ring ଆଦି ପ୍ରଧାନ ।

## ୧୯୭୦ : ମାର୍ଗାରେଟ୍ ମିଡ୍ (୧୯୦୧ - ୧୯୭୮), ଆମେରିକା



ଆମେରିକୀୟ ମହିଳା ନୃତତ୍ତ୍ୱ ବିଜ୍ଞାନୀ : କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପିଏଚ୍. ଡି. ଡିଗ୍ରୀ ଲାଭ : 'ଆମେରିକାନ୍ ମିଉଜିଅମ୍ ଅଫ୍ ନାଚୁରାଲ ହିଷ୍ଟ୍ରି'ରେ ୧୯୪୬ ମସିହାରୁ ୧୯୬୯ ଯାଏ କ୍ୟୁରେଟ୍ରେ ଭାବେ ଦାୟିତ୍ୱ ତୁଲାଇଥିଲେ : ୧୯୭୫ ମସିହାରେ American Association for the Advancement of Science ର ସଭାପତି : ତାଙ୍କ ଲିଖିତ କିଶୋରକାଳୀନ ଆଚାରବିଚାର ସମ୍ପର୍କିତ ଏକ ପୁସ୍ତକ Coming of Age in Samoa (1926) ପାଇଁ ପରବର୍ତ୍ତୀ କାଳରେ ସେ ସମାଲୋଚନାର ପାତ୍ରୀ ହେବା ସାଥେ ସାଥେ ତାଙ୍କ ଚାରିତ୍ରିକ କୁତ୍ସା ମଧ୍ୟ କରାଯାଇଥିଲା । ତାଙ୍କର ଅନ୍ୟ ଏକ ବିବାଦମାନ ପୁସ୍ତକ ହେଲା – Sex and Temperament in Three Primitive Societies : ତାଙ୍କର ଅନ୍ୟ କେତୋଟି ସୁଖପାଠ୍ୟ ବିଜ୍ଞାନଆଧାରୀ ପୁସ୍ତକ ହେଲା – 1) Male and Female, 2) The Changing Culture of an Indian Tribe 3) People and Places.

## ୧୯୭୧ : ପିଏରି ଭିକ୍ଟର୍ ଅଗର୍, ଫ୍ରାନ୍ସ (୧୮୯୯–୧୯୯୩)



ଫରାସୀ ନିଉକ୍ଲିଅର ପଦାର୍ଥବିଜ୍ଞାନବିତ୍ ତଥା ମହାଜାଗତିକ - ରଶ୍ମି ବିଜ୍ଞାନୀ; ଅତ୍ୟୁଚ୍ଚ ଶକ୍ତି ସମ୍ପନ୍ନ ମହାଜାଗତିକ ରଶ୍ମି ଓ ପୃଥିବୀ ବାୟୁମଣ୍ଡଳ ମଧ୍ୟରେ ପାରସ୍ପରିକ କ୍ରିୟାନୁକ୍ରିୟା ଘଟିତ କଣିକାବର୍ଷଣ ତତ୍ତ୍ୱର ପ୍ରଥମ

ଉଦ୍‌ଗାତା ଥିଲେ ସେ : ୧୯୪୮ ମସିହାରୁ ୧୯୫୯ ମସିହା ଯାଏ ସେ 'ୟୁନେସ୍କୋ'ର ବିଜ୍ଞାନ ଶାଖା ନିର୍ଦ୍ଦେଶକ ଭାବେ ଦାୟିତ୍ୱ ତୁଲାଇଥିଲେ ।

୧୯୭୨ : ଫିଲିପ୍ ଏଚ୍.ଏବେଲ୍‌ସନ୍ (୧୯୧୩-୨୦୦୪), ଆମେରିକା

ଆମେରିକୀୟ ପଦାର୍ଥବିଜ୍ଞାନୀ, ବିଜ୍ଞାନ ପତ୍ର ପତ୍ରିକା ସମ୍ପାଦନା ତଥା ବିଜ୍ଞାନ ସାହିତ୍ୟ ସୃଷ୍ଟି ଗବେଷଣା କ୍ଷେତ୍ରରେ ପାରଦର୍ଶିତା; ଏଡ୍‌ଉଇନ୍ ମ୍ୟାକ୍‌ମିଲ୍ଲାନ୍‌ଙ୍କ ସହ ମିଶି ୧୯୪୦ ମସିହାରେ 'ନେପଚୁନିଅମ୍' ମୌଳିକ ବସ୍ତୁର ଆବିଷ୍କାର : ୨ୟ ବିଶ୍ୱଯୁଦ୍ଧ ସମୟରେ ମାନହଟ୍ଟାନ୍ ପ୍ରକଳ୍ପରେ କାର୍ଯ୍ୟ : ଯୁଦ୍ଧ ପରବର୍ତ୍ତୀ ସମୟରେ ନିଉକ୍ଲିଅର ଶକ୍ତି ଉପଯୋଗ କରାଯାଇ କିପରି ନୌବହର ଚଳାଚଳ ସମ୍ଭବ କରାଯିବ, ସେ ଦିଗରେ ଗବେଷଣା : ଏ ସମ୍ବନ୍ଧୀୟ ଜ୍ଞାନକୁ ସେ ତାଙ୍କ ପୁସ୍ତକ 'Energy For Tomorrow'ରେ ଲିପିବଦ୍ଧ କରିଛନ୍ତି । ଅନ୍ୟ କେତେକ ପ୍ରବନ୍ଧଗୁଚ୍ଛକୁ ନେଇ ତାଙ୍କ ଦ୍ୱାରା ରଚିତ ଆଉ ଏକ ଲୋକପ୍ରିୟ ପୁସ୍ତକ ହେଲା- Enough of Pessimism.



୧୯୭୨ ନିଗେଲ୍ କାଲ୍‌ଡର୍ (୧୯୩୧-), ୟୁନାଇଟେଡ୍ କିଙ୍ଗଡ୍‌ମ

ବ୍ରିଟିଶ୍ ଲୋକପ୍ରିୟ ବିଜ୍ଞାନ ଲେଖକ, ଦୂରଦର୍ଶନରେ ପ୍ରଦର୍ଶିତ ବିଜ୍ଞାନ ଭିତ୍ତିକ ବୃତ୍ତଚିତ୍ର ନିର୍ବାଣ, ବି.ବି.ସି. ଦ୍ୱାରା ପ୍ରସାରିତ ବହୁ ବିଜ୍ଞାନ ବାର୍ତ୍ତା-ବିବରଣୀର ଲେଖକ : ତାଙ୍କଦ୍ୱାରା ପ୍ରସ୍ତୁତ ପ୍ରାମାଣିକ ଚଳଚ୍ଚିତ୍ର 'The Great Global Warming Swindle' ବେଶ୍ ଜନାଦୃତ : ତାଙ୍କ ଦ୍ୱାରା ରଚିତ ଲୋକପ୍ରିୟ କେତେକ ପୁସ୍ତକ- 1) Spaceship Earth, 2) Beyond This World, 3) The Manic Sun, 4) Magic Universe, 5) Einstein's Universe.



୧୯୭୪ : ଜୋସ୍ ରିସ୍ (୧୯୦୭-୨୦୦୨), ବ୍ରାଜିଲ



ପ୍ରଖ୍ୟାତ ବ୍ରାଜିଲିଆନ୍ ବିଜ୍ଞାନୀ, ଚିକିତ୍ସକ, ସ୍ତମ୍ଭକାର, ବିଜ୍ଞାନ ଲେଖକ : ଡାକ୍ତରି ଶିକ୍ଷା ଶେଷକରି ଭୂତାଣୁ-ନିଦାନ କ୍ଷେତ୍ରରେ କିଛିକାଳ ଗବେଷଣା : ପକ୍ଷୀ-ନିଦାନ ସଂକ୍ରାନ୍ତୀୟ ତାଙ୍କର ଅନେକ ଲେଖା ପତ୍ରପତ୍ରିକା ମାନଙ୍କରେ ପ୍ରକାଶିତ । ତାଙ୍କ ରଚିତ "Treatise of Ornithopathology" ବିଶେଷ ଆଦୃତି ଲାଭ କରିଛି । ବ୍ରାଜିଲ୍‌ର ପ୍ରଖ୍ୟାତ ସମ୍ବାଦପତ୍ର Folha da Manha (ସକାଳ ସଂସ୍କରଣ) ଓ Folha-da Noite (ସନ୍ଧ୍ୟା ସଂସ୍କରଣ)ରେ ଦୀର୍ଘ ୫୫ବର୍ଷ ଧରି ସେ ନିୟମିତ ଭାବେ ବିଜ୍ଞାନ ଲେଖା ପ୍ରକାଶ କରୁଥିଲେ । ବ୍ରାଜିଲ୍ ସରକାର ତାଙ୍କୁ ବହୁ ରାଷ୍ଟ୍ରୀୟ ସମ୍ମାନରେ ଭୂଷିତ କରିଥିଲେ ।

୧୯୭୪ : ଲୁଇ ଇଷ୍ଟ୍ରାଡା ମାର୍ଟିନେଜ୍ (୧୯୩୨-), ମେକ୍ସିକୋ



ମେକ୍ସିକୋ ଅଧିବାସୀ ପଦାର୍ଥବିଜ୍ଞାନୀ ସ୍ୱୟଂଶାସିତ 'ମେକ୍‌ସିକୋ ଜାତୀୟ ବିଶ୍ୱବିଦ୍ୟାଳୟ'ରେ ପଦାର୍ଥ ବିଜ୍ଞାନ ପ୍ରଫେସର ଭାବେ ଏବେବି କାର୍ଯ୍ୟରତ । ବିଜ୍ଞାନକୁ ଲୋକାଭିମୁଖୀ କରିବା ପାଇଁ ସେ ବିଶ୍ୱ ବିଦ୍ୟାଳୟ ପରିସରରେ "Coffee house talks" and "Chats" ପରି ବ୍ୟବସ୍ଥା କରି ସାଧାରଣ ଜନତାକୁ ବିଜ୍ଞାନର ବିଭିନ୍ନ ବିଷୟରେ ସୁବୋଧ୍ୟ ବକ୍ତୃତା ପ୍ରଦାନ କରିଥାନ୍ତି । କଳିଙ୍ଗ ପୁରସ୍କାର ସ୍ଥାପନର ପ୍ରଥମ ୨୫ ବର୍ଷ ମଧ୍ୟରେ ସେ ହେଉଛନ୍ତି - ସର୍ବକନିଷ୍ଠ ପୁରସ୍କାର ବିଜେତା ।

୧୯୭୫ : ଏ ବର୍ଷ କଳିଙ୍ଗ ପୁରସ୍କାର ଦିଆଯାଇ ନାହିଁ ।

୧୯୭୬ : ସାର୍ ଜର୍ଜ ପୋର୍ଟର୍ (୧୯୨୦-୨୦୦୨), ୟୁନାଇଟେଡ୍ କିଙ୍ଗଡ଼ମ



ବ୍ରିଟିଶ୍ ରସାୟନ ବିଜ୍ଞାନୀ : ୧୯୬୭ ମସିହାରେ ରସାୟନ ବିଜ୍ଞାନ ନୋବେଲ୍ ବିଜେତା ୨ୟ ବିଶ୍ୱଯୁଦ୍ଧବେଳେ ବ୍ରିଟିଶ୍ ରୟାଲ୍ ନୌବାହରରେ ସ୍ୱେଚ୍ଛାକୃତ ଯୋଗଦାନ : ତାଙ୍କ ଗବେଷଣାରୁ Free Radicals ବା 'ମୁକ୍ତ ମୂଳକ'ର ଅବସ୍ଥିତି ସମ୍ବନ୍ଧରେ ପ୍ରଥମ ଧାରଣାର ସୂତ୍ରପାତ : 'ରୟାଲ୍ ସୋସାଇଟି'ର ସଭାପତି ଦାୟିତ୍ ନିର୍ବାହ ୧୯୮୫ ରୁ ୧୯୯୦ ଅବଧିରେ 'ଡାଭି ପଦକ', 'ରମ୍‌ଫୋର୍ଡ ପଦକ' ଓ 'କୋପ୍‌ଲେ ପଦକ' ପରି ମର୍ଯ୍ୟାଦାଜନକ ଆନ୍ତର୍ଜାତୀୟ ପଦକ ବିଜେତା : ଲିସେଷ୍ଟର ବିଶ୍ୱବିଦ୍ୟାଳୟ କୁଳପତି : ଲିସେଷ୍ଟର୍ ବିଶ୍ୱବିଦ୍ୟାଳୟର ରସାୟନ ବିଭାଗ ଗବେଷଣାଗାର ତାଙ୍କ ନାମରେ ନାମିତ :

୧୯୭୬ : ଆଲେକ୍‌ଜାଣ୍ଡର୍ ଆଇଭାନୋଭିଚ୍ ଓପାରିନ୍ (୧୮୯୪-୧୯୮୦), ରୁଷିଆ



ରୁଷୀୟ ଜୈବରସାୟନବିତ୍ 'ଜୀବନର ଉନ୍ମେଷ ସମ୍ପର୍କିତ ତଥ୍ୟ' (Theory of the Origin of Life) ର ଅନ୍ୟତମ ପ୍ରବକ୍ତା : ସୁତରାଂ "ବିଂଶଶତାବ୍ଦୀର ଡାରୱିନ୍" ଭାବେ ଆଖ୍ୟାତ : 'ଲେନିନ୍ ପୁରସ୍କାର' ବିଜେତା (୧୯୭୪) : ବିଜ୍ଞାନକୁ ଲୋକପ୍ରିୟ ତଥା ଲୋକାଭିମୁଖୀ କରାଇବାରେ ପ୍ରମୁଖ ଅବଦାନ । ତାଙ୍କର ଲୋକପ୍ରିୟ, ବହୁଳ ପ୍ରଚାରିତ କେତେକ ପୁସ୍ତକ -

1) The Origin of Life on Earth
2) Life, Its Nature, Origin and Development
3) The History of the Theory of Genesis and Evolution of Life.
4) The Universe

## ୧୯୭୭ : ଫର୍ନାଣ୍ଡ୍ ସେଗୁଇନ୍ (୧୯୨୨-୧୯୮୮), କାନାଡ଼ା

କାନାଡ଼ା ଅଧିବାସୀ ପ୍ରଖ୍ୟାତ ଜୈବରସାୟନବିତ୍ : ବିଶ୍ୱବିଦ୍ୟାଳୟ ଜୈବରସାୟନ ପ୍ରଫେସର : ରେଡିଓ ଓ ଟେଲିଭିଜନ୍ ପ୍ରସାରଣ ମାଧ୍ୟମରେ ବିଭିନ୍ନ ବିଜ୍ଞାନ ସମ୍ପର୍କିତ ବିଷୟ ପ୍ରସାରିତ କରି ଜନସାଧାରଣଙ୍କୁ ବିଜ୍ଞାନ ସଚେତନ କରାଇବାରେ ଅବ୍ୟାହତ ଉଦ୍ୟମ : କାନାଡ଼ା ସରକାରଙ୍କ ଦ୍ୱାରା ବହୁ ଜାତୀୟ ସ୍ୱୀକୃତି ଓ ସମ୍ମାନ ପ୍ରାପ୍ତ ।

## ୧୯୭୮ : ଡକ୍ଟର ହିମାର୍ ଭନ୍ ଡିଟ୍‌ଫର୍ଥ (୧୯୨୧-୧୯୮୯), ଜର୍ମାନୀ

ଜର୍ମାନ୍ ଭେଷଜ ବିଜ୍ଞାନୀ : ମନୋବିଜ୍ଞାନ ତଥା ଦର୍ଶନଶାସ୍ତ୍ରରେ ମଧ୍ୟ ଉଚ୍ଚ ପ୍ରଶିକ୍ଷଣପ୍ରାପ୍ତ : ଭେଷଜ ବିଜ୍ଞାନରେ ହାମ୍‌ବର୍ଗ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଡିଗ୍ରୀପ୍ରାପ୍ତ : ପ୍ରଥମେ ବିଶ୍ୱବିଦ୍ୟାଳୟ ସଂଲଗ୍ନ ହସ୍‌ପିଟାଲ୍‌ରେ ମାନସିକ ରୋଗ ଓ ସ୍ନାୟୁରୋଗ ବିଭାଗରେ ଜଣେ ଅଧ୍ୟାପକ ଭାବେ ଯୋଗଦାନ : ପରବର୍ତ୍ତୀ କାଳରେ ନିଜେ ଏକ Psycho-Lab ପ୍ରତିଷ୍ଠା କରି ମାନସିକ ରୋଗପାଇଁ ନୂଆ ନୂଆ ଔଷଧ ଉଦ୍ଭାବନ ଓ ପ୍ରସ୍ତୁତି ପାଇଁ ଉଦ୍ୟମ ଓ କିଛି ପରିମାଣରେ ସଫଳ : ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ସମ୍ବାଦପତ୍ର, ରେଡ଼ିଓ, ଦୂରଦର୍ଶନ ଆଦି ଗଣମାଧ୍ୟମ ସହ ସମ୍ପୃକ୍ତି : ନିମ୍ନୋକ୍ତ କେତେକ ଲୋକପ୍ରିୟ ପୁସ୍ତକର ପ୍ରଣେତା -1) Children of the Universe, 2) Incredible Reality.

## ୧୯୭୯ : ସର୍ଗେ ପେଟ୍ରୋଭିଚ୍ କ୍ୟାପିଟ୍‌ଜା, ରୁଷିଆ (୧୯୨୮-)

ଇଂଲାଣ୍ଡରେ ଜନ୍ମ; ରୁଷିଆର ନାଗରିକ : ୧୯୭୮ ମସିହାର ପଦାର୍ଥବିଜ୍ଞାନ ନୋବେଲ୍ ବିଜେତା ପିଟର୍ ଲିଓନେଡୋଭିଚ୍ କ୍ୟାପିଟ୍‌ଜାଙ୍କ ପୁତ୍ର : ଜଣେ ପ୍ରମୁଖ ପଦାର୍ଥ

ବିଜ୍ଞାନୀ; ବ୍ୟାବହାରିକ electrodynamics କ୍ଷେତ୍ରରେ ବିସ୍ତୃତ ଗବେଷଣା : ମସ୍କୋସ୍ଥ 'ପଦାର୍ଥବିଦ୍ୟା ଓ ପ୍ରଯୁକ୍ତି ବିଜ୍ଞାନ ଇନ୍‌ଷ୍ଟିଚ୍ୟୁଟ୍'ରେ ୩୩ ବର୍ଷାବଧି ପ୍ରଫେସର : ୧୯୭୩ ମସିହାରେ ତାଙ୍କ ରଚିତ 'The Life of Science" ପୁସ୍ତକ ଯାହାକି କୋପର୍‌ନିକସ୍, ଡାରୱିନ୍‌ଙ୍କ ବେଳୁଁ ଆରମ୍ଭ ହୋଇଥିବା ଏବଂ ଅଦ୍ୟାବଧି ଅବ୍ୟାହତ ରହିଥିବା ବିଜ୍ଞାନ ଜୟଯାତ୍ରାର ଏକ ରୋମାଞ୍ଚ ସୃଷ୍ଟିକାରୀ ବିବରଣୀରେ ପରିପୃଷ୍ଟ, ତାହା ଅତ୍ୟନ୍ତ ସୁଖପାଠ୍ୟ ଓ ଲୋକପ୍ରିୟ ହୋଇଛି : ତାଙ୍କ ଦ୍ୱାରା ଦୂରଦର୍ଶନରେ ପ୍ରସାରିତ ଅନ୍ୟ ଏକ ଲୋକପ୍ରିୟ ବୃତ୍ତଚିତ୍ର ହେଲା "The Obvious Yet Incredible"

୧୯୮୦ : ଆରିଷ୍ଟାଇଡସ୍ ବାସ୍ତିଦାସ୍ (୧୯୨୪-୧୯୯୨), ଭେନେଜୁଏଲା



ଭେନଜୁଆଲା ନାଗରିକ, ବିଜ୍ଞାନ ଲେଖକ, ସାମ୍ବାଦିକ, ମୁଦ୍ରିତ ଗଣମାଧ୍ୟମ ସ୍ତମ୍ଭକାର : ପାରମ୍ପରିକ ବିଶ୍ୱବିଦ୍ୟାଳୟ ପ୍ରଶିକ୍ଷଣ ଓ ଡିଗ୍ରୀ ନ ଥିବା ସତ୍ତ୍ୱେ ନିଜ ପ୍ରଚେଷ୍ଟା ଓ ପରିଶ୍ରମ ବଳରେ ବିଜ୍ଞାନର ବିବିଧ ଶାଖା-ପ୍ରଶାଖା ସହ ପରିଚିତ ହୋଇ ପାରିଥିବା ଜଣେ ଅନନ୍ୟ ବିଜ୍ଞାନ ସାଧକ : ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସମ୍ମାନସ୍ପଦ ଅଧ୍ୟାପକ ଭାବେ ମଧ୍ୟ କାର୍ଯ୍ୟ ତୁଲାଇଛନ୍ତି : ବିଭିନ୍ନ ବୈଜ୍ଞାନିକଙ୍କ ଜୀବନୀ ରଚନା କରିଛନ୍ତି : ତାଙ୍କ ଦ୍ୱାରା ଲିଖିତ ଜନାଦୃତ କେତେକ ବିଜ୍ଞାନ ପୁସ୍ତକ ହେଲା -

1) The Atom and its Privacies. 2) Scientists of the World.
3) Quiet Allies of the Progress. 4) Pleasant Science.
5) The Constant Yearning

୧୯୮୧ ସାର୍ ଡାଭିଡ୍ ଫ୍ରେଡେରିକ୍ ଆଟେନ୍‌ବରୋ (୧୯୨୬-), ଯୁନାଇଟେଡ୍ କିଙ୍ଗଡ଼ମ



ବ୍ରିଟିଶ୍ ନାଗରିକ; ଜଣେ ପୃଥିବୀ ପ୍ରସିଦ୍ଧ 'ଗଣମାଧ୍ୟମ ପ୍ରସାରକ', ପ୍ରକୃତିପ୍ରେମୀ ବ୍ୟାଖ୍ୟାକାର : ବ୍ରିଟିଶ୍ 'ପ୍ରାକୃତିକ ଇତିହାସ'ର ସର୍ବମାନ୍ୟ ଉଦ୍‌ଗାତା ବି.ବି.ସି. ଦୂରଦର୍ଶନ ଚ୍ୟାନେଲ୍ -୨ର ନିର୍ଦ୍ଦେଶକ : ପ୍ରଖ୍ୟାତ୍ ଚଳଚିତ୍ର ନିର୍ଦ୍ଦେଶକ

ତଥା ଅଭିନେତା ରିଚାର୍ଡ ଆଟେନ୍‌ବରୋ ('ଗାନ୍ଧି' ଚଳଚ୍ଚିତ୍ର ଖ୍ୟାତି ସମ୍ପନ୍ନ) ତାଙ୍କ ବଡ଼ ଭାଇ : ତାଙ୍କର ପ୍ରମୁଖ ଦୂରଦର୍ଶନ ପ୍ରସାରିତ ପ୍ରାମାଣିକ ଚିତ୍ରଗୁଡ଼ିକ ହେଲା -

1) Life on Earth 2) The Living Planet 3) The Trials of Life

4) Life in the Freezes 5) The Private Life of Plants

6) The Life of Birds 7) The Life of Mammals

8) Life in the Undergrowth 9) Life in Cold Blood.

ଜୀବନର ବିଭିନ୍ନ ବିଭାବ ଓ ଜୀବନଚର୍ଯ୍ୟା ଉପରେ ଆଧାରିତ 'Life' ଶିରୋନାମା ସଂବଳିତ ଏଇପରି ୭୪ଟି କାର୍ଯ୍ୟକ୍ରମ ବି.ବି.ସି. ଦୂରଦର୍ଶନ ଦ୍ୱାରା ପ୍ରସାରିତ କରାଯାଇଛି ।

୧୯୮୧ : ଡେନ୍ନିସ୍ ଫ୍ଲାନାଗାନ୍ (୧୯୧୯ - ୨୦୦୫), ଆମେରିକା

ଆମେରିକୀୟ ନାଗରିକ; ବିଜ୍ଞାନ ପତ୍ର ପତ୍ରିକା ସମ୍ପାଦକ ଓ ପ୍ରକାଶକ : ବିଜ୍ଞାନକୁ ସାଧାରଣ ଜନତା ପାଖରେ ପହଞ୍ଚାଇବା ପାଇଁ ସବୁ ପ୍ରକାର ଉଦ୍ୟମ କରିଛନ୍ତି : ସାରା ପୃଥବୀରେ ବିଶେଷ ଆଦୃତି ଲାଭ କରିଥିବା 'Scientific American' ବିଜ୍ଞାନ ପତ୍ରିକା ସ୍ୱତ୍ୱକୁ କିଣି ନେଇ ୩୭ ବର୍ଷ ଧରି ତା'ର ମୁଖ୍ୟ ସମ୍ପାଦକ ଭାବେ ଦାୟିତ୍ୱ ନିର୍ବାହ ସେ କରିଛନ୍ତି । ଏଥିରେ ତାଙ୍କୁ ସହଯୋଗ କରିଛନ୍ତି ଅନ୍ୟଜଣେ କଳିଙ୍ଗ ପୁରସ୍କାର ବିଜେତା (୧୯୬୨) ସମଧର୍ମା ଜେରାର୍ଡ ପିଏଲ୍ : ୧୯୮୪ ମସିହାରେ 'ସାଇଣ୍ଟିଫିକ୍ ଆମେରିକାନ୍'ରୁ ଅବ୍ୟାହତି ନେଇ ସେ 'American Scientist' ପତ୍ରିକା ସହ ସଂଶ୍ଳିଷ୍ଟ ହୋଇଥିଲେ : ଜନପ୍ରିୟ ବିଜ୍ଞାନ ଲେଖକ ଓ ବିଭିନ୍ନ ବିଜ୍ଞାନପତ୍ରିକା ମାନଙ୍କ ମଧ୍ୟରେ ପ୍ରକୃଷ୍ଟ ଯୋଗସୂତ୍ର ରଖାଇବାରେ ସେ ଜଣେ ସର୍ବମାନ୍ୟ ସମାଜହିତୈଷୀ ବ୍ୟକ୍ତି ଭାବେ ବିବେଚିତ ହେଉଥିଲେ ।



୧୯୮୨ : ଡା. ଅସ୍ୱାଲଡୋ ଫ୍ରୋଟା - ପେସୋଆ (୧୯୧୭-), ବ୍ରାଜିଲ



ଜଣେ ବ୍ରାଜିଲିଆନ୍ ଭେଷଜ ବିଜ୍ଞାନୀ ଓ ଅନୁବଂଶିକୀ ବିଦ୍ୟା ବିଶେଷଜ୍ଞ : ପ୍ରସିଦ୍ଧ ଉଇସ୍କନ୍ସିନ୍-ମାଡିସନ୍ ବିଶ୍ୱବିଦ୍ୟାଳୟରେ କିଛି କାଳ ପରିଦର୍ଶକ ପ୍ରଫେସର ଭାବେ କର୍ମନିର୍ବାହ : 'ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥା'ରେ ୨୫ ବର୍ଷ ଧରି 'ମାନବ ଆନୁବଂଶିକୀ' ବିଭାଗ ପାଇଁ ପରାମର୍ଶଦାତା ଭାବେ ଦାୟିତ୍ୱ ସମ୍ପାଦକ : 'ରିଓ-ଡି.ଜେନିରୋ'ରେ ୨୦ବର୍ଷ ଅବଧି ମାଧ୍ୟମିକ ବିଦ୍ୟାଳୟ ମାନଙ୍କରେ ସାଧାରଣ ବିଜ୍ଞାନ ଓ ଜୀବବିଜ୍ଞାନରେ ଶିକ୍ଷାଦାନ : ତାଙ୍କ ଦ୍ୱାରା ୧୩୦ ରୁ ଉର୍ଦ୍ଧ୍ୱ ଗବେଷଣାଭିତ୍ତିକ ପ୍ରବନ୍ଧ, ୫୦୦ ରୁ ଅଧିକ ଲୋକପ୍ରିୟ ବିଜ୍ଞାନ ଲେଖା, ୨୬ଟି ବିଜ୍ଞାନ ପାଠ୍ୟପୁସ୍ତକ ଓ ବିଜ୍ଞାନ ଶିକ୍ଷକଙ୍କ ପାଇଁ ୧୭ ଖଣ୍ଡ 'ଗାଇଡ୍ ବହି' ପ୍ରକାଶିତ : ବ୍ରାଜିଲ୍ ସରକାର ତାଙ୍କୁ 'Great Cross of the Brazilian Order of Scientific Merit' ପରି ସର୍ବୋଚ୍ଚ ଜାତୀୟ ସମ୍ମାନରେ ଭୂଷିତ କରିଛନ୍ତି ।

୧୯୮୩ : ଅବ୍ଦୁଲ୍ଲା-ଅଲ୍-ମୁଟି ଶରଫୁଦ୍ଦିନ୍ (୧୯୩୦-୧୯୯୮), ବଙ୍ଗଳାଦେଶ



ବାଂଲାଦେଶର ଜଣେ ଜଣାଶୁଣା ବୈଜ୍ଞାନିକ : ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ରଚୟିତା : ଢାକା ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଜ୍ଞାନରେ ଏମ୍.ଏସ୍.ସି. ଡିଗ୍ରୀ ଲାଭ କରି ଆମେରିକାର 'ଚିକାଗୋ' ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ପି.ଏଚ୍.ଡି. ଡିଗ୍ରୀ ପ୍ରାପ୍ତ : ଅସଂଖ୍ୟ ଲୋକପ୍ରିୟ ବିଜ୍ଞାନ ଲେଖା ସେ ନିଜ ମାତୃଭାଷା ବଙ୍ଗଳାରେ ପ୍ରକାଶିତ କରିଛନ୍ତି : ମାତୃଭାଷାରେ ଲିଖିତ ତାଙ୍କର କେତେକ ଜନପ୍ରିୟ ପୁସ୍ତକ -

୧) ଏସୋ ବିଗ୍‌ଗାନେର ରାଜ୍‌ଜେ, ୨) ଓବାକ୍ ପ୍ରିଥିବୀ, ୩) ରୋହୋସେର୍ ଶେଷ ନେଇ, ୪) ବିଗ୍‌ଗାନ୍ ଓ ମାନୁଷ୍, ୫) ଏ ଯୁଗେର୍ ବିଗ୍‌ଗାନ୍, ୬) ଟେଲିଭିଜନେର୍ କୋଥା ୭) ଆବିଷ୍କାରେର୍ ନେଶାୟ ଇତ୍ୟାଦି

୧୯୮୪ ୱାଇଭେସ୍ କୋପେନ୍‌ସ୍ (୧୯୩୪-), ଫ୍ରାନ୍ସ



ଫରାସୀ ନୃତତ୍ତ୍ୱବିତ୍ : ମାନବ ପରିବାର ଅନ୍ତର୍ଭୁକ୍ତ ସ୍ତନ୍ୟପାୟୀ ପ୍ରାକ୍ ମାନବୀୟ ପ୍ରାଣୀ (hominid) ଜୀବାଶ୍ମ ଅଧ୍ୟୟନ ଓ ଅନୁଧ୍ୟାନ ପାଇଁ ପ୍ରଖ୍ୟାତ : ଏ' କ୍ଷେତ୍ରରେ ଅନେକ ଜନାଦୃତ ପୁସ୍ତକର ପ୍ରଣେତା ସେ; ତାଙ୍କର କେତେକ ପୁସ୍ତକକୁ ଚଳଚିତ୍ର ରୂପ ଦିଆଯାଇଛି : ଅନେକ ଜନପ୍ରିୟ ବିଜ୍ଞାନ କାହାଣୀର ଲେଖକ ସେ ।

୧୯୮୪ : ଆଇଗର୍ ପେଟ୍ରିଆନଭ୍ (୧୯୦୭-୧୯୯୬), ରୁଷିଆ



ରୁଷୀୟ ଭୌତିକୀୟ ରସାୟନ ବିଜ୍ଞାନୀ: ମସ୍କୋସ୍ଥିତ ପ୍ରଖ୍ୟାତ 'ମେଣ୍ଡେଲେଭ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କେମିକାଲ୍ ଇଂଜିନିଅରିଂରେ ପ୍ରଫେସର୍ ରୂପେ ଦାୟିତ୍ୱ ସମ୍ପାଦନ : ନୂଆ ନୂଆ ପରିସ୍ରାବୀ ପଦାର୍ଥ (Filtering Materials) ର ଉଦ୍ଭାବକ : ବିଜ୍ଞାନ ପତ୍ରିକା "Chemistry and Life" ର ମୁଖ୍ୟ ସମ୍ପାଦକ : ଅନେକ ଲୋକପ୍ରିୟ ବିଜ୍ଞାନ ରଚନାର ଲେକକ : ପ୍ରଖ୍ୟାତ 'ଲେନିନ୍ ପୁରସ୍କାର' ବିଜେତା ।

୧୯୮୫ : ସାର୍ ପିଟର୍ ମେଡାୱାର୍ (୧୯୧୫-୧୯୮୭), ୟୁନାଇଟେଡ୍ କିଙ୍ଗଡ଼ମ



ବ୍ରିଟିଶ୍ ମା' ଓ ଲେବାନନୀୟ ପିତାଙ୍କ ସନ୍ତାନ ଭାବେ ବ୍ରାଜିଲର ରିଓ-ଡି-ଜେନିରୋରେ ଜନ୍ମ : ପରବର୍ତ୍ତୀକାଳରେ ବ୍ରିଟିଶ୍ ନାଗରିକତ୍ୱ ଗ୍ରହଣ : ବର୍ମିଂହାମ୍ ବିଶ୍ୱବିଦ୍ୟାଳୟ ଓ 'ୟୁନିଭର୍‌ସିଟି କଲେଜ, ଲଣ୍ଡନ'ରେ ପ୍ରାଣୀବିଜ୍ଞାନ ପ୍ରଫେସର ଭାବେ ଦାୟିତ୍ୱ ନିର୍ବାହ : ଅଙ୍ଗ ପରିରୋପଣ ଓ ପ୍ରତିପିଣ୍ଡଦ ତଂତ୍ର (Immune System) କ୍ଷେତ୍ରରେ ବିସ୍ତୃତ ଗବେଷଣା : ୧୯୬୦ ମସିହାରେ

ଭେଷଜ ବିଜ୍ଞାନ ନୋବେଲ୍ ପୁରସ୍କାର ବିଜେତା : ତାଙ୍କର କେତୋଟି ଜନପ୍ରିୟ ପୁସ୍ତକ - 1)The Art of the Soluble, 2)Advice to a Young Scientist, 3) Aristotle to Zoos, 4) The Life Science, 5) Memoirs of a Thinking Radish.

୧୯୮୬ : ନିକଲାୟ୍ ଜି. ବାସଭ୍ (୧୯୨୧-୨୦୦୧), ରୁଷିଆ



ରୁଷୀୟ ପଦାର୍ଥ ବିଜ୍ଞାନୀ ଓ ଅଧ୍ୟାପକ : କିଛିକାଳ ପାଇଁ ସେନାବାହିନୀରେ ଯୋଗଦାନ; ୨ୟ ବିଶ୍ୱଯୁଦ୍ଧରେ ଅଂଶଗ୍ରହଣ : ଯୁଦ୍ଧୋତ୍ତର କାଳରେ 'ମସ୍କୋ ଇଂଜିନିଅରିଂ ଫିଜିକସ୍ ଇନ୍‌ଷ୍ଟିଚ୍ୟୁଟ୍'ରେ ଯୋଗଦାନ : କ୍ୱାଣ୍ଟମ୍ ଇଲେକ୍‌ଟ୍ରୋନିକ୍ସ କ୍ଷେତ୍ରରେ ମୌଳିକ ଗବେଷଣା : ୧୯୬୪ ମସିହାରେ ପଦାର୍ଥବିଜ୍ଞାନ ପାଇଁ ନୋବେଲ୍ ପୁରସ୍କାର ବିଜେତା : ତା'ଛଡ଼ା 'ଲେନିନ୍ ପୁରସ୍କାର' (୧୯୫୯), 'ୟୁ.ଏସ୍.ଏସ୍. ଆର୍ ଷ୍ଟେଟ୍ ପୁରସ୍କାର' (୧୯୮୯) ଏବଂ ଅନ୍ୟ ଅନେକ ସମ୍ମାନ ଓ ସନନ୍ଦ ଦ୍ୱାରା ସେ ଅଳଂକୃତ ।

୧୯୮୬ : ଡ: ଡେଭିଡ୍ ସୁଜୁକି (୧୯୩୬-), କାନାଡ଼ା



ତାଙ୍କ ପୂର୍ବପୁରୁଷ ମୂଳତଃ ଜାପାନ ଅଧିବାସୀ : ସୁଜୁକିଙ୍କ ଜନ୍ମ ଭାଙ୍କୁଭର୍‌ରେ; ସେ କାନାଡ଼ାର ନାଗରିକ: ଜଣେ ଅଗ୍ରଗଣ୍ୟ ପରିବେଶ ବିଜ୍ଞାନୀ ଭାବେ କାନାଡ଼ା ଓ ଉତ୍ତର ଆମେରିକାର ଘରେ ଘରେ ପରିଚିତ ସେ; ରେଡ଼ିଓ, ଦୂରଦର୍ଶନ, ସମ୍ବାଦପତ୍ର ଆଦି ଗଣମାଧ୍ୟମରେ ତାଙ୍କ ସମ୍ପୃକ୍ତି ତାଙ୍କୁ ଅତ୍ୟନ୍ତ ଜନପ୍ରିୟ କରିଛି: ଦୂରଦର୍ଶନରେ ତାଙ୍କ ଦ୍ୱାରା ପ୍ରସାରିତ କାର୍ଯ୍ୟକ୍ରମ 'The Nature of Things', ରେଡ଼ିଓ ପ୍ରସାରିତ କାର୍ଯ୍ୟକ୍ରମ 'Quirks and Quarks' ପରିବେଶ ଓ ପର୍ଯ୍ୟାବରଣର ସଂରକ୍ଷଣ ବିଷୟରେ ଜନସାଧାରଣଙ୍କୁ ବେଶ୍ ସଚେତନ କରାଇ ପାରିଛି । 'ଡେଭିଡ୍ ସୁଜୁକି ଫାଉଣ୍ଡେସନ୍ ନାମକ ଏକ ସ୍ୱେଚ୍ଛାସେବୀ ସଂସ୍ଥା ଗଢ଼ି ତା' ମାଧ୍ୟମରେ ପରିବେଶ ସଂରକ୍ଷଣ ବାର୍ତ୍ତା ସେ ସାରା ପୃଥିବୀରେ ପ୍ରଚାର କରି ଚାଲିଛନ୍ତି ।

୧୯୮୭ : ଡ: ମାର୍ସେଲ୍ ରୋଚେ (୧୯୨୦-୨୦୦୩), ଭେନେଜୁଏଲା



ଫ୍ରାନ୍ସରେ ଜନ୍ମ, ବାଲ୍ୟ ଓ ମାଧ୍ୟମିକ ଶିକ୍ଷା ପାରିସ୍‌ରେ ସମ୍ପନ୍ନ; କଲେଜ ସ୍ନାତକ ଶିକ୍ଷା ଆମେରିକାର ଫିଲାଡେଲଫିଆରେ; ବଲଟିମୋରସ୍ଥ ପୃଥିବୀ ପ୍ରସିଦ୍ଧ 'Johns Hopkins Medical School' ରୁ ଡାକ୍ତରି ଶିକ୍ଷାଗ୍ରହଣ : Endocrinology ଓ Nuclear Medicine ରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ଭେନେଜୁଆଲାକୁ ପ୍ରତ୍ୟାବର୍ତ୍ତନ ଓ ସେଠାର ନାଗରିକତ୍ୱ ଗ୍ରହଣ : ଭେନେଜୁଆଲାରେ ଚିକିତ୍ସାବିଜ୍ଞାନ ଓ ସମାଜ ବିଜ୍ଞାନର ଉନ୍ନତି ପାଇଁ ଉତ୍ସର୍ଗୀକୃତ ସେବା ସେ କରିଛନ୍ତି : ସେଠାରେ ସେ Institute of Medical Research ସ୍ଥାପନ କରି ଗରିବ ଆଦିବାସୀ ଲୋକଙ୍କର ଅପପୁଷ୍ଟି, ସଂକ୍ରାମକ ରୋଗବ୍ୟାଧି ଆଦିର ଚିକିତ୍ସା ବ୍ୟବସ୍ଥା କରାଇଛନ୍ତି । ଲୋକଙ୍କଠାରେ ବୈଜ୍ଞାନିକ ଚିନ୍ତାଧାରା ସୃଷ୍ଟି କରିବା ପାଇଁ ସେ ଅନେକ ଦୂରଦର୍ଶନ ଓ ରେଡ଼ିଓ କାର୍ଯ୍ୟକ୍ରମ ପ୍ରଚଳନ କରିଛନ୍ତି । 'ବିଶ୍ୱ ସ୍ୱାସ୍ଥ୍ୟ ସଂଘ', 'Third World Academy of Science' ୟୁନେସ୍କୋ ଆଦି ଆନ୍ତର୍ଜାତୀୟ ସଂସ୍ଥାମାନଙ୍କରେ ଉଚ୍ଚ ପଦପଦବୀ ସେ ଅଳଂକୃତ କରିଛନ୍ତି ।

୧୯୮୮ : ଜର୍ଣ୍ଣ କୁର୍ଟେନ୍ (୧୯୨୪-୧୯୮୮), ଫିନଲ୍ୟାଣ୍ଡ



ଫିନ୍‌ଲାଣ୍ଡ ଅଧିବାସୀ ପ୍ରଖ୍ୟାତ ଜୀବତତ୍ତ୍ୱବିତ୍ : ଆଧୁନିକ ମନୁଷ୍ୟର ପ୍ରାକ୍‌ରୂପ ସମ୍ବନ୍ଧୀୟ ଗବେଷଣା ପାଇଁ ପ୍ରସିଦ୍ଧି ଲାଭ କରିଥିଲେ । ପୃଥିବୀ ପୃଷ୍ଠରେ ମଣିଷ ରୂପୀ ପ୍ରାଣୀର ଆବିର୍ଭାବ ପୂର୍ବରୁ ଦେଖାଯାଇଥିବା ତା'ର ପୂର୍ବ ପିଢ଼ି ଜୀବମାନଙ୍କ ସମ୍ଭାବ୍ୟ ଜୀବନଚର୍ଯ୍ୟା ଉପରେ 'Dance of the Tiger' ନାମକ ଲୋକପ୍ରିୟ ଉପନ୍ୟାସଧର୍ମୀ ତାଙ୍କର ଧାରାବାହିକ ରଚନାସବୁକୁ ଏକତ୍ର କରି ୧୯୮୦ ମସିହାରେ ଏକ ପୁସ୍ତକ ରୂପେ ପ୍ରକାଶ କରିଥିଲେ । ଦୂରଦର୍ଶନରେ ତାଙ୍କ ଦ୍ୱାରା ନିର୍ମିତ ପ୍ରାମାଣିକ ଚିତ୍ର 'ହିମଯୁଗ' (Ice Age) ପ୍ରସାରିତ ହୋଇ ଯଥେଷ୍ଟ ଜନାଦୃତି ଲାଭ କରିଥିଲା । ତାଙ୍କ ଦ୍ୱାରା

ଲିଖିତ ଅନ୍ୟ କେତୋଟି ଲୋକପ୍ରିୟ ପୁସ୍ତକ ହେଲା - 1) The Cave Bear Story, 2) The Innocent Assassins, 3) The Age of Mammals.

୧୯୮୯ : ଡ. ସାଦ୍ ଅହମ୍ମଦ୍ ଶାବାନ୍, ଇଜିପ୍ଟ



ଇଜିପ୍ଟ ଅଧିବାସୀ; କଳିଙ୍ଗ ପୁରସ୍କାର ଲାଭ କରିବାରେ ସେ ଆରବୀୟ ଦେଶମାନଙ୍କରେ ପ୍ରଥମ ବ୍ୟକ୍ତି, ତାଛଡ଼ା ସେନାବାହିନୀରେ ଉଚ୍ଚ ପଦବୀଧାରୀ (ଏଆର ଫୋର୍ସ୍‌ର ମେଜର ଜେନେରାଲ) ହୋଇବି ଏପରି ଆନ୍ତର୍ଜାତୀୟ ବିଜ୍ଞାନ ପୁରସ୍କାର ପାଇବାରେ ବି ପ୍ରଥମ ବ୍ୟକ୍ତି : ବୃତ୍ତିରେ ଜଣେ ଇଲେକ୍ଟ୍ରିକାଲ୍ ଇଞ୍ଜିନିଅର : ମିଲିଟାରି କାର୍ଯ୍ୟରୁ ସମୟ ବାହାର କରି ସେ ସ୍କୁଲ, କଲେଜ ଓ ସବୁ ସାଧାରଣ ସଭାସମିତି ଗୁଡ଼ିକରେ ଯୋଗ ଦେଇ ବିଜ୍ଞାନର ବିଭିନ୍ନ ବାର୍ତ୍ତା - ବିବରଣୀ ନିଜର ମନଛୁଆଁ ଭାଷଣ ମାଧ୍ୟମରେ ପରିବେଷଣ କରିଛନ୍ତି : ତା'ଛଡ଼ା ସେ ପ୍ରାୟ ୨୦୦ ସଂଖ୍ୟକ ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମରେ ଭାଗ ନେଇ ଏବଂ ୨୬ ଖଣ୍ଡ ଜନପ୍ରିୟ ବିଜ୍ଞାନ ପୁସ୍ତକ ରଚନାକରି ଜନସାଧାରଣଙ୍କୁ ବିଜ୍ଞାନ ସଚେତନ କରିବାର ପ୍ରଚେଷ୍ଟା କରିଛନ୍ତି ।

୧୯୯୦ : ମିସ୍‌ବାହ୍‌ଉଦ୍ଦିନ୍ ସାମି (୧୯୩୦-), ପାକିସ୍ତାନ



ଅବିଭକ୍ତ ଭାରତର ଜଳନ୍ଧର ସହରରେ ଜନ୍ମ : ଏବେ ପାକିସ୍ତାନର ନାଗରିକ : ପଞ୍ଜାବ ବିଶ୍ୱବିଦ୍ୟାଳୟରୁ ବିଜ୍ଞାନରେ ସ୍ନାତକ; ଓ୍ୱାସିଂଟନ୍ ଷ୍ଟେଟ୍ ଇଉନିଭରସିଟିରୁ ରସାୟନ ବିଜ୍ଞାନରେ ଏମ୍.ଏସ୍.ସି. ଓ ପି.ଏଚ୍.ଡି. : 'ପାକିସ୍ତାନ ସାଇନ୍‌ସ୍ ଫାଉଣ୍ଡେସନ୍'ର ଚେୟାରମ୍ୟାନ୍ ଭାବେ ଅବସରପ୍ରାପ୍ତ ସ୍ଫଟିକଛାୟା ଚିତ୍ରଣ (Crystallography) କ୍ଷେତ୍ରରେ ବିସ୍ତୃତ ଗବେଷଣା କରିଛନ୍ତି; କଳିଙ୍ଗ ପୁରସ୍କାର ବ୍ୟତିତ ନିମ୍ନୋକ୍ତ ପୁରସ୍କାର ଓ ସମ୍ମାନ ପ୍ରାପ୍ତ :

1) The Sitara Imtiaz Award (1990)

2) The National Award of the Pakistan Talent Forum (1974)

3) The Eqbal Centenary Commemorative Medal by the President of Pakistan (1974)



୧୯୯୧ : ଡା. ରାଡୁ ଇଫ୍‌ତିମୋଭିସି, ରୋମାନିଆ

ରୋମାନିଆର ପ୍ରସିଦ୍ଧ ଭୂତାଣୁ ବିଜ୍ଞାନୀ : ରୋମାନିଆ ଜାତୀୟ ଭୂତାଣୁ ବିଦ୍ୟାପ୍ରତିଷ୍ଠାନର ମୁଖ୍ୟ କାର୍ଯ୍ୟନିର୍ବାହୀ : ଫ୍ରାନ୍ସର ପୃଥିବୀ ବିଖ୍ୟାତ Pasteur's Institute ଏବଂ 'ଟ୍ୟୁନିସ୍' ଓ 'ଏଥେନ୍ସ' ବିଶ୍ୱବିଦ୍ୟାଳୟରେ ବହୁ ଗୁରୁତ୍ୱପୂର୍ଣ୍ଣ ଗବେଷଣା କରିଛନ୍ତି ଭୂତାଣୁ ବିଜ୍ଞାନରେ : ମୌଳିକ ଗବେଷଣା କାର୍ଯ୍ୟ ବ୍ୟତୀତ ବିଜ୍ଞାନକୁ ଲୋକପ୍ରିୟ ଓ ଜନାଭିମୁଖୀ କରାଇବା ପାଇଁ ଦୀର୍ଘ ୩୦ ବର୍ଷ ଧରି ପତ୍ର ପତ୍ରିକାରେ ସରଳ ବୋଧଗମ୍ୟ ଲେଖା ପ୍ରକାଶନ, ଜନପ୍ରିୟ ବିଜ୍ଞାନ ପୁସ୍ତକ ରଚନା, ରେଡ଼ିଓ, ଟେଲିଭିଜନ୍‌ରେ ବିଜ୍ଞାନବାର୍ତ୍ତା ପ୍ରସାରଣ, ଚଳଚ୍ଚିତ୍ର, ନାଟକ ଓ ଅପେରା ପାଇଁ ବିଜ୍ଞାନ ଭିତ୍ତିକ ମଞ୍ଚଲିପି (Script) ପ୍ରସ୍ତୁତ କରିଛନ୍ତି ।

୧୯୯୧ : ନରେନ୍ଦ୍ର କୁମାର ସେହ୍‌ଗାଲ୍ (୧୯୪୦-), ଭାରତ



ଲାହୋରରେ ଜନ୍ମ ଏବଂ ଭାରତୀୟ ନାଗରିକ; ଆମେରିକାର ହାୱାଇ ବିଶ୍ୱବିଦ୍ୟାଳୟରୁ କଣିକା ପଦାର୍ଥବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଏବଂ ପୃଥିବୀ ବିଖ୍ୟାତ ଉଇସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଲାଭ ଭାରତରେ ବିଜ୍ଞାନ କ୍ଷେତ୍ରରେ ଘଟୁଥିବା ଅଗ୍ରଗତି, ପ୍ରୌଦ୍ୟୋଗିକୀୟ ବିକାଶ, ଉଚ୍ଚଶିକ୍ଷା କ୍ଷେତ୍ରରେ ଘଟୁଥିବା କ୍ରମୋନ୍ନତି ବିଷୟରେ ୧୯୭୯ ରୁ ୧୯୮୬ ମସିହା ଅବଧି ୭ ବର୍ଷ ଧରି ପୃଥିବୀ ବିଖ୍ୟାତ 'ନେଚର୍' ପତ୍ରିକାରେ ସେ ନିୟମିତ 'ସ୍ତମ୍ଭଆଲେଖ୍ୟ' (Column) ପ୍ରକାଶ କରିଛନ୍ତି : ଅହମଦାବାଦସ୍ଥ Space Applications Centre ରେ ପରିଦର୍ଶକ ବୈଜ୍ଞାନିକ, ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗ ଅଧିନସ୍ଥ 'ନେସନାଲ୍ କାଉନ୍‌ସିଲ୍

ଫର୍ ସାଇନସ୍ ଏଣ୍ଡ୍ ଟେକ୍‌ନୋଲୋଜି କମ୍ୟୁନିକେସନ୍' (NCSTC) ର ଉପଦେଷ୍ଟା ଓ ମୁଖ୍ୟ ଭାବେ ଦାୟିତ୍ୱ ତୁଲାଇଛନ୍ତି : "Scientific Opinion" ନାମକ ଏକ ତ୍ରୈମାସିକ ବିଜ୍ଞାନ ପତ୍ରିକାର ସ୍ଥାପୟିତା; ତାଙ୍କ ଦ୍ୱାରା ୧୩ ଭାଗରେ ପ୍ରଚାରିତ "Method of Science" ନାମକ ରେଡ଼ିଓ ଧାରାବାହିକ ଅତ୍ୟନ୍ତ ଜନପ୍ରିୟ ହୋଇଛି ।

୧୯୯୨ : ଯୋର୍ଗେ ଫ୍ଲୋରେସ୍ ଭାଲଡିସ୍ (୧୯୪୧-), ମେକ୍ସିକୋ



ମେକ୍‌ସିକୋ ନାଗରିକ; ମେକ୍ସିକୋ ଜାତୀୟ ବିଶ୍ୱବିଦ୍ୟାଳୟ (UNAM) ରୁ ପଦାର୍ଥବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଓ ପି.ଏଚ୍.ଡି. ଲାଭ : ପରବର୍ତ୍ତୀ କାଳରେ ଆମେରିକାର ପ୍ରିନ୍‌ସ୍‌ଟନ୍ ବିଶ୍ୱବିଦ୍ୟାଳୟରେ ପୋଷ୍ଟ-ଡକ୍‌ଟରାଲ୍ ଗବେଷଣା କରିଛନ୍ତି : ତାଙ୍କ ଦ୍ୱାରା ୧୯୮୧ ମସିହାରେ Physical Review ରେ ପ୍ରକାଶିତ କ୍ୱାଣ୍ଟମ୍ ଗବେଷଣାଧର୍ମୀ "Random Matrix Physics" ଶୀର୍ଷକ ପ୍ରବନ୍ଧଟି କ୍ୱାଣ୍ଟମ୍ ପଦାର୍ଥବିଜ୍ଞାନୀ ମାନଙ୍କ ଦ୍ୱାରା ଅତ୍ୟନ୍ତ ପ୍ରଶଂସା ଲାଭ କରିଥିଲା : ଅଦ୍ୟାବଧି ଏକ ପ୍ରମାଣିକ ରଚନା ଭାବେ ଏହା ଅନ୍ୟ ଗବେଷକଙ୍କ କର୍ତ୍ତୃକ ୧୧୦୦ ଥର ଉଦ୍ଧୃତ କରାଯାଇ ସାରିଲାଣି: ମେକ୍ସିକୋ ସରକାରଙ୍କ ଉଚ୍ଚଶିକ୍ଷା ବିଭାଗ ଓ ବିଜ୍ଞାନ ଗବେଷଣା ପ୍ରତିଷ୍ଠାନରେ ଉଚ୍ଚ କାର୍ଯ୍ୟନିର୍ବାହୀ ପଦବୀ ଅଳଂକୃତ କରିଛନ୍ତି : ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ୧୮ ଖଣ୍ଡ ପୁସ୍ତକ ରଚନା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଗଣମାଧ୍ୟମରେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି । ତାଙ୍କର ଅତ୍ୟନ୍ତ ଜନପ୍ରିୟ ବିଜ୍ଞାନ ପୁସ୍ତକ ହେଲା – "Science for Every One."

୧୯୯୨ ପିଟର୍ ଓକେବୁକୋଲା, ନାଇଜେରିଆ



ନାଇଜେରିଆ ଅଧିବାସୀ : ସ୍କୁଲ୍ ଓ କଲେଜ ସ୍ତରରେ ବିଜ୍ଞାନ ପ୍ରତି ଅତ୍ୟନ୍ତ ଆକୃଷ୍ଟ ଥିଲେ : ଉଦ୍ଭିଦବିଜ୍ଞାନୀ ଭାବେ ସ୍ନାତକୋତ୍ତର ଶିକ୍ଷା ଓ ପି.ଏଚ୍.ଡି. ଲାଭ : ଭବିଷ୍ୟତରେ ସୁବିଧା ସୁଯୋଗ ମିଳିଲେ ନିଜ ଦେଶର ଅଗଣିତ ଅନୁନ୍ନତ, ଅଳ୍ପଶିକ୍ଷିତ ଲୋକ ମାନଙ୍କ ପାଖରେ

ଆଧୁନିକ ବିଜ୍ଞାନର ବାର୍ତ୍ତା ପ୍ରଚାର ପ୍ରସାର କରିବେ ବୋଲି ଛାତ୍ରାବସ୍ଥାରୁ ପଣ କରିଥିଲେ : ଭାଗ୍ୟକ୍ରୁ ସମୟକ୍ରମେ ସେ 'ୟୁନେସ୍କୋ' ଓ 'ୟୁନିସେଫ୍' ପରି ଆନ୍ତର୍ଜାତିକ ସଂସ୍ଥାରେ ପରାମର୍ଶଦାତା ଭାବେ ନିଯୁକ୍ତ ହୋଇଥିବାରୁ ବିଜ୍ଞାନକୁ ସାଧାରଣ ଜନତା ନିକଟରେ ପହୁଞ୍ଚାଇ ପାରିବାର ଏକାଧିକ ସୁଯୋଗ ଓ ସାଧନ ପାଇଲେ : ପରିବେଶ ସଂରକ୍ଷଣ, ଜୀବ ବିଜ୍ଞାନ ସମ୍ପର୍କିତ ତଥ୍ୟ, କୃଷି ସମ୍ବନ୍ଧୀୟ ତଥ୍ୟ ଆଦି ପ୍ରଚାର ପ୍ରସାର କରିବାରେ ସେ ଅଧିକ ଆଗ୍ରହୀ : ରେଡ଼ିଓ, ଟେଲିଭିଜନ୍ ମାଧ୍ୟମରେ ସେ ଅନେକ ବିଜ୍ଞାନ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ପ୍ରସାରଣ କରାଇଛନ୍ତି ।

୧୯୯୩ ପିଏରୋ ଏଞ୍ଜେଲା (୧୯୨୮-), ଇଟାଲୀ



ଜଣେ ବହୁପରିସରୀୟ ବର୍ଣ୍ଣାଢ଼୍ୟ ବ୍ୟକ୍ତି : ଜଣେ ଫାସୀବାଦ ବିରୋଧୀ, ଇଟାଲୀୟ, ଉଦାରପନ୍ଥୀ ଡାକ୍ତର କର୍ଲୋ ଏଞ୍ଜେଲାଙ୍କ ପୁତ୍ର : ବାଲ୍ୟାବସ୍ଥାରୁ ପିଆନୋ, ଜାଜ୍ ଆଦି ଲଳିତ କଳାରେ ମଜ୍ଜି ଯାଇଥିବା ପିଏରୋ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସାମ୍ବାଦିକତା ପ୍ରତି ଆକୃଷ୍ଟ ହେଲେ : ଶେଷରେ ବିଜ୍ଞାନକୁ ଲୋକପ୍ରିୟ କରିବାରେ ଲାଗିଗଲେ : ଏଥିପାଇଁ ସମ୍ବାଦପତ୍ର, ରେଡ଼ିଓ ଟେଲିଭିଜନ, ପ୍ରାମାଣିକ ଚଳଚ୍ଚିତ୍ର ସହିତ ସମ୍ପୃକ୍ତ : ତାଙ୍କର 'ଆପୋଲୋ' ଚନ୍ଦ୍ରଯାନ ଏବଂ 'Quark' ନାମକ ଦୂରଦର୍ଶନ ପ୍ରସାରିତ ଧାରାବାହିକ ଅତ୍ୟନ୍ତ ଜନପ୍ରିୟ ହୋଇଥିଲା ।

୧୯୯୪ ନିକୋଲାୟ୍ ନିକୋଲେଭିଚ୍ ଡ୍ରୋଜ୍‌ଡୋଭ୍, ରୁଷିଆ



ଜଣେ ରୁଷୀୟ ବହୁପରିସରୀୟ ବ୍ୟକ୍ତି : ପୂର୍ଣ୍ଣ ଶାକାହାରୀ, ପ୍ରକୃତିପ୍ରେମୀ, ଜୀବବିଜ୍ଞାନୀ : ପଶୁପକ୍ଷୀ ଓ ପିଲାମାନଙ୍କ ପ୍ରତି ଆଜନ୍ମ ଶ୍ରଦ୍ଧାଳୁ ଓ ସହାନୁଭୂତିଶୀଳ : ଜୀବବିଜ୍ଞାନରେ ଡକ୍‌ଟରେଟ୍ ଡିଗ୍ରୀପ୍ରାପ୍ତ; 'ମସ୍କୋ-ଷ୍ଟେଟ୍ ଇଉନଭରସିଟି' ଓ 'ରସିଆନ୍ ଏକାଡେମୀ ଅଫ୍ ନାଚୁରାଲ

ସାଇନ୍‌ସେସ୍'ର ବରିଷ୍ଠ ପ୍ରାଧ୍ୟାପକ : ଦୂରଦର୍ଶନରେ ବିଭିନ୍ନ ଜୀବଜନ୍ତୁ ସମ୍ପର୍କିତ ଧାରାବାହିକର ଉପସ୍ଥାପକ : "The World of Animals" ନାମକ ଅତ୍ୟନ୍ତ ଲୋକପ୍ରିୟ ଟି.ଭି. ଧାରାବାହିକଟିକୁ ୩୦ ବର୍ଷ ଧରି ସେ ଉପସ୍ଥାପିତ କରିଛନ୍ତି । ତା'ଛଡ଼ା ୨୦ ରୁ ଉର୍ଦ୍ଧ୍ୱ ଜନପ୍ରିୟ ବିଜ୍ଞାନ ପୁସ୍ତକର ପ୍ରଣେତା ସେ ।

୧୯୯୫ ଜୁଲିଏଟା ଫିଏରୋ ଗସ୍‌ମ୍ୟାନ୍, ମେକ୍ସିକୋ



ମେକ୍ସିକୋ ଜାତୀୟ ବିଶ୍ୱବିଦ୍ୟାଳୟ (UNAM) ରେ ଜ୍ୟୋତିଃ-ପଦାର୍ଥବିଜ୍ଞାନ ପ୍ରଫେସର 'ମେକ୍ସିକାନ୍ ଏକାଡେମୀ ଅଫ୍ ନାଚୁରାଲ ସାଇନ୍‌ସେସ୍'ର ସେ ମଧ ସଭାପତି : ବିଜ୍ଞାନକୁ ଲୋକପ୍ରିୟ କରି ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ପାଇଁ ସେ ବିଭିନ୍ନ ଗଣମାଧ୍ୟମ ଓ ସହଜବୋଧ୍ୟ ସାବଲୀଳ ପୁସ୍ତକ ରଚନାକୁ ମାଧ୍ୟମ କରିଛନ୍ତି । ତାଙ୍କ ପ୍ରଣୀତ ୪୦ ଖଣ୍ଡ ବିଜ୍ଞାନ ପୁସ୍ତକ ବିପୁଳ ଜନାଦୃତି ଲାଭ କରିଛି । ଜାତୀୟ ଓ ଆନ୍ତର୍ଜାତୀୟ ଅନେକ ପୁରସ୍କାର ଓ ସମ୍ମାନର ଅଧିକାରିଣୀ ହୋଇଛନ୍ତି ସେ ।

୧୯୯୬ : ଜିରି ଗ୍ରାଇଗାର୍ (୧୯୩୬-୨୦୦୬), ଚେକ୍ ରିପବ୍ଲିକ୍



ଚେକୋସ୍ଲୋଭାକିଆ ନାଗରିକ ଓ ପ୍ରଖ୍ୟାତ ଜ୍ୟୋତିଃପଦାର୍ଥ ବିଜ୍ଞାନୀ :ଜ୍ୟୋତିର୍ବିଜ୍ଞାନ, ଜ୍ୟୋତି-ପଦାର୍ଥ ବିଜ୍ଞାନ, କମ୍ପ୍ୟୁଟର୍ ବିଜ୍ଞାନ ସମ୍ପର୍କିତ ତାଙ୍କର ଶତାଧିକ ଲେଖା ଚେକ୍-ମେଗାଜିନ୍ ମାନଙ୍କରେ ପ୍ରକାଶିତ : ସେ ଶତାଧିକ ବିଜ୍ଞାନ ଧର୍ମୀ ବେତାର ଭାଷଣ ଦେବା ସହ ୧୯୮୨ ରୁ ୧୯୯୦ ମସିହା ମଧ୍ୟରେ "The Windows of the Universe Wide Open" ଶୀର୍ଷକ ଏକ ଟେଲିଭିଜନ ଧାରାବାହିକ ଉପସ୍ଥାପନ କରିଥିଲେ; ଜ୍ୟୋତିଃପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଘଟୁଥିବା ନାନା ଘଟଣାର ସଚିତ୍ର ବିବରଣୀ ଏଥିରେ ପ୍ରସାରିତ ହେଉଥିଲା : ଏହାର ପ୍ରସାରଣ ୩୦ ଭାଗରେ ବିଭକ୍ତ ହୋଇଥିଲା ଏବଂ

ପ୍ରତ୍ୟେକ ଭାଗ ଅଧଘଣ୍ଟା ଧରି ପ୍ରସାରିତ କରାଯାଉଥିଲା । ସାରା ପୃଥିବୀରେ ଏହା ବେଶ୍ ଲୋକପ୍ରିୟ ହୋଇ ପାରିଥିଲା । ୧୯୯୨ ରୁ ୧୯୯୮ ମସିହା ଯାଏ ସେ 'Czech. Astronomical Society'ର ଚେୟାରମ୍ୟାନ୍ ଥିଲେ; ପରବର୍ତ୍ତୀ ସମୟରେ Czek Television Council ର ସଭାପତି ଏବଂ "European Culture Club" (ECC) ର ବିଜ୍ଞାନ ଓ ଦର୍ଶନ ବିଭାଗର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଦାୟିତ୍ୱ ଗ୍ରହଣ କରିଥିଲେ ।

## ୧୯୯୬ : ଜୟନ୍ତ ବିଷ୍ଣୁ ନାର୍ଲିକର (୧୯୩୮-), ଭାରତ



ପ୍ରଖ୍ୟାତ ଭାରତୀୟ ଜ୍ୟୋତିଃ - ପଦାର୍ଥ ବିଜ୍ଞାନୀ : ପିତା ବାରାଣସୀ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଗଣିତ ପ୍ରଫେସର ବିଷ୍ଣୁ ବାସୁଦେବ ନାର୍ଲିକର, ମାତା ସଂସ୍କୃତ ବିଦୁଷୀ ସୁମତି-ବିଷ୍ଣୁ ନାର୍ଲିକର  ବିଲାତର କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ପରିସରରେ ବିଶ୍ୱବିଖ୍ୟାତ ବ୍ରହ୍ମାଣ୍ଡ-ବିଜ୍ଞାନୀ ସାର୍ ଫ୍ରେଡ୍ ହୟଲ୍ ୧୯୬୬ ମସିହାରେ Institute of Theoretical Astronomy ପ୍ରତିଷ୍ଠା କଲାବେଳେ ତାଙ୍କ ପି.ଏଚ୍.ଡି. ଛାତ୍ର ଜୟନ୍ତ ନାର୍ଲିକର ଏ' ପ୍ରଚେଷ୍ଟାରେ ତାଙ୍କର ମୁଖ୍ୟ ସହାୟକ ହୋଇଥିଲେ । ହୟଲ୍ଙ୍କ ସହ ମିଶି ନାର୍ଲିକର 'ମହକର୍ଷଣ ତତ୍ତ୍ୱ'ର ଏକ ନୂତନ ବ୍ୟାଖ୍ୟା କରିଥିଲେ ଯାହାକୁ Conformal Gravity Theory ବା "ହୟଲ-ନାର୍ଲିକର ତତ୍ତ୍ୱ" ବୋଲି କୁହାଯାଏ । ଏହା ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟିର ତଦବଧି ଗୃହୀତ ତତ୍ତ୍ୱ 'Big Bang' ର ବିରୋଧାତ୍ମକ ଯୁକ୍ତି ଉପରେ ପ୍ରତିଷ୍ଠିତ । କ୍ୟାମ୍ବ୍ରିଜ୍‌ରେ ଦୀର୍ଘ ୧୫ ବର୍ଷ ଗବେଷଣା ଜୀବନ କଟାଇ ୧୯୭୨ ମସିହାରେ ଭାରତକୁ ଫେରିଲେ; ପ୍ରଥମେ TIFR ରେ ନିଯୁକ୍ତି ପାଇ ଜ୍ୟୋତିଃ-ପଦାର୍ଥ ବିଜ୍ଞାନ ବିଭାଗକୁ ସମୁନ୍ନତ କଲେ : ପରବର୍ତ୍ତୀ କାଳରେ ୟୁଜିସି ଦ୍ୱାରା ପୁନାରେ ପ୍ରତିଷ୍ଠିତ Inter-University Centre for Astronomy and Astrophysics ପ୍ରତିଷ୍ଠାନରେ ନିର୍ଦ୍ଦେଶକ ଭାବେ ଯୋଗଦେଲେ । ବିଜ୍ଞାନକୁ ଲୋକପ୍ରିୟ କରିବାରେ ତାଙ୍କର ଭୂମିକା ଅନନ୍ୟ । ୨୦୦୪ ମସିହାରେ ଭାରତ ସରକାର ତାଙ୍କୁ 'ପଦ୍ମବିଭୂଷଣ' ସମ୍ମାନରେ ଭୂଷିତ କରିଛନ୍ତି ।

୧୯୯୭ ଦୋରାଇରାଜନ୍ ବାଳସୁବ୍ରମନିଆନ୍ (୧୯୩୯-), ଭାରତ



ବିଶିଷ୍ଟ ଭାରତୀୟ ଭୌତିକୀୟ ରସାୟନ ବିଜ୍ଞାନୀ ତଥା ଜୈବ ରସାୟନବିତ୍ : ହାଇଦରାବାଦସ୍ଥିତ 'L.V. Prasad Eye Institute' ର ଅଧୁନାତନ ଗବେଷଣା ନିର୍ଦ୍ଦେଶକ : ପୂର୍ବରୁ 'Centre for Cellular & Molecular Biology (C.C.M.B.) ର ନିର୍ଦ୍ଦେଶକ ଭାବେ ଦାୟିତ୍ୱ ନିର୍ବାହ କରିଛନ୍ତି : ଚକ୍ଷୁରୋଗ ନିଦାନ ନିର୍ଣ୍ଣୟନରେ କୋଷୀୟ ତଥା କୋଷାଭ୍ୟନ୍ତରସ୍ଥ ଆଣବୀୟ ସ୍ତରରେ ହେତୁ ଖୋଜିବା ହେଲା ତାଙ୍କ ଗବେଷଣାର ମୁଖ୍ୟଦିଗ : ଗବେଷଣା ଆଧାରିତ ତଥା ଜାତୀୟ ଓ ଆନ୍ତର୍ଜାତୀୟ ବିଜ୍ଞାନ ପତ୍ରିକାରେ ପ୍ରକାଶିତ ତାଙ୍କ ବିଜ୍ଞାନ ପ୍ରବନ୍ଧର ସଂଖ୍ୟା ୧୪୫ । ତା'ଛଡ଼ା ବିଜ୍ଞାନର ବାର୍ତ୍ତାକୁ ସହଜ, ସୁବୋଧ୍ୟ କରି ଜନସାଧାରଣଙ୍କ ଠାରେ ପରିବେଷଣ କରିବାର ଅନନ୍ୟ କଳାରେ ସେ ସିଦ୍ଧହସ୍ତ : ଏଥିପାଇଁ ଏ ଯାବତ୍ ସେ ୩୦୦ ରୁ ଅଧିକ ବିଜ୍ଞାନ - ବାର୍ତ୍ତାବାହୀ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକା ଓ ସମ୍ବାଦପତ୍ରରେ ପ୍ରକାଶ କରିଛନ୍ତି : ୬ ଖଣ୍ଡି ସୁଖପାଠ୍ୟ ବିଜ୍ଞାନ ପୁସ୍ତକ ମଧ ରଚନା କରିଛନ୍ତି : ୧୯୮୧ ମସିହାରେ ମର୍ଯ୍ୟାଦା ଜନକ ରାଷ୍ଟ୍ରୀୟ ବୈଜ୍ଞାନିକ ସ୍ୱୀକୃତି "ଭାଟନଗର ପୁରସ୍କାର" ପାଇଛନ୍ତି । ୨୦୦୨ ମସିହାରେ ଭାରତର ରାଷ୍ଟ୍ରପତିଙ୍କ ଠାରୁ 'ପଦ୍ମଶ୍ରୀ' ସମ୍ମାନ ତଥା ଫ୍ରାନ୍ସ ରାଷ୍ଟ୍ରପତିଙ୍କ ପ୍ରଦତ୍ତ ସେ ଦେଶର 'ଜାତୀୟ ସମ୍ମାନ' ଲାଭ କରିଛନ୍ତି ।

୧୯୯୮ ରେଗିନା ପାଜ୍ ଲୋପେଜ୍, ଫିଲିପାଇନ୍ସ



ଫିଲିପାଇନ୍ସର ସ୍ୱନାମଧନ୍ୟ ସମାଜସେବିକା, ଜନହିତକାରୀ ବିଭିନ୍ନ ସମାଜ ସଂସ୍ଥାର ପରିଚାଳିକା, ଅନାଥ ଓ ଅପାଙ୍ଗ ବାଳକ-ବାଳିକା ମାନଙ୍କ ସହାୟିକା ଓ ସେବାକାରିଣୀ ରେଗିନା ଜଣେ ସ୍ୱଚ୍ଛଳ ପରିବାରର କନ୍ୟା ହୋଇ ବି, ତାଙ୍କ ଯୁବା ବୟସରେ ନିଜ ପରିବାରକୁ ଛାଡ଼ି ଆଫ୍ରିକା ମହାଦେଶକୁ ଯାଇ ଦୁସ୍ଥ, ଦରିଦ୍ରଙ୍କ ସେବା ଓ

ବିକାଶ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଛନ୍ତି । ଭାରତରୁ ୧୯୫୫ ମସିହାରେ ଜନ୍ମଲାଭ କରିଥିବା "ଆନନ୍ଦମାର୍ଗ ଆନ୍ଦୋଳନ"ରେ ନିଜକୁ ସାମିଲ କରି ଜଣେ ଆନନ୍ଦମାର୍ଗୀ ଭାବେ ଦୀନ ଦୁଃଖୀ ଅସହାୟଙ୍କ ସେବା, ଅଶିକ୍ଷା, କୁସଂସ୍କାର ଦୂରୀକରଣ, ଯୋଗ ପ୍ରାଣାୟମ ପ୍ରଶିକ୍ଷଣ ମାଧ୍ୟମରେ ସାଧାରଣ ଲୋକଙ୍କ ସ୍ୱାସ୍ଥ୍ୟ ସମସ୍ୟାର ଯଥାସମ୍ଭବ ଉନ୍ନତି ବିଧାନ, ଲୋକଙ୍କ ମଧ୍ୟରେ ଆଧ୍ୟାତ୍ମିକ ଚିନ୍ତା ଚେତନାର ପ୍ରସାରଣ ଆଦି କାର୍ଯ୍ୟରେ ନିଯୁକ୍ତ : ଆଫ୍ରିକାରେ ୧୧ ବର୍ଷ ଏକାଦିକ୍ରମେ ରହି, କେନିଆ, ଘାନା, ଜାମ୍ବିଆ ପରି କେତେକ ରାଷ୍ଟ୍ରରେ ଅନାଥାଶ୍ରମ ଖୋଲି ପିଲାମାନଙ୍କୁ ଆଶ୍ରୟ ଓ ଶିକ୍ଷାଦାନ କରିଛନ୍ତି । "ବାଗୋ ୟାନ୍ ଆହ୍" (Bago Yan Ah!) ଶୀର୍ଷକ ଏକ ରେଡ଼ିଓ ଧାରାବାହିକ ମାଧ୍ୟମରେ ବିଜ୍ଞାନର କଲ୍ୟାଣକାରୀ ବାର୍ତ୍ତା ପହୁଞ୍ଚାଇଛନ୍ତି : ଆଫ୍ରିକାରେ ଥିଲାବେଳେ 'ସୋନା ରାୟ' ନାମଧାରୀ ଜଣେ ବଙ୍ଗୀୟ ଆନନ୍ଦମାର୍ଗୀଙ୍କୁ ବିବାହ କରିଛନ୍ତି ରେଗିନା ।

୧୯୯୮ : ଏନ୍ନିଓ କାଣ୍ଡୋଟ୍ଟି (୧୯୪୨-), ବ୍ରାଜିଲ



ଇଟାଲୀୟ ବଂଶୋଦ୍ଭବ ବ୍ରାଜିଲିଆନ୍ ପଦାର୍ଥ ବିଜ୍ଞାନୀ : ସ୍ନାତକୋତ୍ତର ଶିକ୍ଷା ପାଇଁ ସେ ତିନୋଟି ବିଶ୍ୱବିଦ୍ୟାଳୟରେ ପ୍ରଶିକ୍ଷଣ ନେଇଛନ୍ତି : ତାତ୍ତ୍ୱିକ ପଦାର୍ଥ ବିଦ୍ୟା ପାଇଁ ଇଟାଲିର ପିସା ବିଶ୍ୱବିଦ୍ୟାଳୟ, ଗାଣିତିକ ପଦାର୍ଥ ବିଜ୍ଞାନ ପାଇଁ ଜର୍ମାନୀର ମ୍ୟୁନିଚ୍ ଏବଂ ଗତି ସମ୍ପର୍କିତ ଭୌତିକୀ ଅଧ୍ୟୟନ ପାଇଁ ପୁଣି ଇଟାଲିର 'ନେପଲସ୍' ବିଶ୍ୱ ବିଦ୍ୟାଳୟର ଛାତ୍ର ହୋଇଛନ୍ତି : ୧୯୮୩ ମସିହାରୁ ବ୍ରାଜିଲ୍‌ର ନାଗରିକତ୍ୱ ଗ୍ରହଣ କରିଛନ୍ତି । ୪ର୍ଥ ଥର ପାଇଁ ଏବେ ସେ "Brazillian Society for the Progress of Science" ର ସଭାପତି ପଦ ଅଳଂକୃତ କରିଛନ୍ତି : ସେ ମଧ୍ୟ "Ciencia Hoje" (Science Today) ନାମକ ଏକ ଜନପ୍ରିୟ ବିଜ୍ଞାନ ପତ୍ରିକାର ସମ୍ପାଦନା କରୁଛନ୍ତି । ଆମ ଦେଶରେ ୨୦୦୨ ମସିହା ବମ୍ବେ ଅଧିବେଶନରେ ଗଢ଼ା ହୋଇଥିବା "International Union for Science Communicators" ସଂଘର ସଭାପତି ଭାବେ ସେ ମଧ୍ୟ ନିର୍ବାଚିତ ହୋଇଛନ୍ତି ।

୧୯୯୯ : ମେରିଆନ୍ ଆଡ୍‌ଡି (୧୯୪୨-), ଘାନା



ଆଫ୍ରିକୀୟ ମହିଳା ବୈଜ୍ଞାନିକ; ଘାନା ବିଶ୍ୱ ବିଦ୍ୟାଳୟରେ ଜୀବରସାୟନ ବିଭାଗର ପ୍ରଫେସର : ତାଙ୍କ ଗବେଷଣାର ବିଷୟବସ୍ତୁ ହେଲା - ଔଷଧୀୟ ଗୁଣ ଥିବା ବିଭିନ୍ନ ବନସ୍ପତି ମାନଙ୍କ ଅନୁଧ୍ୟାନ : ଉଦ୍ଭିଦ ପ୍ରଦୂଷକ କେତେକ ରାସାୟନିକ ପଦାର୍ଥ ମଧ୍ୟ ତାଙ୍କ ଗବେଷଣାର ପରିସରରେ ଅଛି : 'ଘାନା ଜୀବରସାୟନ ବିଜ୍ଞାନ ସଂଘ' ଓ 'ଘାନା ମହିଳା ବିଜ୍ଞାନୀ ସଂଘ'ର ସେ' ସଭାନେତ୍ରୀ : ମାଧ୍ୟମିକ ସ୍କୁଲରେ କରାଯାଉଥିବା ବିଜ୍ଞାନମେଳା, ବିଜ୍ଞାନ ପ୍ରଦର୍ଶନୀ ତଥା ବିଜ୍ଞାନ କୁଇଜ୍ ମାନଙ୍କରେ ନିୟମିତ ଭାବେ ଅଂଶଗ୍ରହଣ କରି ପ୍ରଫେସର ମେରିଆନ୍ ତାଙ୍କ ଦେଶରେ ପିଲାବେଳୁଁ ନାଗରିକ ମାନଙ୍କ ଠାରେ ବିଜ୍ଞାନ ପ୍ରୀତି ଓ ବିଜ୍ଞାନ ଉତ୍ସୁକତା ସୃଷ୍ଟି କରିବା ପାଇଁ ଅକ୍ଲାନ୍ତ ଉଦ୍ୟମ ଜାରି ରଖିଛନ୍ତି ।

୧୯୯୯ ଏମିଲ୍ ଏସ୍ ଗାବ୍ରିଏଲିଆନ୍ (୧୯୩୧-), ଆର୍ମେନିଆ



ଆର୍ମେନିଆ ଅଧିବାସୀ ଜଣେ ପ୍ରଖ୍ୟାତ ଭେଷଜ ତତ୍ତ୍ୱ ବିଜ୍ଞାନୀ (Pharmacologist) : ଏବେ ସେ ଆର୍ମେନିଆର "ଔଷଧ ଓ ଭେଷଜୀୟ ପ୍ରଯୁକ୍ତି ପ୍ରଶାସନ"ର ଡାଇରେକ୍ଟର ଜେନେରାଲ୍ ଭାବେ ଅଧିଷ୍ଠିତ : ତାଙ୍କ ଗବେଷଣାର ପରିସୀମା ବେଶ୍ ବିସ୍ତାରିତ : ଶରୀର ତାତ୍ତ୍ୱିକ କ୍ରିୟାପ୍ରକ୍ରିୟା, ଉଦ୍ଭିଜ୍ଜ-ବର୍ଣ୍ଣ-କଣିକାର ଭେଷଜୀୟ ଗୁଣ, ଆଣବିକ ସ୍ତରରେ ତନ୍ତୁକୋଷିକାର ଅନ୍ତକ୍ରିୟା, ରକ୍ତ ସଞ୍ଚାଳନ ଆଦି ଅନେକ ବିଷୟରେ ସେ ଗବେଷଣା କରିଛନ୍ତି : 'ଇଣ୍ଟରନେଶନାଲ୍ ଏକାଡେମୀ ଅଫ୍ ସାଇନ୍‌ସେସ୍'ର ସଭ୍ୟ, 'ଫେଲୋ ଅଫ୍ ଦି ସାଇଣ୍ଟିଫିକ୍ କାଉନ୍‌ସିଲ୍ ଅଫ୍ ସାଇନ୍‌ସେସ୍'ର ସଭ୍ୟ, 'ଫେଲୋ ଅଫ୍ ଦି ସାଇଣ୍ଟିଫିକ୍ କାଉନ୍‌ସିଲ୍ ଅଫ୍ ଦି ଇଣ୍ଟରନେଶନାଲ୍ କଲେଜ ଅଫ୍ ଏଞ୍ଜିଓଲଜି;, ଏବଂ ଆହୁରି ଅନେକ 'ଜାତୀୟ ଓ ଆନ୍ତର୍ଜାତୀୟ ସଂଘ ଓ ସଂସ୍ଥାର ସଭ୍ୟ ସେ : ୧୯୭୫ ରୁ ୧୯୮୯ ମସିହା

ଯାଏ ଆର୍ମେନିଆ ସରକାରରେ ସ୍ୱାସ୍ଥ୍ୟମନ୍ତ୍ରୀ ଭାବେ ସେ ଦାୟିତ୍ୱ ତୁଲାଇଛନ୍ତି । ସେତେବେଳେ ସପ୍ତାହରେ ବିଶେଷଜ୍ଞ ଡାକ୍ତରଙ୍କ ପରାମର୍ଶ ସମସ୍ତେ ଯେପରି ଗୋଟିଏ ଦିନ ପାଇ ପାରିବେ, ସେଥିପାଇଁ "The Day of Open Doors" ପରି ଏକ ଅଭିନବ ଯୋଜନା ସେ ଜନସାଧାରଣଙ୍କ ପାଇଁ ପ୍ରବର୍ତ୍ତନ କରିଥିଲେ ।

୨୦୦୦ : ଆର୍ନ୍‌ଷ୍ଟ୍ ଉଲଫ୍‌ଗାଙ୍ଗ୍ ହାମ୍‌ବର୍ଗର୍ (୧୯୩୩-), ବ୍ରାଜିଲ



ଜର୍ମାନ୍ ବଂଶୋଦ୍ଭବ ବ୍ରାଜିଲ୍ ନାଗରିକ ପଦାର୍ଥବିଜ୍ଞାନୀ ତଥା ଲୋକପ୍ରିୟ ବିଜ୍ଞାନ ପ୍ରଚାରକ ବ୍ରାଜିଲ୍‌ର 'ସାଓ ପାଓଲୋ'ସ୍ଥ Institute of Physics ର ପ୍ରଫେସର ପଦରୁ ଏବେ ଅବସର ଗ୍ରହଣ କରିଛନ୍ତି : ଜନସମାଜରେ ବିଜ୍ଞାନ ସଚେତନତା ସୃଷ୍ଟି କରିବା ପାଇଁ ତାଙ୍କର ନିରବଚ୍ଛିନ୍ନ ପ୍ରଚେଷ୍ଟା ପାଇଁ ସେ' ଅନେକ ଆନ୍ତର୍ଜାତିକ ସମ୍ମାନ ଓ ସ୍ୱୀକୃତି ପାଇଛନ୍ତି । 'Jose Reis' ପୁରସ୍କାର, 'Brazilian Order of Scientific Merit', 'Brazilian Academy of Sciences' ର ସଭ୍ୟପଦ ଆଦି ଅନେକ ସମ୍ମାନର ଅଧିକାରୀ ସେ ।

୨୦୦୧ : ଷ୍ଟିଫାନୋ ଫାଣ୍ଟୋନି (୧୯୪୫-), ଇଟାଲୀ



ଜଣେ ପୃଥିବୀ ପ୍ରସିଦ୍ଧ ଇଟାଲୀୟ କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନୀ : ୧୯୭୧ ମସିହାରେ ପିଏଚ୍.ଡି. ଡିଗ୍ରୀ ଲାଭ କରି ସେ ପରିଦର୍ଶକ ବୈଜ୍ଞାନିକ ଭାବେ ବିଶ୍ୱପ୍ରସିଦ୍ଧ "ନିଲସ୍ ବୋହର୍ ଇନ୍‌ଷ୍ଟିଚ୍ୟୁଟ୍", "କୋଲନ୍ ବିଶ୍ୱବିଦ୍ୟାଳୟ", ଆମେରିକାର "ଇଲ୍ଲିନଏ ବିଶ୍ୱବିଦ୍ୟାଳୟ ଆଦି ପୃଥିବୀ ପ୍ରସିଦ୍ଧ ପଦାର୍ଥବିଜ୍ଞାନ ଗବେଷଣାଗାରମାନଙ୍କରେ କାମ କରିଛନ୍ତି : ଶେଷରେ ନିଜ ଦେଶର ପ୍ରମୁଖ "ଟ୍ରିଷ୍ଟେ ଅନୁଷ୍ଠାନ"ରେ ପୂରା ସମୟ ପ୍ରଫେସର ଭାବେ ଦାୟିତ୍ୱ ନିର୍ବାହ କରିଛନ୍ତି : "Fermie Hypernelted Chain Theory" ର

ବହୁପ୍ରସରୀୟ ଅନୁଧ୍ୟାନ କରିଛନ୍ତି ସେ : ତା'ର ଫଳଶ୍ରୁତି ରୂପେ ସେ "Quantum many-body Systems" ର ଜଣେ ମୁଖ୍ୟ ବ୍ୟାଖ୍ୟାତା ରୂପେ ପରିଗଣିତ ହୋଇଛନ୍ତି । ଏ'ସବୁ ଗଭୀର ଅନୁଧ୍ୟାନ ସମ୍ବଳିତ ଗବେଷଣା କାର୍ଯ୍ୟ ସହ ବିଜ୍ଞାନ-ବାର୍ତ୍ତାକୁ ସରଳ ବୋଧଗମ୍ୟ ଭାବରେ ସେ' ମଧ୍ୟ ଜନସାଧାରଣଙ୍କୁ କେତେକାଂଶରେ ପରିବେଷଣ କରିପାରିଛନ୍ତି ।

୨୦୦୨ : ଏଫ୍.ମେରିସେଲା ସାଲଭାଟିଏରା (-୨୦୦୩), ଭେନେଜୁଏଲା



ଭେନେଜୁଆଲାର ଚତୁର୍ଥ କଳିଙ୍ଗ ପୁରସ୍କାର ପ୍ରାପ୍ତ ବ୍ୟକ୍ତି ଏବଂ ଏକମାତ୍ର ଭେନେଜୁଆଲୀୟା ମହିଳା : ୨୦୦୩ ମସିହାରେ ତାଙ୍କର ପରଲୋକ ଘଟିଛି : ସେ ଥିଲେ ପରିବେଶ ପ୍ରେମୀ ସାମ୍ବାଦିକା ସେ ଭେନେଜୁଆଲାର "Social Communication School of the Central University" ର ପରିବେଶ ଓ ସାମ୍ବାଦିକତା ବିଭାଗର ପ୍ରଫେସର ଭାବେ ଦାୟିତ୍ୱ ସମ୍ପାଦନ କରିଥିଲେ : ପରିବେଶ ସମ୍ପର୍କିତ ସାମ୍ବାଦିକତା କ୍ଷେତ୍ରରେ ସେ ସୁନାମ ଅର୍ଜନ କରିଥିଲେ : ଦଶ ବର୍ଷ ଧରି ସେ ଭେନେଜୁଆଲା ସରକାରଙ୍କ ପରିବେଶ ପ୍ରକଳ୍ପ ଗୁଡ଼ିକର ମୁଖ୍ୟ ଅନୁଧ୍ୟାନକାରୀର ଦାୟିତ୍ୱ ନିର୍ବାହ କରିଥିଲେ : "Profauna' ନାମକ ରାଷ୍ଟ୍ରୀୟ ପରିବେଶ ପତ୍ରିକାର ମୁଖ୍ୟ ସମ୍ପାଦିକା ଥିଲେ ସେ : ନିଜ ଦେଶର ପରିବେଶ ସଂରକ୍ଷଣ କାର୍ଯ୍ୟରେ ସେ ନିଜକୁ ସର୍ବଦା ନିୟୋଜିତ କରିଥିଲେ । ତାଙ୍କର ଜନପ୍ରିୟ ରଚନା ଗୁଡ଼ିକ ହେଲା –

1) Why do We get Flooded ?
2) The Animal Population in Venezuala
3) Atmospheric Pollution
4) The Process of Environmental Deterioration in Venezuala's history.

୨୦୦୩ : ପରଭେଜ୍ ଆମିରାଲି ହୁଡ୍‌ଭାୟ୍ (୧୯୫୦-), ପାକିସ୍ତାନ



ପାକିସ୍ତାନର ପ୍ରଖ୍ୟାତ ନ୍ୟୁକ୍ଲିଅର୍ ପଦାର୍ଥ ବିଜ୍ଞାନୀ : ଆମେରିକାର ବିଶ୍ୱ ପ୍ରସିଦ୍ଧ ମାସାଚୁସେଟ୍‌ସ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜିରୁ ଗଣିତ ଓ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂରେ ସ୍ନାତକ ଡିଗ୍ରୀ; ପରେ Solid state physics ରେ ଏମ୍.ଏସ୍ ଡିଗ୍ରୀ ଏବଂ ଶେଷରେ ନ୍ୟୁକ୍ଲିଅର୍ ପଦାର୍ଥ ବିଜ୍ଞାନରେ ପିଏଚ୍.ଡି.ଲାଭ : ଶିକ୍ଷା ଶେଷରେ ପାକିସ୍ତାନକୁ ଫେରି ଇସ୍‌ଲାମାବାଦସ୍ଥିତ କ୍ୱାଏଦ୍-ଇ-ଆଜାମ୍ ବିଶ୍ୱବିଦ୍ୟାଳୟରେ ନ୍ୟୁକ୍ଲିଅର୍ ଫିଜିକ୍ସର ପ୍ରଫେସର ରୂପେ ଅବସ୍ଥାପିତ । ୬୫ ରୁ ଉର୍ଦ୍ଧ୍ୱ ଗବେଷଣା ଆଧାରୀତ ବିଜ୍ଞାନ ଲେଖା ପ୍ରମୁଖ ବିଜ୍ଞାନ ପତ୍ରିକାମାନଙ୍କରେ ପ୍ରକାଶିତ : ୧୯୬୮ ମସିହାରେ ଛାତ୍ରାବସ୍ଥାରେ ଇଲେକ୍‌ଟ୍ରନିକ୍ସରେ ପାରଦର୍ଶିତା ପ୍ରଦର୍ଶନ କରି ବେକର ପୁରସ୍କାର ଲାଭ; ଗଣିତରେ ଉତ୍କର୍ଷ ପାଇଁ ୧୯୮୪ ମସିହାରେ 'ଅବ୍‌ଦୁସ୍ ସଲାମ୍ ପୁରସ୍କାର' ଲାଭ; ବିଜ୍ଞାନକୁ ଲୋକାଭିମୁଖୀ କରିବା ପାଇଁ ଲୋକପ୍ରିୟ ଧାରାବାହିକ "The Bell Tolls for Planet Earth" ପରି ଦୂରଦର୍ଶନ ପ୍ରାମାଣିକ ଚିତ୍ରର ପ୍ରସାରଣ : ସାଧାରଣ ଲୋକ ବୁଝି ପାରିଲା ଭଳି ସରଳ ଭାଷାରେ ଲିଖିତ ତାଙ୍କର କେତେକ ପୁସ୍ତକ, ଯଥା - 1) Islam and Science, 2) Religious Orthodoxy and the Battle of Rationality ବିଶେଷ ଜନାଦୃତି ଲାଭ କରିଛି ।

୨୦୦୪ : ଜିନ୍ ଅଡୁଜ୍ (୧୯୪୦-), ଫ୍ରାନ୍ସ



ଫ୍ରାନ୍‌ସର ନାଗରିକ; ଜ୍ୟୋତି-ପଦାର୍ଥ ବିଜ୍ଞାନ ତଥା ମହାକାଶ ବିଜ୍ଞାନ ଗବେଷକ 'ପ୍ୟାରିସ୍ ପଲିଟେକ୍‌ନିକ୍', ଆମେରିକାର 'କାଲ୍‌ଟେକ୍' ଓ ଲସ୍ ଏଞ୍ଜେଲସ୍‌ର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ ପରି ପୃଥିବୀ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷକତ୍ୱ : ୧୦ଟି ଲୋକପ୍ରିୟ ବିଜ୍ଞାନ ପୁସ୍ତକର ପ୍ରଣେତା : ୨୦୦୦

ମସିହାରେ ପ୍ରକାଶିତ ତାଙ୍କ ପୁସ୍ତକ "Man in the Universe" ଅତ୍ୟନ୍ତ ଲୋକପ୍ରିୟ; ତାଛଡ଼ା ତାଙ୍କ ଦ୍ୱାରା ଲିଖିତ ଅନ୍ୟ ପୁସ୍ତକ, ଯଥା – 'Universe today', 'The Bid Atlas of Astronomy', Looks on the Visible', Invasion on Universe ପ୍ରଭୃତି ସାଧାରଣ ପାଠକୀୟ ଆଗ୍ରହ ସୃଷ୍ଟି କରିଛି ।

୨୦୦୫ : ଜିଟର୍ ଜର୍ଜି ବର୍ଟୋଲେଟି ( ୧୯୩୯– ), ବ୍ରାଜିଲ



ବ୍ରାଜିଲ୍ର ନାଗରିକ, ପ୍ରାଣୀବିଜ୍ଞାନୀ ଓ ପରିବେଶବିତ୍ : ଅଧ୍ୟାପନା ଓ ଗବେଷଣାରେ ୪୪ ବର୍ଷ ଅତିବାହିତ କରିଛନ୍ତି : ୬୦ ରୁ ଉର୍ଦ୍ଧ୍ୱ ପରିବେଶ ସଂକ୍ରାନ୍ତୀୟ ସରକାରୀ ପ୍ରକଳ୍ପ, ଘରୋଇ ଉଦ୍ୟୋଗମାନଙ୍କର ପ୍ରକଳ୍ପ ତଥା ବିଶ୍ୱବିଦ୍ୟାଳୟ ସ୍ତରୀୟ ଗବେଷଣା ଭିତ୍ତିକ ପ୍ରକଳ୍ପ ତାଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକାରୀ ହୋଇଛି । ସେ "Brazilian Society for the Progress of Science" ର ଜଣେ ଉଚ୍ଚ ପଦାଧିକାରୀ ।

କଳିଙ୍ଗ ପୁରସ୍କାର, ସଂକ୍ଷେପରେ ...

୧. ପ୍ରତିଷ୍ଠାତା : ଶ୍ରୀଯୁକ୍ତ ବିଜୟାନନ୍ଦ ପଟ୍ଟନାୟକ

| | | | |
|---|---|---|---|
| ୨. ୧୯୫୨ ରୁ ୨୦୦୫ ମସିହା | | ବିଜେତା | ୬୩ ଜଣ |
| | | ଦେଶ | ୨୨ |

୩. କେଉଁ ଦେଶ କେତେ ଥର :

| | | | |
|---|---|---|---|
| ବ୍ରିଟେନ୍ | ୧୦ଥର | ଆମେରିକା | ୮ଥର |
| ଫ୍ରାନ୍ସ | ୬ଥର | ରୁଷିଆ | ୫ ଥର |
| ବ୍ରାଜିଲ୍ | ୫ଥର | ଭାରତ | ୪ ଥର |
| ଭେନେଜୁଆଲା | ୪ଥର | ମେକ୍ସିକୋ | ୩ ଥର |
| ଜର୍ମାନୀ | ୨ ଥର | ଇଟାଲି | ୨ ଥର |
| କାନାଡ଼ା | ୨ ଥର | ପାକିସ୍ତାନ | ୨ ଥର |

୪. ଥରେ ଥରେ ପାଇଥିବା ଅନ୍ୟ ୧୦ଟି ଦେଶ :

ଅଷ୍ଟ୍ରିଆ, ଆର୍ମେନିଆ, ଇଜିପ୍ଟ, ଘାନା, ଚେକୋସ୍ଲୋଭାକିଆ, ନାଇଜେରିଆ,

ଫିନ୍‌ଲାଣ୍ଡ, ଫିଲିପାଇନ୍‌ସ, ବଂଗଳାଦେଶ, ରୋମାନିଆ

୫. ଦିଆଯାଇ ନଥିବା ବର୍ଷ : ୧୯୭୩, ୧୯୭୫

୬. କଳିଙ୍ଗ ପୁରସ୍କାର ପାଇଥିବା ନୋବେଲ୍ ବିଜେତା ୭ଜଣ

(ଲୁଇ ଡି. ବ୍ରଗଲି, ବର୍ଟ୍ରାଣ୍ଡ ରସେଲ୍, କାର୍ଲ ଭନଫ୍ରିସ, କନ୍‌ରାଡ୍ ଲରେଞ୍ଜ୍, ଜର୍ଜ ପୋର୍ଟର, ସାର୍ ପିଟର୍ ମେଡ଼ାୱାର୍, ନିକୋଲାଇ ବାସଭ)

୭. ମହିଳା ବିଜେତା : ୫ଜଣ

(ମାର୍ଗାରେଟ୍ ମିଡ୍ - ୧୯୭୦, ଜୁଲିଏଟା ଗସ୍‌ମେନ୍ - ୧୯୯୫, ରେଜିନା ପାଜ୍ ଲୋପେଜ୍ - ୧୯୯୮, ମେରିଆନ୍ ଅଡ୍ଗି - ୧୯୯୯, ମାରିସେଲା - ସାଲ୍‌ଭାଟିଏରା - ୨୦୦୨)

ବିଜ୍ଞାନ ଦିଗନ୍ତ

ଡିସେମ୍ବର - ୨୦୦୭



# ଆଇଜେନହାୱାର, ଆମେରିକୀୟ ବୈଜ୍ଞାନିକ ସମାଜ ଓ ସ୍ପୁଟନିକ୍

*ସୋଭିଏତ ଦେଶର ସ୍ପୁଟନିକ ଲଞ୍ଚ ଆମେରିକାର ଦେଶରକ୍ଷା ଓ ବିଜ୍ଞାନ ଉପରେ ଥିବା ଆମେରିକୀୟମାନଙ୍କ ପ୍ରଚଣ୍ଡ ଆତ୍ମ ବିଶ୍ୱାସର ଶକ୍ତ ଆଧାରଶିଳାକୁ ଦୋହଲାଇ ଦେଇଥିଲା । ଆମେରିକାର ରାଷ୍ଟ୍ରପତି ଆଇଜେନ ହାୱାର ତୁରନ୍ତ ଆମେରିକାର ପ୍ରମୁଖ ବୈଜ୍ଞାନିକମାନଙ୍କ ଏକ ଜରୁରୀକାଳୀନ ବୈଠକ ରାଷ୍ଟ୍ରପତି ଭବନର ଓଭାଲ ଅଫିସରେ ଡକାଇଥିଲେ ଯାହାକୁ କି ହ୍ୟାନ୍ସ ବେଥେ ଆମେରିକାର ଇତିହାସରେ ଏକ ଅବିସ୍ମରଣୀୟ ମୁହୂର୍ତ୍ତ" ବୋଲି ବର୍ଣ୍ଣନା କରିଛନ୍ତି ।*

୧୯୫୭ ମସିହା ଅକ୍ଟୋବର ୪ ତାରିଖର ସାୟଂକାଳରେ ଏକ ସୋଭିଏତ ଏସ୍.ଏସ୍-୬ (SS-6) ରକେଟ କାଜାକସ୍ତାନର ଟ୍ୟୁରାଟାମ ରେଞ୍ଜରୁ ମହାକାଶକୁ ଯାତ୍ରାକରି ୮୪ କିଲୋଗ୍ରାମ ଓଜନ ବିଶିଷ୍ଟ ଏକ ବିଚବଲ୍ ଆକୃତିର ଗୋଲକକୁ ପୃଥିବୀର କକ୍ଷ ପଥରେ ସ୍ଥାନିତ କଲା । ଏହା ଥିଲା "ସ୍ପୁଟନିକ" ଯାହାକି ପ୍ରଥମ କୃତ୍ରିମ ସ୍ୟାଟେଲାଇଟ ଭାବେ ପ୍ରସିଦ୍ଧି ଲାଭ କରିଥିଲା । ପୃଥିବୀ ପୃଷ୍ଠରୁ ୬୦୦ କିଲୋମିଟର ଊର୍ଦ୍ଧ୍ୱ ଦୂରତ୍ୱରେ ସ୍ପୁଟନିକ ପୃଥିବୀର କକ୍ଷପଥରେ ପ୍ରତି ୯୬ ମିନିଟରେ ଥରେ ପ୍ରଦକ୍ଷିଣ କରୁଥିଲା । ସେହି ଅବିସ୍ମରଣୀୟ ମୁହୂର୍ତ୍ତର ଐତିହାସିକ ଘଟଣା ପ୍ରବାହ ଆମେରିକାର ସରକାର ଓ ବୈଜ୍ଞାନିକମାନଙ୍କ ମଧ୍ୟରେ ସମ୍ପର୍କର ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା ।

ପରନ୍ତୁ ଏହି ସମ୍ପର୍କର ବୟସ ସୀମା ଯେ କୌଣସି ପୁସ୍ତକର ଏକ କ୍ଷୁଦ୍ର ଅଧ୍ୟାୟ ପରି ଅତ୍ୟନ୍ତ ସୀମିତ ଥିଲା । ଆମେରିକୀୟ ସରକାରଙ୍କ ଅତ୍ୟୁଚ୍ଚ ସ୍ତରରେ ଏହି ସମ୍ପର୍କର ସ୍ଥାୟୀତ୍ୱ ଏତେ ଦୀର୍ଘସ୍ଥାୟୀ ନଥିଲା । ୧୯୫୭ ମସିହାରୁ ଆରମ୍ଭ କରି ରାଷ୍ଟ୍ରପତି ଆଇଜେନହାୱାର (President Dwight D. Eisenhower) ଙ୍କ ରାଷ୍ଟ୍ରପତିତ୍ୱର ସମୟସୀମା ଜାନୁୟାରୀ ୧୯୬୧ ରେ ସମାପ୍ତ ହେଲା ପର୍ଯ୍ୟନ୍ତ ଆମେରିକୀୟ ବୈଜ୍ଞାନିକ ସମାଜର ତାଙ୍କ ପାଖରେ ସିଧାସଳଖ ପ୍ରବେଶ ଅଧିକାର ଥିଲା ଏବଂ ସେ ମଧ

ସେମାନଙ୍କର ସକ୍ରିୟ ଉପଦେଶ କାମନା କରୁଥିଲେ । ଫଳତଃ ଆଇଜେନହାୱାରଙ୍କ ପଲିସି ନିର୍ଦ୍ଧାରଣ ପ୍ରକ୍ରିୟା ବୈଜ୍ଞାନିକଙ୍କ ମତବାଦ ଓ ଦୃଷ୍ଟିକୋଣ ଦ୍ୱାରା ପ୍ରଭାବିତ ହେଉଥିଲା । ଏହା ଯୁକ୍ତି କରାଯାଇପାରେ ଯେ ଆମେରିକା ଇତିହାସରେ ଆଇଜେନହାୱାରଙ୍କ ପୂର୍ବରୁ ଆମେରିକାର ସର୍ବୋଚ୍ଚ ପ୍ରଶାସନ ବ୍ୟବସ୍ଥାରେ ଆମେରିକୀୟ ବୈଜ୍ଞାନିକ ସମାଜର ଦୃଢ଼ୀଭୂତ ପ୍ରଭାବ କେବେ ବି ଅନୁଭୂତ ହୋଇନଥିଲା ଯାହାକି ଜାତୀୟ ନୀତି ନିର୍ଦ୍ଧାରଣ ପ୍ରକ୍ରିୟାକୁ ତାର ସ୍ପଷ୍ଟ ନିର୍ଦ୍ଦେଶନା ମାଧ୍ୟମରେ ପରିଚାଳିତ କରୁଥିଲା ।

ବିଗତ ୧୦୦ ବର୍ଷର ଇତିହାସକୁ ତର୍ଜମା କଲେ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ନାନାବିଧ ଅସ୍ତ୍ରଶସ୍ତ୍ରର ପ୍ରସ୍ତୁତି, ବିକାଶ ଓ ଉତ୍କର୍ଷ ସାଧନ କରିବା ପାଇଁ ମିଲିଟାରୀ ଲିଡ଼ରମାନେ ବୈଜ୍ଞାନିକମାନଙ୍କ ସାହଚର୍ଯ୍ୟ କାମନା କରିଥାନ୍ତି । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଏହା ନିଶ୍ଚିତ ରୂପେ ଏପରି ହିଁ ଥିଲା । ୧୯୧୬ ମସିହା ଜୁନ ମାସରେ ଆମେରିକାର ସେ ସମୟର ରାଷ୍ଟ୍ରପତି ଉଡ୍ରୋ ଉଇଲସନଙ୍କ ଅନୁରୋଧକ୍ରମେ ନ୍ୟାସନାଲ ରିସର୍ଚ୍ଚ କାଉନସିଲର ଗଠନ କରାଯାଇଥିଲା ଯାହାର ମୁଖ୍ୟ ଆଭିମୁଖ୍ୟ ଥିଲା ଜାତୀୟ ସୁରକ୍ଷା ଓ କଲ୍ୟାଣ ପାଇଁ ଉଭୟ ଶୁଦ୍ଧ (Pure) ଓ ବ୍ୟାବହାରିକ (Applied) ଗବେଷଣାକୁ ପ୍ରୋତ୍ସାହନ ଦେବା । ତା'ପରେ ଖୁବ୍ ଶୀଘ୍ର ପଦାର୍ଥ ବିଦ୍ୟାବିତ୍‌ମାନଙ୍କୁ ଜର୍ମାନ୍ ସବ୍‌ମାରାଇନ୍‌ର ଅନ୍ୱେଷଣ କରି ବାହାର କରିବା ଗବେଷଣା କର୍ମରେ ନିୟୋଜିତ କରାଗଲା । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଗବେଷଣା କାମରେ ମଧ୍ୟ ବୈଜ୍ଞାନିକମାନଙ୍କୁ ନିୟୋଜିତ କରାଗଲା ଯାହାର ମିଠା ଫଳ ମିଲିଟାରୀ ପ୍ରଶାସନ ପାଖରେ ପହଞ୍ଚି ପାରିଲା । ପରନ୍ତୁ ଏସବୁ ସତ୍ତ୍ୱେ ମଧ୍ୟ ମିଲିଟାରୀ ନେତୃବୃନ୍ଦ ପଦାର୍ଥ ବିଦ୍ୟାବିତ୍‌ମାନଙ୍କୁ ଏତେଟା ସ୍ନେହ ଓ ଆଦର ଅଭ୍ୟର୍ଥନା କରୁନଥିଲେ । ହ୍ୟାନେଭାର ବୁଶ ୧୯୪୯ ମସିହାରେ ପ୍ରକାଶିତ ତାଙ୍କ ପୁସ୍ତକ "Modern Arms and Free Men" ପୁସ୍ତକରେ ଲେଖିଛନ୍ତି ଯେ -

Military laboratiories [Prior to World War-II] were dominated by officers who made it utterly clear that the scientists and engineers employed in these laboratories were of a lower caste of society ...

[The] senior officers of military services everywhere did not have a ghost of an idea concerning the effects of science on the evolution of techniques & weapons.

ଅର୍ଥାତ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ମିଲିଟାରୀ ଲାବୋରାଟୋରୀ ଗୁଡ଼ିକରେ ନିୟୋଜିତ ହୋଇ ପ୍ରାଧାନ୍ୟ ବିସ୍ତାର କରୁଥିବା ବୈଜ୍ଞାନିକ ଓ ଇଞ୍ଜିନିୟରମାନେ ସମାଜର ନିମ୍ନବର୍ଗରୁ ହିଁ ଆସୁଥିଲେ ଏବଂ ମିଲିଟାରୀ ସେବାର ବରିଷ୍ଠ ଅଧିକାରୀମାନଙ୍କର ମିଲିଟାରୀ ବୈଷୟିକ କଳାକୌଶଳ ଓ ଅସ୍ତ୍ରଶସ୍ତ୍ରର ବିକାଶରେ ବିଜ୍ଞାନର ପ୍ରଭାବ ସଂକ୍ରାନ୍ତରେ ଲେଶମାତ୍ର ଧାରଣା ମଧ୍ୟ ରହୁନଥିଲା ।

୧୯୩୮ ମସିହାରେ ନିୟୁକ୍ଲିଅର ଫିସନ (Nuclear Fission) ର ଆବିଷ୍କାର ପରେ, ଯେଉଁ ଆବିଷ୍କାର କି ଜର୍ମାନୀରେ ସଂଗଠିତ ହୋଇଥିଲା, ବୈଜ୍ଞାନିକମାନେ ଖୁବ୍ ଶୀଘ୍ର ଜାଣିପାରିଲେ ଯେ ଅସାଧାରଣ ଧ୍ୱଂସ ଲୀଳା ସାଧନ କରିପାରୁଥିବା ଅସ୍ତ୍ରଶସ୍ତ୍ରର ନିର୍ମାଣ ନୀତିଗତ ଭାବେ ସମ୍ଭବ । ଜର୍ମାନୀରେ ଥିବା ସେମାନଙ୍କର ବୈଜ୍ଞାନିକ ବନ୍ଧୁମାନଙ୍କର ଅଭୂତପୂର୍ବ ବୈଜ୍ଞାନିକ ଦକ୍ଷତାକୁ ମିଳୁଥିବା ଅଜସ୍ର ସମ୍ମାନ ପରିପ୍ରେକ୍ଷୀରେ ଆମେରିକାର ବରିଷ୍ଠ ପଦାର୍ଥ ବିଦ୍ୟାବିତ୍‌ମାନେ ନିୟୁକ୍ଲିଅର୍ ଫିସନ୍‌ର ପ୍ରଚଣ୍ଡ ମିଲିଟାରୀ ଦକ୍ଷତାକୁ ରାଷ୍ଟ୍ରପତି ଫ୍ରାଙ୍କଲିନ୍ ଡି. ରୁଜଭେଲ୍ଟଙ୍କ ଦୃଷ୍ଟି ଗୋଚରକୁ ଆଣିଲେ । ରାଷ୍ଟ୍ରପତି ଜାଣିନଥିଲେ ଯେ ନିୟୁକ୍ଲିଅର ଫିସନ୍ ମିଲିଟାରୀ କାର୍ଯ୍ୟ ପାଇଁ ବ୍ୟବହୃତ ହୋଇପାରିବ ନା ନାହିଁ । ନିୟୁକ୍ଲିଅର ଫିସନର ଆବିଷ୍କାରକୁ କିପରି ସଫଳଭାବେ ପରିପ୍ରୟୋଗ କରାଯାଇପାରିବ ସେ ବିଷୟରେ ତାଙ୍କର ଅବା ତାଙ୍କର ଅନ୍ଦର ମହଲର ସଦସ୍ୟମାନଙ୍କ ମଧ୍ୟ କୌଣସି ଜ୍ଞାନ ଓ ଧାରଣା ନଥିଲା । ଆମେରିକା ସରକାରଙ୍କ କୌଣସି ସଦସ୍ୟ ଅବା ଆମେରିକା ମିଲିଟାରୀର କୌଣସି ବ୍ୟକ୍ତି ବିଶେଷ ଏହି ଅଭୂତପୂର୍ବ ଆବିଷ୍କାରକୁ ଭିତ୍ତିକରି କିପରି ଅର୍ଥ ଉପାର୍ଜନ କରାଯାଇପାରିବ ସେ ନେଇ ଆଦୌ କୌଣସି ଚିନ୍ତା କରିନଥିଲେ ।

ଆମେରିକା ରାଷ୍ଟ୍ରପତିଙ୍କ ନଜରକୁ ନିୟୁକ୍ଲିଅର ଫିସନ୍ ସଂକ୍ରାନ୍ତୀୟ ଆବିଷ୍କାରକୁ ଆଣିସାରିଲା ପରେ ପଦାର୍ଥବିଦ୍ୟାବିତ୍‌ମାନଙ୍କୁ ଏ ନେଇ ଆମେରିକୀୟ ମାନଙ୍କର ମତାମତ ସଂଗ୍ରହ କରିବାକୁ ନିର୍ଦ୍ଦେଶ ଦିଆଗଲା । ୧୯୪୨ ମସିହା ସେପ୍ଟେମ୍ବର

ମାସରେ ମ୍ୟାନହାଟାନ ପ୍ରକଳ୍ପ (Manhattan Project) ର ଶୁଭାରମ୍ଭ ହେଲା ଏବଂ ୧୯୪୩ ମସିହାର ପ୍ରଥମ ଭାଗରେ ପଦାର୍ଥବିଦ୍ୟାବିତ୍‌ମାନେ ଲସ ଆଲାମୋସ (Los Alamos) ଠାରେ ଏକତ୍ରିତ ହେଲେ । ତିନିବର୍ଷରୁ କମ ସମୟ ମଧ୍ୟରେ ପରମାଣୁ ବୋମାର ଡିଜାଇନ ଓ ନିର୍ମାଣ ସମ୍ଭବପର ହେଲା ଯାହାକି ଦ୍ୱିତୀୟ ବିଶ୍ୱଯୁଦ୍ଧର ଯବନୀକା ପତନ କରାଇଥିଲା । ପରମାଣୁ ବୋମାର ନିର୍ମାଣ ପଦାର୍ଥ ବିଦ୍ୟାବିତ୍‌ମାନଙ୍କର କୁଶଳୀ କରିଗରୀପଣିଆର ଏକ ଜ୍ୱଳନ୍ତ ନିଦର୍ଶନ ରୂପେ ସାବ୍ୟସ୍ତ ହେଲା ।

ସମସ୍ତେ ଜାଣିଲେ ଯେ ପରମାଣୁ ବୋମା ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟାଇଲା । ଅଧିକାଂଶ ବ୍ୟକ୍ତି କୁହନ୍ତି ଯେ ଏମ.ଆଇ.ଟି (M.I.T.) ରେ ବିକାଶ ଲାଭ କରିଥିବା ର୍‍ୟାଡ଼ାର ସିଷ୍ଟମ୍‌ସ ହିଁ ପ୍ରକୃତରେ ଏ ଯୁଦ୍ଧ ଜିଣିଲା । ଉଭୟ ପରମାଣୁ ବୋମା ଓ ର୍‍ୟାଡ଼ାରର ବିକାଶ ପଦାର୍ଥବିଦ୍ୟାବିତ୍ ମାନଙ୍କର କାରିଗରୀ ଜ୍ଞାନ କୌଶଳର ହିଁ ଫଳ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ପରେ ପଦାର୍ଥବିଦ୍ୟାବିତ୍‌ମାନେ ଆମେରିକାରେ "ବୈଜ୍ଞାନିକ ମହାନାୟକ"ର ସମ୍ମାନ ଲାଭ କଲେ । ବିଶ୍ୱରେ ପାରମାଣବିକ ଯୁଗର ଶୁଭାରମ୍ଭ ହେଲା ଏବଂ ସତକଥାଟି ହେଲା ପରମାଣୁର ନିୟୁକ୍ଲିଅସକୁ କେବଳ ପଦାର୍ଥବିଦ୍ୟାବିତ୍‌ମାନେ ହିଁ ସଠିକ୍ ବୁଝିଥିଲେ । ଅନ୍ୟମାନଙ୍କଠୁଁ ଅଧିକ ପଦାର୍ଥବିଦ୍ୟାବିତ୍‌ମାନେ ହିଁ ନୂତନ ପାରମାଣବିକ ଯୁଗର ଆବିର୍ଭାବ ଓ ଏହାର ତାତ୍ପର୍ଯ୍ୟକୁ ହାଡ଼େ ହାଡ଼େ ବୁଝିଥିଲେ ଏବଂ ଉଭୟ ଶାନ୍ତି ଓ ଯୁଦ୍ଧପାଇଁ ପାରମାଣବିକ ଶକ୍ତିର ଅଫୁରନ୍ତ ଐଶ୍ୱର୍ଯ୍ୟ ସମ୍ବନ୍ଧରେ ମଧ୍ୟ ଦୃଢ଼ ନିଶ୍ଚିତ ଥିଲେ । ଯେହେତୁ ସେମାନେ ପରମାଣୁର ନାଭିମଣ୍ଡଳ "ନିୟୁକ୍ଲିଅସ୍"କୁ ଭଲଭାବେ ଚିହ୍ନିଥିଲେ ତେଣୁ ସେମାନଙ୍କର ଅସାଧାରଣ ଦକ୍ଷତା ଓ କର୍ମ କୁଶଳତା ଆମେରିକାର ମିଲିଟାରୀ ଦ୍ୱାରା ଆଦୃତ ହେଲା । ପରନ୍ତୁ ରାଷ୍ଟ୍ରର ନୀତି ନିର୍ଦ୍ଧାରଣକାରୀ (Policy Makers) ମାନେ ପଦାର୍ଥ ବିଦ୍ୟାବିତ୍‌ମାନଙ୍କୁ ଆଡ଼ ଆଖିରେ ଦେଖିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ସମାପ୍ତି କାଳରେ ଆମେରିକା ଜନମାନସରେ ଉଦ୍‌ଭାସିତ ହୋଇଥିବା ଅତ୍ୟନ୍ତ ପ୍ରଭାବଶାଳୀ ବିଶିଷ୍ଟ ପଦାର୍ଥବିଦ୍ୟାବିତ୍ ଜେ.ରବର୍ଟ ଓପେନହେଇମର (J. Robert Oppenheiner) ୧୯୪୫ ମସିହା ଅକ୍ଟୋବର ମାସ ୧୫ ତାରିଖରେ

ଆମେରିକା ରାଷ୍ଟ୍ରପତି ହ୍ୟାରୀ ଏସ୍. ଟ୍ରୁମ୍ୟାନ (Harry S. Truman) ଙ୍କୁ ସାକ୍ଷାତକଲେ । ଏହି ସାକ୍ଷାତକାର ଅତ୍ୟନ୍ତ ଦୁର୍ଭାଗ୍ୟଜନକ ଥିଲା । ଏହି ଅବସରରେ ଓପେନ ହେଇମର ପରମାଣୁ ବୋମାର ବିକାଶରେ ତାଙ୍କର ଭୂମିକାକୁ ନେଇ ଅତ୍ୟନ୍ତ କ୍ଷୋଭ ପ୍ରକାଶ କରିଥିଲେ । ଯେତେବେଳେ ଓପେନ ହେଇମର ରାଷ୍ଟ୍ରପତିଭବନ ଛାଡ଼ି ଚାଲିଆସିଲେ ସେତେବେଳେ ରାଷ୍ଟ୍ରପତି ଟ୍ରୁମ୍ୟାନ ଡିନ ଆଚେସନ୍ (Dean Acheson) ଙ୍କୁ କହିଲେ – "I do not want to see that son of a bitch in this office ever again" । ଅର୍ଥାତ୍ "ମୁଁ ଏପରି ଏକ ମାଈ କୁକୁରର ଛୁଆକୁ ଏଠାରେ଼ ଆଉ ଥରେ ହେଲେ ବି ଦେଖିବାକୁ ଚାହେଁନି" ।

ରାଷ୍ଟ୍ରପତି ଟ୍ରୁମ୍ୟାନଙ୍କ ସହ ବୈଜ୍ଞାନିକ ଓପେନ ହେଇମରଙ୍କ ବାର୍ତ୍ତାଳାପ ଓ ଆଲୋଚନା ଅଣ ଉପଦେଶମୂଳକ ଥିଲା ଏବଂ ସେ ରାଷ୍ଟ୍ରପତିଙ୍କୁ ଅତ୍ୟନ୍ତ ନିର୍ବୋଧ ଓ ବର୍ବରତାପୂର୍ଣ୍ଣ କଥା କହିଥିଲେ । ଫଳତଃ ଟ୍ରୁମ୍ୟାନ ରାଗ ଗରଗର ହୋଇ କଂପି ଉଠିବା ଏକ ସ୍ୱାଭାବିକ ଘଟଣା ଥିଲା । ଓପେନ ହେଇମର ନୁହନ୍ତି, ରାଷ୍ଟ୍ରପତି ଟ୍ରୁମ୍ୟାନ ହିଁ ଜାପାନର ହିରୋସିମା ଓ ନାଗାସାକି ଉପରେ ପରମାଣୁ ବୋମା ନିକ୍ଷେପ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ହେଲେ ଆମେରିକା ଏକ ନୂତନ ଯୁଗରେ ପାଦଥାପି ସାରିଥିଲା ଏବଂ ଟ୍ରୁମାନ ତାଙ୍କ ରାୟ ପ୍ରଦାନ ପାଇଁ ସମ୍ପୂର୍ଣ୍ଣ ଦାଇତ୍ୱବୋଧ ସହ କାର୍ଯ୍ୟ ସମ୍ପାଦନ କରିଥିଲେ । ସେ ଓପେନ ହେଇମରଙ୍କୁ ସମ୍ପୂର୍ଣ୍ଣ ରୂପେ ଉପେକ୍ଷା କରିଯାଇଥିଲେ ଯଦିଓ ଓପେନ ହେଇମର ତାଙ୍କର ସର୍ବଜନବିଦିତ ଜ୍ଞାନଗାରୀମା ପାଇଁ ପ୍ରଶଂସିତ, ଅଭିନନ୍ଦିତ ଓ ପରମ ପୂଜନୀୟ ଥିଲେ । ରାଷ୍ଟ୍ରପତି ଟ୍ରୁମ୍ୟାନ ଓପେନହେଇମରଙ୍କୁ ଉପେକ୍ଷା କରିଯାଇଥିଲେ ଯଦିଓ ଓପେନ ହେଇମର ଜଣେ ଧୂରୀଣ ପରମାଣୁ ବିଶେଷଜ୍ଞ ଭାବେ ବିଶ୍ୱ ପ୍ରସିଦ୍ଧ ଥିଲେ । ବୈଜ୍ଞାନିକ ସମାଜ ଓ ସର୍ବସାଧାରଣ ଜନତାଙ୍କ ଉପରେ ଓପେନ ହେଇମରଙ୍କ ଅଖଣ୍ଡ ପ୍ରଭାବ ଥିବା ସତ୍ତ୍ୱେ ମଧ୍ୟ ସେ ଟ୍ରୁମ୍ୟାନଙ୍କ ଦ୍ୱାରା ପ୍ରତ୍ୟାକ୍ଷାତ ହୋଇଥିଲେ ଓ ଟ୍ରୁମ୍ୟାନଙ୍କ ପାଖରେ ତାଙ୍କର କୌଣସି ଗୁରୁତ୍ୱ ନଥିଲା । ରାଷ୍ଟ୍ରପତି ଟ୍ରୁମାନ କେବଳ ଓପେନ ହେଇମରଙ୍କୁ ଯେ ଉପେକ୍ଷା କରିଥିଲେ ତା ନୁହେଁ ବରଂ ସେ ପଦାର୍ଥ ବିଦ୍ୟାବିତ୍‌ମାନଙ୍କୁ ମୋଟ ଉପରେ ଉପେକ୍ଷା କରିଥିଲେ ।

## ରୁଷର ପରମାଣୁ ବୋମା **(The Russian Bomb)**

ଏକ ପରମାଣୁ ବୋମାର ପ୍ରସ୍ତୁତି ପାଇଁ ସୋଭିଏତ ବୈଜ୍ଞାନିକ ଗୋଷ୍ଠୀଙ୍କ ଅଦମ୍ୟ ପ୍ରଚେଷ୍ଟା ପ୍ରମାଣ କରିଦେଲା ଯେ ରାଷ୍ଟ୍ରର ରାଜନୈତିକ ନେତୃବୃନ୍ଦଙ୍କ ସହ ପରମ ମଧୁମୟ ସମ୍ପର୍କ କିପରି ବହୁବିଧ ସୁଯୋଗ ଓ ସମ୍ଭାବନାର ଦ୍ୱାର ଉନ୍ମୋଚନ କରିଦେଇଥାଏ । ସୋଭିଏତ୍ ରୁଷ ଅଗଷ୍ଟ ୧୯୪୯ରେ ତାର ପ୍ରଥମ ପରମାଣୁ ବୋମାର ବିସ୍ଫୋରଣ କଲା । ଏହି ଗୁରୁତ୍ୱପୂର୍ଣ୍ଣ ଘଟଣାଟି ଆମେରିକାର ସିଭିଲିଆନ ଏବଂ ମିଲିଟାରୀ ନେତୃବୃନ୍ଦଙ୍କୁ ହତଚକିତ କରିଦେଇଥିଲା କିନ୍ତୁ ବୈଜ୍ଞାନିକ ଗୋଷ୍ଠୀଙ୍କ ଉପରେ ତାର କୌଣସି ପ୍ରଭାବ ପଡ଼ିନଥିଲା, କାରଣ ଆମେରିକାର ବୈଜ୍ଞାନିକ ଗୋଷ୍ଠୀ ଭଲଭାବେ ଜାଣିଥିଲେ ଓ ସେମାନେ ବାରମ୍ବାର ଭବିଷ୍ୟବାଣୀ କରିଥିଲେ ଯେ ସୋଭିଏତ ରୁଷ ପାଖରେ ପରମାଣୁ ବୋମା ଅଛି ଏବଂ ଟ୍ରିନିଟି ଟେଷ୍ଟର ୫ବର୍ଷ ଭିତରେ ସେମାନେ ତାହା ପ୍ରଦର୍ଶନ କରିବେ । ୧୯୫୭ ମସିହାରେ ସୋଭିଏତ ୟୁନିଅନ ସ୍ପୁଟ୍‌ନିକ ଲଞ୍ଚ କଲାବେଳେ ଆମେରିକା ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ପରାମର୍ଶଦାତା କମିଟିର ଚେୟାରମ୍ୟାନ ଥିବା ମିଷ୍ଟର ଆଇ.ଆଇ. ରବି (I.I. Rabi) ୧୯୮୬ ମସିହାରେ କୁହନ୍ତି ଯେ – The Soviets are better positioned to approach top management than we were. Soviet Scientists made direct approaches to Stalin. No one here had access to Roosevelt or Truman. ଅର୍ଥାତ୍ ସୋଭିଏତମାନଙ୍କର ସେମାନଙ୍କର ସର୍ବୋଚ୍ଚ ରାଷ୍ଟ୍ରୀୟ ନେତୃବୃନ୍ଦଙ୍କ ପାଖରେ ସିଧା ସଳଖ ପ୍ରବେଶ ଅଧିକାର ରହିଥିଲା ବେଳେ ଆମେରିକାରେ ଆମର ସେପରି କୌଣସି ବ୍ୟବସ୍ଥା ନାହିଁ । ସୋଭିଏତ୍ ବୈଜ୍ଞାନିକମାନେ ସେମାନଙ୍କର ରାଷ୍ଟ୍ରପତି ଷ୍ଟାଲିନ୍‌ଙ୍କୁ ମୁହାଁମୁହିଁ ଭେଟି ନିଜର ବକ୍ତବ୍ୟ ଉପସ୍ଥାପନ କରିପାରୁଥିଲେ । ଏଠାରେ କିନ୍ତୁ ଆମେରିକାରେ ରାଷ୍ଟ୍ରପତି ରୁଜଭେଲ୍ଟ କିମ୍ବା ଟ୍ରୁମ୍ୟାନଙ୍କୁ ସିଧାସଳଖ ଭେଟି ନିଜର ବକ୍ତବ୍ୟ ଉପସ୍ଥାପନ କରିବା ନିଶ୍ଚିତରୂପେ ଏକ ଅସମ୍ଭବ ବ୍ୟାପାର ଅଟେ ।

ରବିଙ୍କର ସ୍ମୃତି ଅର୍ଘ୍ୟ ନିଶ୍ଚିତ ରୂପେ ସତ୍ୟ ଉପରେ ହିଁ ଆଧାରିତ ଅଟେ । ସେପରି ଏକ ଜଟିଳ ସନ୍ଧିକ୍ଷଣରେ ମଧ ଟ୍ରୁମ୍ୟାନ ଆମେରିକୀୟ ବୈଜ୍ଞାନିକଙ୍କ ଦୃଷ୍ଟିକୋଣ ଓ ବିଚାରକୁ ସମ୍ମାନ ଦେଇନଥିଲେ ଏବଂ ବୈଜ୍ଞାନିକମାନଙ୍କୁ ସିଧାସଳଖ

ଆଡ଼େଇ ଯାଇଥିଲେ । ଅର୍ଥ ଲଗାଣକାରୀ ଲୁଇସ୍ ଷ୍ଟ୍ରାଉସ୍ (Lewis Strauss) କିନ୍ତୁ ରାଷ୍ଟ୍ରପତି ଟ୍ରୁମ୍ୟାନ ନୁହଁନ୍ତି, ଯେକି ଏବେ ଆଟମିକ ଏନର୍ଜି କମିଶନର ସାଧାରଣ ଉପଦେଷ୍ଟା କମିଟିର ଏକ ବୈଠକ ଡାକିଥିଲେ ଯାହାର ମୁଖ୍ୟ ଥିଲେ ଓପେନ ହେଇମର । ମୁଖ୍ୟତ ସୋଭିଏତ ରୁଷର ପାରମାଣବିକ ସଫଳ କାହାଣୀର ପ୍ରତ୍ୟୁତ୍ତରରେ ଆମେରିକାର ଦୃଷ୍ଟିକୋଣକୁ ଉପସ୍ଥାପନା କରିବା ଏହାର ମୁଖ୍ୟ ଆଭିମୁଖ୍ୟ ଥିଲା । ୧୯୪୯ ମସିହାର ପ୍ରାରମ୍ଭିକ ସମୟ ପ୍ରକୃତରେ ଏପରି ଏକ ସମୟ ଥିଲା ଯେତେବେଳେ କି ଜଣେ ଆମେରିକୀୟ ରାଷ୍ଟ୍ରପତି ନିଜ ରାଷ୍ଟ୍ରର ବୈଜ୍ଞାନିକ ନେତୃବୃନ୍ଦଙ୍କ ସହ କଥୋପକଥନ ଓ ବାର୍ତ୍ତାଳାପ କରି ନିଜକୁ ଅତ୍ୟନ୍ତ ଧନ୍ୟ ମଣିଥାନ୍ତେ ଯେଉଁମାନେ କି ଆମେରିକା ଓ ସୋଭିଏତ ରୁଷର ନିୟୁକ୍ଲିଅର ପ୍ରୋଗ୍ରାମ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଭାବେ ଅବଗତ ଥିଲେ ।

ସୋଭିଏତ୍ ରୁଷର ପାରମାଣବିକ ସଫଳ କାହାଣୀର ଜବାବରେ ଆମେରିକାର ତୁରନ୍ତ ପଦକ୍ଷେପ ଥିଲା ଫ୍ୟୁଜନ ବୋମାର ବିକାଶ । ପୁଣିଥରେ ରାଷ୍ଟ୍ରପତି ଟ୍ରୁମ୍ୟାନ ଏପରି ଏକ ମାରାତ୍ମକ ଆଣବିକ ଅସ୍ତ୍ରର ବିକାଶ କରାଯିବା ଉଚିତ୍ ହେବ କି ନାହିଁ ସେ ନେଇ ଅତ୍ୟନ୍ତ ସନ୍ଧିହାନ ଥିଲେ । ଏହି ଅସୀମ ଧ୍ୱଂସ ଶକ୍ତିକାରକ ପାରମାଣବିକ ଅସ୍ତ୍ରର ବିକାଶକୁ ନେଇ ସେ ପଦାର୍ଥବିଦ୍ୟାବିତ୍‌ମାନଙ୍କୁ ଏଡ଼େଇ ଯାଇଥିଲେ । ସେ ବୈଜ୍ଞାନିକମାନଙ୍କୁ କୌଣସି ପ୍ରଶ୍ନ ପଚାରିନଥିଲେ ଏବଂ ସାଧାରଣ ପରାମର୍ଶଦାତା କମିଟି (General Advisory Committee)ର ସର୍ବସମ୍ମତ ସୁପାରିଶକୁ ମଧ୍ୟ ଉପେକ୍ଷା କରିଥିଲେ ଯେକି ଫ୍ୟୁଜନ ବୋମାର ବିକାଶ ନ କରିବା ପାଇଁ କଠୋର ଉପଦେଶ ଦେଇଥିଲେ । ଟ୍ରୁମ୍ୟାନ କେବଳ ମାତ୍ର ଏକକ ଚିନ୍ତାଧାରା ସର୍ବସ୍ୱ ବ୍ୟକ୍ତି ବିଶେଷଙ୍କ କଥାକୁ ହିଁ କାନ ଡେରି ଶୁଣିଲେ ଯେଉଁମାନେ କି ଉଦ୍‌ଯାନ ବୋମାର ପ୍ରସ୍ତୁତି ପାଇଁ ଅତ୍ୟନ୍ତ ଆଗଭର ଥିଲେ । ଟ୍ରୁମ୍ୟାନ ଏବଂ ଅନ୍ୟାନ୍ୟ ରାଷ୍ଟ୍ରୀୟ ନୀତି ନିୟମ ନିର୍ଦ୍ଧାରଣକାରୀମାନେ ନିଶ୍ଚିତରୂପେ ଲାଭବାନ ହୋଇଥାନ୍ତେ ଯଦି ସେମାନେ ସେଭଳି ଜ୍ଞାନୀ ଗୁଣୀ ବ୍ୟକ୍ତି ବିଶେଷଙ୍କ ସହ ଏକ ଆଲୋଚନା ଓ କଥାବାର୍ତ୍ତାର ପର୍ବ ଆୟୋଜନ କରିଥାନ୍ତେ ଯେଉଁମାନେ କି ଫ୍ୟୁଜନ ମାରଣାସ୍ତ୍ର ସହ ଅବିଚ୍ଛେଦ୍ୟ ଭବେ ଜଡ଼ିତ ଥିବା ମହାବିଧ୍ୱଂସକାରୀ ଶକ୍ତି ସହ ଫ୍ୟାକ୍ଟର ୧୦୦୦୦୦୦ ର ପ୍ରୟୋଗ ବିଧି ସମ୍ବନ୍ଧରେ ସମ୍ପୂର୍ଣ୍ଣରୂପେ ଜ୍ଞାତ ଥାଆନ୍ତେ ।

କିନ୍ତୁ ଏପରି ଏକ ମିଟିଂ ନ ହେବା ହୁଏତ ବିଧିର ବିଧାନ ହିଁ ଥିଲା । ଏକ ଘୋଷଣା ମାଧ୍ୟମରେ ୧୯୫୦ ମସିହା ଜାନୁୟାରୀ ମାସ ୧୦ ତାରିଖରେ ଆଟମିକ ଏନର୍ଜି କମିଶନକୁ ପାରମାଣବିକ ଅସ୍ତ୍ରଶସ୍ତ୍ରାଦି କ୍ଷେତ୍ରରେ ନିଜର କାର୍ଯ୍ୟ ପରିସରର ବିକାଶ ସାଧନ କରି ଉଦ୍‌ଯାନ ବୋମାର ପ୍ରସ୍ତୁତି ପାଇଁ ରାଷ୍ଟ୍ରପତି ଟ୍ରୁମ୍ୟାନ ସ୍ପଷ୍ଟ ନିର୍ଦ୍ଦେଶ ଦେଲେ । ୧୯୫୭ ମସିହାରେ ଯେତେବେଳେ କି ସୋଭିଏତ୍ ରୁଷିଆ ସ୍ପୁଟ୍‌ନିକ ଲଞ୍ଚ କରିଥିଲା ସେତେବେଳେ ଆମେରିକା ରାଷ୍ଟ୍ରପତିଙ୍କୁ ବିଜ୍ଞାନ ପରାମର୍ଶଦାତା କମିଟିର ଅଧ୍ୟକ୍ଷ ଥିବା ପଦାର୍ଥବିଦ୍ୟାବିତ୍ I.I. Rabi କୁହନ୍ତି ଯେ – "ଘପ ଆଗରେ ମୁଣ୍ଡ ନୁଆଁଇ ଥିବାରୁ ମୁଁ ଟ୍ରୁମ୍ୟାନଙ୍କୁ କେବେ ବି କ୍ଷମା ଦେବି ନାହିଁ । ଟ୍ରୁମ୍ୟାନ ପ୍ରକୃତରେ ଠିକ୍ ଭାବେ ବୁଝିନଥିଲେ ଯେ ଘଟଣାଟି କଣ । ସେ ନିଜର ବୈଜ୍ଞାନିକମାନଙ୍କ ସହ ପରାମର୍ଶ କରିନଥିଲେ ଯେଉଁମାନେ କି ନିରପେକ୍ଷଭାବେ ନିଜର ମତାମତ ପ୍ରଦାନ କରିଥାନ୍ତେ ।"

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ ସମୟ ପର୍ଯ୍ୟାୟରେ ବୈଜ୍ଞାନିକମାନଙ୍କ ଅନ୍ତସ୍ୱର ଅତ୍ୟନ୍ତ କ୍ଷୀଣ ହୋଇଯାଇଥିଲା ଏପରିକି ସେମାନଙ୍କ ମଧ୍ୟରୁ କେତେକ ଉପଦେଷ୍ଟା କମିଟିମାନଙ୍କରେ ସଭ୍ୟଥାଇ ମଧ୍ୟ ପରିସ୍ଥିତିରେ ସେପରି କୌଣସି ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇନଥିଲା । ୧୯୪୮ ମସିହା ଅଗଷ୍ଟ ମାସରେ ଭାନ୍ନେଭାର ବୁଶ (Vannevar Bush) କୌଣସି ଏକ ଉପାୟ ମାଧ୍ୟମରେ ବିଜ୍ଞାନକୁ ଏପରି ଭାବେ ଗଢ଼ିତୋଳିବାକୁ ଚାହିଁଲେ ଯଦି ଭବିଷ୍ୟତରେ ରାଷ୍ଟ୍ର ସମ୍ମୁଖରେ ଏପରି ଆଉ ଏକ ଜାତୀୟ ଜରୁରୀ କାଳୀନ ପରିସ୍ଥିତି ଭୀମ ପରି ଆସି ଦଣ୍ଡାୟମାନ ହୁଏ ତେବେ ବିଜ୍ଞାନ ତାକୁ ନିଶ୍ଚିତ ରୂପେ ଠିକ୍ ଠିକ୍ ସମ୍ଭାଳି ନେବ । କିନ୍ତୁ ଘଟଣାଚକ୍ରର ପଟ୍ଟପରିବର୍ତ୍ତନରେ ସେପରି କିଛି ଉଲ୍ଲେଖନୀୟ ପାର୍ଥକ୍ୟ ପରିଦୃଷ୍ଟ ହେଲା ନାହିଁ ଏବଂ ୱାସିଂଟନ ଘଟଣା ପ୍ରବାହର ମନ୍ଥର ଗତିକୁ ଆଖି ପୁରେଇ ଦେଖିଲା । କାଳେ ସେମାନଙ୍କର ପ୍ରଭାବ, ପ୍ରଭୁତ୍ୱ ଓ ପ୍ରତିପତ୍ତିକୁ ତାହା ପାଣିଚିଆ କରିଦେବ ସେହି ଭୟରେ ପରିବର୍ତ୍ତନର ଧାରାରେ ବହୁ ଏଜେନ୍ସୀ ପ୍ରତିବନ୍ଧକ ସାଜିଲେ । ୧୯୫୧ ମସିହା ଏପ୍ରିଲ ମାସରେ ଟ୍ରୁମ୍ୟାନଙ୍କ ମାନସ ସନ୍ତାନ "ଫ୍ୟୁଜନ ବୋମା" (Fusion Bomb) ପ୍ରକଳ୍ପର ସଫଳ ରୂପାୟନ ପାଇଁ ନିର୍ଣ୍ଣୟ ନିଆଗଲା ଏବଂ ଆମେରିକାର

ରାଷ୍ଟ୍ରପତି ଏକ ବିଜ୍ଞାନ ପରାମର୍ଶଦାତା କମିଟି ଗଠନ କରିବା ପାଇଁ ଘୋଷଣା କଲେ, ଯାହାକି ଡିଫେନ୍ସ ମୋବିଲାଇଜେସନ୍‌ଙ୍କ କାର୍ଯ୍ୟାଳୟରେ କାର୍ଯ୍ୟକାରୀ ହେବା ପାଇଁ ମଧ୍ୟ ସ୍ଥିରିକୃତ ହେଲା । ପରନ୍ତୁ ରାଷ୍ଟ୍ରପତି ବିଜ୍ଞାନ ପରାମର୍ଶଦାତା କମିଟିର ଉପଦେଶ କେବେବି ମାଗିନଥିଲେ ଏବଂ ଏହାର ସଭ୍ୟମାନେ ପୁରାଦମରେ ସଂଘବଦ୍ଧ ଭାବେ ସେମାନଙ୍କର ଇସ୍ତଫାପତ୍ର ପ୍ରଦାନ କରିବାକୁ ଆଗଭର ହୋଇଆସିଲେ । ଆମେରିକା ତାର ମନପ୍ରାଣ କୋରିଆ ଯୁଦ୍ଧରେ ଲଗାଇ ଥିଲାବେଳେ ଟ୍ରୁମ୍ୟାନଙ୍କ କାର୍ଯ୍ୟକାଳ ମଧ୍ୟ ସରି ସରି ଆସୁଥିଲା । ଏଭଳି ଏକ ଜଟିଳ ପରିସ୍ଥିତିରେ ବିଜ୍ଞାନ ପରାମର୍ଶଦାତା କମିଟିର ସଭ୍ୟମାନେ ଅପେକ୍ଷା କରି ରହିବାକୁ ହିଁ ଶ୍ରେୟସ୍କର ମଣିଲେ କାଳେ ନବ ନିର୍ବାଚିତ ରାଷ୍ଟ୍ରପତି ଆଇଜେନ ହାୱାର ଭବିଷ୍ୟତରେ ସେମାନଙ୍କୁ ଉପଯୁକ୍ତ ଭାବେ ବିନିଯୋଗ କରିପାରିବେ ! ଘଟଣାକ୍ରମେ ସେମାନଙ୍କର ନିର୍ଣ୍ଣୟ ଯୁକ୍ତିଯୁକ୍ତ ବୋଲି ଶେଷରେ ସାବ୍ୟସ୍ତ ହେଲା ।

ଜାନୁୟାରୀ ୧୯୫୩ରେ ଆଇଜେନ ହାୱାର ଆମେରିକାରେ ରାଷ୍ଟ୍ରପତି ଆସନ ଅଳଂକୃତ କଲେ । ବର୍ଷ ପରେ ବର୍ଷ ଗଡ଼ି ଚାଲିଲା ହେଲେ ବୈଜ୍ଞାନିକ ପରାମର୍ଶଦାତା କମିଟିର ସଦସ୍ୟମାନଙ୍କ ପାଇଁ ଆଶାର କୌଣସି ଅଙ୍କୁରୋଦ୍‌ଗମ ହେଲା ଭଳି ପ୍ରତୀୟମାନ ହେଲାନାହିଁ । ମୌଳିକ ଗବେଷଣା ଯାହାକୁ ଆଧାରକରି ଦ୍ୱିତୀୟ ବିଶ୍ୱଯୁଦ୍ଧ ସମସ୍ତ ସଫଳତାର ସ୍ୱାଦ ଚାଖିଥିଲା ତାହା କ୍ରମଶଃ ଦିନକୁ ଦିନ ଦୁର୍ବଳ ହୋଇଚାଲିଲା । ୧୯୫୭ ମସିହାର ପ୍ରାରମ୍ଭିକ ପର୍ଯ୍ୟାୟରେ ମୌଳିକ ଗବେଷଣାକୁ ନେଇ ଆମେରିକାର ଦେଶରକ୍ଷା ସଚିବ ଚାର୍ଲସ୍ ଇ. ଉଇଲସନ (Charles E. Wilson) ଙ୍କ ଅତ୍ୟନ୍ତ ଲୋକପ୍ରିୟ ପ୍ରବାଦ – "Basic Research is that when you do not know what you are doing" । ଅର୍ଥାତ୍ ମୌଳିକ ଗବେଷଣା ହେଲା ସେଇଟା ଯେତେବେଳେ କି ଜଣେ ବୈଜ୍ଞାନିକ ନିଜେ ଜାଣେନା ଯେ ସେ କଣ ଗବେଷଣା କରୁଛି ବୋଲି । ଏଭଳି ପରିସ୍ଥିତିରେ ମୌଳିକ ଗବେଷଣା କ୍ଷେତ୍ରରେ ଆଇଜେନ ହାୱାର ୧୦ପ୍ରତିଶତ ଅର୍ଥରାଶି କାଟ କରିଦେଲେ । ଠିକ୍ ସେହି ସମୟରେ ଆମେରିକାର ବାୟୁସେନା ଓ ନୌସେନା ସେମାନଙ୍କର ୬୦୦ଟି ଗବେଷଣା ପ୍ରକଳ୍ପକୁ କାଟି ଉଡ଼େଇ ଦେବା ପାଇଁ ପ୍ରସ୍ତୁତ ହେଉଥିଲେ । ଆଇ.ଆର. ରବି ଏନେଇ ବଡ଼

ଚିହ୍ନିତ ଓ ବିବ୍ରତ ହୋଇ ପଡ଼ିଲେ ଏବଂ ଏ ସମସ୍ତ ଘଟଣାକୁ ନେଇ ହ୍ୱାଇଟ ହାଉସ ଅଭିମୁଖେ ଯାତ୍ରାକଲେ । ସେଠାରେ ସେ ରାଷ୍ଟ୍ରପତି ଆଇଜେନ ହାୱାରଙ୍କଠାରୁ ସମ୍ବେଦନାମୂଳକ ଆଶ୍ୱସ୍ତି ଲାଭ କଲେ କିନ୍ତୁ ଆଉ ମୌଳିକ ଗବେଷଣାରେ ମନ ନ ବଳେଇବାକୁ ତାଙ୍କୁ କଡ଼ା ତାଗିଦ ଓ ଉପଦେଶ ମିଳିଲା ।

## ତା'ପରେ ସ୍ପୁଟନିକର ଜନ୍ମ :-

ସୋଭିଏତ ରୁଷର ଏହି ୮୪ କିଲୋଗ୍ରାମ ଓଜନ ବିଶିଷ୍ଟ ସ୍ପୁଟନିକ ଉପଗ୍ରହ ଅଳ୍ପ ସମୟ ପାଇଁ ହେଲେ ମଧ୍ୟ ଆମେରିକାର ବୈଜ୍ଞାନିକମାନଙ୍କୁ ୱାସିଂଟନର କ୍ଷମତା ଅଳିନ୍ଦରେ ଆଣି ସଗର୍ବେ ଠିଆ କରେଇ ଦେଲା ଏବଂ ଆମେରିକାର ନୀତିନିୟମ ନିର୍ଦ୍ଧାରଣ ପ୍ରକ୍ରିୟାକୁ ପ୍ରଭାବିତ କରିବା ପାଇଁ ସେମାନଙ୍କ ସମ୍ମୁଖରେ ସମସ୍ତ ସୁଯୋଗ ଓ ସମ୍ଭାବନାର ସିଂହଦ୍ୱାର ମଧ୍ୟ ଉନ୍ମୁକ୍ତ କରିଦେଲା । ୧୯୬୮ ମସିହାରେ ଡାନିଏଲ ଗ୍ରିନବର୍ଗ (Daniel Greenberg) ଲେଖିଥିଲେ ଯେ :

"Until 1957 ... There was no demand from the Political side for science to maintain a Vigorous, Continuing Presence in Washington.... But, of Perhaps greater significance, there was virtually no initiative on the Part of scientific leadership to establish a clearly identified place for science in the policy making Councils ... In October 1957, The Soviets Orbited Sputnik, and Honeymoon fervor immediately returned to the romance between science & Government".

ଅର୍ଥାତ୍ "୧୯୫୭ ମସିହା ପର୍ଯ୍ୟନ୍ତ ୱାସିଂଟନରେ ବିଜ୍ଞାନ ଏକ ବଳିଷ୍ଠ, ତେଜସ୍ୱୀ ଓ ପ୍ରଚଣ୍ଡ ପ୍ରଭାବଶାଳୀ ଶକ୍ତି ହୋଇ ଜନମାନସରେ ତାର ଉପସ୍ଥିତିକୁ କ୍ରମାଗତଭାବେ ସାବ୍ୟସ୍ତ କରୁ ଏ ନେଇ ଆମେରିକାର ରାଜନୈତିକ ପଣ୍ଡିତମାନେ ଆଦୌ କୌଣସି ଦାବୀ ଉପସ୍ଥାପନ କରୁନଥିଲେ । ଅପର ପକ୍ଷରେ ଏହା ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ଯେ ଆମେରିକାର ନୀତିନିୟମ ନିର୍ଦ୍ଧାରଣ କାଉନ୍‌ସିଲ୍ ମାନଙ୍କରେ ବିଜ୍ଞାନ ପାଇଁ ସେପରି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥିରିକୃତ ଆସନ ପ୍ରଦାନ କରାଯିବା ସମ୍ପର୍କରେ ଆମେରିକାର ବୈଜ୍ଞାନିକ ନେତୃବୃନ୍ଦଙ୍କ ତରଫରୁ ମଧ୍ୟ କୌଣସି ପଦକ୍ଷେପ

ନିଆଯାଉନଥିଲା । ୧୯୫୭ ମସିହା ଅକ୍ଟୋବର ମାସରେ ସୋଭିଏତ୍ ରୁଷ ମହାକାଶକୁ ସ୍ପୁଟନିକ ପ୍ରେରଣ କଲା ଯାହାର ପ୍ରଭାବରେ ବିଜ୍ଞାନ ଓ ଆମେରିକା ସରକାରଙ୍କ ମଧ୍ୟରେ ଚାଲିଥିବା ରୋମାନ୍ସ ବା ପ୍ରେମପର୍ବ ତତ୍କ୍ଷଣାତ୍ ବାସର ରାତିର ପ୍ରବଳ ଉତ୍ସାହ, ଅନୁରାଗ ଓ ଉନ୍ମାଦନାର ରୂପରେଖନେଲା ।"

ବିଜ୍ଞାନ ଓ ଆମେରିକା ସରକାରଙ୍କ ମଧ୍ୟରେ ଚାଲିଥିବା ରୋମାନ୍ସ ବା ପ୍ରେମ ପର୍ବ ଆଇ.ଆଇ. ରବି (I.I. Rabi) ଏବଂ ଡିଉଇଟ୍ ଡାଭିଡ୍ ଆଇଜେନ ହାୱାର (Dwight David Eisenhower) ମଧ୍ୟରେ ଥିବା ମଧୁର ବ୍ୟକ୍ତିଗତ ସମ୍ପର୍କ ଦ୍ୱାରା ବହୁଳ ଭାବେ ପ୍ରଭାବିତ ହୋଇଥିଲା । ଆଇଜେନ ହାୱାର, ଟ୍ରୁମ୍ୟାନଙ୍କ ପରି ନଥିଲେ ଅବା ରବି ମଧ୍ୟ ଓପନହେଇମରଙ୍କ ପରି ନଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଇଜେନ ହାୱାର ଯେତେବେଳେ କଲମ୍ବିଆ ବିଶ୍ୱବିଦ୍ୟାଳୟର ସଭାପତି ଥିଲେ ସେତେବେଳେ ରବି ଓ ଆଇଜେନହାୱାର ମଧ୍ୟରେ ପ୍ରଥମଥର ପାଇଁ ସାକ୍ଷାତ ହୋଇଥିଲା । ଯେତେବେଳେ ଆଇଜେନହାୱାରଙ୍କ ପାଖରେ ରବିଙ୍କୁ ଚିହ୍ନେଇ ଦିଆଗଲା ସେତେବେଳେ ଆଇଜେନ ହାୱାର କହିଥିଲେ "I am always very happy to see one of the employees of the University" ଅର୍ଥାତ୍ ମୁଁ ବିଶ୍ୱବିଦ୍ୟାଳୟର ଜଣେ କର୍ମଚାରୀଙ୍କୁ ଦେଖିଲେ ସଦା ସର୍ବଦା ଅତ୍ୟନ୍ତ ଖୁସୀ ହୋଇଥାଏ । ଯାହାର ଉତ୍ତରରେ ରବି କହିଥିଲେ - "Mr President, the faculty are not the employees of the University, They are the University" ଅର୍ଥାତ୍ ହେ ରାଷ୍ଟ୍ରପତି ମହୋଦୟ ! ଫାକଲ୍ଟିମାନେ ବିଶ୍ୱବିଦ୍ୟାଳୟର କର୍ମଚାରୀ ନୁହଁନ୍ତି, ସେଇମାନେ ହିଁ ହେଲେ ନିଜେ ବିଶ୍ୱବିଦ୍ୟାଳୟ । ଆଇଜେନ ହାୱାର ରବିଙ୍କର ତୀବ୍ର ପ୍ରତ୍ୟୁପନ୍ନମତିତାରେ ଅତ୍ୟନ୍ତ ଖୁସୀ ହୋଇଥିଲେ ଏବଂ ସେହି ଦିନଠାରୁ ସେମାନଙ୍କର ସମ୍ପର୍କ ମଧୁରରୁ ମଧୁରତମ ହୋଇଥିଲା ।

ଆମେରିକାର ଅଧିବାସୀମାନେ ସୋଭିଏତ୍ ରୁଷର ସ୍ପୁଟନିକ ଲଞ୍ଚିଂକୁ ନେଇ ଅତ୍ୟନ୍ତ ବିଚଳିତ ଓ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଥିଲେ । ବହୁଲୋକ ଏହି ଉପସଂହାରରେ ଉପନୀତ ହୋଇଗଲେ ଯେ ମହାକାଶ ଏବେ ସୋଭିଏତ ରୁଷର ନିୟନ୍ତ୍ରଣକୁ ଆସିଗଲା । ପ୍ରଖ୍ୟାତ ଶ୍ରମିକ ନେତା ୱାଲଟର ରିୟୁଥର (Water Reuther) ସୋଭିଏତ ରୁଷର

ଏହି ସଫଳତାକୁ "A Bloodless Pearl Harbor" ବୋଲି ଆଖ୍ୟା ଦେଇଥିଲେ । ଏଡଓ୍ୱାର୍ଡ ଟେଲ୍ଲର (Edward Teller) ଆଉ ଦୁଇ ପାହୁଣ୍ଡ ଆଗେଇ ଯାଇ ଟେଲିଭିଜନରେ କହିଲେ ଯେ, – "The United States has lost a battle more important & greater than Pearl Harbor" ଅର୍ଥାତ୍ ଯୁକ୍ତରାଷ୍ଟ୍ର ଆମେରିକା ପାର୍ଲ ହାର୍ବର ଠାରୁ ଏକ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ବୃହତ୍ତର ସଂଗ୍ରାମରେ ଆଜି ପରାଜିତ ହୋଇଗଲା । ସ୍ଫୁଟନିକ ଲଞ୍ଚର ଅଳ୍ପ କିଛି ମାସ ପୂର୍ବରୁ ସୋଭିଏତ ରୁଷର ରାଷ୍ଟ୍ରପତି ନିକିତା କ୍ରୁଷ୍ଚେଭ "We will bury you" ଅର୍ଥାତ୍ "ଆମେ ତୁମକୁ ସମାଧି ଦେଇ ଦେବୁ" ଶୀର୍ଷକ ତାଙ୍କର ଲୋମହର୍ଷଣକାରୀ ଅଖ୍ୟାତ ଅଗ୍ନିବର୍ଷୀ ଅଭିଭାଷଣ ପ୍ରଦାନ କରିଥିଲେ ଏବଂ ଏଥିରୁ ଶୀତଳ ଯୁଦ୍ଧର ଉତ୍ତାପ ସ୍ପଷ୍ଟ ଅନୁଭୂତ ହୋଇଥିଲା । ଜେମ୍ସ କିଲ୍ଲିଆନ (James Killian) ଯେ କି ଆଇଜେନହାଓ୍ୱାଙ୍କ ବୈଜ୍ଞାନିକ ଉପଦେଷ୍ଟା ହେବାପାଇଁ ମନୋନୀତ ହୋଇଥିଲେ ସ୍ଫୁଟନିକ ଲଞ୍ଚ ପରିପ୍ରେକ୍ଷୀରେ ଆମେରିକାର ଜନସାଧାରଣଙ୍କ ମନରେ ଉଦ୍ରେକ ହୋଇଥିବା ସଂଶୟ ଓ ଅହେତୁକ ମନୋଭାବର ପରିପ୍ରକାଶ କରି କୁହନ୍ତି ଯେ ଏହା ଏକ "Wind blown forest fire" ଅର୍ଥାତ୍ ଏହା ପ୍ରଖର ବେଗଯୁକ୍ତ ବାୟୁଦ୍ୱାରା ସଂଚାଳିତ ବାଡ଼ାଗ୍ନି ସଦୃଶ ଥିଲା । ଲୋକମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଯେ ସୋଭିଏତ୍ ୟୁନିଅନ ପରି ପୂର୍ଣ୍ଣ ଆଜ୍ଞାନୁବର୍ତ୍ତିତା ଦାବୀ କରୁଥିବା ଏକ ରାଷ୍ଟ୍ରରେ ବିଜ୍ଞାନର ଆଚରଣ ବ୍ୟବହାର ଏକ ମୁକ୍ତ ରାଷ୍ଟ୍ରରେ ବିଜ୍ଞାନର ଆଚରଣ ବ୍ୟବହାର ଠାରୁ କୌଣସି ଗୁଣରେ ଶ୍ରେଷ୍ଠତା ପ୍ରତିପାଦନ କରୁଛି କି ?

ଆଇଜେନ୍‌ହାଓ୍ୱାର ସେଭଳି ଏକ ବ୍ୟକ୍ତି ନଥିଲେ ଯେ କି ତାଙ୍କ ଅନ୍ତର୍ନିହିତ ଭାବନା ଓ ଆବେଗର ପ୍ରଦର୍ଶନ କରିବେ । ତାଙ୍କର ପ୍ରଶାନ୍ତ ବାହ୍ୟ ରୂପରେଖ ଅବଲୋକନ କଲେ ଯେ କେହି ବ୍ୟକ୍ତି ଆଶ୍ଚର୍ଯ୍ୟ ହେବ ଯେ ରାଷ୍ଟ୍ରପତି କଣ ସତରେ ସ୍ଫୁଟନିକର ଗୁରୁତ୍ୱ ଉପଲବ୍ଧି କରିଛନ୍ତି ? ସବୁ ଦିଗରୁ ଆସୁଥିବା ଉପଦେଶ ପରିପ୍ରେକ୍ଷୀରେ ତାଙ୍କ ଉପରେ ଚାପର ମାତ୍ରା ବୃଦ୍ଧି ଘଟିଲା । ସେ ଅନ୍ୟମାନଙ୍କ ପରି ମଧ୍ୟ ହୃଦୟଙ୍ଗମ କଲେ ଯେ ଏହା କେବଳ ସ୍ଫୁଟନିକ ନୁହେଁ ଯାହାକି ଗୁରୁତ୍ୱପୂର୍ଣ୍ଣ ବରଂ ସ୍ଫୁଟନିକ କଣ ସୂଚିତ କରୁଛି ଯାହାକି ଅବ୍ୟକ୍ତ, ଅବିଦିତ ବା ଅଜଣା ରହିଯାଉଛି । ୮୪ କିଲୋଗ୍ରାମ ଓଜନ ବିଶିଷ୍ଟ ଏକ ଉପଗ୍ରହକୁ ପୃଥିବୀର କକ୍ଷପଥକୁ ଲଞ୍ଚ କରିବା ପ୍ରମାଣ କରୁଛି ଯେ ସୋଭିଏତ୍ SS-6 ଏକ ପ୍ରବଳ ପରାକ୍ରମଶାଳୀ ରକେଟ ଅଟେ ଯାହାକି ପଶ୍ଚିମ

ୟୁରୋପ ଏବଂ ସମ୍ଭବତଃ ତା'ଠାରୁ ଦୂରଦୂରାନ୍ତରକୁ ମଧ୍ୟ ଅସ୍ତ୍ରଶସ୍ତ୍ରାଦିର ଲଞ୍ଚ୍ ସଫଳଭାବେ କରାଯାଇ ପାରିବ ।

ସ୍ପୁଟନିକ ପ୍ରକ୍ଷେପଣର ଦୁଇମାସ ପରେ ଆମେରିକା ଦୁଇ କିଲୋଗ୍ରାମ ଓଜନ ବିଶିଷ୍ଟ ଏକ ବସ୍ତୁ (Object) କୁ ଏକ ଭାନଗାର୍ଡ୍ ରକେଟ ସହାୟତାରେ ଲଞ୍ଚ୍ କରିବାକୁ ଚେଷ୍ଟାକଲା । ଲଞ୍ଚପ୍ୟାଡ଼ରେ ହିଁ ରକେଟଟିର ବିସ୍ଫୋରଣ ହୋଇଗଲା । ଆଇଜେନହାୱାର ଏକ ଅସୁନ୍ଦର ଓ ଲଜ୍ଜାକର ପରିସ୍ଥିତିରେ ପଡ଼ିଗଲେ । ସେ ସବୁକଥା ଜାଣି ମଧ୍ୟ ମୁହଁ ଖୋଲି କିଛି କହିପାରୁ ନଥିଲେ । ଏକ ପକ୍ଷରେ ସେ ଜାଣିଥିଲେ ଯେ ଆମେରିକାର ଉପଗ୍ରହ କାର୍ଯ୍ୟକ୍ରମ ଆନ୍ତର୍ଜାତିକ ଜିଓ-ଫିଜିକାଲ ବର୍ଷର ଅଂଶ ବିଶେଷ ଏବଂ ଏହାର ପରିଦର୍ଶନ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଅଟେ । ଅପରପକ୍ଷରେ ଆମେରିକାର ବାଲିଷ୍ଟିକ ମିଶାଇଲ କାର୍ଯ୍ୟକ୍ରମ ଉପଗ୍ରହ କାର୍ଯ୍ୟକ୍ରମ ଠାରୁ ଅଲଗା ଭାବେ ପରିଚାଳିତ ହେଉଥିଲା ଏବଂ ଏହା ଅତ୍ୟନ୍ତ ଗୋପନୀୟ ଥିଲା । ଆଇଜେନହାୱାର ଜାଣିଥିଲେ ଯେ ଏହି ଦୁଇଟି କାର୍ଯ୍ୟକ୍ରମକୁ ଗୋଟିଏ କାର୍ଯ୍ୟକ୍ରମରେ ସମ୍ମିଶ୍ରମ କରାଯାଇ ପାରିଥାନ୍ତା ଏବଂ ଫଳ ସ୍ୱରୂପ ସ୍ପୁଟନିକର ଲଞ୍ଚ୍ ପୂର୍ବରୁ ଆମେରିକା ଏକ-ଉପଗ୍ରହ ମହାକାଶକୁ ଲଞ୍ଚ୍‌କରି ପାରିଥାଆନ୍ତା । କିନ୍ତୁ ରାଷ୍ଟ୍ରପତିଙ୍କ ଜ୍ଞାନର ପରିସୀମା ସର୍ବସାଧାରଣ ଜନତାଙ୍କ ଜ୍ଞାନର ପରିସୀମା ଠାରୁ ଭିନ୍ନ ଏବଂ ଯାହା ବିଧି ନିର୍ଦ୍ଦିଷ୍ଟ ଶେଷରେ ତାହାହିଁ ହେଲା । ମହାକାଶକୁ ଉପଗ୍ରହ ଲଞ୍ଚ କରିବାରେ ସୋଭିଏତ ରୁଷ ବିଶ୍ୱର ପ୍ରଥମ ରାଷ୍ଟ୍ରର ମାନ୍ୟତା ଲାଭ କଲା ଓ ତାହାର ଏହି ଯୋଗ୍ୟତା ସେ ଆମେରିକା ଠାରୁ ଯୋର୍ କରି ଛଡ଼େଇ ନେଲା ।

ଏହି ସମୟରେ ଆମେରିକାର ଇଣ୍ଟେଲିଜେନ୍ସ ଏଜେନ୍ସୀ ଏବଂ ମିଲିଟାରୀ ଭୟଙ୍କର ଜରୁରୀକାଳୀନ ଗୁପ୍ତ ସୂଚନାମାନ ବାହାରେ ପରିପ୍ରକାଶ କରିଦେଉଥିଲେ । ସେମାନେ ମଧ୍ୟ ସ୍ପୁଟନିକ ଲଞ୍ଚ୍ ପରିପ୍ରେକ୍ଷୀରେ ଆମେରିକା ପ୍ରତି ସୋଭିଏତ ରୁଷର ଭୟ ପ୍ରଦର୍ଶନକୁ ଅତିରଞ୍ଜିତ କରିଦେଉଥିଲେ । ଆମେରିକା ରାଷ୍ଟ୍ରପତିଙ୍କ ବିଜ୍ଞାନ ପରାମର୍ଶଦାତା କମିଟି ଦ୍ୱାରା ପ୍ରସ୍ତୁତ ହୋଇଥିବା ଗାଇଥର ରିପୋର୍ଟ (Gaither Report) ଯାହାକି ଆମେରିକାର ଇଣ୍ଟେଲିଜେନ୍ସ ଉପରେ ପର୍ଯ୍ୟବେସିତ ଥିଲା ଏବଂ ଯାହାକି ସ୍ପୁଟନିକ ଲଞ୍ଚ୍‌ର ଏକ ମାସ ପରେ ରାଷ୍ଟ୍ରପତି ଆଇଜେନହାୱାରଙ୍କୁ ଉପସ୍ଥାପନ

କରାଯାଇଥିଲା ତହିଁରେ ଉପସଂହାର କରାଯାଇଥିଲା ଯେ ସୋଭିଏତ ରୁଷ ଆମେରିକାକୁ ହୁଏତ ଖଣ୍ଡ ବିଖଣ୍ଡ କରିଦେବ । ଯେହେତୁ ଆଇଜେନ ହାୱାର ଜାଣିଥିଲେ ଯେ ଆମେରିକାର ଇଣ୍ଟେଲିଜେନ୍ସ ତ୍ରୁଟି ଯୁକ୍ତ ଅଟେ ସେ ଜାଣିଶୁଣି ସ୍ପୁଟନିକର ଗୁରୁତ୍ୱକୁ ଏତେଟା ପ୍ରାଧାନ୍ୟ ଦେଇନଥିଲେ ଏବଂ ଉଭୟ ଦେଶ ମଧ୍ୟରେ ଥିବା ତଥାକଥିତ ମିଶାଇଲ ଦକ୍ଷତାକୁ ନେଇ ଅନୁଭୂତ ହେଉଥିବା ବ୍ୟବଧାନକୁ ମଧ୍ୟ ସେ ଏଡ଼େଇ ଯାଇଥିଲେ । ଏହା ଏକ ଆକସ୍ମିକ ଭୟ ଓ କୌଶଳପୂର୍ଣ୍ଣ ଚାଲବାଜି ବୋଲି ସେ ଦୃଢ଼ ନିଶ୍ଚିନ୍ତ ଥିଲେ । "ହେ ଈଶ୍ୱର ! ତୁମେ ଏ ରାଷ୍ଟ୍ରକୁ ରକ୍ଷାକର" ବୋଲି ସେତେବେଳେ ଆଇଜେନହାୱାର ତାଙ୍କ ଅଭିବ୍ୟକ୍ତି ପ୍ରକାଶ କରିଥିଲେ ଏବଂ ସେ ପୁନଶ୍ଚ କହିଥିଲେ ଯେ ଆମେରିକାର ରାଷ୍ଟ୍ରପତି ନିଜ ରାଷ୍ଟ୍ରର ମିଲିଟାରୀ ଶକ୍ତି ସମ୍ପର୍କରେ ସେତେଟା ଅବଗତ ନୁହଁନ୍ତି ଯେତେଟା ମୁଁ ନିଜେ ଜଣେ ବ୍ୟକ୍ତି ହିସାବରେ ଅବଗତ ଅଛି ।

ପରବର୍ତ୍ତି ସମୟରେ ୧୯୭୦ ମସିହାରେ ନିକିତା କ୍ରୁସ୍‌ଚେଭ ତାଙ୍କ ଆତ୍ମଜୀବନୀର ସ୍ମୃତି ଦର୍ପଣରେ ଲେଖିଥିଲେ ଯେ ସ୍ପୁଟନିକ ଲଞ୍ଚ ସମୟରେ ସୋଭିଏତ ରୁଷ ଉଭୟ ୱାରହେଡ୍ ଓ ମିଶାଇଲ କାର୍ଯ୍ୟକ୍ରମ କ୍ଷେତ୍ରରେ ଆମେରିକା ଠାରୁ କାହିଁ କେତେ ପଛରେ ପଡ଼ିଥିଲା । ସେତେବେଳେ ଆମେରିକା ସୋଭିଏତ ରୁଷର ହାତ ପାହାନ୍ତାର ବହୁ ଉଚ୍ଚରେ ଅଧିଷ୍ଠିତ ଥିଲା । ୧୯୫୭ ମସିହାରେ ଏବଂ ନିକଟ ଅତୀତର ସମସାମୟୀକ ସମୟରେ ମଧ୍ୟ ଆମେରିକାର ଇଣ୍ଟେଲିଜେନ୍ସ ଏଜେନ୍ସୀ ଆମେରିକାର ବିପକ୍ଷ ରାଷ୍ଟ୍ର ସୋଭିଏତ ରୁଷର ପ୍ରଚଣ୍ଡ ଗୁଣାବଳୀ ବର୍ଣ୍ଣନା କରିଥିଲେ ଯାହାକି ସୋଭିଏତ ରୁଷ ମଧ୍ୟ ନିଜ ରାଷ୍ଟ୍ରର ଗୁଣାବଳୀ ଏଭଳି ଭାବେ ବର୍ଣ୍ଣନା କରିନଥିବ ।

ଯେତେବେଳେ ପୃଥିବୀର କକ୍ଷପଥରେ ସ୍ପୁଟନିକ ଶୀର୍ଷ ଦେଶରେ ପ୍ରଦକ୍ଷିଣ କରୁଥିଲା ସେତେବେଳେ ଆଇଜେନ ହାୱାରଙ୍କ ଉପରେ ପ୍ରବଳରୁ ପ୍ରବଳତର ଚାପ ପଡୁଥିଲା ଏନେଇ କୌଣସି ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ । ଏକ ନିନ୍ଦନୀୟ "ମିଶାଇଲ ବ୍ୟବଧାନ" (Missile Gap) ଧିରେ ଧିରେ ଏକ "ଗ୍ରହଣୀୟ ପଦ" ଭାବେ ମୁଣ୍ଡ ଟେକି ଠିଆ ହେବାକୁ ଲାଗିଲା ଏବଂ ପ୍ରତ୍ୟେକ ମିଲିଟାରୀ ସର୍ଭିସ ନିଜ ନିଜର ମିଶାଇଲ କାର୍ଯ୍ୟକ୍ରମ ପାଇଁ ଅଦମ୍ୟ ଚେଷ୍ଟା କରିବାକୁ ଲାଗିଲେ । ଆଇଜେନ

ହାଓ୍ୱାର କିଛି ପଦକ୍ଷେପ ନେବାକୁ ଚାହିଁଲେ କିନ୍ତୁ ତାଙ୍କର ଦରକାର ଥିଲା ସୂଚନା । ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ପରାମର୍ଶଦାତା କିଲିଆନଙ୍କ ପରେ ଏହି ଆସନରେ ଅଧିଷ୍ଠିତ ହୋଇଥିବା ପ୍ରବୀଣ ରସାୟନବିତ୍ ଜର୍ଜ କିସ୍ତିଆକୋସ୍କାଇ (George Kistiakowsky) କୁହନ୍ତି ଯେ - "ଏହା ଯୁକ୍ତିଯୁକ୍ତ ଯେ ଆଇଜେନହାଓ୍ୱାର ରାଷ୍ଟ୍ରର ବୈଜ୍ଞାନିକମାନଙ୍କୁ ଏକ ଅତ୍ୟନ୍ତ ଶୃଙ୍ଖଳିତ ଓ ସଂଗଠିତ ବୃତ୍ତିଧାରୀ ବ୍ୟକ୍ତି ବିଶେଷ ଭାବେ ବିବେଚିତ କରି ତାଙ୍କ ଆଡ଼କୁ ନିଜର ଦୃଷ୍ଟି ନିବଦ୍ଧ କରିବା ଉଚିତ୍ । ସେମାନେ ସେମାନଙ୍କର ଉପଦେଶକୁ ଅଯାଚିତ ଭାବେ ଦେବାକୁ ଚାହିଁଥାନ୍ତି, ସେମାନେ ମଧ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ସୁବିଧା ବା ଲାଭ ରଖି ନିଜର ବ୍ୟବହାର ପ୍ରଦର୍ଶନ କରିନଥାନ୍ତି, ସେମାନେ ମଧ୍ୟ ସେପରି କୌଣସି ନିର୍ଦ୍ଦିଷ୍ଟ ନିର୍ବାଚନ ମଣ୍ଡଳୀ ଭିତ୍ତିକ ଚିନ୍ତାଧାରାର ଶିକାର ହୋଇନଥାନ୍ତି । ସେମାନେ ଜନସାଧାରଣମାନଙ୍କୁ ତାଙ୍କର ବିଜ୍ଞତା ଓ ପ୍ରଜ୍ଞା ଦ୍ୱାରା ପ୍ରଭାବିତ କରିବା ସଂଗେ ସଂଗେ ସେମାନଙ୍କର ବିଶ୍ୱାସ ଭାଜନ ମଧ୍ୟ ହୋଇଥାନ୍ତି ଏବଂ ସର୍ବୋପରି ବୈଜ୍ଞନିକମାନଙ୍କ ପାଖରେ ଯେ କୌଣସି ସମସ୍ୟାର ସରଳ ବୈଷୟିକ ସମାଧାନର ସୂତ୍ର ରହିଥିବାରୁ ସେମାନେ ଦକ୍ଷତାପୂର୍ଣ୍ଣ, ସରଳ ଓ ଠିକଣା ସମାଧାନର ରାସ୍ତାଟିଏ ଖୋଜି ବାହାର କରିବାରେ ବେଶ୍ ପାରଙ୍ଗମ ହୋଇଥାନ୍ତି ।"

ଆଇଜେନ ହାଓ୍ୱାର ତାଙ୍କ ବୈଜ୍ଞାନିକ ପରାମର୍ଶଦାତା କମିଟିର ଏକ ମିଟିଂ ଡାକିଲେ । ଏହା ଏକ ଖ୍ୟାତି ସମ୍ପନ୍ନ ଗ୍ରୁପ ଥିଲା ଏବଂ ଆଇ. ଆଇ. ରବି ଏହାର ଅଧ୍ୟକ୍ଷ ଥିଲେ । ୧୯୫୭ ମସିହା ଅକ୍ଟୋବର ମାସ ୧୫ ତାରିଖ ଦିନ ବୈଜ୍ଞାନିକମାନେ ରାଷ୍ଟ୍ରପତିଙ୍କୁ ଭେଟିଲେ । ରାଷ୍ଟ୍ରପତିଙ୍କ ସହିତ ତାଙ୍କର ଦୁଇଜଣ ସହକାରୀ କର୍ମଚାରୀ ଜେନେରାଲ ରବର୍ଟ କଟଲର (Robert Cutler) ଓ ଜେନେରାଲ ଆଣ୍ଡ୍ରିୟୁ ଗୁଡ୍ ପାଷ୍ଟର (Andrew Goodpaster) ମଧ୍ୟ ଉପସ୍ଥିତ ଥାଆନ୍ତି । ପରାମର୍ଶଦାତା କମିଟିର ସଦସ୍ୟମାନେ ହେଲେ –

- I.I. Rabi (Chairman), Columbia University
- Lloyd V. Berkner, President, Associated Universities
- Hans A. Bethe, Cornell University
- Detlev W. Bronk, President, National Academy of Sciences

- David Z. Beckler, Assistant to Bronk
- James B. Fisk, Executive Vice President, Bell Laboratories
- Caryl P. Haskins, President, Carnegie Institution of Washington
- Alber G. Hill, MIT
- James R. Killian Jr, President, MIT
- Edwin H. Land, President, Polaroid
- Herbert Scoville Jr, Asst. Director, CIA
- Alan T. Waterman, Director, NSF
- Jerome B. Wiesner, MIT
- Jerrold R. Zacharias, MIT
- General Robert Cutler, aide to President Eisenhower
- General Andrew J. Goodpaster (meeting secnesary), aide to President Eisenhower.

ଏହି ସମ୍ମିଳନୀ ଅସାଧାରଣ ଓ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଥିଲା । ଆଇଜେନ୍‌ହାୱାରଙ୍କ ଦୂତାବାସରେ ଦୀର୍ଘଦିନ ଧରି ବିଶେଷଜ୍ଞ କର୍ମଚାରୀ ଥିବା ମିଷ୍ଟର ଗୁଡ୍‌ପାଷ୍ଟର ଏହି ସମ୍ମିଳନୀର ମୁଖ୍ୟ ପୁରୋଧା ଥିଲେ । ଆଇଜେନ ହାୱାର ସମ୍ମିଳନୀ ଉନ୍ମୋଚନ କରି ତାଙ୍କ ଅଭିଭାଷଣରେ କହିଲେ ଯେ କମିଟିର ସଦସ୍ୟମାନଙ୍କର ମନର କଥା ମୁଁ ଜାଣିବାକୁ ଚାହୁଁଛି ଏବଂ ସେମାନଙ୍କର ପ୍ରସ୍ତାବ ମଧ୍ୟ ମୁଁ ଆହ୍ୱାନ କରୁଛି । ସେ ସଦସ୍ୟମାନଙ୍କ ଠାରୁ ଜାଣିବାକୁ ଚାହିଁଲେ ଯେ ଆମେରିକୀୟ ବିଜ୍ଞାନ କଣ ସତରେ ହାତଛଡ଼ା ହୋଇ ଦୂରକୁ ଦୂରକୁ ଦ୍ରୁତ ଧାବମାନ ହେଉଛି ? ମିଷ୍ଟର ରବି ଉତ୍ତରରେ କହିଲେ ଯେ ଆମେରିକା ହାତରେ କିଛିଟା ସୁବିଧା ସୁଯୋଗ ରହିଛି । ପରନ୍ତୁ ସୋଭିଏତମାନେ ପ୍ରଚଣ୍ଡ ସମ୍ବେଗ ଓ ଗତିଶୀଳତା ଉପାର୍ଜନ କରିଛନ୍ତି ଏବଂ ଆମେ ବଳିଷ୍ଠ କାର୍ଯ୍ୟପନ୍ଥା ଅନୁସରଣ ନକଲେ ସେମାନେ ଆମକୁ ଖୁବ୍‌ଶୀଘ୍ର ଅତିକ୍ରମ କରି ଆଗକୁ ମାଡ଼ିଯିବେ, ଯେପରିକି ଆମେ ୨୦ ରୁ ୩୦ ବର୍ଷ ଭିତରେ ୟୁରୋପ ସହ ପ୍ରତିଯୋଗିତା କରି କାନ୍ଧରେ କାନ୍ଧ ମିଳେଇ ପାରିଲେ ଓ ପଶ୍ଚିମ ୟୁରୋପକୁ କାହିଁ କେତେ ପଛରେ ପକେଇ ଦେଲେ ।

ମିଷ୍ଟର ରବି ତାପରେ ଏଡ଼ୱଇନ ଲ୍ୟାଣ୍ଡଙ୍କୁ ନିଜର ମତାମତ ଉପସ୍ଥାପନା କରିବା ପାଇଁ ଆମନ୍ତ୍ରଣ କଲେ ଏବଂ ସେ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ନିଜର ଚିନ୍ତାଧାରା ପରିପ୍ରକାଶ କରି କହିଲେ ଯେ ଆମେରିକାକୁ ବିଜ୍ଞାନଠାରୁ ବହୁତ କିଛି ଆହରଣ କରିବାର ଅଛି । ବିଜ୍ଞାନ ଆମେରିକାକୁ ତାର ଦାନ ପ୍ରଦାନ କଲା ପୂର୍ବରୁ ବିଜ୍ଞାନ ଆମେରିକାର ରାଷ୍ଟ୍ରପତିଙ୍କୁ ତାର ଅତି ନିଜର ଓ ଆପଣାର କରିବାକୁ ଚାହେଁ । ସୋଭିଏତ୍‌ମାନେ ଏବେ ଅତ୍ୟନ୍ତ ଦକ୍ଷତା ସମ୍ପନ୍ନ ଓ ଅଗ୍ରଣୀ ଭୂମିକାରେ ପହଞ୍ଚି ଯାଇଛନ୍ତି ଏବଂ ସେମାନଙ୍କର ମାନସିକ ସ୍ତର (frame-of-mind) ଅତ୍ୟନ୍ତ ଉର୍ବର ଓ ଉଚ୍ଚକୋଟୀର । ସେମାନେ ବିଜ୍ଞାନକୁ ଜୀବନର ଧାରା ଓ ଏକ ଅତ୍ୟାବଶ୍ୟକୀୟ ଅସ୍ତ୍ର ଭାବେ ବିବେଚନା କରନ୍ତି । ସେମାନେ ସେମାନଙ୍କର ତରୁଣ ଯୁବଗୋଷ୍ଠୀଙ୍କୁ ବିଜ୍ଞାନକୁ ଉପଭୋଗ କରିବା ପାଇଁ ଶିକ୍ଷା ପ୍ରଦାନ କରୁଛନ୍ତି । ଆଶ୍ଚର୍ଯ୍ୟଜନକ ଭାବରେ ଆମେରିକାରେ ଆମେ ଭବିଷ୍ୟତ ରାଷ୍ଟ୍ରର ନବନିର୍ମାଣ ଯଜ୍ଞରେ ଆହୁତୀ ଦେଉନାହୁଁ ବରଂ ସବୁ କ୍ଷେତ୍ରରେ ପ୍ରଚୁର ଉତ୍ପାଦନ ଉପରେ ଆମେ ଗୁରୁତ୍ୱ ପ୍ରଦାନ କରି ଚାଲିଛୁ । ଉତ୍ପାଦନର ଶୀଖର ଦେଶରେ ଆମେ ପହଞ୍ଚି ଯାଇଛୁ । ଏବେ ସମୟ ଆସିଛି ରାଷ୍ଟ୍ରପତି ମହୋଦୟ ଭବିଷ୍ୟତ ଆମେରିକାର ନବ ନିର୍ମାଣ ପାଇଁ ରାଷ୍ଟ୍ରବାସୀଙ୍କୁ ଆହ୍ୱାନ ଦିଅନ୍ତୁ ଏବଂ ସମସ୍ତ ଦେଶବାସୀଙ୍କୁ ପ୍ରଚଣ୍ଡଭାବେ ଜାଗୃତ କରାନ୍ତୁ । ବିଶେଷ କରି ତରୁଣ ଆମେରିକୀୟ ଯୁବଗୋଷ୍ଠୀ ଯେପରି ବୈଜ୍ଞାନିକ ଉନ୍ମାଦନାରେ ନାଚି ଉଠନ୍ତୁ ତାହା ଆମର ଦେଖିବାର କଥା । ବୈଜ୍ଞାନିକ ଚମତ୍କାରୀତା ଓ ଦୁଃସାହସିକତାକୁ ଆମର ଯୁବଗୋଷ୍ଠୀ ବରଣ କରିନେଲେ ଭବିଷ୍ୟତ ନିଶ୍ଚିତ ରୂପେ ଶୁଭଙ୍କର ଓ ମଙ୍ଗଳମୟ ହେବ ।

ଏହାର ଉତ୍ତରରେ ରାଷ୍ଟ୍ରପତି ଆଇଜେନ୍‌ହାୱାର କହିଲେ ସେ ନିଶ୍ଚିତ ରୂପେ ଏ ନେଇ ସାହାଯ୍ୟ କରିପାରିବେ । ସେ ବିଜ୍ଞାନ ପ୍ରତି ଏକ ପ୍ରଚଣ୍ଡ ରାଷ୍ଟ୍ରୀୟ ମନୋଭାବ ଓ ଉଦ୍ଦାମତା ସୃଷ୍ଟିପାଇଁ ସବୁମନ୍ତେ ପ୍ରୟାସ କରିବେ ଯେପରି କି ବିଭିନ୍ନ ପ୍ରକାର କ୍ରୀଡ଼ା ଓ ବ୍ୟାୟାମ ପ୍ରତି ଏବେ ନାନାବିଧ ପଦକ୍ଷେପ ନିଆଯାଉଛି । ଏପରି କାର୍ଯ୍ୟକ୍ରମ ପାଇଁ ସେ ସମସ୍ତଙ୍କ ସହଯୋଗ କାମନା କରିଥିଲେ ।

ମିଷ୍ଟର ରବି ତାଙ୍କର ଅଭିଭାଷଣ ଜାରି ରଖି କହିଲେ ଯେ ରାଷ୍ଟ୍ରପତିଙ୍କ ପାଖକୁ ଆସୁଥିବା ବହୁ ରାଷ୍ଟ୍ରୀୟ ନୀତିନିୟମ ନିର୍ଦ୍ଧାରଣ ସଂକ୍ରାନ୍ତୀୟ ବିଷୟବସ୍ତୁ ଭିତରେ

ବିଜ୍ଞାନ ଏକ ବୃହତ୍ତର ଅଂଶ ବିଶେଷ ଭାବେ ପ୍ରାୟତଃ ରହିଥାଏ ଯାହାକି କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ପାଇଁ ଆଗକୁ ପଥ ଉନ୍ମୋଚନ କରିଥାଏ । ଆମେରିକା ରାଷ୍ଟ୍ରପତିଙ୍କର ଜଣେ ବୈଜ୍ଞାନିକ ଉପଦେଷ୍ଟା ରୁହନ୍ତୁ ବୋଲି ମିଷ୍ଟର ରବି ତାଙ୍କ ବକ୍ତବ୍ୟରେ ଦୃଢ଼ ଦାବୀ ଉପସ୍ଥାପନା କରିଥିଲେ ।

ଆଇଜେନ ହାୱାର ନିଜର ସ୍ୱିକୃତୀ ପ୍ରଦାନ କରି କହିଲେ ଯେ, ଏହା ଏକ ଉତ୍ତମ କଥା ଯେ ଆମେରିକା ରାଷ୍ଟ୍ରପତିଙ୍କର ଜଣେ ବୈଜ୍ଞାନିକ ଉପଦେଷ୍ଟା ରୁହନ୍ତୁ । ମିଷ୍ଟର କିଲ୍ଲିଆନ କଥାଟିକୁ ଟିକେ ଆଗକୁ ବଢ଼େଇ ନେଇ କହିଲେ ଯେ ବୈଜ୍ଞାନିକ ଉପଦେଷ୍ଟାଙ୍କ ସହ ଗୋଟିଏ ବୈଜ୍ଞାନିକ ଉପଦେଷ୍ଟା କମିଟି ମଧ୍ୟ ରହୁ ଯେ କି ବୈଜ୍ଞାନିକ ଉପଦେଷ୍ଟାଙ୍କୁ ସବୁମନ୍ତେ ସାହାଯ୍ୟ କରିବେ । ରାଷ୍ଟ୍ରପତି ମହୋଦୟ ଏ କଥାରେ ଏକମତ ହେଲେ । ମିଷ୍ଟର କିଲ୍ଲିଆନ ପୁନଶ୍ଚ କହିଲେ ଯେ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମକୁ ରାଷ୍ଟ୍ରୀୟ ପ୍ରଗତିର କେନ୍ଦ୍ରବିନ୍ଦୁକୁ ଅଣାଯିବା ଉଚିତ୍ । ଅର୍ଥ ଅପେକ୍ଷା ନେତୃତ୍ୱ ହିଁ ଆଜିର ମୁଖ୍ୟ ଆହ୍ୱାନ ଓ ଆବଶ୍ୟକତା ବୋଲି ମିଷ୍ଟର କିଲ୍ଲିଆନ ଦୃଢ଼ କଣ୍ଠରେ ଘୋଷଣା କଲେ ।

## ସିଧାସଳଖ ପ୍ରବେଶ ଅଧିକାର :

ସେହି ଅକ୍ଟୋବର ବୈଠକରେ ହ୍ୱାଇଟ ହାଉସ୍‌ରେ ଏକ ନୂତନ ପଦବୀ ଓ ଏକ ନୂତନ କମିଟିର କାର୍ଯ୍ୟକାରୀତାର ପାଇଁ ଆଧାରଶିଳା ପଡ଼ିଥିଲା ଯାହାରକି ରାଷ୍ଟ୍ରପତିଙ୍କ ପାଖରେ ଅବାଧ ଓ ସିଧାସଳଖ ପ୍ରବେଶ ଅଧିକାର ରହିବ । ୧୯୫୭ ମସିହା ନଭେମ୍ବର ୭ ତାରିଖ ଦିନ ମିଷ୍ଟର କିଲ୍ଲିଆନ ଆମେରିକା ରାଷ୍ଟ୍ରପତିଙ୍କ ପ୍ରଥମ ବୈଜ୍ଞାନିକ ଉପଦେଷ୍ଟା ଭାବେ ଅବସ୍ଥାପିତ ହେଲେ ଏବଂ ୧୯୫୭ ମସିହା ଡିସେମ୍ବର ମାସ ୧ ତାରିଖ ସୁଦ୍ଧା ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି ଗଠିତ ହେଲା । ୧୯୫୭ ମସିହା ନଭେମ୍ବର ମାସ ୭ ତାରିଖ ଦିନ ଆଇଜେନ ହାୱାର "ବିଜ୍ଞାନ ଓ ଦେଶରକ୍ଷା" ଉପରେ ଏକ ଜାତୀୟ ଅଭିଭାଷଣ ପ୍ରଦାନ କଲେ । ଏହି ଅଭିଭାଷଣରେ ସେ ଅକ୍ଟୋବର ୧୫ ତାରିଖରେ ଅନୁଷ୍ଠିତ ହୋଇଥିବା ଗୁରୁତ୍ୱପୂର୍ଣ୍ଣ ବୈଠକର ବିବରଣୀ ଏବଂ ତତ୍ ସଂକ୍ରାନ୍ତୀୟ ସିଦ୍ଧାନ୍ତ ଉପରେ ଆଲୋକପାତ କରିଥିଲେ ।

ବୈଜ୍ଞାନିକ ହ୍ୟାନ୍ସ ବେଥେ ସେହି ଐତିହାସିକ ଅକ୍ଟୋବର ୧୫ ତାରିଖ ବୈଠକର ଅବିସ୍ମରଣୀୟ ବିବରଣୀର ସ୍ମୃତି ଚାରଣ କରି କୁହନ୍ତି ଯେ "ସେହି ଏକ ଘଣ୍ଟାର ବୈଠକ ମୋର ନିଶ୍ଚିତ ରୂପେ ଆଜୀବନ ମନେ ରହିବ । ସେହି ଘଣ୍ଟାକ ମଧ୍ୟରେ ଆମେ ରାଷ୍ଟ୍ରପତି ଆଇଜେନହାୱାରଙ୍କୁ ଏକ ଶକ୍ତିଶାଳୀ ବୈଜ୍ଞାନିକ ଉପଦେଷ୍ଟା କମିଟିର ଆବଶ୍ୟକତା ସମ୍ବନ୍ଧରେ ଦୃଢ଼ ଅବଗତ କରାଇଥିଲୁ । "ବୈଜ୍ଞାନିକ ଉପଦେଷ୍ଟା କମିଟି" ଏହି ତିନୋଟି ଶବ୍ଦ ପୂର୍ବରୁ ଆମେ "ରାଷ୍ଟ୍ରପତି"ଙ୍କ ଶବ୍ଦଟିକୁ ଯୋଗ କରି କମିଟିକୁ "ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି" ବୋଲି ପରିଗଣିତ କଲୁ । ଏହା ଏକ ଅବିସ୍ମରଣୀୟ ମୁହୂର୍ତ୍ତ ଥିଲା । ମିଷ୍ଟର ଆଇ.ଆଇ. ରବି ଆମର ମୁଖପାତ୍ର ଥିଲେ । ମିଷ୍ଟର ରବି "ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି" ଗଠନ ସଂକ୍ରାନ୍ତୀୟ କେସ୍‌ଟିକୁ ଆଇଜେନ ହାୱାରଙ୍କ ପାଖରେ ଏପରି ସୁନ୍ଦର ଓ ଚମତ୍କାର ଭାବେ ଉପସ୍ଥାପନ କଲେ ଯେ, ରାଷ୍ଟ୍ରପତି ମହୋଦୟ ତାହା ଓ ତତ୍‌କ୍ଷଣାତ୍ ଅତ୍ୟନ୍ତ ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବେ ବୁଝି ପାରିଲେ । ଏହା ମୋ ପାଇଁ ଏକ ଅବିସ୍ମରଣୀୟ ମୁହୂର୍ତ୍ତ ଥିଲା ଯାହାକି ଆଇଜେନ ହାୱାରଙ୍କ ପ୍ରତି ମୋର ଦୃଷ୍ଟିକୋଣକୁ ସମ୍ପୂର୍ଣ୍ଣ ଭାବେ ବଦଳାଇ ଦେଇଥିଲା । ମୁଁ ଲକ୍ଷ୍ୟକଲି ଯେ ଏ ନେଇ ସେ ଅତ୍ୟନ୍ତ ବ୍ୟଗ୍ର ଅଛନ୍ତି ଏବଂ ଆମେ ବୈଜ୍ଞାନିକ ଗୋଷ୍ଠୀ ପ୍ରକୃତରେ ତାଙ୍କ ଠାରୁ କଣ ଚାହୁଁଛୁ ତାହା ମଧ୍ୟ ସେ ସମ୍ପୂର୍ଣ୍ଣ ଭାବେ ଅବଗତ ଅଛନ୍ତି ଏବଂ ତଦନୁଯାୟୀ ଆବଶ୍ୟକୀୟ ପଦକ୍ଷେପ ମଧ୍ୟ ନେଉଛନ୍ତି । ଆଇଜେନ ହାୱାର ମିଟିଂ ଶେଷରେ ତାଙ୍କ ଘନିଷ୍ଠ ସହଯୋଗୀଙ୍କୁ ଆଦେଶ ପ୍ରଦାନ କରି କହିଲେ ଯେ "ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି" ଯେପରି ଖୁବଶୀଘ୍ର ଗଠିତ ହୁଏ ସେଥିପ୍ରତି ତୁମେ ଚେଷ୍ଟିତ ରୁହ ।

ସ୍ପୁଟନିକ ବୈଜ୍ଞାନିକମାନଙ୍କ ପାଇଁ ନୂତନ ଦ୍ୱାର ଉନ୍ମୁକ୍ତ କରିଦେଲା । ୧୯୬୧ ମସିହାରେ ଦେଶରକ୍ଷା ବିଭାଗର ସଚିବ ପଦରୁ ତାଙ୍କର କାର୍ଯ୍ୟକାଳ ପରିସମାପ୍ତି ପରେ ଥମାସ୍ ଗେଟ୍ସ (Thomas Gates) କୁହନ୍ତି ଯେ - ହଠାତ୍ ଆମେରିକାରେ ବୈଜ୍ଞାନିକମାନେ ରାତାରାତି ରାଷ୍ଟ୍ରର ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ବିଶେଷ ଭାବେ ପରିଗଣିତ ହେବାକୁ ଲାଗିଲେ । ମିଲିଟାରୀ ବ୍ୟାପାର ସଂକ୍ରାନ୍ତରେ ବିଶ୍ୱର ମାନଚିତ୍ରରେ ସମ୍ପୂର୍ଣ୍ଣ ଭାବେ ପରିବର୍ତ୍ତନ ଘଟିଲା ଏବଂ ତତ୍ ସଂଗେ ସଂଗେ ବୈଦେଶିକ ନୀତିରେ ମଧ୍ୟ ପରିବର୍ତ୍ତନ ଦେଖାଦେଲା ।"

ପଲିସି ବା ନୀତିନିୟମ ସଂକ୍ରାନ୍ତୀୟ ମୁଦ୍ଧା ଯାହା ଉପରେ କି ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ପରାମର୍ଶଦାତା କମିଟିକୁ ସର୍ବ ପ୍ରଥମେ ବିବେଚନା କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା ତାହା ଥିଲା ବାୟୁ ମଣ୍ଡଳୀୟ ପାରମାଣବିକ ପରୀକ୍ଷା ନିରୀକ୍ଷାକୁ କଡ଼ାକଡ଼ି ଭାବେ ବନ୍ଦ କରିବା । ୧୯୫୫ ମସିହାର ମଧ୍ୟ ଭାଗରେ ଆଇଜେନହାଓ୍ୱାର ପରମାଣୁ ବୋମାର ପରୀକ୍ଷା ନିରୀକ୍ଷା ଉପରେ ସମ୍ପୂର୍ଣ୍ଣ ଭାବେ ଲଗାମ ଦେବାକୁ ମିଷ୍ଟର ଷ୍ଟ୍ରଉସ (Strauss) ଙ୍କ ପାଖରେ ନିଜର ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ । କାହିଁକି ଆଉ ଅଧିକ ବୋମାର ଆବଶ୍ୟକତା ହେଉଛି ସେ ନେଇ ଆଇଜେନହାଓ୍ୱାର ଅତ୍ୟନ୍ତ ସନ୍ଦିହାନ ଥିଲେ । ଜୁନ ୧୯୫୫ରେ ଆଇଜେନହାଓ୍ୱାର ବିଶିଷ୍ଟ ବୈଜ୍ଞାନିକ ମିଷ୍ଟର ଷ୍ଟ୍ରଉସ, ଟେଲ୍ଲର ଏବଂ ଆର୍ଣ୍ଣେଷ୍ଟ ଲରେନ୍ସଙ୍କ ସହ ଏକାଠି ମିଳିତ ହେଲେ । ଏହି ତିନିଜଣ ସମସ୍ତେ ପରମାଣୁ ବୋମାର ପରୀକ୍ଷା ନିରୀକ୍ଷା ଉପରେ ନିଶେଧାଦେଶ ଜାରି ନହେବା ସପକ୍ଷରେ ହିଁ ମତବ୍ୟକ୍ତ କରିଥିଲେ । ଉଦାହରଣ ସ୍ୱରୂପ ମିଷ୍ଟର ଟେଲ୍ଲର କହିଲେ ଯେ ପାରମାଣବିକ ପରୀକ୍ଷା ନିରୀକ୍ଷା ଉପରେ ସ୍ଥଗିତାଦେଶ ଜାରି ହେବା ମାନବ ସଭ୍ୟତା ବିରୁଦ୍ଧରେ ଏକ ବର୍ବର ଓ ଜଘନ୍ୟ କାଣ୍ଡ ବୋଲି ପରିଗଣିତ ହେବ ।

୧୯୫୭ ମସିହା ବେଳକୁ ଆଇଜେନହାଓ୍ୱାର ପାରମାଣିକ ପରୀକ୍ଷା ନିରୀକ୍ଷା ବନ୍ଦ ଚୁକ୍ତି (Test Ban Treaty) କୁ ନିଜର ରାଷ୍ଟ୍ରପତି କାର୍ଯ୍ୟକାଳ ପରିସମାପ୍ତି ହେବା ପୂର୍ବରୁ କାର୍ଯ୍ୟକାରୀ କରିବାକୁ ଚାହୁଁଥିଲେ । ମିଷ୍ଟର କିଲ୍ଲିଆନ ଉଲ୍ଲେଖ କରିଥିଲେ ଯେ ୧୯୫୭ ମସିହାର ଶେଷ ବେଳକୁ ଏବଂ ୧୯୫୮ ମସିହାର ପ୍ରାରମ୍ଭିକ ପର୍ଯ୍ୟାୟରେ ରାଷ୍ଟ୍ରପତି ଆଇଜେନହାଓ୍ୱାରଙ୍କ ଉପରେ ଉଭୟ ଦେଶ ଓ ବିଦେଶରୁ ଆମେରିକୀୟ ପରମାଣୁ ବୋମାର ପରୀକ୍ଷା ନିରୀକ୍ଷା ଉପରେ ଶକ୍ତ ପ୍ରତିବନ୍ଧକ ଲାଗୁ କରିବା ପାଇଁ ପ୍ରବଳ ଚାପ ପଡୁଥିଲା ଯାହାକୁ କି ପ୍ରତିହତ କରିବା ଏକ ଦୁରୂହ ବ୍ୟାପାର ଥିଲା । ପାରମାଣବିକ ପରୀକ୍ଷା ନିରୀକ୍ଷାରୁ ନିର୍ଗତ ହେଉଥିବା ରେଡ଼ିଓ ଆକ୍ଟିଭ ପଦାର୍ଥ ଗୁଡ଼ିକ ବସ୍ତୁତ ଏକ ମସ୍ତବଡ଼ ଜାତୀୟ ସମସ୍ୟା ଭାବେ ସମ୍ମୁଖରେ ଆସି ଦଣ୍ଡାୟମାନ ହେବାକୁ ଲାଗିଲା । ଫଳତଃ ଗାଇଥର ରିପୋର୍ଟ (Gaither Report) କଡ଼ାକଡ଼ି ଭାବେ ରେଡ଼ିଓ ଆକ୍ଟିଭ ଯୁକ୍ତ ଏହି ବର୍ଯ୍ୟବସ୍ତୁର ଉତ୍ତମ ସୁରକ୍ଷା ଓ ସଂରକ୍ଷଣ ଉପରେ ମାତ୍ରାଧିକ ଗୁରୁତ୍ୱ ପ୍ରଦାନ କଲା । ୧୯୫୮ ମସିହା ଜାନୁଆରୀ ମାସ ୬ ତାରିଖ ଦିନ ଆମେରିକାର

ସେକ୍ରେଟାରୀ – ଅଫ୍ – ଷ୍ଟେଟ ଜନ୍ ଫୋଷ୍ଟର ଡ୍ୟୁଲେସ (John Foster Dulles) ରାଷ୍ଟ୍ରପତି ଆଇଜେହାଓ୍ୱାରଙ୍କ ଜାତୀୟ ସୁରକ୍ଷା ପରିଷଦକୁ ଅବଗତ କରାଇଲେ ଯେ ବାୟୁ ମଣ୍ଡଳରେ ପାରମାଣବିକ ଟେଷ୍ଟ ଜନିତ ରେଡ଼ିଓଆକ୍ଟିଭ ବିକିରଣ ପ୍ରକ୍ରିୟାରେ ଯୁକ୍ତରାଷ୍ଟ୍ର ଆମେରିକା ମିଳିତ ଜାତିସଂଘର ଏକ ବିରୋଧି ପକ୍ଷ ଭାବେ ପରିଗଣିତ ହେଲା ।

ଯଦିଓ ବାୟୁମଣ୍ଡଳରେ ପାରମାଣବିକ ଟେଷ୍ଟ ସଂଗଠନ କରିବା କ୍ଷେତ୍ରରେ ପୂର୍ଣ୍ଣଚ୍ଛେଦ ପକାଇବା ପାଇଁ ଦିନକୁ ଦିନ ଜନମତ ପ୍ରବଳରୁ ପ୍ରବଳତର ହେବାରେ ଲାଗିଲା ହେଲେ ପାରମାଣବିକ ଟେଷ୍ଟର ସମ୍ପୂର୍ଣ୍ଣ ବନ୍ଦ କରିବା ପାଇଁ ହୋଇଥିବା ରାଜିନାମା (Nuclear Test Ban Treaty) ବିରୁଦ୍ଧରେ ଜନମତ ମଧ୍ୟ କମ୍ ନଥିଲା । ମୌଳିକ ଭାବେ ଷ୍ଟ୍ରଉସ ପାରମାଣବିକ ପରୀକ୍ଷା ନିରୀକ୍ଷାର ବନ୍ଦ କରିବା ସପକ୍ଷରେ ହେଉଥିବା କୌଣସି ଚିନ୍ତାଧାରାର ସର୍ବଦା ବିରୋଧାଚରଣ କରୁଥିଲେ । ଷ୍ଟ୍ରଉସ ୧୯୫୪ ମସିହାର ଓପେନହ୍ୟାମର ସୁରକ୍ଷା ଶୁଣାଣିର ମୁଖ୍ୟ ବିନ୍ଧାଣି ଥିଲେ ଏବଂ ସେ ଏହାକୁ ଏଭଳି ଭାବେ ଡିଜାଇନ କରିଥିଲେ ଯାହାକି ଓପେନହ୍ୟାମରକୁ ନିଶ୍ଚିତ ମୃତ୍ୟୁ ମୁଖକୁ ଠେଲିଦେବ । ଏବେ ସେ ପାରମାଣବିକ ଶକ୍ତି ସଂକ୍ରାନ୍ତୀୟ ଯୁଗ୍ମ କମିଟିର ଅଧ୍ୟକ୍ଷ ଅଛନ୍ତି । ଟେଷ୍ଟବ୍ୟାନ ଚିନ୍ତାଧାରାକୁ ଜଏଣ୍ଟ ଚିଫ୍-ଅଫ୍-ଷ୍ଟାଫ୍ ମଧ୍ୟ ଦୃଢ଼ ବିରୋଧ କରୁଥିଲେ । ପ୍ରଭାବଶାଳୀ ବୈଜ୍ଞାନିକ ମିଷ୍ଟର ଟେଲର ଏବଂ ମିଷ୍ଟର ଲରେନ୍ସ ମଧ୍ୟ “ଟେଷ୍ଟବ୍ୟାନ” ବିରୁଦ୍ଧରେ ନିଜର ମୁହଁ ଖୋଲିଲେ ।

ଏହି ବାଦାନୁବାଦ ଭିତରକୁ ମିଷ୍ଟର କିଲ୍ଲିଆନ ଏବଂ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟିର ସଭ୍ୟମାନେ ମଧ୍ୟ ପଶି ଆସିଲେ । ବୈଜ୍ଞାନିକମାନଙ୍କ ପାଇଁ ଏକ ସୁବିଧା ଥିଲା । ୧୯୫୮ ମସିହାର ପ୍ରାରମ୍ଭିକ କାଳରେ ରାଷ୍ଟ୍ରପତି ଆଇଜେନହାଓ୍ୱାର ଅଣବୈଜ୍ଞାନିକ ମିଷ୍ଟର ଷ୍ଟ୍ରଉସ ଏବଂ ଅନ୍ୟମାନେ ଯେଉଁମାନେ କି ପାରମାଣବିକ ଟେଷ୍ଟବ୍ୟାନ୍‌ର ବିରୁଦ୍ଧାଚରଣ କରୁଥିଲେ ସେମାନଙ୍କ ଅପେକ୍ଷା ମିଷ୍ଟର କିଲ୍ଲିଆନ ଏବଂ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟିର ସଦସ୍ୟମାନଙ୍କ ଦ୍ୱାରା ବହୁଳ ଭାବେ ପ୍ରଭାବିତ ହେଉଥିଲେ । ମିଷ୍ଟର କିଲ୍ଲିଆନ, ମିଷ୍ଟର ରବି ଏବଂ ମିଷ୍ଟର ବେଥେ ଆଇଜେନହାଓ୍ୱାରଙ୍କୁ ସେମାନଙ୍କର ଚିନ୍ତାଧାରା ସମ୍ବନ୍ଧରେ ଦୃଢ଼ ଅବଗତ କରାଇଲେ

ଯେ ସୋଭିଏତ ରୁଷ ଅପେକ୍ଷା ଆମେରିକାର ପାରମାଣବିକ ଅସ୍ତ୍ରଶସ୍ତ୍ରାଦି ଅଧିକ ବଳବତ୍ତର ଓ ଉଚ୍ଚମାନ ଯୁକ୍ତ ଏବଂ କୌଣସି "ଟେଷ୍ଟବ୍ୟାନ" ଏହି ସୁଯୋଗର ସିଂହଦ୍ୱାରକୁ ସବୁଦିନ ପାଇଁ ବନ୍ଦକରିଦେବ ।

ଏ ସମସ୍ତ ମୁଦ୍ଦାକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିବା ପାଇଁ ମିଷ୍ଟର କିଲ୍ଲିଆନ, ମିଷ୍ଟର ବେଥେଙ୍କ ଅଧ୍ୟକ୍ଷତାରେ ଏକ ପ୍ୟାନେଲ ନିଯୁକ୍ତ କଲେ । ଏହି ପ୍ୟାନେଲ ତିନୋଟି ପ୍ରଶ୍ନକୁ ଗଭୀରଭାବେ ପର୍ଯ୍ୟାଲୋଚନା କଲା । ପ୍ରଥମତଃ ଆମେରିକା ବାୟୁମଣ୍ଡଳରେ ସୋଭିଏତ ପାରମାଣବିକ ଟେଷ୍ଟର ଅସ୍ତିତ୍ୱକୁ ଖୋଜି ବାହାର କରିପାରିବ କି ? ଦ୍ୱିତୀୟତଃ ଆମେରିକା ଓ ସୋଭିଏତ ୟୁନିଅନର ପାରମାଣବିକ ଶକ୍ତିର ତୁଳନାତ୍ମକ ବିଶ୍ଳେଷଣ କିପରି ସମ୍ଭବ ? ଏବଂ ତୃତୀୟତଃ ପାରବାଣବିକ ଟେଷ୍ଟବ୍ୟାନ ପରିପ୍ରେକ୍ଷୀରେ ଆମେରିକାରେ ଥିବା ପାରମାଣବିକ ଯନ୍ତ୍ରପାତି ବିଜ୍ଞାନାଗାର ଗୁଡ଼ିକର ସ୍ଥିତି କଣ ହେବ ? ଏ ନେଇ ମିଷ୍ଟର ବେଥେଙ୍କ ରିପୋର୍ଟ ଜାତୀୟ ସୁରକ୍ଷା ପରିଷଦ ପାଖରେ ପ୍ରଥମେ ମାର୍ଚ୍ଚ ୧୯୫୮ରେ ଉପସ୍ଥାପିତ କରାଗଲା । ତାକ୍ଷପରେ ଆମେରିକା ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି ଏହି ରିପୋର୍ଟର ତର୍ଜମା କଲେ ଏବଂ ନିଜର ଅନିଚ୍ଛା ସତ୍ତ୍ୱେ ଏହି କମିଟି ନୀତିଗତ ଭାବେ ପାରମାଣବିକ ଟେଷ୍ଟ ଉପରେ ବିରତି ପ୍ରଦାନ କରିବା ପାଇଁ ସୁପାରିଶ କରିଥିଲେ । ଏହି କମିଟି ମଧ୍ୟ ପ୍ରସ୍ତାବ ରଖିଥିଲା ଯେ ସୋଭିଏତ ୟୁନିଅନ ସହ ଏ ନେଇ ନିୟମିତ ପର୍ଯ୍ୟବେକ୍ଷଣ ଉପରେ ଆଲୋଚନା ଜାରି ରଖାଯାଉ ।

**[ୟୁ-୨ ଗୁପ୍ତଚର ଉଡ଼ାଜାହାଜ ଘଟଣା ଯୋଗୁଁ ଯୋଜନା ପଣ୍ଡ (U-2 SPY Plane Incident) ]:**

ଜର୍ଜ ବି. କିସ୍ତିଆକୋସ୍କି (George B. kistiakowsky, 1900 - 1982) ମିଷ୍ଟର କିଲ୍ଲିଆନଙ୍କ ପରେ ଜୁଲାଇ ୧୯୫୯ ମସିହାରେ ଆଇଜେନହାୱାଙ୍କ ବୈଜ୍ଞାନିକ ଉପଦେଷ୍ଟା ଏବଂ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟିର ଚେୟାରମ୍ୟାନ ଭାବେ ଯୋଗ ଦେଲେ । କିସ୍ତିଆକୋସ୍କି ନିଜ କାର୍ଯ୍ୟରେ ଯୋଗଦାନ କଲା ପୂର୍ବରୁ ଆଇଜେନହାୱାର ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ ନ୍ୟୁକ୍ଲିଅର ଟେଷ୍ଟବ୍ୟାନ ଏକ ଅତ୍ୟନ୍ତ ପ୍ରାଧାନ୍ୟପୂର୍ଣ୍ଣ ବିଷୟବସ୍ତୁ ଏବଂ ସେ ଏଥିପ୍ରତି ଯଥାଯଥ ଗୁରୁତ୍ୱ ପ୍ରଦାନ

କରିବା କରିବା ନିତାନ୍ତ ଆବଶ୍ୟକ । ଦୁର୍ଭାଗ୍ୟବଶତଃ ମଇ ୧୯୬୦ ମସିହାର ୟୁ-୨ ଗୁପ୍ତଚର ଉଡ଼ାଜାହାଜ (U-2 Spy Plane Incident) ଘଟଣାଟି ନିୟୁକ୍ଲିଅର ଟେଷ୍ଟବ୍ୟାନ ମୁଦ୍ଦାରୁ ରାଷ୍ଟ୍ରୀୟ ଦୃଷ୍ଟିକୋଣକୁ ଫେରାଇ ଆଣିଲା । ଫଳତଃ ଆଇଜେନହାୱାର ତାଙ୍କର ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳରେ ପହଞ୍ଚିବାରେ ଅସଫଳ ହେଲେ । ନିୟୁକ୍ଲିଅର ଟେଷ୍ଟବ୍ୟାନ ରାଷ୍ଟ୍ରପତି ଜନ ଏଫ୍. କେନେଡ଼ିଙ୍କ ଶାସନକାଳରେ ହିଁ ଶେଷରେ ସ୍ଥିରିକୃତ ହୋଇଥିଲା ।

ଆଇଜେନହାୱାରଙ୍କ ଶାସନକାଳରେ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି ବହୁ ଗୁରୁତ୍ୱପୂର୍ଣ୍ଣ ରିପୋର୍ଟ ପ୍ରସ୍ତୁତ କରିଥିଲା । ସେଗୁଡ଼ିକ ହେଲା -

୧. Deterrence & Survival in the Nuclear Age (November, 1957)

୨. Introduction to outer Space (March, 1958)

୩. Strengthening American Science (December, 1958)

୪. High Energy Accelerator Physics (May, 1959)

୫. Education for the Age of Science (May, 1959)

୬. Scientific Progress, the Univerlities & the Federal Government (November, 1960)

ସୋଭିଏତ୍ ୟୁନିଅନର "ସ୍ପୁଟନିକ" ସୃଷ୍ଟି କରିଥିବା ବୈଜ୍ଞାନିକ ଜନଜାଗରଣ ଓ ମାନସିକ ଉଲ୍ଲାସ ଆଜି ପର୍ଯ୍ୟନ୍ତ ମଧ୍ୟ ଉଜ୍ଜୀବିତ ଅଛି । ହେଲେ ଯେନତେନ ପ୍ରକାରେ ବଞ୍ଚି ରହିବା ଓ ଉତ୍ତମ ସ୍ୱାସ୍ଥ୍ୟବାନ ହୋଇ ବଞ୍ଚି ରହିବା ଦୁଇଟି ଅଲଗା କଥା । ବିଜ୍ଞାନର ଜୀବନ ଶକ୍ତି (Vilality of Science) କୁ ରାଷ୍ଟ୍ରୀୟ ଉନ୍ନତି କଳ୍ପେ ବିନିଯୋଗ କରିବା ପାଇଁ କିଲ୍ଲିଆନ ଯେଉଁ ଶକ୍ତ ଆଧାରଶୀଳା ସ୍ଥାପନା କରିଥିଲେ ସେହି ଆଧାଶୀଳାର ବୁନିଆଦ ଉପରେ ଦଣ୍ଡାୟମାନ ହେବାରେ କିସ୍ତିଆକୋସ୍କିଙ୍କୁ କୌଣସି ଅସୁବିଧା ଭୋଗିବାକୁ ପଡ଼ିଲା ନାହିଁ । ରାଷ୍ଟ୍ରୀୟ ନୀତିନିୟମ ନିର୍ଦ୍ଧାରଣ ପ୍ରକ୍ରିୟାରେ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦିତ

କଲା ଓ ନିଜର ସ୍ୱତନ୍ତ୍ର ପ୍ରଭାବ ମଧ୍ୟ ଜାହିର କଲା । ପରନ୍ତୁ କିଛିଟା ଊଣା ପରିମାଣରେ ରାଷ୍ଟ୍ରପତି କେନେଡ଼ିଙ୍କ ଶାସନ କାଳରେ ତାଙ୍କର ବୈଜ୍ଞାନିକ ଉପଦେଷ୍ଟା କମିଟି ପରିଚାଳିତ ହେଲା ଯେ କି ତାଙ୍କର ବୈଜ୍ଞାନିକ ଉପଦେଷ୍ଟା ଇଲେକ୍‌ଟ୍ରିକାଲ ଇଂଜିନିୟର ଜେରୋମ ଉଇଜନର୍ (Jerome Wiesner) ଙ୍କ ସହ ଉତ୍ତମ ସମ୍ପର୍କ ସ୍ଥାପନା କରିଥିଲେ ।

ପରନ୍ତୁ କେନେଡ଼ିଙ୍କ ପରେ ରାଷ୍ଟ୍ରୀୟ ନୀତିନିୟମ ନିର୍ଦ୍ଧାରଣ ପ୍ରକ୍ରିୟାରେ ବୈଜ୍ଞାନିକ ଉପଦେଶର ପ୍ରାଧାନ୍ୟ ଧିରେ ଧିରେ କମିବାରେ ଲାଗିଲା । ଯେତେବେଳେ ସମାଜ ବିଜ୍ଞାନ, ବାୟୋ-ମେଡ଼ିକାଲ ସାଇନ୍ସ ଏବଂ ଶିକ୍ଷ ସଂସ୍ଥା ମାନଙ୍କରୁ ବିଶେଷଜ୍ଞ ବ୍ୟକ୍ତି ବିଶେଷମାନେ ରାଷ୍ଟ୍ରପତିଙ୍କ ବିଜ୍ଞାନ ଉପଦେଷ୍ଟା କମିଟିର ସଭ୍ୟ ହେବାକୁ ଆରମ୍ଭ କଲେ ସେତେବେଳେ ଏହି କମିଟି ଆଗରୁ ଉପଭୋଗ କରୁଥିବା ତାର ସଂଗତି ହରେଇ ବସିଲା । ଡାଭିଡ଼ ବେକ୍‌ଲର ଲେଖିଥିଲେ ଯେ ରାଷ୍ଟ୍ରପତିଙ୍କ ମୂଳ ବୈଜ୍ଞାନିକ ଉପଦେଷ୍ଟା କମିଟି ଏକ "Unusually effective team" ଅର୍ଥାତ୍ ଏକ ଅସାଧାରଣ ଫଳପ୍ରଦ ସଂଗୋଷ୍ଠୀ ଭାବେ କାର୍ଯ୍ୟ କରୁଥିଲା କିନ୍ତୁ ଏବେକାର ବୈଜ୍ଞାନିକ ଉପଦେଷ୍ଟା କମିଟି ବିଭିନ୍ନ ବିଭାଗରୁ ଅଣାଯାଇ ଗୋଟିଏ ଯାଗାରେ ଠୁଳ କରାଯାଇଥିବା ବିଶେଷଜ୍ଞ ବ୍ୟକ୍ତି ବିଶେଷମାନଙ୍କର କେବଳ ଏକ ମଣ୍ଡଳୀ ଅଟେ ଯେଉଁମାନେ କି କେବଳ ବିଶେଷତ୍ୱପୂର୍ଣ୍ଣ ଉପଦେଶ ପ୍ରଦାନ କରିଥାନ୍ତି । ବେକ୍‌ଲରଙ୍କ ଦୃଷ୍ଟିକୋଣରେ ମୂଳ ବୈଜ୍ଞାନିକ ଉପଦେଷ୍ଟା କମିଟି ଏକ Unified group ବା ମିଳିତ ସଂଗୋଷ୍ଠୀ ଭାବେ କାର୍ଯ୍ୟ କରୁଥିଲା ଏବଂ ରାଷ୍ଟ୍ରର ନୀତିନିୟମ ନିର୍ଦ୍ଧାରଣ ପାଇଁ ସ୍ୱଷ୍ଟ ବୈଜ୍ଞାନିକ ଦିଗ୍‌ଦର୍ଶନ ପ୍ରଦାନ କରୁଥିଲା, ଯାହାକି ପରବର୍ତ୍ତୀ ସମୟରେ ଆଉ ମିଳିନଥିଲା ।

ରାଷ୍ଟ୍ରପତି ରିଚାର୍ଡ଼ ନିକ୍ସନଙ୍କ ପ୍ରଶାସନ ସମୟରେ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟି Breaking Point ବା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯିବା ପରିସ୍ଥିତିରେ ଆସି ପହଞ୍ଚି ଥିଲା । ଦୁଇଟି ବିବାଦମୂଳକ ମୁଦ୍ଦା ଏହାର ମୂଳ କାରଣ ଥିଲା । ପ୍ରସ୍ତାବିତ Anti Ballistic Missile (ABM) କାର୍ଯ୍ୟକ୍ରମ ଏବଂ Super Sonic Transport (SST) ହ୍ୱାଇଟ ହାଉସର ପ୍ରଚଣ୍ଡ ନୈତିକ ସମର୍ଥନ ଲାଭ କରିଥିଲା । Anti Ballistic Missile କାର୍ଯ୍ୟକ୍ରମର ମିଲିଟାରୀ ଦକ୍ଷତା ସମ୍ବନ୍ଧରେ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ

ଉପଦେଷ୍ଟା କମିଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉତ୍ଥାପନ କଲା ଏବଂ ବୈଜ୍ଞାନିକ ଉପଦେଷ୍ଟା କମିଟିର ଅଧ୍ୟକ୍ଷ Super Sonic Transport ବ୍ୟବସ୍ଥା ସମ୍ବନ୍ଧରେ ଜନସାଧାରଣଙ୍କ ପାଖରେ ଏହାର ଘୋର ବିରୁଦ୍ଧାଚରଣ କଲେ । ୧୯୭୩ ମସିହାର ପ୍ରାକ୍‌କାଳରେ ରାଷ୍ଟ୍ରପତି ନିକ୍ସନ ବୈଜ୍ଞାନିକ ଉପଦେଷ୍ଟା କମିଟିକୁ ଭାଙ୍ଗିଦେଇ ସମ୍ପୂର୍ଣ୍ଣଭାବେ ଧୂଳିସାତ କରିଦେଲେ ।

୧୯୭୬ ମସିହା ମଇ ମାସରେ ରାଷ୍ଟ୍ରପତି ଜେରାଲ୍ଡ ଫୋର୍ଡ଼ଙ୍କ ଏକ୍‌ଜିକ୍ୟୁଟିଭ ଅଫିସ୍‌ରେ "Office of Science and Technology Policy" ର ଗଠନ କରାଗଲା । ଏହାର ଅଧ୍ୟକ୍ଷ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା ଭାବେ କାର୍ଯ୍ୟକଲେ । Jimmy Carter, Ronald Reagan, George H. W. Bush, Bill Clinton ଏବଂ George W. Bush ଙ୍କ ରାଷ୍ଟ୍ରପତିତ୍ୱ କାଳରେ ରାଷ୍ଟ୍ରପତିଙ୍କ ବୈଜ୍ଞାନିକ ଉପଦେଷ୍ଟା ଆସନଟି ଯଦିଓ ସମୟ ସୁଅରେ କୌଣସି ପ୍ରକାରେ ତିଷ୍ଠି ରହିଲା ହେଲେ ତାର ଗୁରୁତ୍ୱ ଓ ଉପଯୋଗୀତା ରାସ୍ତା କଡ଼କୁ ଆଉଜେଇ ହୋଇଗଲା । ତାହାର ପାଟି ବନ୍ଦ ହୋଇନଥିଲେ ମଧ୍ୟ ପାଟିରେ ଏକ ବଡ଼ ରୁମାଲ ବାନ୍ଧି ଦିଆଯାଇଥିଲା ।

ସ୍ପୁଟନିକ ଲଞ୍ଚିଂ ପରେ ୧୫ ଅକ୍ଟୋବର ୧୯୫୭ରେ ଅନୁଷ୍ଠିତ ହୋଇଥିବା ଐତିହାସିକ ମିଟିଂରେ ମିଷ୍ଟର ରବି କହିଥିଲେ ଯେ – ଏହା ନିଶ୍ଚିତ ରୂପେ ସତ୍ୟ ଯେ ନୀତିନିୟମ ସଂକ୍ରାନ୍ତୀୟ ଅଧିକାଂଶ ଘଟଣା ଯାହାକି ରାଷ୍ଟ୍ରପତିଙ୍କ ଗୋଚରାର୍ଥେ ଉପସ୍ଥାପିତ ହୋଇଥାଏ ସେଗୁଡ଼ିକ ଶକ୍ତ ବୈଜ୍ଞାନିକ ବିଚାରଧାରା ଉପରେ ନ୍ୟସ୍ତ ଥାଏ । ତେଣୁ ବୈଜ୍ଞାନିକ ଉପଦେଶ କେବଳ ମାତ୍ର ଦରକାରୀ ନୁହେଁ ଏହାର ନିଶ୍ଚିତ ଆବଶ୍ୟକତା ମଧ୍ୟ ରହିଛି । କିନ୍ତୁ ରାଷ୍ଟ୍ରପତିମାନେ ସାଧାରଣତଃ ବିଜ୍ଞାନ ସହ ଅପରିଚିତ ଥାଆନ୍ତି, ବୈଜ୍ଞାନିକମାନଙ୍କ ସହ ମଧ୍ୟ ଅପରିଚିତ ଥାଆନ୍ତି ଏବଂ ସର୍ବୋପରି ବୈଜ୍ଞାନିକ ସଂସ୍କୃତି ଉପରେ ମଧ୍ୟ ସମ୍ପୂର୍ଣ୍ଣ ଅଜ୍ଞ ଥାଆନ୍ତି । ତେଣୁ ସେମାନେ ସେମାନଙ୍କର ବୈଜ୍ଞାନିକ ଉପଦେଷ୍ଟାମାନଙ୍କୁ ସଡ଼କର ସୁଦୂର କଣ ମୁଣ୍ଡରେ ରହିଥିବା ଏକ ଘରର ପଛ କୋଠରୀରେ ଶାନ୍ତିରେ ବସି ରହିବାକୁ ଯାଗାଟିଏ ଦେଇ ନିଜେ ଶାନ୍ତିରେ ବସି ନିଶ୍ୱାସ ନେଇଥାନ୍ତି ।

ଆଇଜେନହାଓ୍ୱାର ୨୮ ମାର୍ଚ୍ଚ ୧୯୬୯ରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ତାଙ୍କ ମୃତ୍ୟୁର କିଛି ମାସ ପୂର୍ବରୁ ମିଷ୍ଟର କିଲ୍ଲିଆନ ତାଙ୍କୁ ୱାଲ୍ଟର ରିଡ଼ ଚିକିତ୍ସାଳୟ (Walter Reed Hospital) ରେ ଦେଖା କରିବାକୁ ଯାଇଥିଲେ । ସେତେବେଳକୁ ପୂର୍ବତନ ରାଷ୍ଟ୍ରପତି ମହୋଦୟ ହୃଦ ଚିକିତ୍ସା ସଂକ୍ରାନ୍ତୀୟ ନାନାଦି ଯନ୍ତ୍ରପାତିର ପରିବେଷ୍ଟନି ମଧ୍ୟରେ ଶୋଇ ରହିଥାନ୍ତି ଏବଂ ତାଙ୍କର ହୃଦ୍‌ସ୍ପନ୍ଦନ ପାଖରେ ଥିବା ଏବଂ ଅସ୍‌ସିଲୋସ୍କୋପ୍ ସ୍କ୍ରିନ୍‌ରେ ସ୍ପଷ୍ଟ ଭାବେ ଦୃଶ୍ୟମାନ ହେଉଥାଏ । ତାଙ୍କ ସହ କଥାବାର୍ତ୍ତା ବେଳେ ସେ "ମୋ ବୈଜ୍ଞାନିକ"ମାନେ କିପରି ଅଛନ୍ତି ସେ ବିଷୟରେ ଜାଣିବାକୁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କଲେ ଏବଂ ବହୁ ବୈଜ୍ଞାନିକଙ୍କ ନାମଧରି ସେମାନଙ୍କ କଥା ମିଷ୍ଟର କିଲ୍ଲିଆନଙ୍କ ଠାରୁ ପଚାରି ବୁଝିଲେ । ତା'ପରେ ସେ କହିଲେ -

"You know, Jim, This bunch of scientists was one of the few groups that I encountered in Washington who seemed to be there to help the country & not to help themselves."

ଅର୍ଥାତ୍ "ଜିମ୍ ତୁମେ ଜାଣ, ମୋର ଏହି ପ୍ରିୟ ବୈଜ୍ଞାନିକ ବନ୍ଧୁମାନେ ୱାସିଂଟନ୍‌ରେ ମୁଁ ଭେଟିଥିବା ବହୁ ବ୍ୟକ୍ତିବିଶେଷମାନଙ୍କ ମଧ୍ୟରେ ଅତ୍ୟନ୍ତ ବିରଳ ବ୍ୟକ୍ତିତ୍ୱ ଅଟନ୍ତି ଯେଉଁମାନେ କି ନିଜର ସ୍ୱାର୍ଥ ପାଇଁ ନୁହେଁ ବରଂ ରାଷ୍ଟ୍ରର ମଙ୍ଗଳ ପାଇଁ ନିଜକୁ ସମ୍ପୂର୍ଣ୍ଣ ରୂପେ ବାଜି ଲଗେଇ ଦେଇଥିଲେ ।"

ଆଇଜେନହାୱାରଙ୍କ ଏହି ବକ୍ତବ୍ୟ ସମ୍ପୂର୍ଣ୍ଣ ସତ୍ୟ ଥିଲା ବୋଲି ମିଷ୍ଟର କିଲ୍ଲିଆନ୍ ଉଲ୍ଲେଖ କରିବା ସହ ଏହାହିଁ ଥିଲା ଉଭୟଙ୍କର ଶେଷ ବାର୍ତ୍ତାଳାପ ବୋଲି ସେ ସ୍ୱୀକାର କରିଛନ୍ତି ।

ପଚାଶ ଦଶକର ଶେଷାର୍ଦ୍ଧ ସମୟରେ ଆମେରିକାର ନୀତିନିୟମ ନିର୍ଦ୍ଧାରଣ ପ୍ରକ୍ରିୟାରେ ବୈଜ୍ଞାନିକ ମାନଙ୍କ ପ୍ରଭାବ ସ୍ପଷ୍ଟରୂପେ ଅନୁମିତ ହେଉଥିଲା ମୁଖ୍ୟତ ଦୁଇଟି କାରଣରୁ । ପ୍ରଥମତଃ ବୈଜ୍ଞାନିକମାନେ ସାଧାରଣତଃ ଅସାଧାରଣ ବ୍ୟକ୍ତି ବିଶେଷ ହୋଇଥାନ୍ତି ଏବଂ ସମାଜରେ ସେମାନଙ୍କର ସେହି ରୂପ ହିଁ ପ୍ରକଟିତ ହୋଇଥାଏ, ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେମାନଙ୍କର ଅଭିଜ୍ଞତାରୁ ସେମାନେ ସମାଜରେ ରାଷ୍ଟ୍ରନାୟକ (Statesman)ର ମର୍ଯ୍ୟାଦା ଲାଭ କରିଥିଲେ । ଦ୍ୱିତୀୟତଃ ସେମାନେ

ନିଜର ବୈଜ୍ଞାନିକ ବ୍ୟକ୍ତିତ୍ୱ ଓ ପରାକାଷ୍ଠାକୁ ତଉଲି ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଆମେରିକାର ଜନଜୀବନରେ ସେମାନେ ମହାପରିବର୍ତ୍ତନର ଢେଉ ଆଣିବାରେ ସକ୍ଷମ ହେବେ ଏବଂ ପରିସ୍ଥିତି ଓ ସୁଯୋଗ ତାଙ୍କ ହାତମୁଠାରେ ହିଁ ରହିବ ।

ସବୁଠୁଁ ବଡ଼ କଥାଟି ଥିଲା ବୈଜ୍ଞାନିକମାନଙ୍କ ଉପଦେଶର ଆବଶ୍ୟକତାକୁ ଆଇଜେନହାୱାର ଉପଯୁକ୍ତ ମାନ୍ୟତା ପ୍ରଦାନ କରୁଥିଲେ । ସେ ବୈଜ୍ଞାନିକମାନଙ୍କ ଉପଦେଶକୁ କାନ ଡେରି ଶୁଣୁଥିଲେ ଏବଂ ସେମାନଙ୍କର ଉପଦେଶ ଅନୁଯାୟୀ କାର୍ଯ୍ୟକ୍ରମ ପରିଚାଳନା କରୁଥିଲେ । ସୌଭାଗ୍ୟବଶତଃ ଆଇଜେହାୱାର ତାଙ୍କର ବୈଜ୍ଞାନିକ ଉପଦେଷ୍ଟା କମିଟି ସହ ଅତ୍ୟନ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ସ୍ଥାପନା କରିଥିଲେ ଏବଂ ସେମାନଙ୍କୁ ସେ "ଆପଣାର ବୈଜ୍ଞାନିକ" (his scientists) ବୋଲି ସର୍ବଦା ମୁକ୍ତ କଣ୍ଠରେ ସମ୍ବୋଧନ କରୁଥିଲେ । ସେମାନଙ୍କୁ ସେ ଅତ୍ୟନ୍ତ ଆଦର ଓ ସମ୍ମାନ ପ୍ରଦର୍ଶନ ମଧ୍ୟ କରୁଥିଲେ । ଆଇଜେନହାୱାରଙ୍କ ପରେ ଆମେରିକାର ଆଉ କୌଣସି ବି ରାଷ୍ଟ୍ରପତି ତାଙ୍କର ବୈଜ୍ଞାନିକ ଉପଦେଷ୍ଟା କମିଟି ସହ ଏପରି ଖୋଲାଖୋଲି ଭାବେ ବସି ଆତ୍ମବିଶ୍ୱାସର ସହ ଆଲୋଚନା କରିନାହାନ୍ତି କିମ୍ବା ସେମାନଙ୍କର ଉପଦେଶକୁ ନେଇ ସୁଯୋଗ ଓ ସମ୍ଭାବନାର ସିଂହଦ୍ୱାର ଉନ୍ମୋଚନ କରିବାରେ ମଧ୍ୟ ସକ୍ଷମ ହୋଇପାରିନାହାନ୍ତି । ଆଇଜେନହାୱାରଙ୍କ ପାଖରେ ଥିଲା ହିମାଳୟ ସଦୃଶ ଆତ୍ମବିଶ୍ୱାସ ଓ ଅର୍ଜୁନର ବାଣ ପରି ଗଗନଭେଦୀ ଆତ୍ମ ପ୍ରତ୍ୟୟ ଯାହାକି ଆମେରିକାର ଭାଗ୍ୟାକାଶରେ ନବରବିର ଆଭା ପ୍ରକଟିତ କରିବାରେ ସମର୍ଥ ହୋଇଥିଲା ।

ସୌଜନ୍ୟ, ଫିଜିକ୍ସ ଟୁଡେ, ଆମେରିକା
ଜୁନ୍, ୨୦୦୭



# ସ୍ମୃତିର ଉତ୍ତରାୟଣ

ମୂଳ ଇଂରାଜୀ ରଚନା : ଶ୍ରୀ ପ୍ରଶାନ୍ତ କୁମାର ରାଉତରାୟ*

ଅନୁସୃଜନ : ଡକ୍ଟର ଚିତ୍ତରଞ୍ଜନ ମିଶ୍ର**

ମୋ ମାନସ ଚକ୍ଷୁରେ ବିଗତ ୫୦ ବର୍ଷର ସ୍ମୃତିବୋଳା ଦିନ ଗୁଡ଼ାକ ଉଙ୍କିମାରି ଆଜି ମୋତେ ଉଦ୍‌ବେଳିତ କରିପକାଉଛି । ସ୍ୱପ୍ନ ବିଦଗ୍ଧ ଜୀବନଚର୍ଯ୍ୟା, ଜୀବନ ଦର୍ଶନ, ଶିକ୍ଷା, ଦୀକ୍ଷା, ଜୀବନର ଗତାନୁଗତିକ ଧାରାଭିତରେ ମୋତେ ବାନ୍ଧିରଖି ଅତୀତ ଦିନର ସୂର୍ଯ୍ୟୋଦୟ ଆଡ଼କୁ ମୋ ହାତଧରି ଟାଣିନେଇଯାଉଛି । ରାଶିରାଶି ସ୍ୱପ୍ନ ଓ କାହାଣୀର ଗନ୍ତାଘର ମୋର ସ୍କୁଲ ଜୀବନ, ଯାହାର ଅବତାରଣା କରିବା ପାଇଁ ଏକାଧିକ ଗ୍ରନ୍ଥର ଆବଶ୍ୟକତା ମଧ୍ୟ ନିଅଣ୍ଟ ପଡ଼ିବ । ସମୟର ଦୋଛକିରେ ଠିଆହୋଇ ବିତିଯାଇଥିବା ଦିନଗୁଡ଼ାକୁ ଭିଡ଼ିଆଣି ଅଣ୍ଟିରେ ସାଇତି ରଖିବାକୁ ଆଜି ମୋର ପ୍ରବଳ ଇଚ୍ଛା ଓ ଅହେତୁକ ଆଗ୍ରହ । ସାଙ୍ଗସାଥୀଙ୍କ ମେଳରେ ବିତେଇଥିବା ମୋ ପିଲା ଦିନର ଇତିବୃତ୍ତ ଆଈମା'ର କାହାଣୀ ପେଡ଼ିଭିତରେ ଡୋରି ବନ୍ଧାହୋଇ ରହିଯାଇଛି । ସେ ଡୋରିକୁ ଆଜି ଫିଟେଇବାକୁ ଭାରି ଇଚ୍ଛା ହେଉଛି । ସପନ ଭିଜା ବୟସ ଗୁଡ଼ାକୁ କାଖେଇ କୋଳେଇ ଆଣି ସାଙ୍ଗସାଥୀଙ୍କ ମେଳରେ ବାଣ୍ଟିଦେବାକୁ ମନଟା ଆଜି କାହିଁକି କେଜାଣି ଭାରି ଆଉଟିପାଉଟି ହେଉଛି, କଲବଲ ହେଉଛି, ଛଟପଟ ହେଉଛି । ଉଜାଣି ଯମୁନାରେ ମନଟା ଯେପରି ଲହଡ଼ି ଭାଙ୍ଗୁଛି ।

ସାଙ୍ଗସାଥୀଙ୍କ ମେଳରେ ଆମେ ଘରୁ ଗୋଡ଼କାଢ଼ି ସ୍କୁଲକୁ ଲମ୍ୱିଯାଇଥିବା ଅଙ୍କାବଙ୍କା ସଡ଼କଟିରେ ଡ଼ଗଡ଼ଗହୋଇ ମାଡ଼ିଚାଲିଯାଉଥିଲୁ । ନଦୀ, ନାଳ, ପୋଖରି, ପାଣି ଅତିକ୍ରାନ୍ତ କରି କେତେବେଳେ ଚାଲି ତ କେତେବେଳେ ଦୌଡ଼ି ତ ଆଉ କେତେବେଳେ ନଈରେ ପହଁରି ପହଁରି ଅବା କେତେବେଳେ ନଈ ପଠାର ସୁକୋମଳ ବାଲୁକା ଶେଯରେ ଗଡ଼ିଗଡ଼ି ନାଟୁଆ, ହାଟୁଆ, ବାଟୁଆଙ୍କ ଭଳି ଥଟ୍ଟା, ହସ, ତାମସାରେ ମଜି ରହି ସ୍କୁଲରେ ଯାଇ ପହଞ୍ଚିଯାଉଥିଲୁ । ଆମଠାରୁ ବଡ଼ ହେଉ ଅବା ଆମଠାରୁ ଛୋଟ ହେଉ ସବୁ ସାଙ୍ଗସାଥିମାନେ ମିଳିମିଶି ସ୍କୁଲ ମୁହାଁ ଦୌଡୁଥିଲୁ, ଖେଳୁଥିଲୁ,

ବୁଲୁଥିଲୁ, ଆଲୋଚନା କରୁଥିଲୁ ଆଜିର ଜୀବନକୁ ନେଇ, କାଲିର ସ୍ୱପ୍ନକୁ ନେଇ, ଅତୀତର ବାସ୍ତବତାକୁ ନେଇ । ସମୟ ପିଠିରେ ଲାଉହୋଇ ଜୀବନଟାକୁ ଆମେ ପାଣିପରି ବିତେଇ ଦେଉଥିଲୁ । କିଶୋର ଜୀବନର ଲାଳିତ୍ୟ, ମଧୁରତା ଆଉ ସୁଗନ୍ଧକୁ ଚାଖିଚାଖି ପରଖିପରଖି ଦିନ ପରେ ଦିନ ବିତି ଯାଉଥିଲା, ନଈ ପେଟରେ ଲହଡ଼ି ଡିଆଁ ମାରିଲା ପରି । କୈଶୋରର ଦିନଗୁଡ଼ାକ କେଉଁଦିନ ବିତିଯିବ ଆଉ ଆମେ ଘରର ମୁଣ୍ଡିଆହୋଇ ଘରଲୋକଙ୍କ ଉପରେ ଶାସନ ଜାହିର କରିବୁ ତାକୁ ନେଇ ଆମେ ମଧ ସ୍ୱପ୍ନ ଦେଖୁଥିଲୁ ଓ ସେଥିରେ ବିଭୋର ହୋଇଯାଉଥିଲୁ । ମୋର ଆଜି ମନେପଡୁଛି ଆମ ଗାଁ ନଈବାଲି ଶେଜରେ ଆମେ ସାଙ୍ଗସାଥି ମେଳିହୋଇ ଏ ମୁଣ୍ଡରୁ ସେମୁଣ୍ଡ ଓ ସେମୁଣ୍ଡରୁ ଏ ମୁଣ୍ଡଯାଏଁ ଗଡ଼ିଗଡ଼ି ଗୋଟାପଣ ବାଲିରେ ଗାଧୋଇ ଉତ୍‌ଫୁଲ୍ଲିତ ମନ ଓ ହୃଦୟନେଇ ଚିତ୍କାର କରୁଥିଲୁ, ସମୟକୁ ଆହ୍ୱାନ ଦେଉଥିଲୁ, ଡାକରା ଦେଉଥିଲୁ, ସମୟ ସାଙ୍ଗରେ ବାଜି ଲଗାଉଥିଲୁ, ଖେଳ ଖେଳୁଥିଲୁ, ଦିନ ବିତଉଥିଲୁ ।

ମୋର ଆଜି ମନେ ପଡ଼ିଯାଉଛି ପ୍ରିୟ ସାଙ୍ଗ ବିଶୁର କଥା । ଭାରି ଚୁପ୍‌ଚାପ୍ ଓ ଶାନ୍ତ ସ୍ୱଭାବର ପିଲାଟିଏ ଥିଲା ସେ । ଆମଠୁଁ ହାତେ ଦୂରରେ ବସିରହି ସାଧୁସନ୍ୟାସୀଙ୍କ ପରି ଆମକୁ ତାର ପ୍ରବଚନ ଶୁଣାଏ । ସଂସାରର ମାୟା ମରିଚୀକା ବିଷୟରେ ଆମ ମୁଣ୍ଡରେ ଜ୍ଞାନ ଭରିଦିଏ । ଜୀବନଟା ପାଣି ଫୋଟକା, ଆଜି ଅଛି ତ କାଲିକି ନାହିଁ । ସ୍ୱପ୍ନ ଓ ବାସ୍ତବତା ମଧରେ ଥିବା ଦୂରତ୍ୱକୁ ମାପି ମାପି ସେ ଆମକୁ ସତ୍ୟ ସହ ପରିଚୟ କରାଇଦିଏ । ସେ ଆମକୁ କହେ – ରେ ପାଗଳା ମନ ! ତୁ କାହିଁକି ଏମିତି ବାଇ ହଉଛୁ ? ମାତ୍ର ଛଅ ଖଣ୍ଡି କାଠ ତୋର ଶେଷ ସମ୍ପତ୍ତି, ସେ କାଠ ଯୋଗାଡ଼ରେ ଆଜିଠୁଁ ଲାଗିପଡ଼, ଦିନରାତି ହରିନାମ ଭଜ, ମାୟା ସଂସାରରୁ ମୁକ୍ତି ପାଇଯିବୁ । ସେ କହେ...

କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ, କି ଘେନି ଯିବୁ ତୁହି ଛୁଟିଲେ ଘଟ ?
ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି, ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ।

ଟୀକା ଗୋବିନ୍ଦଚନ୍ଦ୍ରର ମରମ ଭେଦି ବାଣି ସେ ଆମକୁ ଶୁଣାଇ ଏ ମାୟା

ସଂସାରର ମାୟାମହଲ ବିଷୟରେ ଅବଗତ କରାଇଥାଏ ।

ଭଜୁ କିନା ରାମ ନାମରେ କୁମର ଭଜୁ କିନା ରାମ ନାମ
ଭଜି ନପାରିଲେ କୁଳଚନ୍ଦ୍ରମାରେ ବାନ୍ଧି ନବ କାଳ ଯମରେ କୁମର
ବାନ୍ଧିନବ କାଳ ଯମ ।
ବଡ଼ ନିଦାରୁଣ ସେହି କାଳ ଯମ ନଜାଣେ ଆପଣା ପର
ବାନ୍ଧି ନବ କଞ୍ଚା ରଖିବ ପାକଲାରେ ଦବ ସେ ଦାରୁଣ ଦୁଃଖରେ କୁମର,
ଦବ ସେ ଦାରୁଣ ଦୁଃଖ
ଭଜୁ କିନା ରାମ ନାମରେ କୁମର ଭଜୁ କିନା ରାମ ନାମ
ଭଜି ନପାରିଲେ କୁଳଚନ୍ଦ୍ରମାରେ ବାନ୍ଧି ନବ କାଳ ଯମ ।

ଏମିତି କେତେ କଣ କଥା । ହେଲେ ଏଇ ମିଛମାୟା ସଂସାରରେ ସେ ବନ୍ଧୁ ବାନ୍ଧିଲା, ସାତଟି ପିଲାର ବାପା ହେଲା, ସଂସାର ତ୍ୟାଗ କଥାତ ଛାଡ଼, ସକାଳୁ ସନ୍ଧ୍ୟା ଭୋଗ ଭିତରେ ବୁଡ଼ିରହିଲା । ସବୁଠୁଁ ମଜା କଥାଟି ହେଲା ବିଶୁ ବାହାହେଲା ଯେଉଁ ଝିଅଟିକି ତାକୁ ପ୍ରେମକରି ବାହାହେଲା ।

ଆଜି ନାଗର ନଟବରର କଥା ଭାରି ମନେପଡ଼େ । ଆମେ ସାଙ୍ଗ ହୋଇ 'ଶବ୍ଦ ଗଢ଼ା' ଖେଳ ଖେଳୁ । ନଟବର କଟକରୁ ଫେରିଆସି ତାର ଥାଟ ବଦଳେଇଦେଇଥାଏ । ଇଂରାଜୀ ଶବ୍ଦ ଉପରେ ନିଜର ଧୁରନ୍ଧର ପଣିଆ ଆମ ଉପରେ ଜାହିର କରେ । ଇଂରାଜୀ ଶାସ୍ତ୍ରର ପାଣ୍ଡିତ୍ୟ ଆମଆଗରେ ବଖାଣିବସେ । ତାର ଏହି ପାଣ୍ଡିତ୍ୟକୁ ଦିନେ ବିଶୁ କୃଷ୍ଣ ସାରଙ୍କ ଆଗରେ କହି ବେଶ୍ ଛାଟିଆ ମାଡ଼ ଖାଇଲା । ଏହି ମାଡ଼ ଖାଇଲାପରେ ଆମର ଚେତା ପଶିଲା ଓ ତାପରେ କୌଣସି ଶବ୍ଦର ଆମେ ଇଂରାଜୀରୁ ଓଡ଼ିଆ କିମ୍ବା ଓଡ଼ିଆରୁ ଇଂରାଜୀ ଅନୁବାଦ କରିବାକୁ କୃଷ୍ଣ ସାରଙ୍କ ପାଖ ଆଉ ପଶିଲୁ ନାହିଁ । ଫଳରେ ଇଂରାଜୀରେ ଆମର କିଛିଟା ସନ୍ଦେହ ସେହିପରି ସନ୍ଦେହରେ ହିଁ ରହିଗଲା । ଆମେ ଇଂରାଜୀରେ କିଛିଟା ଦୁର୍ବଳ ହୋଇ ରହିଗଲୁ । ପୁଣି ମନେପଡୁଛି ନଟବର କଟକରୁ ଫେରିଆସି କ୍ରିକେଟ କିପରି

ଖେଳାଯାଏ ଆମର ହାତଧରି ଆମକୁ ଶିଖେଇଥିଲା । ହେଲେ ନଈ ବାଲି ଓ ପ୍ରକୃତି ସାଙ୍ଗରେ ଆମେ ଯେଉଁ ମିତ ବସିଥିଲୁ ସେ ସୌଭାଗ୍ୟରୁ ସେ କାଣିଚାଏ ପାଇପାରି ନଥିଲା । ସେ ଆମକୁ ବୁଝାଉଥିଲା ରୂପେଲି ପରଦା ଉପରେ ସିନେମାର କଥା, ଆଉ ଯାତ୍ରା ଠାରୁ ତାହା କିପରି ଫରକ । ସିନେମାର ମହକ ଓ ଯାତ୍ରାର ମହକ ଯେ ଅଲଗା ଅଲଗା ସେ ଆମକୁ ତା କଥା ଚାତୁରିରେ ଗୋଟି ଗୋଟି ବୁଝେଇ ଦେଉଥିଲା । ଯାତ୍ରାରେ ପୁରୁଷମାନେ ନିଶ ଦାଢ଼ି କାଟି, ସ୍ନୋ ପାଉଡ଼ର ଲିପଷ୍ଟିକ ମାରି ନାରୀ ଭୂମିକାରେ ଅଭିନୟ କରୁଥିଲାବେଳେ ସିନେମାରେ ପ୍ରକୃତରେ ନାରୀମାନେ ହିଁ ନାରୀମାନଙ୍କ ଭୂମିକା କରିଥାନ୍ତି ବୋଲି ନଟବର ଆମକୁ ପ୍ରାଞ୍ଜଳଭାବରେ ବୁଝେଇଦେଉଥିଲା । ସିନେମାରେ ଅଭିନୟ କରୁଥିବା ନାରୀମାନଙ୍କ ଭବିଷ୍ୟତ ଚିନ୍ତାରେ ଆମେ ନିମଗ୍ନ ହୋଇଯାଉଥିଲୁ ।

ଆଜି ମୋର ମନେପଡ଼େ ଉଜ୍ଜ୍ୱଳର କଥା । ସ୍କୁଲରୁ ଲୁଚି ପଳାଇଆସି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ନଈ ବାଲିରେ ବସି ତାର ପ୍ରେମିକାକୁ ଲେଖୁଥିବା ପ୍ରେମ ଚିଠିର କଥା । ତାର ପ୍ରେମିକା ଆଖିରେ ଏହି ପ୍ରେମ ଚିଠିଟି ପଡ଼ିଲା ପୂର୍ବରୁ ନଈର ଲହଡ଼ି ସେ ଚିଠିଟିକୁ ସଲିଳ ସମାଧି ଦେଇଦେଇଥାଏ । କିନ୍ତୁ ହେ ଉଜ୍ଜ୍ୱଳ ! ମୋତେ କ୍ଷମାକର । ମୁଁ ସତ କଥା କହୁଛି, ତୋର ଗୋଟିଏ ପ୍ରେମିକା ନଥିଲେ ବରଂ ତିନି ଚାରୋଟି ପ୍ରେମିକା ଥିଲେ । ଏହା ଆମେ ସମସ୍ତେ ଜାଣୁ । କିନ୍ତୁ ଯେଉଁ ଝିଅଟିକୁ ବାହା ହୋଇ ତୁ ଘର ସଂସାର କଲୁ ସେ ତୋର ପ୍ରେମିକା ନଥିଲା, ତୋ ବାପା ମା'ଙ୍କ ଦ୍ୱାରା ମନୋନୀତ ହୋଇ ତୋର ବଧୂ ରୂପେ ତୁମ ଘରେ ପାଦ ଥାପିଥିଲା ଓ ତୁମ ଘରର ବୋହୂ ହୋଇଥିଲା ।

ଆଜି ନଦୀ ମାତୃକାର ଶୈକତ ଶଯ୍ୟା ତାର ରୂପ ବିନ୍ୟାସ ଓ ଧାରାରେ ପରିବର୍ତ୍ତନ କରି ଦେଇଛି । ନଈ କୂଳର ସୁବିସ୍ତୃତ ଘାସ ପଡ଼ିଆ, ସବୁଜ ବନାନୀ ଓ ଜାମୁକୋଳି ଗଛ ଗୁଡ଼ିକ ନଦୀ ଗର୍ଭରେ ବିଲିନ ହୋଇଯାଇଛି । ରଙ୍ଗ ବେରଙ୍ଗର ଛୋଟ ଛୋଟ ଚଢ଼େଇ ସେଠି ଆଉ ଗୀତ ଗାଉ ନାହାନ୍ତି । କୋଇଲିର କୁହୁକୁହୁ ତାନ ଆଜି ଆଉ ସେଠି ଶୁଣିବାକୁ ମିଳୁନାହିଁ । ଘର ଚଟିଆର ମନ ମତାଣିଆ ନାଚ ଆଜି ଆଉ ଦେଖିବାକୁ ବି ମିଳୁନାହିଁ । ନଦୀର ବାଲି ତୂଠ ଆଜି ଆମକୁ ଝୁରି

ହେଉଛି, ଆଉ ଆମେ ବି ସେଇ ବାଲି ତୁଠ ବି ଝୁରି ହେଉଛୁ । ତା ଛାତିରେ ଆଉ କେହି ବାଗୁଡ଼ି ଖେଳ ଖେଳୁ ନାହାନ୍ତି କି ଚିତ୍ର ମଧ୍ୟ ଆଙ୍କୁ ନାହାନ୍ତି କି ପ୍ରେମ କବିତା ବି ଆଉ ଲେଖୁ ନାହାନ୍ତି । ହେ ପ୍ରକୃତି ମାଆ ! ସେଥିପାଇଁ ତୁ ଆମକୁ କ୍ଷମା କର । ହେ ମାଆ ମହାନଦୀ ! ମୁଁ ତୋତେ କୋଟି କୋଟି ଦଣ୍ଡବତ କରୁଛି, ତୋ ପାଖରେ ଶରଣ ପଶୁଛି, ତୋ ନଦୀର କଳକଳ ଗାନ, ତୋର ସୁଦୀର୍ଘ ସୁନେଲି ଶୈକତ ଶଯ୍ୟା, ତୋ ଦୁଇ କୂଳକୁ ଘେରି ଲମ୍ବି ଯାଇଥିବା ସବୁଜ ବନରାଶିର ଶୋଭା ମୋ ହୃଦୟକୁ ଆଜି ଆନ୍ଦୋଳିତ କରୁଛି, ଉଦବେଳିତ କରୁଛି, ତରଙ୍ଗାୟିତ କରୁଛି, ବ୍ୟଥିତ କରୁଛି, ମୋତେ ହାତ ଠାରି ଡାକୁଛି, କହୁଛି ପୁଅରେ ! ତୁ ମୋ କୋଳକୁ ଥରେ ବାହୁଡ଼ିଆ, ବାଇଆ ମନ ତୋର ଏଇଠି ଥୟ ଧରିବ, ମୋ କୋଳରେ ତୁ ତୋ ସ୍ୱପ୍ନର ସାମ୍ରାଜ୍ୟ ଗଢ଼ିତୋଳିବୁ, ଏଇଠି ଆମେ ବିତେଇଦବା ସମୟର ବାକି ତଳ ବେଳାକୁ । ଏଇଠି ତୁ ଲେଖି ବସିବୁ ତୋ ସ୍ୱପ୍ନର ଇତିହାସ, ଏଇଠି ତୁ ଲେଖି ତୋଳିବୁ ତୋ ପୂଣ୍ୟର ମହାନଗର ।

ଆଜି ରଘୁ, ତପନ, କାଙ୍ଗାଳୀ ଆଉ ଶଙ୍କରର ନିଷ୍ପାପ ମୁହଁ ଗୁଡ଼ିକ ମୋ ଆଖିଆଗରେ ଢଳଢଳ ଛଳଛଳ ହୋଇ ନାଚିଯାଉଛି । ମୋ ଆଖିଆଗରେ ନାଚିଯାଉଛି ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଜୀବନ ଓ ଜୀବନ ଦର୍ଶନ ଉପରେ ଆମ ଶିକ୍ଷକଙ୍କ ଶିକ୍ଷାଦାନର ଦିନଗୁଡ଼ାକ ଆଉ ସେତିକିବେଳେ ମଧ୍ୟ ମନେପଡ଼ିଯାଉଛି ମହାତ୍ମା ଗାନ୍ଧୀଙ୍କ ଉପରେ ସାଙ୍ଗ ବିଭୂତିର ଟିପ୍ପଣୀ । ମହାତ୍ମା ଗାନ୍ଧୀ କିପରି ଜଣେ ସାଧାରଣ ପିତାରୁ ଜାତିର ପିତା ହୋଇପାରିଲେ ସେ ବିଷୟରେ ବିଭୂତିର ମତ ଓ ଆଲୋଚନା ବେଶ୍ ତାତ୍ତ୍ୱିକ ଓ ହୃଦୟସ୍ପର୍ଶୀ ହୋଇଥିଲା । ଏ ମଧ୍ୟରେ ବିଭୂତି ସଂସାରରେ ତାର ଲୀଳାଖେଳା ସାରି ଆର ପାରିକୁ ଟିକଟ କାଟିସାରିଲାଣି । ଆଉ ଆମେ ସେମିତି ଟିକଟ ଝରକା ଆଗରେ ଲମ୍ୱା ଲାଇନ୍‌ଟିରେ ପଛକୁପଛ ଧାଡ଼ିବାନ୍ଧି ହୋଇ ଠିଆହୋଇଛୁ । ଯାହାର ପାଳି ଆଗ ଆସୁଛି ସେ ଟିକଟ କାଟି ଆରପାରିକୁ ଚାଲିଯାଉଛି ତା ପଛରେ ଠିଆହୋଇଥିବା ଲୋକମାନଙ୍କୁ ଟା' ଟା' କରିଦେଇ । ଆମେ ମଧ୍ୟ ତା ଟା' ଟା'ର ଜବାବଦେଇ ଧିରେ ଧିରେ ତା କଣ୍ଢା କାନିକୁ ଧରିବାପାଇଁ ହାତ ବଢ଼େଇ ଚାଲିଛୁ । ହେଲେ ବିଭୂତି ! ମୁଁ ଆଜି ଚିତ୍କାର କରି କହୁଛି ତୁ ସୁନାଚାନ୍ଦ ଆଉ ରୂପାଚାନ୍ଦ ପରି

ଦୁଇଟି ସୁଯୋଗ୍ୟ ସନ୍ତାନ ଏ ଧରାପୃଷ୍ଠରେ ଛାଡ଼ିଯାଇଛୁ ଯେଉଁମାନେ କି ତୋର ପ୍ରକୃଷ୍ଟ ଉତ୍ତର ଦାୟାଦ ହୋଇ ତୋର ଜୀବନାଦର୍ଶକୁ ଫଳବତୀ କରାଇବାରେ ସମର୍ଥ ହୋଇପାରିଛନ୍ତି ।

ହେଲେ ରଘୁ କଥାଟା ନିଆରା । ଆଜି ତା କଥା ମନେପଡ଼ି ହୃଦୟଟା କିପରି ଗୋଳେଇଘାଣ୍ଟି ହୋଇଯାଉଛି । ରଘୁ ଖୁବ୍ ଭଲ ଛାତ୍ରଟିଏ ଥିଲା ଆଉ ଖୁବ୍ ଭଲ ପିଲାଟିଏ ବି । ତାଠାରୁ ଅଧିକ ନମ୍ବର ରଖିବା ଆମପାଇଁ ବଡ଼ କାଠିକର ପାଠ ହେଉଥିଲା । ହେଲେ ମୁଁ ରଘୁକୁ କ୍ଲାସ୍ ପରୀକ୍ଷାରେ ପରାସ୍ତ କରିଦେଇଥିଲି, କିନ୍ତୁ ସେ ମୋତେ ଜୀବନ ପରୀକ୍ଷାରେ ପରାସ୍ତ କରିଦେଲା । ଆଜି ସେ ଆମ ଗହଣରେ ନାହିଁ । ତାର ଆତ୍ମାର ସଦ୍‌ଗତି ପାଇଁ ମୁଁ ଜଗାକାଳିଆ ପାଖରେ ହାତ ଟେକି ନିବେଦନ କରୁଛି । ସେ ତାର ସମ୍ପୂର୍ଣ୍ଣ ଜୀବନକୁ ଶିକ୍ଷା କ୍ଷେତ୍ରରେ ଉତ୍ସର୍ଗ କରିଦେଲା । ରଘୁ ଅବିବାହିତ ରହିଲା ଓ ଜୀବନକୁ ପ୍ରାଣଦେଇ ଭଲପାଇଲା । ଖାଲି ଆମ ସ୍କୁଲ କାହିଁକି, ସାରା ସମାଜଟା ତାଠାରୁ ଉପକାର ପାଇଲା । ସମାଜ ତା ପାଖରେ ସବୁଦିନପାଇଁ ଋଣୀ ହୋଇ ରହିଗଲା ।

ତପନ ! ମୁଁ ତୁମର ଷ୍ଟାଇଲ, ଦାଗ ବିହିନ ପୋଷାକ ଓ ଫିଲ୍ମ ହିରୋଙ୍କ ପରି ତୁମର ମୁଣ୍ଡ କୁଣ୍ଡାକୁ ଏବେବି ତାରିଫ କରୁଛି । ସାଙ୍ଗସାଥିମାନେ ଯେତେବେଳେ ଜାଣିଶୁଣି ତୁମ ଦାଗ ବିହିନ ପୋଷାକକୁ ଛୁଇଁ ଦିଅନ୍ତି ଅବା ତୁମ ମୁଣ୍ଡର ଘଞ୍ଚ ବାଳକୁ ସ୍ନେହରେ ସାଉଁଳେଇ ଦିଅନ୍ତି ତୁମେ ଭୟଙ୍କରଭାବେ ଚିଡ଼ିଯାଉଥିବାର ଅପୂର୍ବ ଦୃଶ୍ୟ ଆଜି ମୋ ମାନସପଟଳରେ ଉଙ୍କିମାରୁଛି । ହେଲେ ଆଜି ତୁମେ ସେ ଘଞ୍ଚ ବାଳରୁ ନିଷ୍କୃତିପାଇ ଚନ୍ଦା ମୁଣ୍ଡିଆ ହୋଇଯାଇଛ । ଆଜି ତୁମ ମୁଣ୍ଡରେ ସେ ସାଲୁରୁ ବାଲୁରୁ ବାଳ ନାହିଁ କି ପୋଷାକରେ ସେ ଚହଟ ଚିକ୍କଣ ବି ନାହିଁ । ସମୟର ଝଡ଼ରେ ସବୁ କିପରି ଓଲଟ ପାଲଟ ହୋଇଯାଇଛି । ସମୟ କେମିତି ଆମ ସ୍ୱପ୍ନକୁ ଚୋରେଇ ନେଇଯାଏ, ସମୟ କିପରି ଆମ ପ୍ରେମକୁ ଖଟା କରିଦିଏ, ସମୟ କିପରି ଆମର କାମନାକୁ ଭାଙ୍ଗିରୁଜି ଚୁରମାର କରିଦିଏ । ଆମେ ଯାହାକୁ ଯେତେ ବେଶି ଭଲପାଉ ସେ ଆମଠୁଁ ସେତେ ବେଶି ଦୂରେଇଯାଏ । ବାପାମାଆମାନେ ଅଣ୍ଟି କାଟି ପିଲାଟିକୁ ଏଡ଼େଟିରୁ ଏଡ଼େଟିଏ କରିଥାନ୍ତି ହେଲେ ପୁଅର ମୁଣ୍ଡକୁ ହାତ ପାଇଲେ ସେ ବାପାମାଆଙ୍କୁ

ଟା' ଟା' କରିଦେଇ ନିଜ ସୁଖରେ ରାସ୍ତାଭାଙ୍ଗି ଚାଲିଯାଏ । ବାପାମାଆଙ୍କ ସ୍ୱପ୍ନର ତାଜମହଲ ଭୂଲୁଣ୍ଠିତ ହୁଏ । ଏହା ହିଁ ଆଜି ଆମର ସାମ୍ପ୍ରତିକ ଚିତ୍ର ।

କାଙ୍ଗାଳି! ତୁମ ସାଙ୍ଗରେ ବିତେଇଥିବା ଦିନ ଗୁଡ଼ାକ ଆଜି ମୋତେ ଝୁଣିବିଦାରି ପକାଉଛି । ତୁମେ ଅତ୍ୟନ୍ତ ପରୋପକାରୀ ଥିଲ ଓ କଥା କୁହା ବିଦ୍ୟାରେ ବିନ୍ଧାଣିଟିଏ ବି । ହେଲେ ବିତିଯାଇଥିବା ଏଇ ପଚାଶ ବର୍ଷର ସମୟ ସବୁ କିଛିକୁ ଏପଟ ସେପଟ କରିଦେଲା, ମନ୍ଥି ବିଦାରି ଦେଲା, ଉଚ୍ଛନ୍ନ କରିଦେଲା । ତୁମର ଚରିତ୍ରରେ ଆଜି ପରିବର୍ତ୍ତନର ଦାଗ ସୁସ୍ପଷ୍ଟ । ସମୟ ବଡ଼ ବଳବାନ୍, ସମୟ ସାଙ୍ଗରେ ଯୁଦ୍ଧ କରି କେହି ଜିତି ପାରିନାହାନ୍ତି । ସମୟ ହିଁ ସବୁବେଳେ ଜିତିଥାଏ, ଆଉ କାଳ କାଳକୁ ଜିତୁ ଥିବବି । ଆଜି ମୋର ମନେ ପଡୁଛି ତୋର ସେ ମଜାଳିଆ କଥା ଓ କାମ । ତୁ କିପରି ଏ ଆମ୍ବ ଗଛରୁ ସେ ଆମ୍ବ ଗଛକୁ ଚଢ଼ି ସବା ଉପର ଡାଳରେ ବସି ତଳକୁ ଲକ୍ଷ୍ୟ କରି ପରିସ୍ରା କରୁଥିଲୁ । ଆମେ ସବୁ ତଳେ ଠିଆ ହୋଇ ତାଳି ମାରୁ, ତୋତେ ଉତ୍ସାହିତ କରୁ, ତୋର ସାବାସି କରୁ । ଗିନିସ୍ ବୁକ୍ ଅଫ୍ ୱାଲର୍ଡ଼ ରେକର୍ଡ଼ରେ ତୋ ନାଁ ଏଥିପାଇଁ ଲିପିବଦ୍ଧ ହୋଇ ରହୁ - ଏ କଥା ଆମେ କାମନା କରୁ ।

ହେ ଶଙ୍କର! ତୁମେ ଭାବୁଛ ତୁମ କଥା କଣ ମୋର ମନେ ନାହିଁ? ଅଲବତ୍ ମନେ ଅଛି । ଉଚ୍ଚ ଶିକ୍ଷା କ୍ଷେତ୍ରରେ ତୁମେ ବେଶିବାଟ ଆଗେଇପାରିଲ ନାହିଁ । ହେଲେ ଭଲ କୃଷକଟିଏ ହୋଇ ବେଶ୍ ସୁନାମ ଅର୍ଜନ କରିପାରିଛ । ତୁମେ ତ ଜଣେ ମାଟିର ମଣିଷ, ମାଟି ସାଙ୍ଗରେ ତୁମର ଖୁବ୍ ବେଶି ଆତ୍ମୀୟତା, ମାଟି ସାଙ୍ଗରେ ତୁମେ ମାଟି ହୋଇଯାଇଛ । ମା' ମାଟି ତୁମକୁ ବେଶ୍ ଆନ୍ଦୋଳିତ କରିଛି, ଜାବୁଡ଼ି ଧରିଛି, କୋଳେଇ ଧରିଛି, ତୁମକୁ କାଖେଇ ନେଇଛି ତାର ପଣତ କାନିରେ । ମାଟିର ବାସ୍ନାରେ ତୁମେ ବିଭୋର ହୋଇଯାଇଛ, ମାଟି ତୁମର ସ୍ୱପ୍ନ, ମାଟି ତୁମର ଜୀବନ । ମା' ମାଟିର ଡାକରାକୁ ତୁମେ ଉପେକ୍ଷା ନକରି ଗାଁ ମାଟିରେ ବିତେଇଦେଲ ତୁମର ସାରା ଜୀବନଟାକୁ । ଫସଲ ଅମଳ କରୁଛ, ଲୋକଙ୍କ ତୁଣ୍ଡରେ ଦାନା ଦେଉଛ, ଲୋକେ ତୁମକୁ ଆଶୀର୍ବାଦ କରୁଛନ୍ତି, ତାରିଫ କରୁଛନ୍ତି - ଏହା କଣ କମ୍ ଗୌରବର କଥା? ମୁଁ ଭାବୁଛି ତୁମର ଅବଦାନ ଆମର ସବୁ ସାଙ୍ଗ ସାଥୀଙ୍କ ଅବଦାନଠାରୁ ବହୁ ଅଧିକ, ଆଉ ସମାଜ ତୁମକୁ ଏଥିପାଇଁ କାଳେକାଳେ ମନେ ରଖିଥିବ, ଝୁରି ହେଉଥିବ ।

ହେ ମୋର ସମସ୍ତ ପ୍ରିୟ ବାଲ୍ୟ ବନ୍ଧୁଗଣ ! ମୁଁ ତୁମମାନଙ୍କଠାରୁ ବହୁ କଥା ଶିଖିଛି, ବହୁ ଜ୍ଞାନ ଅର୍ଜନ କରିଛି । ଜୀବନଟାକୁ ଆଜି ଯେଉଁଭଳି ଭାବେ ମୁଁ ଜିଉଁଛି ଓ ଜିଇଁ ଚାଲିଛି ତାହା ତୁମମାନଙ୍କଠାରୁ ଶିଖିଥିବା ଜୀବନ ଜିଇଁବା କଳାର ହିଁ ଅବଦାନ । ସ୍ମୃତିର ପୂର୍ଣ୍ୟତୋୟା ସାଗର ବକ୍ଷରେ ଆଜି ମୁଁ ଯେପରି ପହଁରି ଚାଲିଛି, ମୁଁ ଯେପରି ଗୋଟେ ପରେ ଗୋଟେ ଲହଡ଼ି ଭାଙ୍ଗି ଆଗକୁ ଆଗକୁ ମାଡ଼ି ଚାଲିଛି ତାହା ସବୁ ତୁମମାନଙ୍କ ସ୍ନେହ, ଶ୍ରଦ୍ଧା, ସହାନୁଭୂତି, ମମତା ଓ ଆଦରର ଦାନ । ସେଥିପାଇଁ ମୁଁ ତୁମ ସମସ୍ତଙ୍କ ପାଖରେ କୃତଜ୍ଞ ଓ ଚୀର ଋଣୀ । ମୁଁ ତୁମମାନଙ୍କୁ ନମସ୍କାର କରୁଛି, ପ୍ରଣାମ କରୁଛି, ଦଣ୍ଡବତ କରୁଛି ।

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ଦେବ ମହେଶ୍ୱରଃ

ଗୁରୁ ସାକ୍ଷାତ୍ ପରମ ବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ସାଙ୍ଗ ସାଥୀମାନଙ୍କ କଥା ଅବତାରଣା କରିସାରିଲା ପରେ ପରମ ପୂଜନୀୟ ଶିକ୍ଷକମାନଙ୍କର ସ୍ମୃତିଚାରଣ କରିବାକୁ ଭୁଲିଯାଆନ୍ତି ବା କିପରି ଯେଉଁମାନେ କି ମୋତେ ଶିକ୍ଷା ଦାନ ସହିତ ଜୀବନ ଜିଇଁବାର ସାତ କଳା ଶିଖାଇଥିଲେ, ମାନବିକ ମୂଲ୍ୟବୋଧ ଭରିଦେଇଥିଲେ ମୋ ଶିରା ପ୍ରଶିରାରେ, ଆଦର୍ଶପୂର୍ଣ୍ଣ ଜୀବନଟିଏ ବିତେଇବାକୁ ପ୍ରେରଣା ଦେଇଥିଲେ, ହାତରେ ଖଡ଼ିଥିଏ ଧରେଇଦେଇ ଭଙ୍ଗା ସିଲଟର ପେଟରେ ସୃଷ୍ଟିର ଚିରନ୍ତନ ସତ୍ୟର ପ୍ରତୀକ 'ବ୍ରହ୍ମା ବିଷ୍ଣୁ ମହେଶ୍ୱର' ତିନୋଟି ଆଦି ଶବ୍ଦ ଆଙ୍କିଦେଇଥିଲେ । ଏଇ ତିନୋଟି ଶବ୍ଦ ବ୍ରହ୍ମ ଶିକ୍ଷାର ଆଧାର ଶିଳା ସ୍ଥାପନା କରିଥିଲା ମୋ ଜୀବନରେ । ଜୀବନକୁ ଏତେ ଦିନ ଧରି ଜିଇଁ ସାରିଲା ପରେ, ଜୀବନ ରଙ୍ଗମଞ୍ଚରେ ନାନା ଦୃଶ୍ୟରେ ନାନା ଅଭିନୟ କରିସାରିଲା ପରେ ଆଜି ସ୍ମୃତିର ଉତ୍ତରାୟଣ ପର୍ବରେ ମୁଁ ପାଦ ଥାପିଛି ।

ଜୀବନର ପ୍ରଚ୍ଛଦପଟକୁ ଆଜି ଉଙ୍କିମାରି ଚାହିଁଲାବେଳେ ସମାଜ ପ୍ରତି ମୋର ଅବଦାନ ଓ ମୋତେ ଗଢ଼ିବାରେ ସମାଜର ଅବଦାନ, ଏଇ ଦୁଇଟିକୁ ଧର୍ମ ନିକିତିରେ ତଉଲିବା ବେଳେ ଧର୍ମ କଣ୍ଟାଟି ସମାଜ ପଟକୁ ବେଶ୍ ଭାରି ହୋଇଯାଉଛି । ଆମ ଶିକ୍ଷକ ଆମଠୁଁ ଯାହା ଚାହୁଁଥିଲେ, ଆମ ସମାଜ ଆମଠୁଁ ଯାହା ଚାହୁଁଥିଲା, ଆମ ଦେଶ

ଆମଠୁଁ ଯାହା ଚାହୁଁଥିଲା ଆମେ କଣ ତାହା ସତରେ ପୂରଣ କରିପାରିଛେ ? ମୋର ମନେ ହୁଏ ଆମକୁ ଆହୁରି ବହୁ ରାସ୍ତା ଚାଲିବାକୁ ବାକିଅଛି ।

ଗୌର ସାର୍! ଆପଣଙ୍କ କଥା ମୋର ଟିକିନିଖି ମନେଅଛି । ଆମେ ସଂସ୍କୃତ ବ୍ୟାକରଣ ଠିକ୍ ଠିକ୍ ମନେ ରଖି ପାରୁ ନଥିବାରୁ ଆପଣ ଆମକୁ ଯଥା ବିଧି ଦଣ୍ଡ ଦେଉଥିଲେ । ଆମେ ବ୍ୟାକରଣର ସୂତ୍ର ଭୁଲିଯାଉଥିଲୁ । କିନ୍ତୁ ସାର୍! ଏଇ ଭୁଲିଯିବାର କଳାଟା ଆମକୁ ଆମର ଚଲାପଥରେ ବହୁ ସାହାଯ୍ୟ କରିଛି ଓ କରୁଛି ମଧ୍ୟ । ଜୀବନର ସଂଘର୍ଷମୟ ଯାତ୍ରା ପଥରେ ବହୁ ଉଠାଣି ବହୁ ଗଡ଼ାଣି, ବହୁ ଝଡ଼ ବହୁ ଝଞ୍ଜା ଓ ବହୁ ଅନ୍ଧାର ବହୁ ଆଲୁଅର ଲୁଚକାଳି ଖେଳ ମଧ୍ୟରେ ଆମେ ଗତି କରିଚାଲିଛୁ । ଏଇ ଗତି କରିଚାଲିବାରେ ଆମକୁ ଆମର ଭୁଲାଣିଆ ମନ ବହୁ ଯାଗାରେ ବହୁ ଭାବରେ ସାହାଯ୍ୟ କରିଛି । ଘର୍ଷଣ ନଥିଲେ ବିଦ୍ୟୁତ ତରଙ୍ଗର ସୃଷ୍ଟି ହୁଏନା । ଜୀବନଟା ପୋଖରୀ ତୁଠର ପଥରଟିଏ । ବହୁ ପାଦର ଘର୍ଷଣ ପଥରଟିକୁ ଚିକ୍କଣ କରି ଦେଇଥାଏ, ତାର ଆଭା ପ୍ରକଟିତ କରି ଦେଇଥାଏ, ଜକ ଜକ କରି ଦେଇଥାଏ ଆଇନା ପରି ଆଉ ସେ ଆଇନାରେ ଜୀବନର ପ୍ରକୃତ ଜଳ ଛବି ଉଙ୍କିମାରିଥାଏ । ଜ୍ଞାନ ବିଜ୍ଞାନ ପ୍ରସ୍ଫୁଟିତ ହୋଇଥାଏ ।

ରାମ ସାର୍! ଆପଣ ଆଜି କେଶବାନନ୍ଦଙ୍କ ରୂପ ନେଇ ଆମ ସମ୍ମୁଖରେ ପ୍ରତୀୟମାନ । ଆପଣ ଆମକୁ ଇଂରାଜୀ ଓ ଗଣିତ ଶିକ୍ଷା ପ୍ରଦାନ କରୁଥିଲେ । ଆପଣ ବିଜ୍ଞାନ ଓ ଅଙ୍କ ଶାସ୍ତ୍ରରେ ଜଣେ ଧୁରୀଣ ପଣ୍ଡିତ ଥିଲେ । ହେଲେ ଆଜି ଆପଣ କେଶବାନନ୍ଦ ରୂପରେ ଜୀବନର ପ୍ରକୃତ ଜ୍ଞାନର ମହକ ଖୋଜି ପାଇପାରିଛନ୍ତି । ଆଜି ପ୍ରକୃତ ପକ୍ଷେ ଆପଣ ନିଜର ଅନ୍ତର୍ଦୃଷ୍ଟି ମାଧ୍ୟମରେ ନିଗୁଢ଼ ସତ୍ୟର ଅନୁସନ୍ଧାନରେ ବ୍ରତୀ ଅଛନ୍ତି । ଆପଣ ଜୀବନକୁ ଖୋଜିଚାଲିଛନ୍ତି, ସତ୍ୟକୁ ଖୋଜିଚାଲିଛନ୍ତି, ଓଁକାରର ଅନ୍ୱେଷଣରେ ସମଗ୍ର ଜୀବନକୁ ଉତ୍ସର୍ଗ କରିଦେଇଛନ୍ତି । ସାର୍! ଆଜି ମୋର ମନେପଡ଼ି ଯାଉଛି ଗନ୍ଧର୍ବ ଜ୍ୟାମିତି ବୁଝିପାରୁନଥିବାରୁ ଆପଣ ତାକୁ ଦଣ୍ଡ ଦେଇଥିଲେ, ହେଲେ ମୋ ପିଠି ଥାପୁଡ଼େଇଦେଇ ମୋତେ ବାହା ବାହା କରିଥିଲେ ମୋର ଜ୍ୟାମିତି ଭଲ ହେଉଥିବାଯୋଗୁଁ । କିନ୍ତୁ ସାର୍! ପ୍ରକୃତ ପକ୍ଷେ ଜୀବନରେ ଏହା ଓଲଟପାଲଟ

ହୋଇଗଲା । ସଫଳତାର ମହାଦୌଡ଼ରେ ଗନ୍ଧର୍ବ ଆଜି ମୋଠାରୁ କାହିଁ କେତେ ଆଗରେ !

ଉପେନ୍ଦ୍ର ସାର୍! ମୁଁ ଆପଣଙ୍କୁ ମନେ ରଖିଛି ଓ ମନେ ରଖିଥିବି ମଧ । ଆପଣଙ୍କ ଦିଗଦର୍ଶନ ଓ ନିଷ୍ଠାପରତାର କୌଣସି ପଟ୍ଟାନ୍ତର ନାହିଁ । ଆପଣଙ୍କର ବେତ ମାଡ଼ ଆମ ଶରୀରରେ ଯେଉଁ ତଡ଼ିତ୍ ପ୍ରବାହ ସୃଷ୍ଟି କରୁଥିଲା ତାର ରୋମାଞ୍ଚ ଓ ଶିହରଣ ଲାଭକରି ମୁଁ ଭାବୁଥିଲି ବିଫଳତା ସଫଳତା ଅପେକ୍ଷା ବଳୀୟାନ୍ । ଏହି ବେତ ଛାଟିଆର ଯନ୍ତ୍ରଣା ଆମକୁ ପରମ ଆନନ୍ଦ ପ୍ରଦାନ କରୁଥିଲା ଯାହାକି ଆମର ଅସଜଡ଼ା ଜୀବନକୁ ସଜାଡ଼ିବାରେ, ଅସଫଳତାପୂର୍ଣ୍ଣ ଜୀବନକୁ ସଫଳତାର ପରମ ସ୍ୱାଦ ଚଖାଇବାରେ ଅତ୍ୟନ୍ତ ସହାୟକ ହୋଇଥିଲା । ସେଇଥିପାଇଁ ମୁଁ ଆପଣଙ୍କର ବେତ୍ରାଘାତକୁ ଶତ ପ୍ରଣାମ କରୁଛି, ନମସ୍କାର କରୁଛି, ଦଣ୍ଡବତ କରୁଛି ।

ମଧୁ ସାର୍ ! ସାର୍, ମୁଁ ଆପଣଙ୍କୁ ମନେ ରଖିଛି । ଆପଣ ଆମର ପରୀକ୍ଷା ଖାତା ଦେଖି ନମ୍ବର ଦେଲାବେଳେ ପାତର ଅନ୍ତର କରିଥାନ୍ତି । କିନ୍ତୁ ଗୁରୁ ଦ୍ରୋଣାଚାର୍ଯ୍ୟ ଉଭୟ କୌରବ ଓ ପାଣ୍ଡବଙ୍କର ପୂଜନୀୟ ଥିଲେ, ସମ୍ମାନାସ୍ପଦ ଥିଲେ, ଆଦରଣୀୟ ଥିଲେ । ଯଦିଓ ଗୁରୁ ଦ୍ରୋଣାଚାର୍ଯ୍ୟ ଏକଲବ୍ୟର ଡାହାଣ ହାତର ବୁଢ଼ା ଆଙ୍ଗୁଠି ଗୁରୁ ଦକ୍ଷିଣା ଭାବେ ଗ୍ରହଣ କରି ଏକ ଦଳିତ ଓ ନିଷ୍ପେସିତ ଶିଷ୍ୟର ଭବିଷ୍ୟତ ଜୀବନକୁ ଘୋର ଅନ୍ଧକାର ମଧ୍ୟକୁ ଠେଲିଦେଇଥିଲେ ତଥାପି କୌରବ ଓ ପାଣ୍ଡବ ମାନଙ୍କର ତାଙ୍କପ୍ରତି ଶ୍ରଦ୍ଧା ଓ ସମ୍ମାନରେ କୌଣସି ଭଟ୍ଟା ପଡ଼ି ନଥିଲା । ଏହି ସତ୍ୟ ପ୍ରମାଣ କରିଥାଏ ଯେ, ଜୀବନର ରଙ୍ଗମଞ୍ଚରେ ଆମେ ଜଣେ ଜଣେ କଳାକାର ଏବଂ ପରମ କାରୁଣିକ ମହାପ୍ରଭୁ ହିଁ ଆମ ଜୀବନ ନାଟକର ନିର୍ଦ୍ଦେଶକ । ବିଭିନ୍ନ ଦୃଶ୍ୟରେ ଆମେ ବିଭିନ୍ନ ରଙ୍ଗର ବେଶ ପୋଷାକ ପିନ୍ଧି ବିଭିନ୍ନ ସଂଳାପ ଉଚ୍ଚାରଣ କରିଥାଉ । ଦୃଶ୍ୟ ଓ ସଂଳାପ ଠିକ୍ ଖାପ ନଖାଇଲେ ନାଟକଟି ଦର୍ଶକଙ୍କ ନିକଟରେ ଗ୍ରହଣଯୋଗ୍ୟ ହୋଇ ନଥାଏ ଓ ବାତାବରଣ ବିଶୃଙ୍ଖଳ ହୋଇଥାଏ ।

ହେ ମୋର ପରମ ପୂଜ୍ୟ ଶିକ୍ଷକବୃନ୍ଦ! ଆପଣ ମୋର ଅନ୍ତରାତ୍ମାର ଆହ୍ୱାନ ଶୁଣନ୍ତୁ । ଆପଣମାନେ ସମସ୍ତେ ମୋର ସଦଗୁରୁ । ଏଇ ଧରା ପୃଷ୍ଠରେ ମୋର ସ୍ଥିତି ଅବସ୍ଥିତିର ପରମ କାରଣ ହେଉଛନ୍ତି ଆପଣ । ଆପଣମାନଙ୍କଠାରୁ ଲାଭ କରିଥିବା

ଶିକ୍ଷା, ଦୀକ୍ଷା, ଆଶୀର୍ବାଦ, ସ୍ନେହ, ଶ୍ରଦ୍ଧା, ଦିଗଦର୍ଶନ, ପ୍ରେରଣା ମୋ ଜୀବନର ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ । ମୁଁ ଆଜି ଯାହା ବି ହେଇଛି, ଯାହା କିଛି ବି ପାଇଛି, ଯାହା ବି ହରେଇଛି ସବୁ ଆପଣମାନଙ୍କର ଦାନ । ମୁଁ ପାଇଥିବା ସମ୍ମାନ, ସ୍ୱୀକୃତି, ପୁରସ୍କାର, ଯଶ, ଗୌରବ ସବୁ ଆପଣମାନଙ୍କ ପାଇଁ । ମୋର ସମସ୍ତ ସଫଳତାର ଦେୟ ହିଁ ଆପଣମାନେ । ଆପଣମାନେ ଯଦି ମୋ ଜୀବନର ଚୌହଦିକୁ ଆସି ନଥାନ୍ତେ ତେବେ ମୁଁ ପାଇଥିବା ମୋର ଏ ପରିଚୟ ବଦଳିଯାଇଥାନ୍ତା, ପରିଚୟର ସଂଜ୍ଞା ବି ବଦଳିଯାଇଥାନ୍ତା, ଆଉ ମୁଁ ବି ଗୋଟାପଣ ବଦଳିଯାଇଥାନ୍ତି । ଆଉ ଗୋଟାଏ ଜୀବନ ଆଉ ଗୋଟାଏ ପରିଚୟ ନେଇ ମୁଁ ଆଜି ଜୀବନର ବଡ଼ ଦାଣ୍ଡରେ କାହିଁ କେଉଁଠି ଅବା ଠୁକ୍ ଠୁକ୍ ହୋଇ ଚାଲୁଥାନ୍ତି । ବଞ୍ଚି ରହିଥାନ୍ତି । ସେଇଥିପାଇଁ ମୁଁ ଆପଣଙ୍କୁ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି, ଭକ୍ତି ଅର୍ଘ୍ୟ ଅର୍ପଣ କରୁଛି ନିବେଦନ ଅର୍ପଣ କରୁଛି, ବିନମ୍ରତା ଅର୍ପଣ କରୁଛି ଓ ଆପଣମାନଙ୍କର ଆଶୀଷ ଭିକ୍ଷା କରୁଛି ।

## ଘଟଣା ବହୁଳ ସ୍କୁଲ ଜୀବନର ଖଟା ମିଠା କାହାଣୀ

ଘଟଣାର ସାଗର ତ ହେଲା ଜୀବନ । ସାଗର ପେଟରେ ଅଗଣିତ ଲହଡ଼ି ଭାଙ୍ଗୁଥିଲାପରି ଜୀବନରେ ବି ବହୁତ ଘଟଣା ଘଟେ । ସୁଖ ଆସେ, ଦୁଃଖ ଆସେ । ଧୁ ଧୁ ତତଲା ବାଲିରେ ବି ଚାଲିବାକୁ ପଡ଼ିଥାଏ । ପଙ୍କ କାଦୁଅରେ ବି ଲସର ପସର ହେବାକୁ ପଡ଼ିଥାଏ । ବର୍ଷା ଖରାର ଦାଉକୁ ବି ସମ୍ଭାଳିବାକୁ ପଡ଼ିଥାଏ । ଜୀବନକୁ ଜିଇଁବାକୁ ପଡ଼ିଥାଏ । ମରଣକୁ ଜାବୁଡ଼ିବାକୁ ପଡ଼ିଥାଏ । ସତ୍ୟକୁ ନମସ୍କାର କରିବାକୁ ପଡ଼ିଥାଏ । ଆଉ ଶେଷରେ ଜୀବନଠୁଁ ବି ବିଦାୟ ନେବାକୁ ପଡ଼ିଥାଏ ।

ସ୍କୁଲରେ କେତେ ସାଙ୍ଗ କେତେ ସାଥୀ, କେତେ ଖେଳ କେତେ ମେଳ । ସେ ସମୟ ଗୁଡ଼ାକୁ କୋଳକୁ ସାଉଁଟି ଆଣିଲେ ବି କୋଳ ନିଅଣ୍ଟ ପଡ଼ିବ । ମୋର ମନେଅଛି, ଆମ ଗାଁର ଜଣେ ଲୋକର ଦିନେ ଦେହାନ୍ତ ହୋଇଗଲା । ଆମେ ସ୍କୁଲରୁ ଲୁଚି ଛପି ମଶାଣି ଭୂଇଁକୁ ଯାଇଥିଲୁ ସେ ଲୋକଟିର ଅନ୍ତେଷ୍ଟି କ୍ରିୟା ଦେଖିବାପାଇଁ । ସେଇଠି ଅଗ୍ନିର ଲେଲିହାନ ଶିକ୍ଷା ଆମକୁ ଚେତେଇ ଦେଉଥାଏ ସମ୍ପର୍କର ଇତିବୃତ୍ତ, ଜୀବନର ଇତିବୃତ୍ତ, ମୃତ୍ୟୁର ଇତିବୃତ୍ତ, ମାୟାମୋହର ଇତିବୃତ୍ତ

କଥା । ଆମେ ଜୀବନ ଦର୍ଶନର ଆଲୋଚନା କରି କରି ସତ୍ୟକୁ ପିଠେଇଦେଇ ମଶାଣି ଭୂଇଁକୁ ପଛରେ ଛାଡ଼ି ପୁଣି ସ୍କୁଲମୁହାଁ ଫେରିଥିଲୁ । ଆମେ ଭାବୁଥିଲୁ କିପରି ମଣିଷ ଅଣୁ ପରମାଣୁ ଓ ଇଲେକ୍‌ଟ୍ରୋନରେ ଗଢ଼ା । ଆମେ ମଧ୍ୟ ଭାବୁଥିଲୁ ପଞ୍ଚଭୂତର କଥା । ଜଳ, ପୃଥିବୀ, ଆକାଶ, ବାୟୁ ଓ ଅଗ୍ନିର ସମାହାରରେ ଏ ନଶ୍ୱର ଶରୀରର ଗଢ଼ା କଥା ।

ଆମେ ଭାବୁଥିଲୁ ସେ ଲୋକଟି ମରିଗଲାପରେ ଯିବ କୁଆଡ଼େ ? ଆମେ ଯମପୁର ଓ ସ୍ୱର୍ଗପୁର କଥା ମଧ୍ୟ ଆଲୋଚନା କରୁଥିଲୁ । ଲୋକଟିଏ ଭଲ କାମ କଲେ ସ୍ୱର୍ଗପୁର ଯାଏ ଓ ମନ୍ଦ କାମ କଲେ ନରକରେ ତାର ଗତି ହୋଇଥାଏ ବୋଲି ଆମେ ପିଲାଦିନେ ଆଈମା' ଠାରୁ ଶୁଣିଥିଲୁ । ମନ୍ଦଲୋକଟିକୁ ଯମଦୂତମାନେ ବାନ୍ଧିନେଇ ତତଲା ତେଲ କଡ଼େଇରେ ପକେଇଦିଅନ୍ତି । ଆମେ ଭାବୁଥିଲୁ ଆତ୍ମା ପରମାତ୍ମାର କଥା । ସେଦିନ ଯେଉଁ ଲୋକଟି ମରିଗଲା ତାର ଆତ୍ମାଟି ଭୂତ ହୋଇ ଅନ୍ୟମାନଙ୍କ ପରି ଆମ ଗାଁ ଆମ୍ବ ଗଛ କୋରଡ଼ରେ ଘର କରି ରହିବବୋଲି ଆମେ ଆଲୋଚନା କରି ଏହି ସିଦ୍ଧାନ୍ତରେ ପହଞ୍ଚିଥିଲୁ । ବଞ୍ଚିଥିବାବେଳେ ବି ସେ ଘର ସଂସାର କଲା । ମରିଗଲା ପରେ ବି ସେଥିରୁ ସେ ତ୍ରାହି ପାଇଲା ନାହିଁ । ଘର ସଂସାରର ଭୂତ ଯେ ତାକୁ ଗୋଟାପଣ ଗ୍ରାସ କରିରଖିଛି ।

ଆମ ସାଥୀ କୈଳାସ ଟିକେ ଚଗଲା ପ୍ରକୃତିର ପିଲା । ସେ ଭାରି ମଜା କଥାଟିଏ କହିଲା । ଏଇ ଯେଉଁ ଲୋକଟି ମରିଗଲା ତା ସ୍ତ୍ରୀ ତା ସାଙ୍ଗରେ ଦୀର୍ଘ ୫୦ ବର୍ଷ ଧରି ଘର ସଂସାର କଲା, ହେଲେ ଆଉ ରାତିଟିଏ ପାଇଁ ବି ତା ସ୍ୱାମୀର ମର ଶରୀରଟିକୁ ତା ଘରେ ରଖିବାକୁ ଜାଗା ଦେଲାନି । ଗାଁ ଲୋକ କୋକେଇ ସଜାଡ଼ି ଯେତେ ଶୀଘ୍ର ପାରିଲେ ତା ମର ଶରୀରଟିକୁ ଶ୍ମସାନକୁ ବୋହି ନେଲେ । ସେଠି ତାକୁ ନିଆଁ ଲଗାଇ ଜାଳିପୋଡ଼ି ପାଉଁଶ କରିଦେଲେ । ଆଉ ତାପରେ ଟୋକେଇଏ ପାଉଁଶ ନେଇ ନଈରେ ଭସେଇଦେଲେ । ସେଇଠି ଜୀବନ କାହାଣୀର ଇତି ହୋଇଗଲା, ପୂର୍ଣ୍ଣଚ୍ଛେଦ ପଡ଼ିଗଲା, ସମୟ ସୁଅରେ ସବୁ ଭାସିଗଲା – ଜୀବନ ବି, ଜୀବନର ସ୍ମୃତି ବି । ଜୀବନର ଇତିହାସ ଓ ଭୂଗୋଳ ସବୁ ଓଲଟପାଲଟ ହୋଇଗଲା । ଆକାଶଟା ମୁଣ୍ଡ ଉପରେ ବିରାଟ ଟୋକେଇଟିଏ ହୋଇ ଅଜାଡ଼ିହୋଇ ପଡ଼ିଲା ଆଉ

ତା ପରେ ଶୂନ୍ୟ, ଶୂନ୍ୟ ଆଉ ମହାଶୂନ୍ୟ । ଶୂନ୍ୟରୁ ସୃଷ୍ଟି ଓ ଶୂନ୍ୟରେ ବିଲୀନ ହେବା ଜୀବନର ଧର୍ମ ଓ ପରମ ସତ୍ୟ । ଏହିପରି ନାନା କଥା, ନାନା ଆଲୋଚନା ଭିତରେ ଦତ୍ତ ଓ ଗୋବିନ୍ଦ ମୁଥାମୁଥି ହୋଇଗଲେ । ଆମେ ସେଇଠି ଆଲୋଚନାରେ ଡୋରି ବାନ୍ଧିବାକୁ ମନସ୍ଥ କଲୁ ଓ ଏହି ସିଦ୍ଧାନ୍ତରେ ଉପନୀତ ହେଲୁ ଯେ ସେଦିନ ସେ ମରିଯାଇଥିବା ମଣିଷଟି ଭୂତାତ୍ମା ହୋଇ ଆମ ଗାଁ ଆମ୍ବ ବଗିଚାରେ ରହିଲା । ଆମେ ପିଲା ଦିନେ ଜାଣିଥିଲୁ ଯେ ଭୂତମାନେ ଗଛମାନଙ୍କରେ ରହି ଭାରି ଉତ୍ପାତ କରନ୍ତି, କିନ୍ତୁ ସେଦିନ ସେ ମରିଯାଇଥିବା ମଣିଷଟିର ଭୂତାତ୍ମାର ଉତ୍ପାତ ଆମେ ଦୀର୍ଘଦିନ ଧରି ଆଉ କାହିଁ କେଉଁଠି ଲକ୍ଷ୍ୟ କଲୁନାହିଁ ଏବଂ ଭାବିଲୁ ଯେ ସେ ବୋଧେ ଗୋଟିଏ ଭଲ ଭୂତ ହୋଇଗଲା । ହେଲେ ଆମ ଗାଁ ବଗିଚାରେ ଥିବା ଆମ୍ବ ଗଛ ଧୀରେ ଧୀରେ ବନ୍ୟା ବାତ୍ୟାରେ ନଷ୍ଟ ହୋଇଗଲା । କିଛି ଗଛକୁ କାଟି ଲୋକେ ମଧ୍ୟ ଜାଳ କଲେ । ଭୂତ ମାନଙ୍କର ଆଶ୍ରୟ ସ୍ଥଳୀ ଆମ୍ବ ବଗିଚା ଆମ ଗାଁରୁ ଲୋପ ପାଇଗଲା । ତା ହେଲେ ଭୂତମାନେ ଗଲେ କୁଆଡ଼େ ? ସେମାନେ ନିଶ୍ଚୟ ଆମେ ବଞ୍ଚିରହିଥିବା ମଣିଷମାନଙ୍କ ଶରୀର ଓ ଆତ୍ମା ମଧ୍ୟରେ ପ୍ରବେଶକରି ସେମାନଙ୍କର ବଦଗୁଣକୁ ଆମ ମଧ୍ୟରେ ଆସ୍ଥାନ ଦେଇ ଆମକୁ ଗୋଟିଏ ଗୋଟିଏ ଜୀଅନ୍ତା ଭୂତରେ ପରିଣତ କରିଦେଇଛନ୍ତି । ଭୂତର ସମସ୍ତ କୁଚରିତ୍ର ଆମ ମଧ୍ୟରେ ପ୍ରକାଶପାଉଛି । ନୁହେଁ କି ?

ଆମେ ଆମ ସ୍କୁଲରେ ଗଣେଶ ପୂଜା, ସରସ୍ୱତୀ ପୂଜା ଆଦି ବେଶ୍ ଜାକଜମକରେ ପାଳନ କରୁ, ହେଲେ ଆମର ଲକ୍ଷ୍ୟଟି ଥାଏ ଗଣ୍ଡିଏ ଭଲ ଭୋଜିଭାତ ଉପରେ । ଆମେ ଭଲ ପାଠ ପଢୁ କି ନପଢୁ, ନୂଆ ବେଶପୋଷାକ ପିନ୍ଧି ପୂଜାନୈବେଦ୍ୟ କରିଥାଉ ଏବଂ ବିଘ୍ନରାଜ ବିନାୟକ ଓ ବିଦ୍ୟାଦାତ୍ରୀ ମା' ସରସ୍ୱତୀଙ୍କର ପୂଜାର୍ଚ୍ଚନା କରିଥାଉ ପରୀକ୍ଷାରେ ଭଲ ନମ୍ବର ରଖି ପାଶ୍ କରିବାପାଇଁ । ପୂଜାପାଇଁ ଶୁଦ୍ଧ ଗୁଆ ଘିଅରେ ଭଜାଯାଇଥିବା ଚଣାମଟରକୁ ଆମେ କେଇଜଣ ସାଙ୍ଗସାଥୀ ଲୁଚେଇ ଚୋରେଇ ରୋଷେଇଆ ମଣ୍ଡଳର ଅଗୋଚରରେ ଓ ମା' ସରସ୍ୱତୀଙ୍କର ଦୃଷ୍ଟି ଆଢୁଆଳରେ ମଜାକରି ଖାଇଥାଉ ଏବଂ ଏଥିପାଇଁ ବେଶ୍ ବାହାଦୁରି ମଧ୍ୟ ନେଇଥାଉ । ଆମ ମଧ୍ୟରୁ କେଇଜଣ ଏପରି ଭୋଗ ଚୋରି କରି ଖାଇବାକୁ ନାପସନ୍ଦ କରି ପ୍ରଭୁଙ୍କ ପାଖରେ କ୍ଷମା ପ୍ରାର୍ଥନା ମାଗି ଏହାର ପୁନରାବୃତ୍ତି ନକରିବାପାଇଁ ଶପଥ ନେଇଥିଲେ ମଧ୍ୟ ଭବିଷ୍ୟତରେ ବାରମ୍ବାର ସେମାନେ ତାହାହିଁ କରିଚାଲିଥିଲେ ।

ଆମ ସ୍କୁଲରେ ଆମେ ଫୁଟବଲ ଓ ଅନ୍ୟାନ୍ୟ ଖେଳ ମଧ୍ୟ ଖେଳୁଥିଲୁ । ଯେତେବେଳେ ଅନ୍ୟ ସ୍କୁଲ ସାଙ୍ଗରେ ଆମେ ଫୁଟବଲ ମ୍ୟାଚ ଖେଳିଥାଉ ତାହା ଭାରତ ପାକିସ୍ତାନ ଯୁଦ୍ଧର ରୂପ ନେଇଥାଏ । ହରି ଫୁଟବଲ ମ୍ୟାଚରେ ଆମ ସ୍କୁଲକୁ ଜିତାଇଦେଇ ହିରୋର ମାନ୍ୟତା ଲାଭକରିଥିଲା ହେଲେ ତାର ସେ ହିରୋପଣିଆ ବେଶିଦିନ ତିଷ୍ଠି ରହିପାରି ନଥିଲା । ବାର୍ଷିକ ପରୀକ୍ଷାରେ ହରି ଫେଲ୍ ହୋଇଯିବା ପରେ ତାର ସେ ହିରୋପଣିଆରେ ଭଙ୍ଗା ପଡ଼ିଗଲା । ମୁଁ ଏବେ ଭାବୁଛି ପ୍ରତିଯୋଗିତା ସତରେ ଭଲ ନାଁ ମନ୍ଦ କଥାଟିଏ? ଏହା ମନାନ୍ତର, ମତାନ୍ତର, ଘୃଣା, ବିଦ୍ୱେଷ ସୃଷ୍ଟି କରିଥାଏ । ଆମେ ସବୁବେଳେ ଭଗବାନଙ୍କୁ ପ୍ରାର୍ଥନା କରିଥାଉ ଯେ ଆମ ପ୍ରତିଯୋଗୀ ସବୁବେଳେ ପରାସ୍ତ ହୁଅନ୍ତୁ ଓ ହାତୀ ସବୁବେଳେ ଆମ ମୁଣ୍ଡରେ ସୁନା କଳସ ଢ଼ାଳୁ । ପ୍ରତିଯୋଗିତା ମାନସିକ ଅସ୍ଥିରତା ଓ ଶତୃତାର ସଦା ଜନ୍ମଦାତା ।

ମୋର ଅନେଅଛି, ଆମ ସ୍କୁଲ ପରିସର ମଧ୍ୟରେ ଗୋଟିଏ ମାଆ ତାର ପାଗଳ ପୁଅଟିକୁ କୋଳରେ ଧରି ସବୁବେଳେ ବସିଥାଏ । ତାକୁ ଦେଖି ଆମେ ଆମ ସାଙ୍ଗସାଥୀଙ୍କ ମେଳରେ ଯୁକ୍ତି ଓ ପ୍ରତିଯୁକ୍ତି କରିଥାଉ ଯେ କାହିଁକି ସେ ପିଲାଟି ପାଗଳ ହୋଇଗଲା ? ସତରେ ସେ ପିଲାଟି ପାଗଳ ନାଁ ଆମେ ସମସ୍ତେ ପାଗଳ ? ପାଗଳାମିର ପ୍ରକୃତ ସଂଜ୍ଞା କଣ, ତା ଉପରେ ବିସ୍ତୃତ ଆଲୋଚନା ହୁଏ । ଆମେ ଶେଷରେ ଏହି ସିଦ୍ଧାନ୍ତରେ ଉପନୀତ ହେଉ ଯେ ଯେଉଁ ଲୋକଟି ସମାଜରେ ପ୍ରଚଳିତ ବିଧିବଦ୍ଧ ନୀତି ନିୟମ ଓ ତାର ଅଭ୍ୟାସକୁ ଯଥାରୀତି ପାଳନ କରିନଥାଏ ତାକୁ ହିଁ ଆମେ ପାଗଳଟିଏ ବୋଲି କହିପାରିବା । ତାହେଲେ ଆମେ ସବୁ କଣ ? ଆମେ କଣ ଜୀବନରେ ଏକ ପାଗଳ ଲୋକର ସ୍ୱପ୍ନ ଓ ସ୍ୱତଃପ୍ରବୃତ୍ତ ଇଚ୍ଛାକୁ ଉପଭୋଗ କରିବାପାଇଁ କଳ୍ପନା କରିନଥାଉଁ ? ଆମେ କଣ ଜଣେ ଜଣେ ପାଗଳର ପଦବାଚ୍ୟ ନୋହୁଁ କି ?

ମୋର ଆଜି ମନେ ପଡ଼ିଯାଉଛି ଆମ ପରୀକ୍ଷା ବେଳର କଥା । ମୁଁ ସେତେବେଳେ ଭାବୁଥିଲି ପରୀକ୍ଷାରେ କପି କରିବା ଗୋଟାଏ କଳା ଓ ଦକ୍ଷତାର ମାପକାଠି । ମୋ ସାଙ୍ଗ ଲିଙ୍ଗରାଜ ଏକ ପାଞ୍ଚ ବର୍ଗ ସେଣ୍ଟିମିଟର ବ୍ଲଟିଂପେପରରେ ଜ୍ୟାମିତିର ସବୁ ଥିଓରମ୍ ଗୁଡ଼ିକ ଆଗରୁ ଲେଖିନେଇଥାଏ ଏବଂ ପରୀକ୍ଷା ହଲକୁ

ଗଲାବେଳକୁ ତାକୁ ସାଙ୍ଗରେ ନେଇକରି ଯାଇଥାଏ । ସେ ଲେଖାଗୁଡ଼ିକ ଏତେ ଟିକିଟିକି ହୋଇଥାଏ ଯେ କେବଳ ଲିଙ୍ଗରାଜ ହିଁ ତାକୁ ପଢ଼ିପାରେ ଓ ଚାଳିଶ ବର୍ଷରୁ ଉର୍ଦ୍ଧ୍ୱରୁ କୌଣସି ବ୍ୟକ୍ତି ପକ୍ଷରେ ତାକୁ ପଢ଼ିବା ବଡ଼ କାଠିକର ପାଠ । ଏହି ବ୍ଲଟିଂ ପେପର ସହିତ ଏକ ଅତ୍ୟନ୍ତ ମୁନିଆ ପେନସିଲ ମଧ୍ୟ ସେ ପରୀକ୍ଷା ହଲକୁ ନେଇଯାଇଥାଏ ଜ୍ୟାମିତିର ଚିତ୍ର କପିକରିବାକୁ । ହେଲେ ରତ୍ନାକରର କପି କରିବା କଳା ଭିନ୍ନ ରକମର । ସେ ବିଭିନ୍ନ ପ୍ରଶ୍ନର ଉତ୍ତର ତାର ଦୁଇଟି ଜଙ୍ଘରେ ପ୍ୟାଣ୍ଟ ତଳକୁ ଅତି ଚମତ୍କାର ଭାବେ ଲେଖି ନେଇଯାଇଥାଏ । ହେଲେ ଜଙ୍ଘରୁ ଦେଖି ଖାତାରେ କପି କଲାବେଳେ ଗାଈ (Cow) ଶବ୍ଦଟା କୁଆ (Crow) ଶବ୍ଦରେ ବଦଳିଯାଇଥାଏ । ମୋର ଆଉ ଜଣେ ସାଙ୍ଗ ଆବୁ ରଘୁର ଖାତାକୁ ଦେଖି କପି କଲାବେଳେ ବେଞ୍ଚ ଉପରେ ଠିଆ ହୋଇପଡ଼ିଥାଏ । ତାର କପି କରିବା କଳା ଅନ୍ୟଠୁଁ ନିଆରା । ରଘୁ ଆଗ ବେଞ୍ଚରେ ବସିଥାଏ ଓ ଆବୁ ଠିକ୍ ତା ପଛ ବେଞ୍ଚରେ ବସିଥାଏ । ଯେତେ ମୁଣ୍ଡ ଟେକି ଦେଖିଲେବି ଆବୁ ରଘୁର ଖାତାକୁ ନକଲ କରିପାରେନା । ତେଣୁ ବେଞ୍ଚରେ ଠିଆହୋଇ କପି କରିବାର ଏଇ ନିଆରା କଳାଟାକୁ ସେ ଆଦରି ନେଇଥିଲା । ଯେତେ ଯାହା ହେଲେବି କପି କରିବାର ଏହି ବିଭିନ୍ନ ମାଧ୍ୟମ ଗୁଡ଼ିକ ପରୀକ୍ଷାରେ ପାଶ୍ କରିବାରେ ସହାୟକ ହେଉଥିଲେ ମଧ୍ୟ ଏହାକୁ ସାଧାରଣତଃ ଘୃଣା ଚକ୍ଷୁରେ ଦେଖାଯାଇଥାଏ । ଏବେ କିନ୍ତୁ କପି କରିବାର କଳା ବଦଳିଯାଇଛି । ଏବେ ପରୀକ୍ଷା ହଲ୍ ବାହାରେ ଲାଉଡ଼ସ୍ପିକର ମାଧ୍ୟମରେ ପ୍ରଶ୍ନର ଉତ୍ତର ଗୋଟିଗୋଟିକରି କ୍ରମାନ୍ୱୟରେ ବଡ଼ପାଟିରେ ଡକାଯାଉଛି । ତାକୁ ଶୁଣି ପିଲାମାନେ ପରୀକ୍ଷା ଖାତାରେ ତାହା ଉତାରିଦେଉଛନ୍ତି । ଏବେ ପିଲାମାନେ ପରୀକ୍ଷା ହଲକୁ କାଲକୁଲେଟର, ଛୁରୀ ଓ ଖଣ୍ଡା ଧରି ଯାଉଛନ୍ତି । ପରିଦର୍ଶକମାନଙ୍କୁ ପରୀକ୍ଷାର୍ଥୀମାନେ ଭୟଭୀତ କରାଇ ସମୂହ କପି କରିଚାଲିଛନ୍ତି । ବେଳେ ବେଳେ ଏହି କପି କଥା ମଧ୍ୟ କୋର୍ଟ କଚେରୀକୁ ଯାଉଛି । ଏବେ ମୁନ୍ନା ଭାଇ କପିର ଆଶ୍ରା ନେଇ ହିରୋ ବନିଯାଇଛି ।

ଏବେ ସ୍କୁଲର ଚିତ୍ର ସମ୍ପୂର୍ଣ୍ଣ ବଦଳିଯାଇଛି, ଆଉ ସମୟର ଧାରା ବି । ସବୁ କିଛି ଯେପରି ଓଲଟପାଲଟ ହୋଇଯାଇଛି । ଶିକ୍ଷା ବ୍ୟବସ୍ଥା ଧୂଳିସାତ୍ ହେବାକୁ

ବସିଲାଣି । ଶିକ୍ଷା ବ୍ୟବସାୟରେ ପରିଣତ ହେଲାଣି । ଶିକ୍ଷା ଅର୍ଥ କୈନ୍ଦ୍ରିକ ହୋଇ ଆମ ସାମାଜିକ ଜୀବନକୁ ପୁରାପୁରି କବ୍ଜା କରିନେଲାଣି । ମାନବିକ ମୂଲ୍ୟବୋଧର ଅଧୋପତନ ହେଲାଣି । ପରସ୍ପର ମଧ୍ୟରେ ଈର୍ଷା, ବିଦ୍ୱେଷ, ଅହମିକା, ପାତର ଅନ୍ତର ଭାବ ଓ ପରଶ୍ରୀକାତରତା ଆଜି ବ୍ୟକ୍ତିର ନାଡ଼ି ନକ୍ଷତ୍ରକୁ ପରିଚାଳିତ କରୁଛି । ଲୋଭ, ପାପ, ମୋହ ଗ୍ରସ୍ତ ମାନବ ସଭ୍ୟତା ଆଜି ଏକ ଅନ୍ଧକାରାଛନ୍ନ ଦିଗନ୍ତ ଆଡ଼କୁ ଦ୍ରୁତ ଗତିରେ ମୁହେଁଇଚାଲିଛି । ପାରିବାରିକ ଆପଣା ପଣିଆ, ସୁଖ ସ୍ୱାଛନ୍ଦ୍ୟ, ସ୍ନେହ ପ୍ରେମ ଭାବ, ପରୋପକାର ଓ ସେବା ପରାୟଣତା କୁଆଡ଼େ ସବୁ ଖତ ଖାଇଗଲାଣି । ଅନ୍ୟର ସୁଖରେ ଆଜି ମଣିଷ ସୁଖୀ ହୋଇପାରୁନି । ଅନ୍ୟକୁ ଦୁଃଖ ଦେଇ ମଣିଷ ଆଜି ଆନନ୍ଦ ପାଉଛି । ଏହି ଆନନ୍ଦ ବା କଣ, ଏହି ଆନନ୍ଦର ସଂଜ୍ଞା ବା କଣ ?

"ଅନ୍ୟକୁ ଭଲପାଅ, ଅନ୍ୟର ସେବା କର ଆଉ ଗଛଟିଏ ଲଗାଅ" - ଏହି ଯେଉଁ ମହତ ବାଣୀ ଆମେ ପିଲାଟି ଦିନରୁ ଶିଖିଥିଲୁ ଆଜି ତାହା ସମସ୍ତେ ଭୁଲିଗଲୁଣି । ଦିନ ପରେ ଦିନ ବଞ୍ଚିରହିବାପାଇଁ ଆମେ କରୁଥିବା ସଂଗ୍ରାମରେ ଏହି ମହତ୍‌ବାଣୀର ଆଜି ଆଉ କେଉଁଠି ସ୍ଥାନ ନାହିଁ । ସ୍ୱାର୍ଥର କବଳରେ ପଡ଼ି ଆମେ ଆଜି ସ୍ୱାର୍ଥାନ୍ଧ ହୋଇଯାଇଛୁ । ଗଛ ମଣିଷର ପରମ ମିତ୍ର, ପରୋପକାରୀ - ତାହା ବେଦ, ଉପନିଷେଦ ପ୍ରମାଣ କରିଛି, ଆଉ ବିଜ୍ଞାନ ବି । ଗଛଟିଏ ଯେପରି ତାର ଛାୟା, ଫଳ, ପୁଷ୍ପ ଆଦି ମଣିଷକୁ ପ୍ରଦାନକରି ତ୍ୟାଗର ପରାକାଷ୍ଠା ପ୍ରତିପାଦିତ କରିଥାଏ ଠିକ୍ ସେହିପରି ମଣିଷଟିଏ କେବଳ ସ୍ୱାର୍ଥାନ୍ଧ ନହୋଇ ତ୍ୟାଗପୂତ ଜୀବନ ନିର୍ବାହ କରି ଏହି ମରଣଶୀଳ ସଂସାରରେ ତାର ଅବିସ୍ମରଣୀୟ ଓ ମହନୀୟ ପଦ ଚିହ୍ନ ଛାଡ଼ିଯିବା ଉଚିତ୍ ।

ଆଜି ଆମ ବିଦ୍ୟାଳୟର ଏହି ସୁବର୍ଣ୍ଣ ଜୟନ୍ତୀ ଅବସରରେ ଆମେ ସମସ୍ତେ ଏଠାରେ ଏକତ୍ରିତ ହୋଇଛେ ଏବଂ ୨୦୩୩ ମସିହାରେ ପାଳନ ହେବାକୁ ଥିବା ପ୍ଲାଟିନମ ଜୟନ୍ତୀରେ ମଧ୍ୟ ଆମେ ପୁଣି ଏକତ୍ରିତ ହେବାପାଇଁ ଜଗାକାଳିଆ ପାଖରେ ପ୍ରାର୍ଥନା କରିବା । ଅବଶିଷ୍ଟ ଜୀବନର ଅଭିଜ୍ଞତାକୁ ପାଥେୟ କରି ପୁଣି ଆମେ ମିଳିତ ହେବା ନୂଆ ରୂପରେ, ନୂଆ ରଙ୍ଗରେ, ନୂଆ ଢଙ୍ଗରେ । ଆଜି ମୁଁ ମୋର ଏହି ପରମ ପ୍ରିୟ ଅନୁଷ୍ଠାନ ଓ ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ପ୍ରଣାମ କରୁଛି, ଦଣ୍ଡବତ କରୁଛି,

ନମସ୍କାର କରୁଛି ଓ ସେମାନଙ୍କର ଆଶୀର୍ବାଦ ଭିକ୍ଷା କରୁଛି । ମୋର ଭବିଷ୍ୟତ ଜୀବନର ଚଲାପଥରେ ସେମାନଙ୍କର ଆଶୀର୍ବାଦ ପ୍ରେରଣାଦାୟକ ହେଉ - ଏହାହିଁ କାମନା ।

ପ୍ରକୃତି କୋଳରେ ଜନ୍ମ ନେଇ ଗାଁ ମାଟି ଗାଁ ଭୂଇଁରୁ ଆସି ଆଜି ମୁଁ ଜୀବନର ବଡ଼ ଦାଣ୍ଡରେ ଦଣ୍ଡାୟମାନ । ମୁଁ ଜୀବନରେ ଯାହା କିଛିବି ପାଇଛି, ଆଜି ଯେଉଁଠିବି ଠିଆ ହୋଇଛି ସବୁ ସେହି ମୋ ଗାଁ ମାଟି, ପାଣି, ପବନ, ବିଦ୍ୟାଳୟ ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଦାନ । ମୁଁ ତାଙ୍କ ପାଖରେ ସବୁ ଦିନପାଇଁ ଋଣୀ । ଏ ଋଣ କେବେ ଶୁଝି ହବନି । ଆଜି ମୁଁ ସେମାନଙ୍କର ଆଶୀର୍ବାଦକୁ ପାଥେୟ କରି ବିଶ୍ୱ ବିଖ୍ୟାତ ସ୍କୁଲ ହ୍ୟାରୋ ଓ ହାର୍ଭାଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିବା ଛାତ୍ରମାନଙ୍କ ସହ କାନ୍ଧରେ କାନ୍ଧ ମିଳେଇ ଦିପାଦ ଚାଲିପାରୁଛି । ସେମାନେ କିନ୍ତୁ ମହାନଦୀର ବିସ୍ତୃତ ବାଲୁକା ଶଯ୍ୟାରେ ସେମାନଙ୍କର ପାଦ ଥାପିନାହାନ୍ତି କିମ୍ବା ମହାନଦୀର ପବିତ୍ର ଜଳରେ ଅବଗାହନ କରିନାହାନ୍ତି କିମ୍ବା ସେମାନେ ଆମ ଗାଁ ଆମ୍ବ ଗଛରେ ଘର କରି ରହିଥିବା ଭୂତମାନଙ୍କୁ ବି ଦେଖିନାହାନ୍ତି କି ସେମାନଙ୍କର ଦୌରାତ୍ମ୍ୟ ମଧ୍ୟ ସହିନାହାନ୍ତି । ଆମ୍ବ ଗଛକୁ ଟେକା ଫୋପାଡ଼ି ମାରି ତୋଳାଯାଉଥିବା ଆମ୍ବର ଅମୃତ ସ୍ୱାଦକୁ ହ୍ୟାରୋ କିମ୍ବା ହାର୍ଭାଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିବା ଛାତ୍ରମାନେ କେବେ ବି ଚାଖିନାହାନ୍ତି । ଫଳନ୍ତି ବୃକ୍ଷ ହିଁ କେବଳ ଟେକା ଫୋପଡ଼ର ମାଡ଼ ସହିଥାଏ । ଫଳନ୍ତି ଆମ୍ବ ଗଛରୁ ତାର ଏହି ସହନଶୀଳତା ଗୁଣ  ଆମେ ପିଲାଟି ଦିନରୁ ଶିଖିଛୁ, ଅଙ୍ଗେ ଲିଭେଇଛୁ, ହେଲେ ସେ ବିଦେଶୀ ଛାତ୍ରମାନେ ଏ ଗୁଣର ଅଧିକାରୀ ହୋଇପାରିନାହାନ୍ତି ।

୧୯୯୯ ମସିହାରେ ଆମ ସ୍କୁଲ ଚିନ୍ତାମଣି ବିଦ୍ୟାପୀଠ, କିଶୋରନଗର ପରିସରରେ ଅଚ୍ୟୁତ ରିସର୍ଚ୍ଚ ଫାଉଣ୍ଡେସନ୍ ନବଯୁଗର ପ୍ରବର୍ତ୍ତନ ପାଇଁ ପ୍ରଥମକରି ମହାଯଜ୍ଞର ଆୟୋଜନ କରିଥିଲା । ମହାନଦୀର ଅବବାହିକାରେ ଗଢ଼ିଉଠିଥିବା ଆମର ଏଇ ପ୍ରିୟ ବିଦ୍ୟାଳୟଟି ପବିତ୍ର ଧରଣୀର ସ୍ମାରକୀ ବହନ କରିଥାଏ । ମହାନଦୀର ସୁଲୁସୁଲିଆ ପବନ, ମନ ମହକିଆ ସୁଗନ୍ଧର ବାତାବରଣ ଭିତରେ ବିଦ୍ୟାଳୟ ପରିସରଟି ସଦା ଆନନ୍ଦ ମୁଖରିତ ହୋଇଉଠୁଥାଏ । ବହୁ ମହାନ୍ ଆତ୍ମାର ଆଶୀର୍ବାଦକୁ ପାଥେୟକରି

ଆମର ଏଇ ବିଦ୍ୟାଳୟଟି ପ୍ରଗତିର ଉତ୍ତୁଙ୍ଗ ଶିଖରରେ ଆଜି ଦଣ୍ଡାୟମାନ ।

ଆମ ସ୍କୁଲ ଜୀବନର ପ୍ରେମ କାହାଣୀ ବିଷୟରେ ପଦେ ଦିପଦ ନକହିଲେ କାହାଣୀଟା ଅସମ୍ପୂର୍ଣ୍ଣପରି ଲାଗିବ । ଆମ ସ୍କୁଲରେ ପୁଅ ଝିଅମାନେ ମିଳିମିଶି ପାଠ ପଢୁଥିଲେ । ସହ ଶିକ୍ଷା ଅନୁଷ୍ଠାନଭାବେ ଆମ ବିଦ୍ୟାଳୟର ବେଶ୍ ସୁନାମ ଥିଲା । ମୁଁ ମୋର ବନ୍ଧୁ ସାଙ୍ଗ ସାଥୀମାନଙ୍କର ପ୍ରେମିକାମାନଙ୍କ ବିଷୟରେ ଆଇମା'ର କାହାଣୀ ପେଡ଼ି ଆଉ ଖୋଲିବାକୁ ଚାହୁଁନାହିଁ । ଖୋଲି ବସିଲେ ରାତି ପାହି ସକାଳ ହୋଇଯିବ ଓ ସକାଳରୁ ପୁଣି ରାତି । ଯଦି ସତରେ ଆଜି ମୁଁ କାହାଣୀ ପେଡ଼ି ଖୋଲିବସେ ମୋ ସାଙ୍ଗସାଥୀମାନଙ୍କର ନାତି ନାତୁଣୀମାନେ ସେମାନଙ୍କର ଜେଜେ ଓ ଅଜାଙ୍କ ପ୍ରେମ କାହାଣୀ ଶୁଣି ହସିହସି ଫାଟିପଡ଼ିବେ । ତାଙ୍କ ଜେଜେ ଓ ଅଜାମାନେ ଦିନେ କିପରି ଆମ କ୍ଲାସରେ ପଢୁଥିବା ଝିଅମାନଙ୍କୁ ଏକ ତରଫା ଭାବେ ପ୍ରେମ କରୁଥିଲେ, ପ୍ରେମ ନିବେଦନ କରୁଥିଲେ, ପ୍ରେମ ପ୍ରାର୍ଥୀ ହେଉଥିଲେ । ମୁଁ ଛାତିରେ ହାତ ଦେଇ କହିପାରିବି ଆମ ସାଙ୍ଗରେ ପଢୁଥିବା ୯୯ ଭାଗ ପୁଅ ପିଲାମାନଙ୍କର ପ୍ରେମ ହିଁ ଏକ ତରଫା ଥିଲା । ମାତ୍ର ଏକ ଭାଗ ପିଲାଙ୍କର ସୌଭାଗ୍ୟ ଥିଲା ଯେ ସେମାନଙ୍କର ପ୍ରେମିକା ମଧ୍ୟ ତାଙ୍କୁ ପ୍ରେମ କରୁଥିଲେ । ନିଶ୍ଚିତରୂପେ ମୋର ସାଙ୍ଗସାଥୀମାନେ ଆଜି ସେମାନଙ୍କର ନାତି ନାତୁଣୀମାନଙ୍କୁ କୋଡ଼ରେ ବସାଇ ନିଜର ଏକ ତରଫା ପ୍ରେମର ବାହାଦୁରି ନେଉଥିବେ ଓ ନାତି ନାତୁ ନାତୁଣୀମାନଙ୍କୁ ତାଙ୍କ ପଦାଙ୍କ ଅନୁସରଣ କରିବାକୁ ମଧ୍ୟ ପ୍ରୋତ୍ସାହିତ କରୁଥିବେ ।

ଏହି କାହାଣୀଟିରେ ମୁଁ ମୋର ପିଲାଦିନର ସାଙ୍ଗସାଥୀଙ୍କର ନାଁ ଜାଣିଶୁଣି ଠିକ୍ ଭାବେ ଉପସ୍ଥାପନା କରିନାହିଁ । ସେମାନଙ୍କର ମିଛିମିଛିକା ନାଁର ଅବତାରଣା କରିଛି । କାରଣଟି ହେଲା ଭୟ । ଯଦି ମୁଁ ସେମାନଙ୍କର ସତ ନାଁଟି କହିଦିଏ, କାଳେ ସେମାନେ ମୋ ସ୍ନେହ ପଞ୍ଜୁରୀରୁ ଫୁର କରି ଉଡ଼ିଚାଲିଯିବେ ସେହି ଡରରେ । ଜୀବନର ଏହି ଉତ୍ତର ଅଧ୍ୟାୟରେ ମୁଁ ସେମାନଙ୍କ ସାହଚର୍ଯ୍ୟ, ସ୍ନେହ, ମମତା ଓ ଆକର୍ଷଣର ବେଶି ଆବଶ୍ୟକତା କରୁଛି । ସେଇଥିପାଇଁ ଆଜି ମୁଁ ସେମାନଙ୍କୁ ବେଶି ଖୋଜୁଛି, ବେଶି ଲୋଡୁଛି, ଉଣ୍ଡାଳି ହଉଛି, ବାଉଳି ହେଉଛି ଓ ଝୁରି ହେଉଛି । ତାଙ୍କର ଟିକିଏ ସାହଚର୍ଯ୍ୟ, ଟିକିଏ ମମତା, ଟିକିଏ କରୁଣାକୁ ମୁଁ ଅଣ୍ଟିରେ ସାଉଣ୍ଟିନେବାକୁ

ଚାହୁଁଛି, ଆବୋରି ନେବାକୁ ଚାହୁଁଛି, କୋଳେଇ ନେବାକୁ ଚାହୁଁଛି ।

ହେ ମୋର ପ୍ରିୟ ବାଲ୍ୟବନ୍ଧୁମାନେ ! ଆଜି ଆମେ ସମସ୍ତେ ଜୀବନର ଆଉ ଗୋଟାଏ ସୋପାନରେ ଛିଡ଼ା ହୋଇଛେ । ଜୀବନର ଆଉ ଗୋଟାଏ ରୂପ, ସମୟର ଆଉ ଗୋଟାଏ ରୂପ, ମଣିଷର ଆଉ ଗୋଟାଏ ରୂପ ଆଜି ଆମ ଆଖି ସାମ୍ନାରେ ଜଳଜଳ ହୋଇ ଦିଶି ଯାଉଛି । ଏହି ଉତ୍ତର ଜୀବନଟିକୁ ଚାଲ ମିଳିମିଶି ଜୀଇଁବା, ସମୟ ସାଙ୍ଗରେ ନୂଆକରି ମିତ ବସିବା, ନୂଆ ସୂର୍ଯ୍ୟୋଦୟକୁ ଆହ୍ୱାନ କରିବା, ନୂଆ ଜହ୍ନରାତିର ଆବାହନ କରିବା, ଜହ୍ନମାମୁଁର ପେଟ ଭିତରୁ ଶଶାଟିକୁ ଚୋରିକରି ଆଣିବା, କଅଁଳିଆ ଦୁବ ଘାସଦେଇ ତାର ଭୋକ ମେଣ୍ଟେଇବା । ଆଉ ତାପରେ, ତାପରେ ସମୟଠୁଁ ମେଲାଣି ମାଗିବାର ବେଳ... ।

*ନିର୍ଦ୍ଦେଶକ (ଉତ୍ପାଦନ) :
ନ୍ୟାସନାଲ ଆଲୁମିନିୟମ୍ କମ୍ପାନୀ ଲିମିଟେଡ, ଭୁବନେଶ୍ୱର

**ଡେପୁଟି ଜେନେରାଲ ମ୍ୟାନେଜର (ଗବେଷଣା ଓ ଉନ୍ନୟନ),
ନ୍ୟାସନାଲ ଆଲୁମିନିୟମ୍ କମ୍ପାନୀ ଲିମିଟେଡ, ଭୁବନେଶ୍ୱର-୭୫୧୦୧୩

ବର୍ତ୍ତିକା, ପୂଜାସଂଖ୍ୟା – ୨୦୦୮



# ପ୍ରଫେସର ତ୍ରିବିକ୍ରମ ପତି : ଏକ ମହାର୍ଘ ବୈଜ୍ଞାନିକ ବ୍ୟକ୍ତିତ୍ୱ

ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନ, ବିଶ୍ୱ ପ୍ରସିଦ୍ଧ ଗଣିତଶାସ୍ତ୍ର ବିଶାରଦ ତଥା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଯୋଗଜନ୍ମା ପୌତ୍ର ତଥା ଗଣିତଶାସ୍ତ୍ରର ଉଜ୍ଜ୍ୱଳତମ ଜ୍ୟୋତିଷ୍କ ପ୍ରଫେସର ତ୍ରିବିକ୍ରମ ପତି ଆଜି ଆଉ ଇହଜଗତରେ ନାହାନ୍ତି । ୨୦୦୮ ମସିହା ଜୁଲାଇ ୨ ତାରିଖ ଦିନ ସେ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ଗଣିତପ୍ରେମୀ ସଜ୍ଜନମଣ୍ଡଳୀଙ୍କୁ ଶୋକସାଗରରେ ଭସାଇ ଦେଇ ତ୍ରିବେଣୀ ସଙ୍ଗମ ଆଲ୍ଲାହାବାଦର ପବିତ୍ର ଧରିତ୍ରୀ ବୁକୁରେ ଇହଲୀଳା ସମ୍ବରଣ କରିଥିଲେ ।

ପ୍ରଫେସର ପତି ୧୯୨୯ ମସିହା ଅକ୍ଟୋବର ୨୩ ତାରିଖଦିନ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଜାମାତା ପ୍ରଫେସର ରତ୍ନାକର ପତିଙ୍କ କ୍ରୋଡ଼ ମଣ୍ଡନକରି ଏହି ନଶ୍ୱର ଧାମରେ ଅବତୀର୍ଣ୍ଣ ହୋଇଥିଲେ । ପୂର୍ବପୁରୁଷଙ୍କ ଗର୍ବ ଓ ଗାରିମା ତଥା ସମୁଜ୍ଜ୍ୱଳ କିର୍ତ୍ତୀର ସେ ଥିଲେ ପରମ ଉତ୍ତର ଦାୟାଦ, ଯୋଗ୍ୟତମ ପିତାର ଯୋଗ୍ୟତମ ସନ୍ତାନ ତଥା ଯୋଗ୍ୟତମ ପିତାମହଙ୍କର ସୁଯୋଗ୍ୟ ପୌତ୍ର । ତୁଳସୀ ଗଛଟିରେ ପତ୍ରଟିଏ କଅଁଳିଲା ବେଳୁ ଯେପରି ଚତୁର୍ଦ୍ଦିଗକୁ ତାର ବାସ୍ନା ପ୍ରସରିଯାଇଥାଏ ଠିକ୍ ସେହିପରି ଏନ୍ତୁଡ଼ିଶାଳର କୁଆଁକୁଆଁ ରାବ ଦିନରୁ ପତି ମହୋଦୟଙ୍କ ମହକ ପତ୍ରେପତ୍ରେ ସଞ୍ଚରିଯାଇଥିଲା ।

ଦର୍ଶନ ଶାସ୍ତ୍ରର ଲବ୍ଧ ପ୍ରତିଷ୍ଠ ପ୍ରଫେସର ତଥା ସ୍ୱନାମଧନ୍ୟ ଶିକ୍ଷାବିତ୍ ପ୍ରଫେସର ରତ୍ନାକର ପତି 'ୟୁରୋପୀୟ ଦର୍ଶନ ଶାସ୍ତ୍ରର ଇତିହାସ' ପୁସ୍ତକର ରଚନା କରିଥିଲେ ଯାହାକି ଏକ ବିରଳ ପୁସ୍ତକଭାବେ ବିଶ୍ୱର କୋଣେ କୋଣେ ଆଦୃତ ଓ ପ୍ରଶଂସିତ ହୋଇଥିଲା । ପ୍ରଫେସର ତ୍ରିବିକ୍ରମ ପତି ମହୋଦୟଙ୍କୁ ସ୍ନେହରେ 'ପଣ୍ଡିତଜୀ' ବୋଲି ସମ୍ବୋଧନ କରାଯାଉଥିଲା ଯାହାକି ସଂସ୍କୃତ ବ୍ୟାକରଣର ସୁବିଖ୍ୟାତ ପ୍ରବକ୍ତା ପଣ୍ଡିତ ରାମାଜ୍ଞ ପାଣ୍ଡେ ପ୍ରଦାନ କରିଥିଲେ । ସେ ସଂସ୍କୃତ ଶାସ୍ତ୍ରର ଅଭିଭାଷଣ ଅନର୍ଗଳଭାବେ ପ୍ରଦାନ କରିପାରୁଥିଲେ । ଏପରିକି ତାଙ୍କୁ ଯେତେବେଳେ ପାଞ୍ଚବର୍ଷ ବୟସ

ସେତେବେଳେ ସଂସ୍କୃତ ଶାସ୍ତ୍ରର ସ୍ପଷ୍ଟ ଉଚ୍ଚାରଣ ଓ ବର୍ଣ୍ଣନ ମାଧ୍ୟମରେ ସେ ଉପସ୍ଥିତ ଶ୍ରୋତାମଣ୍ଡଳୀ ଓ ଗୁଣଗ୍ରାହୀ ସମାଜବର୍ଗଙ୍କୁ ଅଭିଭୁତ କରିଦେଉଥିଲେ ।

ପ୍ରଫେସର ପତି ମହୋଦୟ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ତରରୁ ଆଲ୍ଲାହାବାଦ ବିଶ୍ୱ ବିଦ୍ୟାଳୟରୁ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ପରିସମାପ୍ତି ପର୍ଯ୍ୟନ୍ତ ସମସ୍ତ ପରୀକ୍ଷାରେ ସମସ୍ତ ପ୍ରଥମଶ୍ରେଣୀ ଛାତ୍ରଙ୍କ ମଧ୍ୟରେ ସର୍ବପ୍ରଥମ ସ୍ଥାନ ଅଳଂକୃତ କରି ନିଜର ମେଧା, ବିଦବତ୍ତା ଓ ପ୍ରଜ୍ଞାର ପ୍ରଚଣ୍ଡ ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ୧୯୪୮ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସର୍ବଶ୍ରେଷ୍ଠ ସ୍ନାତକ ଉପାଧିରେ ବିମଣ୍ଡିତ ହୋଇ 'ମୟୂରଭଞ୍ଜ ସ୍ୱର୍ଣ୍ଣ ପଦକ' ଲାଭ କରିଥିଲେ । ୧୯୪୯ ମସିହାରେ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ଏମ୍.ଏ. ସ୍ନାତକୋତ୍ତର ପରୀକ୍ଷାରେ ସର୍ବଶ୍ରେଷ୍ଠ ସ୍ନାତକୋତ୍ତର ଛାତ୍ରର ମର୍ଯ୍ୟାଦା ଲାଭକରି ସେ 'ମହାରାଣୀ ଭିକ୍ଟୋରିଆ ଜୁବୁଲି ମେଡ଼ାଲ' ଲାଭକରିବା ସଙ୍ଗେସଙ୍ଗେ ସେହି ବର୍ଷ ମଧ ସେ ସର୍ବଶ୍ରେଷ୍ଠ ଇଂରାଜୀ ପ୍ରବନ୍ଧ ରଚନାକାର ଭାବେ 'ପି.ଶେଷାଦ୍ରୀ ସ୍ୱର୍ଣ୍ଣ ପଦକ' ଲାଭ କରିଥିଲେ । ତାଙ୍କର ଏମ୍.ଏ. ସ୍ନାତକୋତ୍ତର ପରୀକ୍ଷା ଫଳ ପ୍ରକାଶ ପାଇଲା ପରେ ସେ ଅଙ୍କଶାସ୍ତ୍ରରେ ନିଜକୁ ସମ୍ପୂର୍ଣ୍ଣଭାବେ ଉତ୍ସର୍ଗୀକୃତ କରିବାପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ୧୯୫୩ ମସିହାରେ ସେ ଅଙ୍କଶାସ୍ତ୍ରରେ 'ଡକ୍ଟର ଅଫ୍ ଫିଲୋସଫି' ଓ ୧୯୫୬ ମସିହାରେ 'ଡକ୍ଟର ଅଫ୍ ସାଇନ୍ସ' ଉପାଧିରେ ଭୂଷିତ ହୋଇଥିଲେ । ତାଙ୍କର 'ଡକ୍ଟର ଅଫ୍ ସାଇନ୍ସ ଥେସିସ'ର ବିଦେଶି ପରୀକ୍ଷକ ପ୍ରଫେସର ଏ.ଡେନ୍‌ଜୟ ଏବଂ ପ୍ରଫେସର ଫ୍ରାଙ୍କଲିନ୍.ସି.ରାସିନ୍ ଥେସିସ୍‌ଟି ଅଧ୍ୟୟନ କରି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ ଏବଂ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ଯେ ଏହି 'ଡକ୍ଟର ଅଫ୍ ସାଇନ୍ସ ଥେସିସ୍'ର ଏକ ଅଂଶ ବିଶେଷ ମଧ ଯେକୌଣସି ୟୁରୋପୀୟ ବିଶ୍ୱ ବିଦ୍ୟାଳୟର 'ଡକ୍ଟର ଅଫ୍ ସାଇନ୍ସ' ଡିଗ୍ରୀ ପାଇଁ ଉପଯୁକ୍ତ ଅଟେ ।

ଯେପରି ସୂର୍ଯ୍ୟସ୍ନାତ ସୁପ୍ରଭାତ ସମ୍ପୂର୍ଣ୍ଣ ଦିନଟିର ସମ୍ଭାବ୍ୟ ରୂପରେଖ ଉପସ୍ଥାପନ କରିଥାଏ ଠିକ୍ ସେହିପରି ପ୍ରଫେସର ତ୍ରିବିକ୍ରମ ପତିଙ୍କର ଯଶ ଓ ଗାରୀମା ବିଶ୍ୱର କୋଣେକୋଣେ ବିଛୁରିତ ହୋଇପଡ଼ିଥିଲା । ଅଙ୍କଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ଅପରିସୀମ ପ୍ରଜ୍ଞା ତାଙ୍କୁ ବିଂଶ ଶତାବ୍ଦୀର ଏକ ଯୁଗପୁରୁଷଭାବେ ଉପସ୍ଥାପିତ

କରିଥିଲା । ବିଶେଷକରି Absolute Summability, Tauberian Theorems, Fourier Analysis ଏବଂ Complex Analysis କ୍ଷେତ୍ରରେ ତାଙ୍କର ବିଦବତ୍ତା ଓ ପାଣ୍ଡିତ୍ୟ ଗଗନସ୍ପର୍ଶୀ ଆଉ ସୁଦୂରପ୍ରସାରୀ । ତାଙ୍କ ଦ୍ୱାରା ସ୍ଥାପନା କରାଯାଇଥିବା 'The Great School of Analysis' ସମଗ୍ର ବିଶ୍ୱରେ ତାଙ୍କୁ ଅଙ୍କଶାସ୍ତ୍ରର ଜଣେ ଧୂରୀଣ ଗବେଷକ ଓ ମହୀୟାନ୍ ପଣ୍ଡିତଭାବେ ଯୋଗ୍ୟ ସମ୍ମାନ ପ୍ରଦାନ କରିଥିଲା । ବିଶ୍ୱ ଅଙ୍କଶାସ୍ତ୍ରକୁ ତାଙ୍କର ଅତ୍ୟନ୍ତ ଉଚ୍ଚକୋଟିର ନିଜସ୍ୱ ଅବଦାନ ତଥା ତାଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇଥିବା ଅସଂଖ୍ୟ ଗବେଷଣା ଛାତ୍ରଙ୍କର ଅବଦାନ ମଧ୍ୟ ଅନନ୍ୟ ସାଧାରଣ ଓ ବିଶ୍ୱବନ୍ଦିତ ।

ସମଗ୍ର ରାଷ୍ଟ୍ରରେ ଅଙ୍କ ଶାସ୍ତ୍ର ସହ ଜଡ଼ିତଥିବା ଏପରି କୌଣସି ରାଷ୍ଟ୍ର ପୁରୁଷ ନାହାନ୍ତି ଯେ କି ପ୍ରଫେସର ପତି ମହୋଦୟଙ୍କର ବୈଜ୍ଞାନିକ କର୍ମ, ଗବେଷଣା, ସାଧନା ଓ ସିଦ୍ଧି ସହ ପରିଚିତ ନୁହନ୍ତି । ରାଷ୍ଟ୍ରର ସମସ୍ତ ଗୁଣାଦିତ୍ୟ ବୁଦ୍ଧିଜୀବୀଙ୍କ ସହ ସେ ଅନ୍ତରଙ୍ଗ ଭାବେ ଜଡ଼ିତଥିଲେ । ରମଣ ଓ ରାମାନୁଜଙ୍କ ଦ୍ୱାରା ସେ ବହୁଳଭାବେ ପ୍ରଭାବିତ ହୋଇଥିଲେ ଏବଂ ସମଗ୍ର ବିଶ୍ୱର ସର୍ବଶ୍ରେଷ୍ଠ ଗାଣିତିକ ପ୍ରଜ୍ଞାବାନ ପୁରୁଷମାନଙ୍କ ସହ ତାଙ୍କର ସମ୍ପର୍କ ଅତ୍ୟନ୍ତ ଆନ୍ତରିକ ଓ ନିବିଡ଼ ଥିଲା । ନାନାବିଧ ଜାତୀୟ ସମସ୍ୟା ସହିତ ସେ ସମ୍ପୂର୍ଣ୍ଣ ରୂପେ ପରିଚିତ ଥିଲେ ଏବଂ ରାଷ୍ଟ୍ରର ପରମ ଚିନ୍ତାବାନ୍ ପୁରୁଷ ଓ ହିତୈଷି ମହାନାୟକ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଅଶୋକ ମେହେଟ୍ଟା ଓ ରାମ ମନୋହର ଲୋହିଆଙ୍କ ସହ ତାଙ୍କର ସମ୍ପର୍କ ମଧ୍ୟ ଅତ୍ୟନ୍ତ ମଧୁମୟ ଥିଲା ।

ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଆଜିପର୍ଯ୍ୟନ୍ତ ଯେତେ ଛାତ୍ର 'ଡକ୍ଟର ଅଫ୍ ସାଇନ୍‌ସ' ଉପାଧି ଲାଭ କରିଛନ୍ତି ସେମାନଙ୍କ ମଧ୍ୟରେ ପ୍ରଫେସର ତ୍ରିବିକ୍ରମ ପତି ମହୋଦୟ ସର୍ବ କନିଷ୍ଠ 'ଡକ୍ଟର ଅଫ୍ ସାଇନ୍‌ସ' ଉପାଧିକାରୀ ହେବାର ବିରଳ ଗୌରବ ଅର୍ଜନ କରିଛନ୍ତି । ବହୁ ଗବେଷକ ଓ ଅଧ୍ୟାପକ ମଣ୍ଡଳୀ ତାଙ୍କୁ ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ମୋଟା ଦରମା ଲାଭ କରି ବରିଷ୍ଠ ପଦପଦବୀ ଓ ମର୍ଯ୍ୟାଦା ଲାଭ କରିବାପାଇଁ ପ୍ରୋତ୍ସାହିତ କରିଥିଲେ ମଧ୍ୟ ସେ ତଦ୍ଦ୍ୱାରା ପ୍ରଭାବିତ ନହୋଇ ଭାରତ ମାଟିରେ ଭାରତୀୟତାର ସ୍ୱାଦ ବହନକରି ଭାରତୀୟଙ୍କର ସେବା କରିବାପାଇଁ ମନସ୍ଥ କରିଥିଲେ ଏବଂ ସାରା ଜୀବନ ଗାଣିତିକ ଗବେଷଣା ଓ ପରାକାଷ୍ଠାରେ

ନିର୍ବାହ କରିଥିଲେ । ୧୯୫୮ ମସିହାରେ ସେ ସର୍ବାଧିକ ଦରମାହାରରେ ଅନୁବନ୍ଧିତ ହୋଇ ଆସିଷ୍ଟାଣ୍ଟ ପ୍ରଫେସର ପଦବୀ ଅଳଙ୍କୃତ କରିଥିଲେ ।

ତାପରେ ସେ ଜବଲପୁର ବିଶ୍ୱବିଦ୍ୟାଳୟଦ୍ୱାରା ନିମନ୍ତ୍ରିତ ହୋଇ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ବ୍ୟବସ୍ଥାର ପ୍ରଚଳନ ଏବଂ ଉଚ୍ଚତର ଗବେଷଣା ବିଭାଗର ସଂସ୍ଥାପକ ମୁଖ୍ୟଭାବେ ଅବସ୍ଥାପିତ ହୋଇଥିଲେ । ଦୀର୍ଘ ୯ ବର୍ଷକାଳ ପ୍ରଫେସର ପତି ମହୋଦୟ ଜବଲପୁର ବିଶ୍ୱବିଦ୍ୟାଳୟରେ ଅଧିଷ୍ଠିତ ରହି ଗାଣିତିକ ଗବେଷଣା ପ୍ରକ୍ଷେତ୍ରକୁ ନୂତନ ମାର୍ଗଦର୍ଶନ ପ୍ରଦାନ କରିଥିଲେ । ପରନ୍ତୁ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟ ତାଙ୍କର ଏହି ଦୀର୍ଘ ଅନୁପସ୍ଥିତିରେ ଏକ ଅଭାବନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା ଏବଂ ପରେ ଯେତେବେଳେ ପ୍ରଫେସର ପତି ମହୋଦୟଙ୍କର ଗୁଣଗ୍ରାହୀ ଛାତ୍ର ପ୍ରଫେସର ଏଚ୍.ପି. ଦୀକ୍ଷିତ୍ ତାଙ୍କର ଉତ୍ତରାଧିକାରୀଭାବେ ଜବଲପୁର ବିଶ୍ୱବିଦ୍ୟାଳୟରେ ଯୋଗଦାନ କଲେ ସେତେବେଳେ ପ୍ରଫେସର ପତି ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟକୁ ଫେରିଆସିଲେ ଏବଂ ଜୀବନବ୍ୟାପୀ ତ୍ୟାଗପୂତ ସେବାର ଜ୍ୱଳନ୍ତ ନିଦର୍ଶନ ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ ।

ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟ ପ୍ରଫେସର ପତି ମହୋଦୟଙ୍କୁ ଅଙ୍କଶାସ୍ତ୍ର ଓ ପରିସଂଖ୍ୟାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ, ଫାକଲ୍‌ଟି ଅଫ୍ ସାଇନ୍‌ସର ଡିନ୍, ପ୍ରୋ-ଭାଇସଚାନ୍‌ସେଲର ଓ ଭାଇସ-ଚାନ୍‌ସେଲର ଭାବେ ଲାଭକରି ନିଜକୁ ଗୌରବମଣ୍ଡିତ ମଣିଥିଲା । ସେ ଏକାଡେମିକ ଷ୍ଟାଫ୍ କଲେଜର ଅତ୍ୟନ୍ତ ଧୂରୀଣ ନିର୍ଦ୍ଦେଶକଭାବେ ନିଜର ଗୁଣ ଓ ଗାରିମାକୁ ପ୍ରତିପାଦିତ କରିପାରିଥିଲେ । ଉଭୟ ଇଂରାଜୀ ଓ ସଂସ୍କୃତରେ ତାଙ୍କର ଦକ୍ଷତା ଓ ପାଣ୍ଡିତ୍ୟ ଗଗନଚୁମ୍ବୀ ଥିଲା ଏବଂ ପଣ୍ଡିତ ରଘୁନାଥ ଝା ଓ ତାଙ୍କର ସୁଯୋଗ୍ୟ ପୁତ୍ର ଡକ୍ଟର ଅମରନାଥ ଝାଙ୍କ ପରେ ପ୍ରଫେସର ପତି ମହୋଦୟ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ସର୍ବଶ୍ରେଷ୍ଠ ବୁଦ୍ଧିଜୀବୀଭାବେ ପରିଗଣିତ ହେଉଥିଲେ ।

ତାଙ୍କର ଓଜସ୍ୱିନୀ ଅଭିଭାଷଣ ମାଧ୍ୟମରେ ସେ ଉପସ୍ଥିତ ଶ୍ରୋତାମଣ୍ଡଳୀକୁ ମନ୍ତ୍ରମୁଗ୍ଧ କରିଦେଉଥିଲେ । ତାଙ୍କର ଗୌରାବାଦିତ୍ୟ କୀର୍ତ୍ତି ଓ ଶୌର୍ଯ୍ୟଦୀପ୍ତ ମର୍ଯ୍ୟାଦା

ତାଙ୍କୁ ଏକ "ଜୀବନ୍ତ କିମ୍ବଦନ୍ତୀ ପୁରୁଷ" ଭାବେ ସାରା ବିଶ୍ୱରେ ପ୍ରତିପାଦିତ କରିପାରିଥିଲା । ଏହି ଦିଗବିଜୟୀ ବିଶ୍ୱପ୍ରସିଦ୍ଧ ଗଣିତଜ୍ଞ ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନର ଗଣିତ ବିଭାଗର ମର୍ଯ୍ୟାଦାସମ୍ପନ୍ନ ସଭାପତି ଆସନ ଅଳଂକୃତ କରିଥିଲେ । ସେ ମଧ୍ୟ ଓଡ଼ିଶା ବିଜ୍ଞାନ ଏକାଡେମୀର ସଭାପତି ଆସନରେ ଅଧିଷ୍ଠିତ ରହି ତାଙ୍କର କାର୍ଯ୍ୟକାଳ ମଧ୍ୟରେ ବହୁ ଗୁରୁତ୍ୱପୂର୍ଣ୍ଣ ବୈଜ୍ଞାନିକ କର୍ମଯୋଜନାର ସମ୍ପାଦନା କରିଥିଲେ । ଭୁବନେଶ୍ୱରସ୍ଥିତ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମ୍ୟାଥେମେଟିକ୍ସ ଆଣ୍ଡ ଆପ୍ଲିକେସନ୍‌ସ ପ୍ରତିଷ୍ଠାନର ସେ ପ୍ରତିଷ୍ଠାତା ଅଧ୍ୟକ୍ଷ ଥିଲେ । ଓଡ଼ିଶାରେ ଏପରି ଏକ ଅଦ୍ୱିତୀୟ ଅନୁଷ୍ଠାନ ଗଢ଼ିତୋଳିବାରେ ତାଙ୍କର ମହନୀୟ ଅବଦାନ ଅନସ୍ୱୀକାର୍ଯ୍ୟ । ଓଡ଼ିଶାବାସୀ ତାଙ୍କର ଏହି ଅସାଧାରଣ ସାମର୍ଥ୍ୟ, ବିଦବତ୍ତା ଓ ପ୍ରଜ୍ଞାକୁ ସଦା ସ୍ମରଣ କରୁଥିବେ । ଏହି ପ୍ରାତଃ ସ୍ମରଣୀୟ ମନିଷୀ ସଦା ଓଡ଼ିଶାବାସୀଙ୍କ ମନରେ ଚିର ଜାଗ୍ରତ ରହିଥିବେ ।

ବହୁ ସମ୍ମାନ, ବହୁ ପୁରସ୍କାର ଓ ବହୁ ଯଶର ସେ ଅନନ୍ୟ ଅଧିକାରୀ ଥିଲେ । "ରାଜୀବଗାନ୍ଧୀ ଜାତୀୟ ଏକତା ପୁରସ୍କାର", ଇଣ୍ଡିଆନ ମେଟାଲ୍‌ସ ଫେରୋ-ଆଲୟଜ୍ (ଇମ୍ପା) ପ୍ରଦତ୍ତ ଓଡ଼ିଶାର ସର୍ବଶ୍ରେଷ୍ଠ ସାହିତ୍ୟ ସମ୍ମାନ "ଶାରଳା ପୁରସ୍କାର", "ଦେଶ ରତ୍ନ ପୁରସ୍କାର", "ମଧୁ ସ୍ୱାଭିମାନ ପୁରସ୍କାର" ଆଦି ଉଲ୍ଲେଖଯୋଗ୍ୟ ।

ଇଣ୍ଡିଆନ ଜର୍ଣ୍ଣାଲ୍ ଅଫ୍ ମ୍ୟାଥେମେଟିକ୍ସର ସେ ପ୍ରତିଷ୍ଠାତା ସମ୍ପାଦକ, ଆଲ୍ଲାହାବାଦ ମ୍ୟାଥେମେଟିକାଲ ସୋସାଇଟିର ସମ୍ମାନୀୟ ସଦସ୍ୟ, ଇଣ୍ଟରନ୍ୟାସନାଲ ଏକାଡେମୀ ଅଫ୍ ଫିଜିକାଲ ସାଇନ୍‌ସେସ୍‌ର ସେ ଅନରାରି ଫେଲୋ, ଇନ୍ଦିରା ଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟର ରିସର୍ଚ୍ଚ କାଉନସିଲର ସମ୍ମାନାସ୍ପଦ ସଦସ୍ୟ, ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ମ୍ୟାଥେମେଟିକ୍ସ କମିଟିର ସଦସ୍ୟ ଆଦି ବହୁ ମର୍ଯ୍ୟାଦା ସମ୍ପନ୍ନ ପଦପଦବୀରେ ଅଧିଷ୍ଠିତ ରହି ନାନାବିଧ ସୁଦୂର ପ୍ରସାରୀ ଦିଗଦର୍ଶନ ପ୍ରଦାନ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ "କ୍ୟୁଲିସ୍ ମେମୋରିଆଲ ଲେକ୍‌ଚରସିପ୍" ପ୍ରଦାନ କରିଥିଲା । ସେ ବହୁ ୟୁରୋପୀୟ ଓ ଆମେରିକୀୟ ବିଶ୍ୱବିଦ୍ୟାଳୟ ଯଥା ଗାଇସେନ୍, ମାରବର୍ଗ, ରୋମ୍, ଲଣ୍ଡନ, ନ୍ୟୁୟର୍କ, ମ୍ୟାକ୍ ମାଷ୍ଟର, ଆଲବର୍ଟା, ମାନିତୋବା, ଓ୍ୱେଷ୍ଟର୍ଣ୍ଣ ଅଣ୍ଟାରିଓ ଏବଂ କାଲଗାରୀ ଆଦି ବିଶ୍ୱବିଦ୍ୟାଳୟମାନଙ୍କରେ "ଭିଜିଟିଂ ପ୍ରଫେସରସିପ୍" ପଦବୀରେ ଅଭିମଣ୍ଡିତ ହୋଇଥିଲେ ।

ପ୍ରଫେସର ପତି ମହୋଦୟଙ୍କ ଗାଣିତିକ ଗବେଷଣାର ପ୍ରକ୍ଷେତ୍ର ଏତେ ବିଶାଳ ଓ ସର୍ବଦିଗବ୍ୟାପ୍ତ ଥିଲା ଯେ ତାଙ୍କର ଜୀବନବ୍ୟାପୀ ଗାଣିତିକ ସାଧନା ଓ ସାମଗ୍ରୀକ ଗବେଷଣା କୃତିର ପ୍ରାୟ ଅର୍ଦ୍ଧେକ ଅଂଶ ଏବେ ବି ଅପ୍ରକାଶିତ ଅବସ୍ଥାରେ ରହିଛି । "Summability" ଏବଂ "Fourier Analysis" ସଂକ୍ରାନ୍ତୀୟ ଅଧ୍ୟୟନ ଓ ଗବେଷଣାରେ ତାଙ୍କ ଜୀବନର ଅତ୍ୟନ୍ତ ମୂଲ୍ୟବାନ ସମୟକୁ ସେ ବିନିଯୋଗ କରିଥିଲେ । ତାଙ୍କ ଜୀବନର ପ୍ରାୟ ଶେଷ ପନ୍ଦରବର୍ଷ ସେ "Zeta Function of Riemann" ଉପରେ ଗବେଷଣା କରି ବିତାଇଛନ୍ତି ।

"ତ୍ରି-ବିକ୍ରମ" ଅର୍ଥାତ୍ ତିନୋଟି ମହାପରାକ୍ରମଶାଳୀ ବିଦ୍ୟାର ମହାନ ଅଧିକାରୀ ହୋଇ ପ୍ରଫେସର ପତି ମହୋଦୟ ନିଜ ନାମର ଯଥାର୍ଥତା ପ୍ରତିପାଦିତ କରିଛନ୍ତି । ସେହି ମହନୀୟ ବିଦ୍ୟାଗୁଡ଼ିକ ହେଲା ଅଙ୍କଶାସ୍ତ୍ର, ସାହିତ୍ୟ ଏବଂ ଚିତ୍ରକଳା । ଏହି ତିନୋଟି ମହାବିଦ୍ୟାର ଅଧିକାରୀ ହୋଇ ସେ ନିଜ ଜୀବନକୁ ଗୌରବମଣ୍ଡିତ କରିବା ସଙ୍ଗେ ସଙ୍ଗେ ସମାଜ ଓ ସାମାଜିକ ଧାରାରେ ନିଜର ଅବିସ୍ମରଣୀୟ କର୍ମ ନୈପୂଣ୍ୟତାର ପରମ ନିଦର୍ଶନ ପ୍ରତିପାଦିତ କରିବାରେ ସକ୍ଷମ ହୋଇପାରିଥିଲେ । ଇତିହାସର ଗୌରବୋଜ୍ଜ୍ୱଳ ପୃଷ୍ଠାରେ ସେ ନିଜ ସ୍ୱର୍ଣ୍ଣାକ୍ଷର ଲିପିବଦ୍ଧ କରିବାରେ ଏକ ଅଦ୍ୱିତୀୟ ସ୍ରଷ୍ଟା ଥିଲେ । ଅଧ୍ୟୟନ ଓ ଅଧ୍ୟାପନାରେ ସେ ତାଙ୍କର ସମଗ୍ର ଜୀବନକୁ ଉତ୍ସର୍ଗ କରିଥିଲେ । ସରଳ ଜୀବନଯାପନ କରି ଉଚ୍ଚତର ଚିନ୍ତାରେ ନିମଗ୍ନ ରହିବା ତାଙ୍କ ବ୍ୟକ୍ତିତ୍ୱର ଏକ ଅଦ୍ଭୁତ ପରାକାଷ୍ଠା ଥିଲା । ଜୀବନକୁ ସରଳ, ସାବଲିଳ, ଶାନ୍ତ ଓ ସୌମ୍ୟକରି ଗଢ଼ିତୋଳିବାରେ ତାଙ୍କର ପ୍ରୟାସ ନିରବଚ୍ଛିନ୍ନ ଥିଲା । ଜୀବନକୁ ହାତ ମୁଠାରେ ପାଇ ତାକୁ ହାତଛଡ଼ା କରିବାକୁ ସେ ଆଦୌ ଚାହୁଁ ନଥିଲେ । ସମୟ ଓ ସୁଯୋଗକୁ ସେ ସଦାସର୍ବଦା ଆବୋରି ରଖୁଥିଲେ ଓ ନିଜ ଜୀବନର ଶଗଡ଼ଗାଡ଼ିଟିକୁ ସମାଜର ବଡ଼ଦାଣ୍ଡରେ ବୋହି ନେଇଯାଉଥିଲେ । ଭଲ ଜୀବନଟିଏ ଜୀଇଁବା ଯଦିଓ କାଠିକର ପାଠ ହେଲେ ସେହି କାଠିକର ପାଠ ପଢ଼ିବାରେ ସେ କେବେହେଲେ ହେଳା କରିନଥିଲେ ।

ପ୍ରେରଣା, ଉତ୍ସାହ ଓ ଉଦ୍ଦିପନାର ସେ ଥିଲେ ଏକ ବତୀଘର । ପ୍ରଫେସର ପତି ମହୋଦୟଙ୍କର ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦକୁ ପାଥେୟକରି ବହୁ ଛାତ୍ର ଜୀବନର

ରଣାଙ୍ଗନରେ ଦିଗବିଜୟୀ ହେବାରେ ସକ୍ଷମ ହୋଇଛନ୍ତି । ପିଢ଼ି ପରେ ପିଢ଼ି ବହୁ ଶିକ୍ଷାବିତ୍, କବି ଓ ଚିତ୍ରକର ସୃଷ୍ଟି କରିବାରେ ତାଙ୍କର ଅବଦାନ ଅନନ୍ୟ ସାଧାରଣ । ପ୍ରଫେସର ପତି ମହୋଦୟଙ୍କର ଅଗଣିତ ବୈଜ୍ଞାନିକ ରଚନା, ଅଭିଭାଷଣ ଓ ଗବେଷଣାଲବ୍ଧ ତଥ୍ୟାବଳୀ ଭାରତର ସାଂସ୍କୃତିକ ବୈଭବର ଅଭିବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୋଇଛି । ବିଦ୍ୟାଦାତ୍ରୀ ମା' ସରସ୍ୱତୀଙ୍କର ସେ ଥିଲେ ମାନସପୁତ୍ର । ଗଣିତଶାସ୍ତ୍ର ଯାହାକି ସମଗ୍ର ବିଜ୍ଞାନର ମୌଳିକ ବୀଜ ସଦୃଶ, ତାହାର ସୁସ୍ଥ ଅଙ୍କୁରୋଦ୍‌ଗମ କରାଇବାରେ ତାଙ୍କର ଆଜୀବନ ସାଧନା ଓ ସିଦ୍ଧି ବୈଜ୍ଞାନିକ ଜଗତର ପଥ ପ୍ରଦର୍ଶକ ଭାବେ ଚିର ଜାଜ୍ୱଲ୍ୟମାନ ହୋଇ ରହିବ କାଳକାଳକୁ । ଏହି ମହାନ୍ ମନିଷୀ ଓ ତ୍ରି-ବିକ୍ରମ ମହାପୁରୁଷଙ୍କୁ ଉତ୍କଳ ଜନନୀ ନିଜର ସୁଯୋଗ୍ୟ ପୁତ୍ରଭାବେ ଲାଭ କରି ଧନ୍ୟ ଓ ସାର୍ଥକ ହୋଇଛି । ଓଡ଼ିଶାର ଅଗଣିତ ନରନାରୀ, ଆବାଳ ବୃଦ୍ଧବନିତା ଓ ଆଗାମୀ କାଲି ଉତ୍କଳର ଭବିଷ୍ୟତ ଯୁବପିଢ଼ି ତାଙ୍କୁ ସଦାସର୍ବଦା ସ୍ମରଣ କରୁଥିବେ, ମନେପକାଉଥିବେ, ବାହୁନି ହେଉଥିବେ ।

ସମୟର ସୁଅ ବହିଚାଲିଛି କାହି କେଉଁକାଳରୁ । ଏ ସୁଅରେ ସମସ୍ତେ ଭାସିଯାଆନ୍ତି । କାହାରି ଥଳକୂଳ ପାଏନା । ହେଲେ କିଛି ଲୋକ ଥାଆନ୍ତି ଯିଏକି ସମୟର ଓଲଟ ଢେଉ ପିଠିରେ ବସି ଦୁଇହାତରେ ଆହୁଲା ମାରି ଚାଲିଥାନ୍ତି କୂଳରେ ଭାସୁଥିବା କୁଟାଖିଅଟିଏ ଧରିବା ପାଇଁ । ସୁଅର ଢେଉରେ କୁଟାଖିଅଟି ଆଗକୁଆଗକୁ ଭାସିଚାଲିତାଏ ଆଉ ତା ପଛରେ ମଣିଷଟି । ଯିଏ କୁଟାଖିଅଟିକୁ ହାତବଢ଼େଇ ଧରିପାରିଲା ସେ ଜଗତଜିତା ହୋଇପାରିଲା । ସମୟର ସୁଅରେ ପ୍ରାୟ ସମସ୍ତେ ହଜିଯାଆନ୍ତି । ସମୟର ବିଶାଳ ଗର୍ଭରେ ସମସ୍ତେ ଲୀନ ହୋଇଯାଆନ୍ତି । ସମୟ ହିଁ ମହାନାୟକ । ସମୟ ହିଁ ବଳବାନ୍ । ସମୟ ହିଁ ଜୀବନ ସଂଗ୍ରାମର ବାଦୀ ଓ ପ୍ରତିବାଦୀ । ଜୀବନ ସଂଗ୍ରାମରେ ଖାଲି ସମୟ ହିଁ ଜିତିଥାଏ ଆଉ ସମସ୍ତେ ହାରିଯାଆନ୍ତି । ହାରଜିତର ଏହି ବାଗୁଡ଼ିଖେଳରେ କିଛି ଲୋକ ଥାଆନ୍ତି ଯିଏକି ବାଜିମାରିନେଇଯାଆନ୍ତି । ହାତୀ ତାଙ୍କରି ମୁଣ୍ଡରେ ହିଁ ସୁନାକଳସ ଢାଳିଥାଏ । କଳସରେ କଳସେ ପାଣି, ତା ଉପରେ ଆମ୍ବ ଡାଳିଆ, ଆଉ ତା ଉପରେ ନାସିଲଗା ସବୁଜ ପଇଡ଼ଟିଏ । ସବୁ ଆଶୀର୍ବାଦର ମହାଆଧାର ଏହି ପୂର୍ଣ୍ଣକଳସଟି ଅଜାଡ଼ି ହୋଇପଡ଼େ

ହାତୀର ଥୋଢ଼ ପାହୁଡ଼ ଦେଇ ଯୋଗଜନ୍ମା ପୁରୁଷଟିର ମଥା ଉପରେ । ସେହିପରି ଯୋଗଜନ୍ମା ପୁରୁଷଟିଏ ଥିଲେ ଗଣିତଶାସ୍ତ୍ରର ଭୀଷ୍ମ ପିତାମହ ପ୍ରଫେସର ତ୍ରିବିକ୍ରମ ପତି ମହୋଦୟ । ତାଙ୍କ ମହାନ୍ ଆତ୍ମାର ସଦଗତି ହେଉ । ସେ ସ୍ୱର୍ଗ ରାଜ୍ୟରେ ସ୍ୱର୍ଣ୍ଣ ସିଂହାସନରେ ଉପବିଷ୍ଟ ରହି ଧରିତ୍ରୀମାତାର ସମସ୍ତ ସନ୍ତାନସନ୍ତତିଗଣଙ୍କୁ ଆଶୀର୍ବାଦ କରୁଥାନ୍ତୁ - ଏତିକି କାମନା ।

ସହକାର : ପୂଜାସଂଖ୍ୟା - ୨୦୦୮



# ଭାରତବର୍ଷରେ ଉଚ୍ଚତର ବିଜ୍ଞାନ ଶିକ୍ଷାର ୬୦ ବର୍ଷ

ଭାରତୀୟ ସମ୍ବିଧାନର ୭ମ ସିଡ୍ୟୁଲ ତଥା ୧୯୭୬ ମସିହାରେ ହୋଇଥିବା ସଂଶୋଧନ ଉଚ୍ଚତର ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ମାନଙ୍କରେ ଉତ୍ତମ ସମନ୍ୱୟ ସ୍ଥାପନ ଓ ମାନ ନିର୍ଦ୍ଧାରଣ ପାଇଁ ଉଭୟ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ଉପରେ ଦାଇତ୍ୱ ନ୍ୟସ୍ତ କରିଛି । ଏହି ପ୍ରତିଷ୍ଠାନ ଗୁଡ଼ିକ ହେଲେ ଉଭୟ କେନ୍ଦ୍ରୀୟ ଓ ରାଜ୍ୟ ବିଶ୍ୱବିଦ୍ୟାଳୟ, ବାଂଗାଲୋର ସ୍ଥିତ ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ, ଭାରତୀୟ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ ଏବଂ ପାର୍ଲାମେଣ୍ଟ ଦ୍ୱାରା ଘୋଷଣା କରାଯାଇଥିବା ଗୁରୁତ୍ୱପୂର୍ଣ୍ଣ ଜାତୀୟ ପ୍ରତିଷ୍ଠାନ ।

ସ୍ୱାଧୀନତା ପ୍ରାପ୍ତି ବେଳକୁ ଦେଶରେ ମାତ୍ର ୨୫ଟି ବିଶ୍ୱ ବିଦ୍ୟାଳୟ ଥିଲା ଏବଂ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ବିଶ୍ୱବିଦ୍ୟାଳୟ ସେମାନଙ୍କର ସହବନ୍ଧିତ କଲେଜ ମାନଙ୍କ ମାଧ୍ୟମରେ ଉଚ୍ଚତର ବିଜ୍ଞାନ ଶିକ୍ଷା ପ୍ରଦାନ କରୁଥିଲେ । ଗତ ଦଶକ ମଧ୍ୟରେ ଦେଶରେ ଉଚ୍ଚତର ବିଜ୍ଞାନ ଶିକ୍ଷା ପ୍ରଦାନ କରୁଥିବା ପ୍ରତିଷ୍ଠାନ ମାନଙ୍କର ସଂଖ୍ୟା ବହୁମାତ୍ରାରେ ବୃଦ୍ଧି ଘଟିଛି । ଆଜି ଦେଶରେ ୨୦ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ୨୧୫ ରାଜ୍ୟ ବିଶ୍ୱବିଦ୍ୟାଳୟ, ୧୦୦ଟି ଡିମ୍‌ଡ଼ ବିଶ୍ୱବିଦ୍ୟାଳୟ, ୧୩ଟି ଗୁରୁତ୍ୱପୂର୍ଣ୍ଣ ଜାତୀୟ ପ୍ରତିଷ୍ଠାନ ଏବଂ ୧୭ ହଜାରରୁ ଉର୍ଦ୍ଧ୍ୱ କଲେଜ ରହିଛି । କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧିନରେ ଏ ସମସ୍ତ ପ୍ରତିଷ୍ଠାନ ଗୁଡ଼ିକୁ ଉପଯୁକ୍ତ ଭାବେ ପରିଚାଳନା କରିବା ପାଇଁ ସରକାର ନାନାଦି ବ୍ୟବସ୍ଥା ପ୍ରଚଳିତ କଲେ । ଦେଶରେ ଉଚ୍ଚତର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଶିକ୍ଷାର ପ୍ରଚଳନ, ପ୍ରଶାସନ, ନିୟନ୍ତ୍ରଣ ଓ ଅନୁଧ୍ୟାନ କରିବା ପାଇଁ ପାର୍ଲାମେଣ୍ଟର ଅନୁମୋଦନକ୍ରମେ ସରକାର ୧୯୫୬ ମସିହାରେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ, ୧୯୮୭ ମସିହାରେ ସର୍ବଭାରତୀୟ ବୈଷୟିକ ଶିକ୍ଷା ପରିଷଦ (AICTE)ର ପ୍ରତିଷ୍ଠା କଲେ । ହେଲେ ଏହି ସମ୍ବିଧାନିକ ଦାୟିତ୍ୱବୋଧତାର ଉପଯୁକ୍ତ ସମ୍ପାଦନ କରିବା କ୍ଷେତ୍ରରେ ସରକାରଙ୍କ ସଫଳତା ଓ ବିଫଳତାର କାହାଣୀରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଆଗକୁ ଆହୁରି ବହୁ ରାସ୍ତା ବାକି ରହିଛି ଯାହାକୁ କି ଆମକୁ ଅତିକ୍ରାନ୍ତ କରିବାକୁ ପଡ଼ିବ ।

ଅନୁପାତ ହିସାବରେ ଦେଖିବାକୁ ଗଲେ ଭାରତର ମୋଟ ଜନସଂଖ୍ୟାର ପ୍ରାୟ ୭ ପ୍ରତିଶତ ଉଚ୍ଚତର ଶିକ୍ଷା କ୍ଷେତ୍ରରେ ପ୍ରବେଶ କରିଥାନ୍ତି ଯାହାକି ଏସିଆ ମହାଦେଶର ହାରାହାରି ଅନୁପାତର ଅଧା ଅଟେ । ପ୍ରାୟ ଚାରି ନିୟୁତ ଜନସଂଖ୍ୟା ପାଇଁ ଆମ ଦେଶରେ ଗୋଟିଏ ବିଶ୍ୱ ବିଦ୍ୟାଳୟ ରହିଛି । ଉଚ୍ଚଶିକ୍ଷା କ୍ଷେତ୍ରରେ ବିଶେଷ କରି ବିଜ୍ଞାନ ଶିକ୍ଷା କ୍ଷେତ୍ରରେ ଏହି ଗାଣିତିକ ଅଙ୍କ ସେପରି କୌଣସି ଉଲ୍ଲେଖନୀୟ ପ୍ରଭାବ ପ୍ରକାଇ ପାରୁନାହିଁ । ଜନସଂଖ୍ୟା ଅଭିବୃଦ୍ଧିକୁ ଆଖି ଆଗରେ ରଖି ସମାନ୍ତରାଳ ଭାବେ ଦେଶରେ ବିଶ୍ୱ ବିଦ୍ୟାଳୟର ଅଭିବୃଦ୍ଧି ଘଟି ପାରିନାହିଁ ଯାହା ଫଳରେ ଉଚ୍ଚଶିକ୍ଷାର ସୁଯୋଗ କ୍ଷେତ୍ରରେ ବହୁ ଗୁରୁତର ପ୍ରତିବନ୍ଧକ ସୃଷ୍ଟି ହେଉଛି । ବିଶ୍ୱ ବିଦ୍ୟାଳୟ ବ୍ୟବସ୍ଥାରେ ବହୁଳ ସଂପ୍ରସାରଣ ସହ ସମଗ୍ର ଦେଶରେ ଆହୁରି ୧୫୦୦ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତା ରହିଛି । ଯଦ୍ୱାରା ୨୦୧୫ ମସିହା ବେଳକୁ ବିଶ୍ୱବିଦ୍ୟାଳୟ ମାନଙ୍କରେ ମୋଟ ନାମଲେଖାର ଅନୁପାତ ୧୫ ପ୍ରତିଶତରେ ପହଞ୍ଚି ପାରିବ । ଉଦାହରଣ ସ୍ୱରୂପ ଚୀନ ଗତ ୩ ବର୍ଷ ମଧ୍ୟରେ ୧୨୫୦ଟି ନୂଆ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ପ୍ରାଧିକାର ପତ୍ର ପ୍ରଦାନ କରିଛି । ଦୁର୍ଭାଗ୍ୟ ବଶତଃ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାରେ ଏବେ ପରିଦୃଷ୍ଟ ହେଉଥିବା ସମ୍ପ୍ରସାରଣ କେବଳ ଡିମ୍ଡ ୟୁନିଭରସିଟି ଏବଂ ଅଣନିୟନ୍ତ୍ରିତ ଘରୋଇ ଇଂଜିନିୟରିଂ କଲେଜ ଗୁଡ଼ିକର ପ୍ରତିଷ୍ଠାରେ ସୀମିତ ହୋଇ ରହିଛି ଯାହାକି ଏହାର ପରିଚାଳନା ବୋର୍ଡ଼ର ବ୍ୟାବସାୟୀକ ମନୋବୃତ୍ତିକୁ ବହୁଳ ଭାବେ ପ୍ରୋତ୍ସାହନ ଦେଉଛି ।

ସେକେଣ୍ଡାରୀ ସ୍କୁଲ୍ ଶିକ୍ଷାର ପରିସମାପ୍ତି ପରେ କଲେଜ ସ୍ତରରେ ବିଜ୍ଞାନ ଶିକ୍ଷା ପ୍ରତି ଆକୃଷ୍ଟ ହେଉଥିବା ଛାତ୍ରମାନଙ୍କ ସଂଖ୍ୟା ଆଶାତୀତ ହ୍ରାସ ଘଟିଛି । ୧୯୫୦ ଦଶକର ପ୍ରାରମ୍ଭରେ ଥିବା ୩୨ ପ୍ରତିଶତରୁ ଏବେ ତାହା ୧୯.୭ ପ୍ରତିଶତକୁ ଖସି ଆସିଛି । ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ୫୦ ଦଶକରେ ସ୍କୁଲରୁ ପାଶ୍ କରୁଥିବା ସର୍ବଶ୍ରେଷ୍ଠ ମେଧାବୀ ଛାତ୍ରମାନେ ବିଜ୍ଞାନ ପାଠ୍ୟକ୍ରମରେ ହିଁ ନାଁ ଲେଖାଉଥିଲେ । ହେଲେ ଏବେ ବିଜ୍ଞାନ ପାଠ୍ୟକ୍ରମରେ ନାଁ ଲେଖାଉଥିବା ଛାତ୍ରମାନେ କେବଳ ନିମ୍ନ ମଧ୍ୟବର୍ଗ ଛାତ୍ର ଅଟନ୍ତି । ଏହା ସ୍ପଷ୍ଟ ପ୍ରମାଣ କରୁଛି ଯେ ଯୁବ ଛାତ୍ର ଗୋଷ୍ଠୀ ବିଶେଷତଃ ଉଜ୍ଜ୍ୱଳ ପ୍ରତିଭା ସମ୍ପନ୍ନ ଛାତ୍ରମାନେ ବିଜ୍ଞାନ ଶିକ୍ଷା ପ୍ରତି ବିମୁଖ ହେଉଛନ୍ତି ଓ ଉଚ୍ଚତର ବିଜ୍ଞାନ ଶିକ୍ଷାରୁ ବାଟ ଭାଙ୍ଗି ଏଣେ ତେଣେ ଚାଲି ଯାଉଛନ୍ତି । ଏପରିକି ଜାତୀୟ

ମେଧା ଅନୁସନ୍ଧାନ ପୁରସ୍କାର ପ୍ରାପ୍ତ ସୁଯୋଗ୍ୟ ଛାତ୍ରମାନେ ମଧ୍ୟ ଏବେ ବିଜ୍ଞାନକୁ ନିଜର ବୃତ୍ତିଭାବେ ବରଣ କରିନେବା ପାଇଁ ଅତ୍ୟନ୍ତ ବିତସ୍ପୃହ ହେଉଛନ୍ତି । ୭୫୦ ଜଣ ଜାତୀୟ ମେଧାବୃତ୍ତି ପୁରସ୍କାର ପ୍ରାପ୍ତ ଛାତ୍ରମାନଙ୍କ ମଧ୍ୟରୁ ଅତିବେଶୀରେ ୧୦୦ ଜଣ ଛାତ୍ର ବିଜ୍ଞାନ ଶିକ୍ଷା ପ୍ରତି ଆକୃଷ୍ଟ ହେଉଛନ୍ତି ଏବଂ କେବଳ ମାତ୍ର ୧୫-୨୦ ପ୍ରତିଶତ ଛାତ୍ର ସ୍ନାତକୋତ୍ତର ବିଜ୍ଞାନ ଶିକ୍ଷାସ୍ତର ପର୍ଯ୍ୟନ୍ତ ଯାଉଛନ୍ତି । ସାଂଗସାଥିମାନଙ୍କ ଚାପ, ପରିବର୍ତ୍ତିତ ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ଓ ବଜାର ବ୍ୟବସ୍ଥା ଛାତ୍ରମାନଙ୍କୁ ମୌଳିକ ବିଜ୍ଞାନ ଆଡୁ ବୃତ୍ତିଗତ ଶିକ୍ଷା ଆଡ଼କୁ ଅଧିକ ଆକୃଷ୍ଟ କରୁଥିବାରେ ସହାୟକ ହେଉଛି । ବୃତ୍ତିଗତ ଶିକ୍ଷାର ପରିସମାପ୍ତି ପରେ ଚାକିରୀରେ ଅଧିକ ଦରମାରେ ନିଯୁକ୍ତି ପାଇଁ ଲୋଭ ଓ ଲାଳସା ଛାତ୍ରମାନଙ୍କୁ ଅତ୍ୟଧିକ ବ୍ୟତିବ୍ୟସ୍ତ କରି ପକାଉଛି । ବିଶେଷତଃ ସୂଚନା ପ୍ରଯୁକ୍ତିବିଦ୍ୟା, ପରିଚାଳନା ଶିକ୍ଷା, ସୂଚନା ବାଣିଜ୍ୟ ଏବଂ ବାୟୋ-ଟେକ୍ନୋଲୋଜି ଶିକ୍ଷାପ୍ରତି ଛାତ୍ରମାନେ ଅଧିକ ଆଗଭର ଓ ଆଶାୟୀ ହେଉଛନ୍ତି ।

ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଇନ୍ସ, ଟେକ୍ନୋଲୋଜି ଏବଂ ଡେଭଲପମେଣ୍ଟ ଷ୍ଟଡିଜର ଶ୍ରୀ କେ.ସି. ଗର୍ଗ ଓ ଶ୍ରୀ ବି.ଏମ୍. ଗୁପ୍ତା ଦିଲ୍ଲୀରେ ଥିବା ସମସ୍ତ ଯୁକ୍ତ ଦୁଇ ଓ ଡିଗ୍ରୀ ସ୍ତରର କଲେଜ ଗୁଡ଼ିକରେ ୧୯୯୨ ରୁ ୨୦୦୨ ମସିହା ମଧ୍ୟରେ ୧୦ ବର୍ଷର ନାମଲେଖା ହିସାବକୁ ତନ୍ନ ତନ୍ନ ବିଶ୍ଳେଷଣ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ବିଜ୍ଞାନ ଶିକ୍ଷାପ୍ରତି ଛାତ୍ରମାନଙ୍କର ଆଗ୍ରହ ଏପରିକି ଯୁକ୍ତ ଦୁଇ ସ୍ତରରେ ମଧ୍ୟ କ୍ରମାନ୍ୱୟ ଭାବେ ଦ୍ରୁତ ଗତିରେ ହ୍ରାସ ପାଇ ଚାଲିଛି । ଡିଗ୍ରୀ କଲେଜ ସ୍ତରରେ ୧୯୯୦ ରୁ ୧୯୯୧ ଏବଂ ୧୯୯୭ ରୁ ୧୯୯୮ ମସିହା ମଧ୍ୟରେ ନାମ ଲେଖା କ୍ଷେତ୍ରରେ ହାରାହାରି ୪୮ ପ୍ରତିଶତ ଛାତ୍ରଛାତ୍ରୀ ବିଜ୍ଞାନ ପାଠ୍ୟକ୍ରମ ପ୍ରତି ବିମୁଖ ହେଉଛନ୍ତି । ସେମାନେ ବି.ଏସ୍.ସି. ପାଠ୍ୟକ୍ରମରେ ନାଁ ନ ଲେଖାଇ ବିଭିନ୍ନ ପ୍ରଫେସନାଲ ପାଠ୍ୟକ୍ରମରେ ନାଁ ଲେଖାଉଛନ୍ତି । ଯୁକ୍ତ ଦୁଇ ସ୍ତରରେ ୮୦-୯୦ ପ୍ରତିଶତ ମାର୍କ ରହି ପାଶ କରିଥିବା ଛାତ୍ରଛାତ୍ରୀମାନେ ଏପରି ପ୍ରଫେସନାଲ କୋର୍ସ ପାଇଁ ଆଗଭର ହେଉଛନ୍ତି । ଦିଲ୍ଲୀର ବାହାରେ ଥିବା କଲେଜ ଗୁଡ଼ିକର ଦୃଶ୍ୟପଟ୍ଟ ମଧ୍ୟ ଠିକ୍ ତଦ୍ରୂପ । ଏପରି ରାଷ୍ଟ୍ରୀୟ ଚିତ୍ରପଟ ପ୍ରମାଣ କରୁଛି ଯେ ବିଜ୍ଞାନ ଶିକ୍ଷାର ଭବିଷ୍ୟତ କିପରି ଅନ୍ଧକାରାଚ୍ଛନ୍ନ ଓ ଯୁବଶକ୍ତି ବିଜ୍ଞାନ ଶିକ୍ଷାକୁ କିପରି ହତାଦର କରୁଛନ୍ତି ।

ଯେଉଁ ଛାତ୍ରଟି କୌଣସି ପ୍ରଫେସନାଲ କୋର୍ସରେ ନାଁ ଲେଖାଇବାରେ ସମ୍ପୂର୍ଣ୍ଣ ବିଫଳ ହେଲା ସେହି ଛାତ୍ରଟି ଅନୋନ୍ୟପାୟ ହୋଇ ବାଧ୍ୟ ବାଧକତାରେ ବିଜ୍ଞାନ ପାଠ୍ୟକ୍ରମରେ ହିଁ ନାଁ ଲେଖାଉଛି । ଫଳତଃ ଉଚ୍ଚତର ବିଜ୍ଞାନ ଶିକ୍ଷାର ଅଗଣାକୁ ପଶି ଆସୁଥିବା ଛାତ୍ରମାନେ ନିଜର ଅନିଚ୍ଛା ଓ ଅସ୍ପୃହା ସତ୍ତ୍ୱେ ଏଭଳି ପାଠ୍ୟକ୍ରମରେ ନାଁ ଲେଖାଉଛନ୍ତି । ବିଭିନ୍ନ ପ୍ରଫେସନାଲ କୋର୍ସରେ ନାଁ ଲେଖାଇବାର ସମସ୍ତ ରାସ୍ତା ବନ୍ଦ ହୋଇଯିବା ପରେ ଛାତ୍ରଟି ଯୁକ୍ତ ତିନି ବିଜ୍ଞାନ ଶିକ୍ଷାର ଅଙ୍ଗିନରେ ପାଦ ଥାପୁଛି । ଅର୍ଥାତ୍ ଭାରତବର୍ଷର ବୈଜ୍ଞାନିକ ଭବିଷ୍ୟତ ଏହି ଛାତ୍ରମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲାବେଳେ ଏହି ଛାତ୍ରମାନେ ବିଜ୍ଞାନ ଶିକ୍ଷାକୁ ଅଣଦେଖା କରିଥାନ୍ତି । ଏଭଳି ଜଘନ୍ୟ ପରିସ୍ଥିତିରେ ଭାରତବର୍ଷରେ ବିଜ୍ଞାନ ବଞ୍ଚି ରହିବ କିପରି ? କାହାକୁ ନେଇ ବା ବିଜ୍ଞାନ ବଞ୍ଚି ରହିବ ? କାହା ଉପରେ ବା ଭାରତୀୟ ବିଜ୍ଞାନ ଭରସା କରିବ ? ସର୍ବୋପରି ସ୍କୁଲ ଶିକ୍ଷା ପରିସମାପ୍ତି ପରେ ବିଜ୍ଞାନ ଶିକ୍ଷା ପ୍ରତି ଆଗଭର ହେଉଥିବା ୮୮ ପ୍ରତିଶତ ଛାତ୍ରଛାତ୍ରୀ ଆଫିଲିଏଟେଡ୍ କଲେଜ ମାନଙ୍କରେ ଶିକ୍ଷାଲାଭ କରିଥାନ୍ତି ଯେଉଁଠାରେ କି ବିଜ୍ଞାନ ଶିକ୍ଷାର କୌଣସି ନ୍ୟୁନତମ ସୁବିଧା ସୁଯୋଗ ବି ନଥାଏ । ଏଠାରେ ପାଠାଗର ଓ ବିଜ୍ଞାନାଗାର ଗୁଡ଼ିକ ଅତ୍ୟନ୍ତ ଦୁସ୍ଥ ଓ ଦୟନୀୟ ଅବସ୍ଥାରେ ଥାଏ । ଅନୁଷ୍ଠାନ ଗୁଡ଼ିକ ଛାତ୍ରଛାତ୍ରୀଙ୍କ ଭିଡ଼ରେ ଫାଟି ପଡୁଥିବା ବେଳେ ଶିକ୍ଷକ ଓ ଆନୁସଂଗିକ ଷ୍ଟାଫ୍ ମେମ୍ବରମାନଙ୍କ ସଂଖ୍ୟା ମଧ୍ୟ ଅତ୍ୟନ୍ତ ନଗଣ୍ୟ ହୋଇଥାଏ ।

ଛାତ୍ରଛାତ୍ରୀଙ୍କ ଏହି ଅକଥନୀୟ ଭିଡ଼ ମଧ୍ୟରେ ଲୁଚି ରହିଥିବା କିଛି ମେଧାବୀ ଛାତ୍ର ଯେଉଁମାନେ କି ବିଜ୍ଞାନ ଶିକ୍ଷା ପ୍ରତି ଅତ୍ୟନ୍ତ ଇଚ୍ଛୁକ ଓ ଆଗଭର ଏବଂ ଯେଉଁମାନେ କି ବିଜ୍ଞାନକୁ ନିଜର ବୃତ୍ତି ବା କ୍ୟାରିୟର ଭାବେ ବରଣ କରି ନେବାକୁ ଋହାନ୍ତି ଏବଂ ୟୁନିଭରସିଟି ଶିକ୍ଷା ଲାଭ କରିବାପରେ ଗବେଷଣା କ୍ଷେତ୍ରରେ ପାଦ ବଢ଼େଇବାକୁ ଇଚ୍ଛୁକ ସେମାନେ ପୁରୁଣା ସିଲାବସ, ପ୍ରାଣବିହୀନ ଶିକ୍ଷାଦାନ ବ୍ୟବସ୍ଥା, ଅଇଚ୍ଛୁକ ଶିକ୍ଷକ ସମାଜ, ଅମଲାତାନ୍ତ୍ରୀକ କଦାଋରତା, ଦୁର୍ବଳ ପ୍ରଶାସନ, ବିଜ୍ଞାନଗାରର ଅତି ପୁରୁଣା ବୈଜ୍ଞାନିକ ଯନ୍ତ୍ରପାତି ତଥା ଉତ୍ତମ ଶିକ୍ଷା ପରିବେଶର ବହୁଳ ଅଭାବ ଓ ଅନାଟନ ମଧ୍ୟରେ କାଳାତିପାତ କରିବାକୁ ବାଧ୍ୟ ହୋଇଥାନ୍ତି । ତରୁଣ ଯୁବଗୋଷ୍ଠୀଙ୍କ ମନରେ ଥିବା ବୈଜ୍ଞାନିକ ଉନ୍ମାଦନା, ସୁଯୋଗ ଓ ସମ୍ଭାବନାର ଗଳା ମରୁଡ଼ି

ହୋଇଥାଏ । ଯଦିଓ ଦେଶରେ ଛାତ୍ରଛାତ୍ରୀଙ୍କ ନାମଲେଖା ସଂଖ୍ୟାରେ ଅଭିବୃଦ୍ଧି ଘଟିଛି ଏବଂ ବିଶ୍ୱବିଦ୍ୟାଳୟ ସ୍ଥାପନା ସଂଖ୍ୟାରେ ଉନ୍ନତି ପରିଲକ୍ଷିତ ହୋଇଛି ହେଲେ ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ଛାତ୍ରଛାତ୍ରୀମାନେ ଲାଭ କରୁଥିବା ରିସର୍ଚ୍ଚ ଡିଗ୍ରୀର ସଂଖ୍ୟାରେ ପ୍ରାୟ ସ୍ଥାଣୁତା ଆସିଯାଇଥିଲା ବେଳେ ଇଞ୍ଜିନିୟରିଂ ବିଜ୍ଞାନ କ୍ଷେତ୍ରରେ ଏହି ସଂଖ୍ୟାରେ ପ୍ରକୃତରେ ଅବନତି ପରିଲକ୍ଷିତ ହୋଇଛି ।

ଜାତୀୟ ଜ୍ଞାନ ଆୟୋଗ ସଂପ୍ରତି ପ୍ରକାଶ କରିଥିବା "ରିପୋର୍ଟ ଟୁ ଦି ନେଶନ"ରେ ଉଲ୍ଲେଖ ଅଛି ଯେ – "There is, infact, a quite crisis in higher education that runs deep." ଅର୍ଥାତ୍ ଭାରତବର୍ଷରେ ଉଚ୍ଚଶିକ୍ଷା ଅତ୍ୟନ୍ତ ଜଟିଳ ପରିସ୍ଥିତି ଦେଇ ଗତି କରୁଛି ଯାହାର ଚେର ଅତ୍ୟନ୍ତ ଗଭୀର । ଆଜିପର୍ଯ୍ୟନ୍ତ ଦେଶରେ ଉଚ୍ଚଶିକ୍ଷା ସମ୍ପୂର୍ଣ୍ଣ ଭାବେ ରସାତଳଗାମୀ ହୋଇଯାଇନି ଏଇଥିପାଇଁ ଯେ ଦେଶରେ କେଉଁଠି ନା କେଉଁଠି କିଛି ନା କିଛି ଅତ୍ୟନ୍ତ ପ୍ରଜ୍ଞାବାନ ଓ ପ୍ରଚଣ୍ଡ ଧୀଶକ୍ତି ସମ୍ପନ୍ନ ଯୁବଗୋଷ୍ଠୀ ଲୁଚି ରହି ଅଛନ୍ତି ଯେଉଁମାନଙ୍କ ବିଜ୍ଞତା ଓ ମେଧାଶକ୍ତି ରାଷ୍ଟ୍ରକୁ ଏବେ ବି ବଞ୍ଚେଇ ରଖିପାରିଛି । ଆଉ ଦ୍ୱିତୀୟ କାରଣଟି ହେଲା ଆଜିଠୁ ୫୦ ବର୍ଷ ତଳେ ଭାରତବର୍ଷର ରାଷ୍ଟ୍ର ନିର୍ମାତା ମାନେ ଯେଉଁ ଜ୍ଞାନ ବିଜ୍ଞାନ ଓ ପ୍ରଜ୍ଞାର ବୀଜ ଦେଶରେ ରୋପଣ କରିଥିଲେ ତାକୁ ଆଜିବି ଆମେ ଅମଳ କରି ଚାଲିଛୁ ଏବଂ ତହିଁରୁ ଉପଲବ୍ଧ ହେଉଥିବା ଫଳକୁ ଖାଇ ଆମେ ବଞ୍ଚି ରହିଛୁ । ଏହା ଧିରେ ଧିରେ ଉଚ୍ଚତର ବିଜ୍ଞାନ ଶିକ୍ଷା ଓ ଗବେଷଣାର ବିଭିନ୍ନ ଦିଗକୁ ପ୍ରଭାବିତ କରୁଛି । ଆଜି ଦେଶରେ ସର୍ବ ଦିଗରେ ବିଜ୍ଞ ଓ ଶିକ୍ଷିତ ଲୋକଙ୍କ ଘୋର ଅଭାବ ପରିଲକ୍ଷିତ ହେଉଛି । ବିଶେଷ କରି ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷାଦାନ ଦେବାପାଇଁ ଯୋଗ୍ୟ ଶିକ୍ଷକଙ୍କ ବହୁଳ ଅଭାବ ରାଷ୍ଟ୍ରକୁ ଉଚ୍ଚଶିକ୍ଷା କ୍ଷେତ୍ରରେ ପଙ୍ଗୁ କରିଦେଉଛି । ଏହାର କୁ ପ୍ରଭାବ ଭବିଷ୍ୟତରେ ଅନ୍ୟାନ୍ୟ ବିଭାଗକୁ ମଧ୍ୟ ବ୍ୟାପିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ।

ଜାତୀୟ ଜ୍ଞାନ ଆୟୋଗ ଏହି ଘଟଣାର ପୁଂଖାନୁପୁଂଖ ତର୍ଜମା କରି ରିପୋର୍ଟରେ ମତବ୍ୟକ୍ତ କରିଛି ଯେ ୧୯୫୦ ଦଶକରେ ଦେଶରେ Stand Alone Research Institute ଅର୍ଥାତ୍ ନିଜ ଗୋଡ଼ରେ ନିଜେ ଠିଆ ହୋଇପାରୁଥିବା ସ୍ୱୟଂ ସମ୍ପୂର୍ଣ୍ଣ ଗବେଷଣା ପ୍ରତିଷ୍ଠାନ ଗୁଡ଼ିକର ସ୍ଥାପନା କରାଯାଇଥିଲା ଏହି ଲକ୍ଷ୍ୟ ନେଇ ଯେ

ଗବେଷଣା ବିଶ୍ୱବିଦ୍ୟାଳୟର ପରିସର ବାହାରକୁ ଚାଲିଗଲେ ଉଭୟ ଗବେଷଣା ଓ ଶିକ୍ଷାଦାନ ଉତ୍କୃଷ୍ଟତମ ସୋପାନରେ ପହଞ୍ଚି ପାରିବ । କିନ୍ତୁ ଏହି ପ୍ରକ୍ରିୟାରେ ଆମେ ଗୋଟିଏ ଅତ୍ୟନ୍ତ ମୂଲ୍ୟବାନ ନୀତିକୁ ପାଶୋରି ପକେଇଲୁ । ତାହା ହେଲା ଶିକ୍ଷାଦାନ ଓ ଗବେଷଣା ମଧ୍ୟରେ ଗୋଟାଏ ଭାବଗତ ସମ୍ପର୍କ ଥାଏ ଯାହାକି ପରସ୍ପରକୁ ପରିପୂରକ କରାଇବାରେ ଅତ୍ୟନ୍ତ ସହାୟକ ହୋଇଥାଏ । ତେଣୁ ବିଶ୍ୱବିଦ୍ୟାଳୟ ଗୁଡ଼ିକୁ ଗବେଷଣାର ପ୍ରାକୃତିକ ଘର ବୋଲି ବିବେଚନା କରାଯାଇଥାଏ । ସମୟ ଏବେ ବି ଅଛି ଅତୀତରେ ଯାହା କିଛି ବି ଘଟି ଯାଇଛି ତାର ମୋଡ଼ ବଦଳାଇ ଗବେଷଣାକୁ ପୁଣି ବିଶ୍ୱବିଦ୍ୟାଳୟ ଅଭିମୁଖୀ କରାଇବା ହିଁ ରାଷ୍ଟ୍ରପାଇଁ ଉଚିତ୍ ପଦକ୍ଷେପ ହେବ । ପୁଣିଥରେ ବିଶ୍ୱ ବିଦ୍ୟାଳୟର ଗବେଷଣାଗାର ଗୁଡ଼ିକ ଗବେଷଣାର ପରମ ପ୍ରକ୍ଷେତ୍ର ଭାବେ ଜାଗୃତ ଓ ଚଳଚଞ୍ଚଳ ହୋଇ ଉଠିବ । ଜାତୀୟ ଜ୍ଞାନ ଆୟୋଗ କିଛି ଆଶା, ନିରାଶା ଓ ବାସ୍ତବତାର ଭ୍ରମ ମଧ୍ୟରେ ସାମ୍ପ୍ରତିକ ସ୍ଥିତି ଅବସ୍ଥିତିକୁ ତଉଲି ମତ ଦିଅନ୍ତି ଯେ, – "ଆମ ବିଶ୍ୱବିଦ୍ୟାଳୟ ଗୁଡ଼ିକର ପୁନରୁତ୍ଥାନ ପାଇଁ କୌଣସି ପ୍ରେସ୍କ୍ରିପ୍ସନ୍ ଦେବା ଯଦିଓ ଅସମ୍ଭବ କଥା ନୁହେଁ କିନ୍ତୁ ନିଶ୍ଚିତ ରୂପେ ଏକ କଷ୍ଟକର ବ୍ୟାପାର । ପରନ୍ତୁ ଏହା ସ୍ପଷ୍ଟ ଯେ ଉଚ୍ଚତର ଶିକ୍ଷା ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ ଆଜି ଆମ ସମ୍ମୁଖରେ ଏକ ମସ୍ତବଡ଼ ଆହ୍ୱାନ ଏବଂ ଶିକ୍ଷାନୁଷ୍ଠାନମାନଙ୍କରେ ଉପଯୁକ୍ତ ସଂସ୍କାର ଆଣିବା ଆମ କାର୍ଯ୍ୟପନ୍ଥାର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହେବା ଆବଶ୍ୟକ । ପରନ୍ତୁ ଯେକୌଣସି କାର୍ଯ୍ୟକ୍ରମର ଯୋଜନା ଓ ପ୍ରଣୟନ ମଧ୍ୟରେ ଥିବା ଆକାଶ ପାତାଳର ପ୍ରଭେଦକୁ ଆମେ ଭଲଭାବେ ଚିହ୍ନି ରଖିବା ଦରକାର । କଥା କହିବା ଓ ତାକୁ କାର୍ଯ୍ୟରେ କରି ଦେଖାଇବା ଦୁଇଟି ଅଲଗା ମୁଦ୍ରା ।"

ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାର ସମ୍ପ୍ରସାରଣ କରି ୧୫୦୦ ସଂଖ୍ୟାକୁ ବୃଦ୍ଧି କରିବା ପାଇଁ ପ୍ରଚୁର ପରିମାଣର ପୁଞ୍ଜିର ଆବଶ୍ୟକତା ରହିଛି । ତା ପୂର୍ବରୁ ଦେଶର ସମସ୍ତ ବିଶ୍ୱବିଦ୍ୟାଳୟ ସାମ୍ପ୍ରତିକ ଆର୍ଥିକ ଦୂରାବସ୍ଥାରୁ କିପରି ମୁକୁଳି ପାରିବେ ତାହାହିଁ ବଡ଼ କଥା । ବର୍ଷ ବର୍ଷ ଧରି ବିଶ୍ୱବିଦ୍ୟାଳୟ ଏବଂ ସମଗ୍ର ଉଚ୍ଚ ଶିକ୍ଷା ବ୍ୟବସ୍ଥା ଯେପରି 'ଦାରିଦ୍ର୍ୟର ବ୍ୟାଧିରେ ପ୍ରପିଡ଼ିତ ହୋଇ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଛନ୍ତି ତହିଁରୁ ମୁକୁଳିବାର କୌଣସି ସୁଗମ ଉପାୟ ଖୋଜି ବାହାର କରାଯିବା ନିତାନ୍ତ ଦରକାର ।

ଭାରତୀୟ ଜାତୀୟ ବିଜ୍ଞାନ ଏକାଡେମୀ ଅନୁସାରେ ବିଶ୍ୱବିଦ୍ୟାଳୟର ଜଣେ ଛାତ୍ର ପିଛା ପୁଞ୍ଜି ଲଗାଣ ୬୦ ଦଶକରେ ବର୍ଷକୁ ୮୫୦ଟଙ୍କା ହେଉଥିଲା ବେଳେ ୯୦ ଦଶକ ବେଳକୁ ତାହା ୩୫୦ ଟଙ୍କାରେ ପହଞ୍ଚି ଗଲା । ବିଗତ ବର୍ଷମାନଙ୍କରେ ଶିକ୍ଷା ବାବଦରେ ପୁଞ୍ଜି ଲଗାଣ ମୋଟ ଜାତୀୟ ଉତ୍ପାଦନର ୩ ପ୍ରତିଶତ ସ୍ତରରେ ପଡ଼ିରହିଛି ଯଦିଓ ଜାତୀୟ ଶିକ୍ଷାନୀତି ଏହି ସ୍ତରକୁ ୬ ପ୍ରତିଶତରେ ପହଞ୍ଚାଇବା ପାଇଁ ସରକାରଙ୍କୁ ସୁପାରିଶ କରିଥିଲେ । ଉଚ୍ଚଶିକ୍ଷା ଓ ବିଶେଷ କରି ବିଜ୍ଞାନ ଶିକ୍ଷାର ଅଂଶ ମୋଟ ଜାତୀୟ ଉତ୍ପାଦନର ଯଥାକ୍ରମେ ୦.୬ ପ୍ରତିଶତ ଓ ୦.୨ ପ୍ରତିଶତକୁ ହ୍ରାସ ପାଇଛି । ଅପରପକ୍ଷରେ ଆମେରିକାରେ ଏହା ୧.୬ ପ୍ରତିଶତ, ଗ୍ରେଟ ବ୍ରିଟେନରେ ୧.୪ ପ୍ରତିଶତ ଓ ଜାପାନରେ ୧.୦୪ ପ୍ରତିଶତ ଅଟେ । ଜାତୀୟ ଜ୍ଞାନ ଆୟୋଗ ଉଚ୍ଚଶିକ୍ଷା କ୍ଷେତ୍ରରେ ମୋଟ ଜାତୀୟ ଉତ୍ପାଦନର ୧.୫ ରୁ ୨ ପ୍ରତିଶତ ପର୍ଯ୍ୟନ୍ତ ପୁଞ୍ଜି ବିନିଯୋଗ କରିବା ପାଇଁ ଦୃଢ଼ ସୁପାରିଶ କରିଛି ।

କେନ୍ଦ୍ର ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଭାଗ ଓ ମାନବ ସମ୍ବଳ ମନ୍ତ୍ରଣାଳୟ ଅଦମ୍ୟ ଚିନ୍ତା, ପ୍ରଚେଷ୍ଟା ଓ କାର୍ଯ୍ୟକ୍ରମ ରୂପାୟନ ମାଧ୍ୟମରେ ଛାତ୍ରଛାତ୍ରୀ ମାନଙ୍କର ପ୍ରଜ୍ଞା ଓ ଧିଶକ୍ତିର ଉତ୍ତରଣ ପାଇଁ ନାନାବିଧ ପରିଯୋଜନା ହାତକୁ ନେଇଥିଲେ ମଧ୍ୟ ତାହା ଅସଂଖ୍ୟ ପାରାବାରକୁ ଶଂଖେ ପାଣି ସଦୃଶ । ତାହା ପ୍ରଜ୍ଞାର ଦ୍ୱୀପଟିଏ ବା ଉପଦ୍ୱୀପଟିଏ ଗଢ଼ିବାରେ ସହାୟକ ହେଉଥିଲେ ମଧ୍ୟ ସର୍ବସାଧାରଣ ଜନତା, ନିମ୍ନ ଓ ମଧ୍ୟମ ଜ୍ଞାନ ବର୍ଗର ଛାତ୍ର ଛାତ୍ରୀମାନଙ୍କର ସର୍ବବିଧ ଉନ୍ନତିରେ ସହାୟକ ହୋଇପାରୁ ନାହିଁ । ଏଣୁ ସମୟର ଆହ୍ୱାନ ହେଲା ସମ୍ପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥାରେ ଏକ ଆମୂଳଚୂଳ ପରିବର୍ତ୍ତନ । ପ୍ରଶାସନର ମହାଦଣ୍ଡ ଧାରଣ କରିଥିବା ଅମଲାତନ୍ତ୍ର ଓ କାର୍ଯ୍ୟନିର୍ବାହୀ ଗୋଷ୍ଠୀ ମଧ୍ୟରେ ଏକ ଉତ୍ତମ ଓ ସୌହାର୍ଦ୍ଦ୍ୟମୟ ବନ୍ଧୁତ୍ୱର ପ୍ରତିଷ୍ଠା ତଥା ଆମ ଭିତରେ ଲୁଚି ରହିଥିବା ରୁଦ୍ଧ ମାନସିକତାରେ ପରିବର୍ତ୍ତନ ଏକାନ୍ତ କାମ୍ୟ ।

ସମାଜ : ୨୮.୧୦.୦୮ ଓ ୩୦.୧୦.୦୮

ବର୍ତ୍ତିକା ପୂଜା ସଂଖ୍ୟା : ୨୦୦୮



# ସ୍ମୃତି ଅନୁଭୂତିରୁ ପାଖୁଡ଼ାଏ

ସ୍ମୃତିର କାହାଣୀପେଡ଼ି ଖୋଲିବସିଲେ ବଳେବଳେ କଅଁଳିଆ ମନଟା କେଜାଣି କାହିଁକି ପିଲାଦିନର ଧୂଳିଖେଳଆଡ଼କୁ ମୁହେଁଇଯାଏ । ବୟସର ସିଡ଼ିପାହାଚରେ ପାଦଯୋଡ଼ିକ ଯେତେଯେତେ ଉପରକୁ ଉପରକୁ ଆରୋହଣ କରି ଚାଲିଥାଏ ପାଗଳା ମନଟା ସେତେସେତେ ପଛକୁ ପଛକୁ ଫେରି ଚାଲିବାକୁ ରାହାଧରି କାନ୍ଦୁଥାଏ । ଏଇ ନିୟମଟା ବୋଧେ ସମସ୍ତଙ୍କପାଇଁ ପ୍ରଯୁଜ୍ୟ । ମୁଁ ସେଥିରୁ ବାଦ୍ ପଡ଼ନ୍ତି ବା କିପରି ? ଘଟଣାର ସାଗର ତ ହେଲା ଜୀବନ । ବିନ୍ଦୁଏ ବିନ୍ଦୁଏ ପାଣି ନେଇ ସମୁଦ୍ର ଯେପରି ତା ପାରାବାରକୁ ଆବୋରି ବସିରହିଛି ଠିକ୍ ସେହିପରି ଗୋଟିଏ ଗୋଟିଏ ଘଟଣା ପ୍ରବାହର ଧାରା ଓ ଉପଧାରାର ସଂଯୋଗରେ ଜୀବନଟା ତା ବାଟରେ ଗଡ଼ିଗଡ଼ି ଚାଲିଛି । ଘଟଣା ଓ ଘଟଣା ପେଟରେ ଲୁଚିରହିଥିବା ଅସୁମାରୀ ହୀରା ମୋତି ମାଣିକର ଗପକୁ ବଖାଣିବସିଲେ ବାକିତକ ଜୀବନ ଆଖିପିଛୁଳାକେ ସରିଯିବ । କଥା କହିବସିଲେ ରାତି ପାହିଯିବ, ଯୁଗ ବିତିଯିବ । ସମୟ ପୁଣି କଡ଼ ଲେଉଟେଇବ । ନୂଆ ସକାଳର ନୂଆ ସୂରୁଜ ବାଡ଼ି ଓଳିତଳେ ଘରକରି ରହିଥିବା ସାରୁ ପତରର ପେଟଭିତରେ ସଞ୍ଚିଥିବା ଜଳବିନ୍ଦୁକୁ ଝଲସେଇଦେବ । ବିନ୍ଦୁଏ ଜଳ ସମୁଦ୍ରରେ ମିଶିଗଲେ ତାର ଅସ୍ତିତ୍ୱ ହରେଇବସେ । ହେଲେ ସେହି ବିନ୍ଦୁଏ ଜଳ ଯେତେବେଳେ ସାରୁପତରଟିଏ ଉପରେ ଖେଳ ଖେଳୁଥାଏ, ପଦ୍ମ ପତର ଉପରେ ଢଳଢଳ ହେଉଥାଏ ତାହା ଜୀବନକୁ ଚେତେଇ ଦେଇଥାଏ, ସତ୍ୟର ନିକଟତର କରାଇଥାଏ । ଜୀବନର ହାତଧରି ସତ୍ୟଆଡ଼କୁ ଟାଣିଟାଣି ନେଇଯାଇଥାଏ ।

ଜୀବନରେ ଘଟଣା ଘଟିବା ଦରକାର । ଘଟଣାର ଐତିହ୍ୟ ଓ ଇତିବୃତ୍ତକୁ ନେଇ ଜୀବନ ତାର ରୂପ ବିନ୍ୟାସ ପ୍ରକଟ କରିଥାଏ । ପିଲା ଦିନର ଗୋଟିଏ ଦୁଇଟି ଘଟଣାକୁ ମୁଁ ମୋର ଏହି ସ୍ମୃତିର ଫଳକରେ ପରିବେଷଣ କରିବାକୁ ଚାହୁଁଛି ଯାହାକି ହୁଏତ ଆପଣମାନଙ୍କ ପାଇଁ ତୁଚ୍ଛ ଓ ଅଦରକାରୀ ହୋଇପାରେ ହେଲେ ମୋପାଇଁ ତାହା ସ୍ୱପ୍ନର ବୁନିୟାଦ ସୃଷ୍ଟି କରିଛି । ଜୀବନର ରଙ୍ଗମଞ୍ଚରେ ମୁହଁରେ ପଟାପଟା ରଙ୍ଗମାରି ବିଭିନ୍ନ ରୂପରେ ବିଭିନ୍ନ ଦୃଶ୍ୟରେ ଅଭିନୟ କରିବାରେ ମୋର ସହାୟକ ହୋଇଛି ।

ମୁଁ ଗୋଟିଏ ମଧ୍ୟବିତ୍ତବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିବାରୁ ସଂସ୍କୃତ, ସଂସ୍କୃତି ଓ ସାଂସ୍କୃତିକ ଐତିହ୍ୟସହ ପିଲାଟିଦିନରୁ ଓତଃପ୍ରୋତଃଭାବେ ଜଡ଼ିତ ହୋଇଯାଇଥିଲି । ସାହିତ୍ୟ ଓ ସଂସ୍କୃତ ସ୍କୁଲ ପାଠ୍ୟକ୍ରମରେ ମୋର ଅତ୍ୟନ୍ତ ପ୍ରିୟ ବିଷୟବସ୍ତୁ ଥିଲା । ବରୀ କୃପାସିନ୍ଧୁ ବିଦ୍ୟାଭବନର ଛାତ୍ର ଥିଲାବେଳେ ସାହିତ୍ୟପ୍ରବେଶ ଓ ସଂସ୍କୃତ ପ୍ରବେଶ ବହି ମୋର ପ୍ରାୟ ଜଳବତ୍ ତରଳମ୍ ମୁଖସ୍ଥ ଥିଲା, ତାହା ଗଦ୍ୟ ହେଉ ବା ପଦ୍ୟ । ଆମ ସମୟରେ ମାଟ୍ରିକ ପରୀକ୍ଷା ଆମେ ଏକାଦଶ ଶ୍ରେଣୀରେ ଦେଉଥିଲୁ । ହାଇସ୍କୁଲ କହିଲେ ଅଷ୍ଟମ, ନବମ, ଦଶମ ଓ ଏକାଦଶ ଶ୍ରେଣୀକୁ ବୁଝାଉଥିଲା । ମୁଁ ନବମ ଶ୍ରେଣୀରେ ସଂସ୍କୃତ ଇଚ୍ଛାଧିନ ବିଷୟବସ୍ତୁ ନେଇ ପାଠ ପଢୁଥିଲି । ଗଣିତରେ ମୁଁ ଦୁର୍ବଳ ଥିଲି । ତେଣୁ ଭୟରେ ଇଚ୍ଛାଧିନ ଗଣିତ ମାଥେମେଟିକସ କ୍ଲାସରୁ ଦୂରେଇ ରହି ସଂସ୍କୃତ ଇଚ୍ଛାଧିନ କ୍ଲାସକୁ ଆଦରି ନେଇଥିଲି । ଗଣିତରେ ମୁଁ ମୂର୍ଖ ନଥିଲେ ବି ପଣ୍ଡିତ ବି ନଥିଲି । ତେଣୁ ସଂସ୍କୃତ ମୋର ପ୍ରିୟ ବିଷୟବସ୍ତୁ ହୋଇଯାଇଥିଲା ।

ହାଇସ୍କୁଲରେ ପାଠପଢ଼ା ଦିନପରେ ଦିନ ବିତିଚାଲିଲା । ଶ୍ରେଣୀର ଭଲ ଛାତ୍ରମାନେ ଯେଉଁମାନେ କି ମ୍ୟାଥେମେଟିକ୍ସ ଇଚ୍ଛାଧିନ ନେଇ ପାଠ ପଢୁଥିଲେ ସେମାନେ ମୋତେ ସଂସ୍କୃତ ଅପସନାଲ ନେଇଥିବାରୁ ଟାହିଟାପରା କରୁଥିଲେ । ସେମାନେ କହୁଥିଲେ ଚିଉ, ମ୍ୟାଥେମେଟିକସ ଅପସନାଲ୍ ନ ନେଲେ ତୋ ଜୀବନ ମାଟି ହୋଇଯିବ ଆଉ ତୁ ଜୀବନସାରା ବିଜ୍ଞାନର ଛାତ୍ର ହୋଇପାରିବୁ ନାହିଁ କି ବିଜ୍ଞାନର ଘର ଦୁଆରମୁହଁ ମଧ୍ୟ ମାଡ଼ିପାରିବୁ ନାହିଁ । ରଜରେ ରଜଦୋଳି ଖେଳିଲାଭଳି ମନଟା ସଂସ୍କୃତ ଓ ବିଜ୍ଞାନ ଏହି ଦୁଇ ବିଷୟବସ୍ତୁ ଭିତରେ ଦୋଳାୟୀତ ହେବାକୁ ଲାଗିଲା ଓ ଶେଷରେ ବିଜ୍ଞାନକୁ ମୁଁ ଜାବୁଡ଼ି ଧରିଲି । ଦଶମ ଶ୍ରେଣୀ ଆରମ୍ଭ ହେଲାବେଳକୁ ମୁଁ ମ୍ୟାଥେମେଟିକସ ଅପସନାଲ କ୍ଲାସରେ ବସିଲି ଓ ସେହି ଦିନଠୁଁ ଅପସନାଲ୍ ସଂସ୍କୃତଠୁଁ ବିଦାୟନେଇ ଅପସନାଲ୍ ଗଣିତର ବୋଲହାକ ମାନିଲି । ସେଥିରେ ବାନ୍ଧିହୋଇଗଲି, ଛନ୍ଦିହୋଇଗଲି, ରୁନ୍ଧିହୋଇଗଲି; ଗାଈଗୋଠ ଗୁହାଳରେ ବାନ୍ଧିହେଲାପରି । ତାପରେ ଏକ ଲମ୍ବା ରାସ୍ତା-ବିଜ୍ଞାନ, ବିଜ୍ଞାନ ଓ ବିଜ୍ଞାନ । ସେହି ଦିନଠୁଁ ବିଜ୍ଞାନର ସଡ଼କରେ ଯାତ୍ରୀଟିଏ ହୋଇଗଲି, କାଲିବି ଯାତ୍ରୀଟିଏ ହୋଇ ରହିବି

ଏ ବିଶ୍ୱାସ ମୋର ଅଛି । ଗନ୍ତବ୍ୟ ସ୍ଥଳ କୁଆଡ଼େ ତାହା ମୁଁ ଯାଣେନା, ହେଲେ ଖାଲି ଚାଲୁଛି, ଚାଲୁଛି ଏବଂ ଚାଲୁଛି । ବିଜ୍ଞାନର ଚାଙ୍ଗୁଡ଼ିରେ ଯାହା କିଛିବି ଶତଦଳ ମୁଁ ପୋଖରୀରୁ ତୋଳିଆଣି ସାଇତିରଖିଛି ତାହା ମୋ ସ୍କୁଲ ଜୀବନରେ ଘଟିଥିବା ଏହି ଅବିସ୍ମରଣୀୟ ମୁହୂର୍ତ୍ତର ସ୍ୱପ୍ନ ଓ ବାସ୍ତବତାକୁ ନେଇ । ମୋ ଜୀବନ ଆକାଶରେ ଯାହାକିଛି ବି ରଙ୍ଗତାରା ମୁଁ ଫୁଟାଇବାରେ ସକ୍ଷମ ହୋଇପାରିଛି ତାହା ଏହି ସ୍କୁଲ ଜୀବନର କ୍ୟାନଭାସକୁ ନେଇ, ରଙ୍ଗତୂଳୀକୁ ନେଇ, ଘଟଣାକୁ ନେଇ, ଚଲାପଥକୁ ନେଇ, ଆବର୍ତ୍ତକୁ ନେଇ, ବିବର୍ତ୍ତନକୁ ନେଇ ।

ଦ୍ୱିତୀୟ ଘଟଣାଟି ଯାହା ସମ୍ପୂର୍ଣ୍ଣ ରୂପେ ମୋ ଜୀବନର ଚିତ୍ରପଟ୍ଟକୁ ବଦଳେଇ ଦେଇଥିଲା ତାହା ଥିଲା ମୋର ଏମ୍.ଏସ୍.ସି. ପାଶ୍ କରିବାର ପରବର୍ତ୍ତୀ ଘଟଣା । ୧୯୬୭ ମସିହାରେ କଟକ ଷ୍ଟୁଆର୍ଟ ସାଇନ୍ସ କଲେଜରୁ ପ୍ରିପ୍ରଫେସନାଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା କଲେଜରେ ରସାୟନ ବିଜ୍ଞାନ ଅନର୍ସରେ ନାମ ଲେଖାଇଥିଲି । ୧୯୬୯ ମସିହାରେ ପଦାର୍ଥ ବିଜ୍ଞାନ ଓ ଅଙ୍କଶାସ୍ତ୍ରରେ ଡିଷ୍ଟିଙ୍କସନ୍ ସହ ରସାୟନ ବିଜ୍ଞାନ ଅନର୍ସରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା କଲେଜରେ ଏମ୍.ଏସ୍.ସି. ରସାୟନ ବିଜ୍ଞାନର ଛାତ୍ର ହୋଇଥିଲି । ସେହି ସମୟରେ ରେଭେନ୍ସା କଲେଜର ରସାୟନ ବିଜ୍ଞାନ ବିଭାଗରେ ଦୁଇଜଣ ପ୍ରଫେସର ଥାଆନ୍ତି - ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଓ ଡକ୍ଟର ଅଶୋକ ଶଙ୍କର ମିତ୍ର । ମୁଁ ଡକ୍ଟର ଅଶୋକ ଶଙ୍କର ମିତ୍ରଙ୍କର ଥେସିସ୍ ଗ୍ରୁପର ଛାତ୍ର ଥାଏ । ଆମେ ତିନିଜଣ ପିଲା – ମୁଁ, ସ୍ୱର୍ଗତା ସରୋଜବାସିନୀ ଦାସ ଓ ସ୍ୱର୍ଗତା ସାବିତ୍ରୀ ପଦ୍ମନାଭନ୍ ଡକ୍ଟର ମିତ୍ରଙ୍କ ଅଧୀନରେ ଏମ୍.ଏସ୍.ସି. ଥେସିସ୍ କରୁଥିଲୁ । ସେତେବେଳେ ଭଲ ଛାତ୍ରମାନଙ୍କୁ ଥେସିସ୍ ଗ୍ରୁପରେ ନିଆଯାଉଥିଲା ।

୧୯୭୧ ମସିହାରେ ଏମ୍.ଏସ୍.ସି. ପାଶ୍ କଲାପରେ ମୁଁ ଗାଁରେ ଥାଏ । ସେତେବେଳକୁ ଗବେଷଣାର ମନୋବୃତ୍ତି ମୋ ଭିତରେ ଅଙ୍କୁରୋଦ୍‌ଗମ ହୋଇସାରିଥାଏ । ଗାଁରେ ସ୍ୱଚ୍ଛ ରହଣିକାଳ ମଧ୍ୟରେ ମୁଁ ବିଭିନ୍ନ ଇଂରାଜୀ ଓ ଓଡ଼ିଆ ଖବରକାଗଜ ପଢୁଥାଏ । ଦିନକର କଥା, କଲିକତାରୁ ପ୍ରକାଶପାଉଥିବା ଷ୍ଟେଟ୍‌ସମ୍ୟାନ ଇଂରାଜୀ ଦୈନିକ ଖବରକାଗଜରେ କଲିକତାସ୍ଥିତ ଦେଶର ପ୍ରଥମ ଗବେଷଣା ଅନୁଷ୍ଠାନ

ଇଣ୍ଡିଆନ ଆସୋସିଏସନ୍ ଫର୍ ଦି କଲ୍‌ଟିଭେସନ୍ ଅଫ୍ ସାଇନ୍‌ସ ପ୍ରତିଷ୍ଠାନରେ ଜୈବ ରସାୟନ ବିଜ୍ଞାନ ବିଭାଗରେ ସି.ଏସ୍.ଆଇ.ଆର୍. ପ୍ରୋଜେକ୍ଟରେ ଗବେଷଣା କରିବାପାଇଁ ଦରଖାସ୍ତ ଆହ୍ୱାନ କରାଯାଇଥାଏ । ମୁଁ ସେହି ବିଜ୍ଞପ୍ତିଟି ପଢ଼ି ଡାକଦ୍ୱାରା ଦରଖାସ୍ତ ଫର୍ମ ମଗାଇ ଦରଖାସ୍ତ କଲି । ସେହି ଦରଖାସ୍ତରେ ରେଭେନ୍‌ସା କଲେଜର ରସାୟନ ବିଜ୍ଞାନ ବିଭାଗର ପ୍ରଫେସର ଡକ୍ଟର ଅଶୋକ ଶଙ୍କର ମିତ୍ର ତାଙ୍କର ବଳିଷ୍ଠ ଅନୁମୋଦନ କରିଥିଲେ ଏବଂ ବିନା ଇଣ୍ଟରଭିୟୁରେ ମୁଁ ମନୋନୀତ ହୋଇ ସେଠାରେ ପି.ଏଚ୍.ଡି. ଛାତ୍ର ହେବାର ପରମ ସୌଭାଗ୍ୟ ଲାଭ କରିଥିଲି । କାରଣଟି ହେଲା ପ୍ରଫେସର ଡକ୍ଟର ଅଶୋକ ଶଙ୍କର ମିତ୍ରଙ୍କର କଲିକତାର ଗୁରୁ ଡକ୍ଟର ଫଣୀନ୍ଦ୍ର ଚନ୍ଦ୍ର ଦତ୍ତ ମୋତେ ତାଙ୍କର ପି.ଏଚ୍.ଡି. ଛାତ୍ରପାଇଁ ମନୋନୀତ କରିଥିଲେ । ଯେହେତୁ ଡକ୍ଟର ଦତ୍ତଙ୍କର ପ୍ରିୟ ଛାତ୍ର ପ୍ରଫେସର ଡକ୍ଟର ଅଶୋକ ଶଙ୍କର ମିତ୍ରଙ୍କର ମୁଁ ପ୍ରିୟ ଛାତ୍ର ଥିଲି, ତେଣୁ ହାତୀ ମୋ ମୁଣ୍ଡରେ ସୁନା କଳସ ଢ଼ାଳିଲା । ମୁଁ ଡକ୍ଟର ଦତ୍ତଙ୍କର ଛାତ୍ରଙ୍କର ଛାତ୍ର ଥିଲି । ଏହା ହିଁ ଥିଲା ଗବେଷଣାପାଇଁ ମନୋନୀତ ହେବାର ମୋର ଏକମାତ୍ର ଯୋଗ୍ୟତା । ଏହା ମୋ ପାଇଁ ଏକ ଅବିସ୍ମରଣୀୟ ଘଟଣା ଓ ପଥପ୍ରଦର୍ଶକର ଭୂମିକା ରୂପେ ସାବ୍ୟସ୍ତ ହେଲା ।

ଗବେଷଣା କରିବାକୁ ମନୋନୀତ ସିନା ହୋଇଗଲି ହେଲେ ଯିବି କେମିତି ? ମୋର ମନେ ଅଛି ଜୁନ୍ ୨୦, ୧୯୭୨ ମସିହାରେ ମୋତେ କଲିକତା ଯାଇ ଗବେଷଣାରେ ଯୋଗଦାନ ଦେବାକୁ ଆମନ୍ତ୍ରଣ କରାଯାଇଥିଲା । ମୋତେ ପ୍ରଫେସର ଦତ୍ତ ଚିଠିରେ ଲେଖିଥିଲେ ଯେ ମାସିକ ସ୍କଲାରସିପ୍ ହେବ ୩୦୦ ଟଙ୍କା ଓ ତହିଁରୁ ୯୦ ଟଙ୍କା ହଷ୍ଟେଲର ମେସକୁ ଦିଆଯିବ ଖିଆପିଆ ବାବଦରେ । ହଷ୍ଟେଲର ସିଟ୍ ରେଣ୍ଟ୍ ଥିଲା ୨୫ଟଙ୍କା । ତେଣୁ ମାସିକ ଖର୍ଚ୍ଚହେବ ୧୧୫ ଟଙ୍କା । ଅବଶିଷ୍ଟ ୧୮୫ ଟଙ୍କାରେ ମୋତେ ମୋର ଆନୁଷଙ୍ଗିକ ଖର୍ଚ୍ଚ, ବହିପତ୍ର କିଣା ଓ ଗସ୍ତ ଖର୍ଚ୍ଚ ଆଦି ବହନ କରିବାକୁ ପଡ଼ିବ । ସ୍କଲାରସିପ ମିଳିବାକୁ ଟିକେ ଡେରି ହୋଇପାରେ ତେଣୁ ପ୍ରଫେସର ଦତ୍ତ ମୋତେ ହାତରେ ୩୦୦ ଟଙ୍କା ଧରି କଲିକତା ଆସିବାକୁ ଉପଦେଶ ଦେଇଥିଲେ । ପ୍ରଫେସର ଦତ୍ତଙ୍କର ମନୋନୟନ ଚିଠି ପାଇଲାପରେ ଆଗକୁ ଥାଏ ଆଉ ଗୋଟାଏ ସପ୍ତାହ କଲିକତାରେ ଯୋଗଦାନ ଦେବାପାଇଁ ।

ଦିନପରେ ଦିନ ବିତିଚାଲିଲା । ଚାହୁଁ ଚାହୁଁ ସାତଦିନ ବି ବିତିଗଲା । ରାତିପାହିଲେ ଜୁନ୍ ୧୯ ତାରିଖ, ମୁଁ ସକାଳୁ କଲିକତା ଯିବି । ମୋ ପାଖରେ ୩୦୦ ଟଙ୍କା ନାହିଁ । ବହୁ ଚେଷ୍ଟା ସତ୍ତ୍ୱେ ମଧ୍ୟ ୩୦୦ ଟଙ୍କା ଯୋଗାଡ଼ ହୋଇପାରିଲା ନାହିଁ । ରାତି ପାହିଲେ ବସ୍‌ରେ ବସି ଭଦ୍ରକ ଯିବି ଓ ସେଠାରୁ ଲୋକାଲ୍ ଟ୍ରେନରେ କଲିକତା । ଜୁନ୍ ୧୮, ୧୯୭୨ ରାତିଟି ମୋ ଜୀବନର ଏକ ଅମାରାତି ଥିଲା । ତା' ପରଦିନ ମୁଁ କଲିକତା ଯାଇଁ ଜୁନ୍ ୨୦, ୧୯୭୨ ଦିନ ଉଚ୍ଚତର ଗବେଷଣାପାଇଁ ଦେଶର ସର୍ବ ପୁରାତନ ଓ ଶ୍ରେଷ୍ଠ ବୈଜ୍ଞାନିକ ପ୍ରତିଷ୍ଠାନରେ ଯୋଗଦେବାର କଥା । ସେହି ଜୁନ୍ ୧୮, ୧୯୭୨ ମସିହାର କାଳିମାମୟ ରାତି ଓ ସେହି ରାତିସହ ଜଡ଼ିତ ସମସ୍ତ ଘଟଣା ମୋ ଜୀବନର ସଂଘର୍ଷମୟ ଅଧ୍ୟାୟର ଏକ ପ୍ରମୁଖ ପୃଷ୍ଠାଭାବେ ଆଜିବି ଉଦ୍ଭାସିତ ହୋଇ ରହିଛି । ବହୁ ଚେଷ୍ଟା ପ୍ରଚେଷ୍ଟା ପରେ ରାତି ୨ଟା/୩ଟା ବେଳକୁ ମୋର କକେଇ ସ୍ୱର୍ଗତ ବିଦ୍ୟାଧର ମିଶ୍ର ଗାଁ ଗାଁ ବୁଲି ଲୋକଙ୍କ ଉପରେ ବାକି ପଡ଼ିଥିବା ଦୋକାନ ସଉଦା ଟଙ୍କାରୁ କିଛି କିଛି ଆଣି କୌଣସିମତେ ୩୦୦ ଟଙ୍କା ଯୋଗାଡ଼ କରିପାରିଲେ । ଆମ ଘର ଦୋକାନରେ ଥିବା ଖୁଚୁରା ପଇସା ଡବାରୁ କିଲେ ଦୁଇ କିଲୋ ଓଜନର ଖୁଚୁରା ପଇସା ଗୋଟିଏ ଛୋଟିଆ ବ୍ୟାଗରେ ଆଣି କକେଇ ମୋ ହାତରେ ଧରେଇଦେଲେ । ଆଖିରୁ ମୋର ଲୁହଧାର ଛୁଟିଚାଲିଥାଏ । ସେଦିନ ରାତିରେ ଘରେ ସମସ୍ତେ ଓପାଷ, ମୁଁ ବି । ରୋଷେଇବାସ ହୋଇନଥାଏ । ମନଟା ମୋର ଭାଙ୍ଗିରୁଜି ଚୂରମାର ହୋଇଯାଇଥାଏ । ମୋ ସାମ୍ନାରେ ମୋ ସ୍ୱପ୍ନଗୁଡ଼ାକ କିପରି ନାଉଖାର ହୋଇଯାଉଥାଏ ତାହା ମୁଁ ନିଜେ ସେଦିନ ଦେଖିଛି । ହାତରେ ସ୍ୱପ୍ନଗୁଡ଼ାକୁ ଧରି ଦଳିଚକଟି ମୁଁ ବିଦିର୍ଣ୍ଣ କରିଦେଇଥାଏ । ଜୀବନ ମୋ ପାଇଁ ମୂଲ୍ୟହୀନ ହୋଇପଡ଼ିଥାଏ । ଗବେଷଣା ନିଶା ମୋତେ ପ୍ରଚଣ୍ଡଭାବେ ଘାରିରଖିଥାଏ । ଗବେଷଣାକୁ ମୁଁ ମୋ ଜୀବନର ବ୍ରତ କରିବାକୁ ପଣ କରିସାରିଥାଏ । ଗବେଷଣା ମୋର ଗଣ୍ଠିଧନ ଓ ଗଳାମାଳି ହୋଇସାରିଥାଏ । ହେଲେ କକେଇଙ୍କ ଘରବାହୁଡ଼ା ଦୃଶ୍ୟ ଓ ହାତରେ ଥିବା ୩୦୦ ଟଙ୍କାର ନୋଟ୍ ଓ ଖୁଚୁରା ପଇସାର ବ୍ୟାଗ୍ ଦେଖି ମନ ଭିତରଟା ମୋର ଆନ୍ଦୋଳିତ ଓ ଉଦବେଳିତ ହୋଇଉଠିଲା । ପେଟ, ଲାହି, ଛାତି ଭେଦି କୋହ ଉଚୁକେଇ ହୋଇପଡୁଥାଏ । କକେଇ କୁଣ୍ଢେଇ ପକେଇଲେ ମୋତେ । ଗେଲ କରିଦେଲେ । ଆବୋରିନେଲେ କୋଳକୁ । ବୋଧ ଦେଲେ । ମା' ଛେଉଣ୍ଡକୁ ଆଶୀଷ ଦେଲେ ।

ସମୟ ମୋଡ଼ନେଲା । ରାତି ପାହି ସିନ୍ଦୂରା ଫାଟିଲା । ପୂର୍ବ ଦିଗ କୁମ୍ଭାର ସାହିଆଡୁ ସୂରୁଜ ଉଙ୍କିମାରିଲେ । ପକ୍ଷୀ ରାବିଲେ, କୁଆ କା' କା' କଲେ । ବାଉଁଶ ଗଛରେ ଡାଉକ ଗୀତ ଗାଇଲେ । ସମୟଟା ଚହଲିଗଲା । ମନ ଡେଣା ଧରିଲା । ସ୍ମୃତିର ଅବିର ବୋଳିହୋଇପଡ଼ିଲି ଆପାଦମସ୍ତକ । ବାହୁନୁଥିବା ମନଟାକୁ ବୁଝେଇଦେଲି, ସଜେଇଦେଲି, ରଙ୍ଗେଇଦେଲି । ମନ ହୋଲି ଖେଳିଲା । ସକାଳର ନିତ୍ୟକର୍ମ ସାରି ବ୍ୟାଗ୍ ଖଣ୍ଡେ ହାତରେ ଧରି ବରୀ ବସଷ୍ଟାଣ୍ଡ ଆଡ଼େ ମୁହେଁଇଲି । ବସ୍ ଧରି ଭଦ୍ରକ ଗଲି, ଆଉ ସେଠୁଁ କଲିକତା । ମୁଁ ନୂଆକରି କଲିକତା ସହରରେ ପାଦ ଥାପିଲି । ବିଜ୍ଞାନର ସ୍ୱପ୍ନ ପସରାକୁ ହାତରେ ଧରି କଲିକତା ମହାନଗରୀର ବିରାଟ ଛାତିଭିତରେ କାହିଁ କୁଆଡ଼େ ମୁଁ ହଜିଗଲି... ।

ସେହି ଅବିସ୍ମରଣୀୟ ଘଟଣା ଓ ଅକଥନୀୟ ମୁହୂର୍ତ୍ତର ଅଲିଭା ଛାପ ଆଜିବି ମୋ ହୃଦୟରେ ଗଭୀରଭାବେ ଅଙ୍କା ହୋଇରହିଛି । ଯଦି ସେହି ୩୦୦ ଟଙ୍କା ସେଦିନ ମୋ ହାତପାହାନ୍ତାକୁ ଆସିପାରି ନଥାନ୍ତା ତେବେ ସୁଦୀର୍ଘ ଚଲାପଥର ଆଉକେଉଁ ଦିଗରେ ମୋ ଜୀବନଟା ମୋଡ଼ିହୋଇ ଚାଲିଯାଇଥାଆନ୍ତା । ଜୀବନର ସେହି ମୋଡ଼, ସେଦିନର ସେହି ରାତି, ସେଦିନର ସେହି ରାତିର କାହାଣୀ, ସେଦିନର ସେହି ରାତିର କାଳିମା ଓ ସେଦିନର ସେହି ରାତିର ପ୍ରତ୍ୟେକ ମୁହୂର୍ତ୍ତକୁ ମୁଁ ନମସ୍କାର କରୁଛି, ପ୍ରଣାମ କରୁଛି, ଦଣ୍ଡବତ କରୁଛି । ସେହି ମୁହୂର୍ତ୍ତ ଗୁଡ଼ିକୁ ଏବେ ବି ମୁଁ ମୋ ହୃଦୟରେ ଶକ୍ତଭାବେ ଜାବୁଡ଼ି ଧରିଛି ଓ ଧରିଥିବି ମଧ୍ୟ ।

କଥା କହିବସିଲେ ମନଟା ବାହୁନି ଉଠେ, ହୃଦୟରେ ଝିଙ୍କାରିର ଝିଁ ଝିଁ ଶବ୍ଦ ପ୍ରକମ୍ପିତ ହୁଏ, ଶରୀର ଓ ମନଟା ଗୋଟାପଣ ଥରିଉଠେ, ଆତ୍ମା ମଧ୍ୟ ରାହାଧରି କାନ୍ଦେ । କହିପାରିବେ ! ସବୁ ସଫଳ ମଣିଷଙ୍କର ପିଛା ଦୁଃଖ ଛାଡ଼େନା କାହିଁକି ? ଯନ୍ତ୍ରଣାର ଅସୁମାରୀ ଢେଉ ତାଙ୍କ ଘରର ମାଟି କାନ୍ଥକୁ ଦଲକାଇଦିଏ କାହିଁକି ? କାହିଁକି ଉଦୁଉଦିଆ ତୋଫା ଜହ୍ନ ତାଙ୍କ ବାସର ରାତିର ଶେଯରେ ପ୍ରତିଫଳିତ ହୁଏନା ? କାହିଁକି ସରଗର ଚାନ୍ଦକୁ ସେମାନେ ନିଜକୋଳକୁ ଟେକିଆଣି ପାରନ୍ତିନି ? କାହିଁକି ତାଙ୍କ ଜୀବନଟା ହା ହୁତାସ ଅନଳଭିତରେ ଧ୍ୱଂସ ହୋଇ ଚାଲିଥାଏ ? ବୋଧେ ତାହା ହିଁ ବିଧି ନିର୍ଦ୍ଦିଷ୍ଟ !

ହୃଦୟରୁ ରକତ ବୋହିଲେ ମନରେ ତାଙ୍କର ସପନ ଉଙ୍କିମାରେ । ପାଦରେ କଣ୍ଟା ଫୁଟିଲେ ହୃଦୟରେ ତାଙ୍କର କୃଶବିଦ୍ଧ ହୁଏ । ସମୁଦ୍ରରେ ଝଡ଼ ଉଠିଲେ ତାଙ୍କ ମନରେ ଝଡ଼ ଉଠେ । ଆକାଶରେ ବାଦଲ ଢାଙ୍କିଲେ ତାଙ୍କ ଜୀବନରେ ଘଡ଼ଘଡ଼ିର ଶବ୍ଦ ଶୁଭେ । ଏମିତି ଗୋଟାଏ ଜୀବନ, ଏମିତି ଗୋଟାଏ ରାସ୍ତା, ଏମିତି ଗୋଟାଏ ପଥିକଟିଏ ହେବା ସମସ୍ତଙ୍କ ଭାଗ୍ୟରେ ଜୁଟେନା । କିଛି ପିଲା ଥାଆନ୍ତି କାଳିଗାଈର ଦୁଧ ପିଇ ପିଲାଟି ଦିନରୁ ବଡ଼ହୋଇଥାନ୍ତି । କିଛି ପିଲା ଥାଆନ୍ତି ମା' ଛେଉଣ୍ଡ ହୋଇ କ୍ଷୀର ଟିକେ ପାଇଁ ଆ କାନି ତଳେ ତା କାନି ତଳେ ଲୋଟିପଡ଼ନ୍ତି । କିଛି ପିଲା ଥାଆନ୍ତି ଯାହାଙ୍କ ଜୀବନ ମାଗୁଣିର ଶଗଡ଼ପରି ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ଜୀବନର ବଡ଼ଦାଣ୍ଡରେ ଗଡ଼ିଗଡ଼ି ଚାଲିଥାଏ । କିଛି ପିଲା ଥାଆନ୍ତି "ହାତୀ ନେ ଘୋଡ଼ା ନେ, ମୋ ପେଁକାଳି ବଜେଇ ଦେ"ର ରାହା ଧରି ଜୀବନକୁ ସଙ୍ଗୀତମୟ କରିଦିଅନ୍ତି । ଏଇଟାତ ଜୀବନ । କାହାରି ଜାଗିରଦାରୀ ନୁହେଁ । କାଦୁଅକୁ ଯେତେ ଚକଟିଲେ ବି ସେ କାଦୁଅ । ଜୀବନକୁ ଯେତେ ମନ୍ଥିଲେ ବି ସେ ତ ଜୀବନ । ତାଳସଜ ପେଟରୁ ଗଜାର ଅଙ୍କୁରୋଦ୍‌ଗମ ହେଲାପରି ମନ ଭିତରେ ଶୋଇଥିବା ଭ୍ରୂଣଟିଏ ସଞ୍ଚରି ଉଠେ, ଜାଗି ଉଠେ, ନୂଆ ସକାଳକୁ କୋଳେଇନେବାପାଇଁ, ପୁନେଇଁ ରାତିର ଜହ୍ନକୁ ଆପେଣେଇନେବା ପାଇଁ । ଜୀବନ ଏମିତି ବହି ଚାଲିଚି ବହି ଚାଲିଥିବ । ସୁଅ ମୁହଁରେ ପତର ପରି ଆମେ ମଣିଷଟିଏ ଭାସିଚାଲିଛେ ସମୟର ଢେଉରେ, ସ୍ୱପ୍ନର ପାରାବାରରେ, ବାସ୍ତବତାର ଆଘାତରେ କାଲିକୁ ପାଛୋଟି ନେବାପାଇଁ, ଦୀପ ଜାଳି କାଲିକୁ ଆହ୍ୱାନ କରିବାପାଇଁ, ସୂର୍ଯ୍ୟସ୍ନାନ କରିବାପାଇଁ ।

ତୀର ତରଙ୍ଗ, ପୂଜାସଂଖ୍ୟା : ୨୦୦୮

ସହକାର : ଏପ୍ରିଲ୍-ମଇ, ୨୦୦୯



# ବିଜ୍ଞାନ ହେଉଛି ଆଇମା'ର କାହାଣୀ ପରି ମଜାଳିଆ ଗପଟିଏ

[ଏହା ଆପଣଙ୍କ ଜୀବନକୁ ଏକ ଉତ୍ତମ ପୃଷ୍ଠଭୂମି (Context) ଓ ପରମ ଅର୍ଥ (Meaning) ପ୍ରଦାନ କରିଥାଏ]

କଲମ୍ବିଆ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନର ପ୍ରଫେସର ବ୍ରିୟାନ ଗ୍ରୀନ ଇରାକରେ ଅବସ୍ଥାପିତ ଜଣେ ଆମେରିକୀୟ ସୈନ୍ୟଙ୍କ ଠାରୁ କିଛି ବର୍ଷ ପୂର୍ବେ ଚିଠିଟିଏ ପାଇଥିଲେ । ଚିଠିଟିର ମୂଳରୁ ଉଲ୍ଲେଖ ଥିଲା ଯେ ସୁଦୂର ଆମେରିକାରୁ ଆସି ଏଠାରେ ଇରାକ୍‌ରେ ସମ୍ମୁଖ ଭାଗରେ ରହି ଆମେ ଶତ୍ରୁପକ୍ଷ ସହ ଯୁଦ୍ଧ କରିବା ଯେ କେବଳ ଶାରୀରିକ ଯନ୍ତ୍ରଣାଦାୟକ ଥିଲା ତା ନୁହେଁ ବରଂ ଅନେକ ଗୁଣରେ ତାହା ମାନସିକ ପୀଡ଼ା ଓ ବ୍ୟାଧିରେ ପରିଣତ ମଧ୍ୟ ହୋଇଯାଇଥିଲା । କିନ୍ତୁ ସେହି ସୈନିକଟିର ତାଙ୍କ ପାଖକୁ ଚିଠି ଲେଖିବାର ପ୍ରମୁଖ କାରଣଟି ଥିଲା ଯେ ଇରାକ୍‌ର ଯନ୍ତ୍ରଣା ଜର୍ଜରିତ ଓ ସମ୍ପୂର୍ଣ୍ଣ ଏକୁଟିଆ ପରିବେଶକୁ ଦୃଢ଼ତାର ସହ ସମ୍ମୁଖୀନ କରି ବଞ୍ଚି ରହିବାର ମହନୀୟ କଳା ଟିକକ ସେମାନେ ତାଙ୍କ ରଚିତ ଏକ ପୁସ୍ତକଠାରୁ ହିଁ ଲାଭ କରିଥିଲେ ଯାହା ସୈନିକମାନଙ୍କର ଜୀବନରେଖା ଭାବେ ସାବ୍ୟସ୍ତ ହୋଇଥିଲା । ଯେହେତୁ ପୁସ୍ତକଟି ବିଜ୍ଞାନ ଉପରେ ଆଧାରିତ ଥିଲା ଏଥିରେ ପ୍ରକୃତିର ନିଗୂଢ଼ ତଥ୍ୟ ତଥା ନାନାଦି ନୀତି ନିୟମ ସମ୍ପର୍କରେ ପଦାର୍ଥବିଦ୍ୟାବିତ୍‌ମାନଙ୍କ ଅନୁସନ୍ଧାନ, ପର୍ଯ୍ୟବେକ୍ଷଣ ଓ ଅନବରତ ପ୍ରଚେଷ୍ଟାର କଠିନ ରୂପରେଖ ସମ୍ବନ୍ଧରେ ସ୍ୱଷ୍ଟ ଅବତାରଣା କରାଯାଇଥିଲା, ତେଣୁ ଏ ପରିପ୍ରେକ୍ଷୀରେ ସୈନିକମାନେ ବ୍ରିୟାନ ଗ୍ରୀନଙ୍କ ପାଖକୁ ଲେଖିଥିବା ଚିଠିର ପ୍ରାସଂଗିକତା ଓ ଯଥାର୍ଥତା ଏକ ପ୍ରଶ୍ନବାଚୀ ବୋଲି ପ୍ରତୀୟମାନ ହୁଏ ନାହିଁ କି ?

କିନ୍ତୁ ପ୍ରକୃତରେ କଥାଟି ତାହା ନୁହେଁ । ବରଂ ବିଜ୍ଞାନ କିପରି ଜୀବନକୁ ଏକ ଉତ୍ତମ ପୃଷ୍ଠଭୂମି ଓ ପରମ ଅର୍ଥ ପ୍ରଦାନ କରିଥାଏ ଏହା ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ବିଜ୍ଞାନର ଶକ୍ତିଶାଳୀ ଭୂମିକା କିପରି ଜୀବନକୁ ଏକ ନବ ଦିଗନ୍ତ ପ୍ରଦାନ କରିଥାଏ ଏହା ତାହାର ଏକ ସ୍ୱଷ୍ଟ ନମୁନା । ଆମ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଦାନ

କରାଯାଉଥିବା ବିଜ୍ଞାନ ଶିକ୍ଷା କିପରି ଜୀବନ ସହିତ ବିଜ୍ଞାନକୁ ଓତପ୍ରୋତଃ ଭାବେ ଜଡ଼ିତ କରାଇବାରେ ସମ୍ପୂର୍ଣ୍ଣ ଭାବେ ବିଫଳ ହୋଇଛି ସୈନିକମାନଙ୍କ ଚିଠିରୁ ଏହା ସ୍ପଷ୍ଟରୂପେ ପ୍ରମାଣିତ ହୋଇଥାଏ । କଥାଟିକୁ ଆଉଟିକେ ସରଳକରି କୁହାଯାଉ .....

ଆମେ ଯେତେବେଳେ ସେଲଫୋନ୍, ଆଇ-ପଡ୍ସ, ପର୍ସନାଲ କଂପ୍ୟୁଟର ଏବଂ ଇଣ୍ଟରନେଟର ବହୁଳ ବ୍ୟବହାର କଥା ବିଚାରକୁ ନେଉ ଆମେ ସେତେବେଳେ ଜାଣିପାରୁ ଯେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପ୍ରଦତ୍ତ ଏହି ଅତ୍ୟାବଶ୍ୟକ ବସ୍ତୁ ଗୁଡ଼ିକ କିପରି ଆମ ଦୈନନ୍ଦିନ ଜୀବନଯାତ୍ରା ସହ ଓତପ୍ରୋତଃ ଭାବେ ଜଡ଼ିତ ହୋଇ ଯାଇଛି । ସିଟି ସ୍କାନର୍ସ, MRI ଡିଭାଇସେସ୍, ପେସ୍ ମେକର୍ସ ଏବଂ ଆର୍ଟେରିଆଲ ଷ୍ଟେଣ୍ଟସ ଆଦିର ବ୍ୟବହାର ପ୍ରମାଣ କରି ଦେଉଛି ଯେ ବିଜ୍ଞାନ କିପରି ଆମର ଦୈନନ୍ଦିନ ଜୀବନଯାତ୍ରାକୁ ବହୁଳଭାବେ ପ୍ରଭାବିତ କରୁଛି । ଆମେ ଯେତେବେଳେ ବିଶ୍ୱର ସାଂପ୍ରତିକ ସ୍ଥିତି ସମ୍ବନ୍ଧରେ ଅଧ୍ୟୟନ କରିଥାଉ ସେତେବେଳେ ଜଳବାୟୁର ଦ୍ରୁତ ପରିବର୍ତ୍ତନ (Climate Change) କିପରି ଏକ ମସ୍ତବଡ଼ ଆହ୍ୱାନ ହୋଇ ଆମ ସମ୍ମୁଖରେ ଆସି ଉଭା ହେଲାଣି ସେ ନେଇ ଅତ୍ୟନ୍ତ ବିବ୍ରତ ଓ ଚିନ୍ତିତ ହୋଇ ପଡ଼ିଥାଉ । ଏଭଳି ଦୁରୂହ ପରିପ୍ରେକ୍ଷୀରେ ଆମେ ବିଜ୍ଞାନର ହିଁ ଦ୍ୱାରସ୍ଥ ହୋଇଥାଉ ସମସ୍ୟାର ଜଡ଼କୁ ଠିକ୍‌ରୂପେ ବୁଝି ତାର ପ୍ରକୃତ ସମାଧାନର ରାସ୍ତାଟିଏ ଖୋଜି ବାହାର କରିବା ପାଇଁ ।

ବୈଜ୍ଞାନିକ ସୁଯୋଗ ଓ ସମ୍ଭାବନାର ଅସୁମାରୀ ସମ୍ପତ୍ତିର ଅମାର ଖୋଲି ବସିଲେ ଆମେ ଷ୍ଟେମ ସେଲ୍ସ (Stem Cells), ଜେନୋମିକ ସିକ୍ୱେନ୍‌ସିଂ (Genomic Sequencing), ନିର୍ଦ୍ଦିଷ୍ଟ ବ୍ୟକ୍ତିପାଇଁ ନିର୍ଦ୍ଦିଷ୍ଟ ଔଷଧର ପ୍ରଚଳନ (Personalised Medicine), ପରମାୟୁ ବୃଦ୍ଧି ପାଇଁ ହେଉଥିବା କ୍ରମାଗତ ଗବେଷଣା (Longevity Research), ବସ୍ତୁର କ୍ଷୁଦ୍ରାତି କ୍ଷୁଦ୍ର ରୂପରେଖ ସମ୍ପର୍କୀୟ ବିଜ୍ଞାନ, (Nano Science), ମସ୍ତିଷ୍କ ଓ ସେମିନ ମଧ୍ୟରେ ସମ୍ପର୍କର ଇତିବୃତ୍ତ ସମ୍ବନ୍ଧରେ ଗଭୀରରୁ ଗଭୀରତର ଜ୍ଞାନ ଆହରଣ କରିଥାଉ । ଏଭଳି ନାନାବିଧ ବୈଜ୍ଞାନିକ ପ୍ରକ୍ରିୟାରେ ଆମେ ଅନୁଭବ କରିଥାଉ ଯେ ଜଣେ ସାଧାରଣ ମଣିଷର ଜୀବନଯାତ୍ରା ପାଇଁ ଏସବୁର ଆବଶ୍ୟକତା ଯେ କେତେ ଜରୁରୀ ଏବଂ ଏ ସମ୍ବନ୍ଧରେ ସର୍ବନିମ୍ନ ଜ୍ଞାନର ଆହରଣ ଯେ ନିତାନ୍ତ ଅପରିହାର୍ଯ୍ୟ - ଏ ନେଇ ଦ୍ୱିମତ ହେବାର କୌଣସି ଅବକାଶ ନାହିଁ ।

ଜଣେ ସାଧାରଣ ମଣିଷର ନିତ୍ୟ ନୈମିତ୍ତିକ ଜୀବନଯାତ୍ରାର ପ୍ରବାହମାନ ଧାରାକୁ ସଦା ପ୍ରଖର ଓ ସ୍ରୋତସ୍ୱିତୀ କରି ରଖିବା ପାଇଁ ବିଜ୍ଞାନ ଓ ବିଜ୍ଞାନ ସମ୍ମତ ସର୍ବନିମ୍ନ ଜ୍ଞାନ ଯେ ପ୍ରକୃତରେ ନିତାନ୍ତ ଆବଶ୍ୟକ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବିଜ୍ଞାନ ହେଉଛି ଛଳଛଳ ଜୀବନର ଏକ କଳକଳ ରାଗିଣୀ । ବିଜ୍ଞାନ ହେଉଛି ସପ୍ନର ଏକ ତାଜମହଲ ଯାହା ସାହାଜାହାନ ଓ ମମତାଜଙ୍କ ପ୍ରେମକାବ୍ୟ ଆଗ୍ରାର ତାଜମହଲ ଠାରୁ ବି ଅଧିକ ଆକର୍ଷଣୀୟ ଓ ହୃଦୟସ୍ପର୍ଶୀ । ଏହା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସହ ଏକ ସୁନ୍ଦର ପୋଲଟିଏ ନିର୍ମାଣ କରିଦେଇଥାଏ । ବିଜ୍ଞାନ ହେଉଛି ଏକ ଚିରନ୍ତନ ପ୍ରକ୍ରିୟା ଯାହା ଆମକୁ ବିଶୃଙ୍ଖଳ (Confusion) ସ୍ତରରୁ ମୁକ୍ତି ଦେଇ ଏକ ଅତ୍ୟନ୍ତ ସୁନ୍ଦର ଓ ସୁସ୍ଥ ବୁଝାମଣା (Understanding) ସ୍ତରରେ ପହଞ୍ଚାଇ ଦେଇଥାଏ, ଯାହାକି ଅତ୍ୟନ୍ତ ବିଶ୍ୱାସଯୋଗ୍ୟ ଭବିଷ୍ୟଧର୍ମୀ ଓ ପରମ ଗ୍ରହଣୀୟ ମଧ ହୋଇଥାଏ । ଏହା ମଣିଷକୁ ସର୍ବଶକ୍ତିମାନ, ବୁଦ୍ଧିମନ୍ତ ଓ ବିଭବବନ୍ତ କରାଇବା ସଂଗେ ସଂଗେ ବୁଦ୍ଧି, ବିଦ୍ୟା, ଜ୍ଞାନ ଓ ମନର ସୁକ୍ଷ୍ମ ସମନ୍ୱୟରେ ମାନସିକ ଉତ୍ତରଣପର୍ବ ସଂଗଠିତ କରାଇଥାଏ । ବିଜ୍ଞାନ ମଣିଷର ମନ ରାଇଜରେ ଚିନ୍ତା ଚେତନାର ଏକ ପ୍ରଳୟଙ୍କରୀ ଝଡ଼ ସୃଷ୍ଟି କରିବାରେ ସମର୍ଥ ହୋଇଥାଏ ଯାହାକି ସବୁ କିଛିର କାରଣ ଓ ବ୍ୟାଖ୍ୟା ଖୋଜି ବୁଲୁଥାଏ । ଉଦାହରଣ ସ୍ୱରୂପ ଆକାଶର ରଂଗ ନୀଳ ହେଲା କାହିଁକି ଠୁଁ ଆରମ୍ଭ କରି ପୃଥିବୀ ପୃଷ୍ଠରେ ଜୀବ ଜଗତର ସୃଷ୍ଟିର ରହସ୍ୟ ପର୍ଯ୍ୟନ୍ତ । ଏହା ଏଇଥି ପାଇଁ ନୁହେଁ ଯେ ବିଜ୍ଞାନ ସ୍ଥିରୀକୃତ ମତବାଦର ନିର୍ଘୋଷ କରିଥାଏ ବରଂ ଏଇଥିପାଇଁ ଯେ ଏହା ପରୀକ୍ଷା ନିରୀକ୍ଷା ଓ ପର୍ଯ୍ୟବେକ୍ଷଣ ଉପରେ ସମ୍ପୂର୍ଣ୍ଣ ରୂପେ ପର୍ଯ୍ୟବେସିତ ହୋଇଥାଏ ଯାହାକି ମାନବିକ ଅଭିଜ୍ଞତାର ଅମୂଲ୍ୟ ସମ୍ପଦ ରୂପେ ପରିଗଣିତ ହୋଇଥାଏ ।

ବହୁ ଗଣ୍ୟମାଣ୍ୟ ବ୍ୟକ୍ତି ବିଶେଷ ସେମାନଙ୍କ ସ୍କୁଲ ଜୀବନରେ ବିଜ୍ଞାନ ସହ ସେମାନଙ୍କର ଆକସ୍ମିକ ସାକ୍ଷାତକୁ ଅତ୍ୟନ୍ତ ଶୀତଳତାଯୁକ୍ତ, ଦ୍ୱନ୍ଦ୍ୱପୂର୍ଣ୍ଣ ଏବଂ ଭୀତତ୍ରସ୍ତ ଭାବେ ଗ୍ରହଣ କରିଥିବାର ଜ୍ୱଳନ୍ତ ଦୃଷ୍ଟାନ୍ତ ପ୍ରାୟ ପରିଲକ୍ଷିତ ହୋଇଥାଏ । ସେମାନେ ସେମାନଙ୍କର ଜୀବଦ୍ଦଶା ଭିତରେ ବିଜ୍ଞାନର ନାନାବିଧ ଆବିଷ୍କାର ଓ ଉଦ୍‌ଭାବନର ସୁଫଳକୁ ଅତ୍ୟନ୍ତ ଆନନ୍ଦ ସହକାରେ ବ୍ୟବହାର କରି ପରମ ତୃପ୍ତିଲାଭ କରିଥିଲେ

ମଧ୍ୟ ସେମାନେ ଅନୁଭବ କରନ୍ତି ଯେ ବିଜ୍ଞାନ ତାଙ୍କ ଜୀବନ ପାଇଁ ଆଦୌ ସଙ୍ଗତ ନୁହେଁ ଓ ଏହାର ମଧ୍ୟ କୌଣସି ପ୍ରାସଂଗିକତା ନାହିଁ । ଏହା କଣ ଏକ ଲଜ୍ଜାର କଥା ନୁହେଁ କି ?

ପ୍ରତ୍ୟେକ ଅଭିଭାବକ ଜାଣନ୍ତି ଯେ ପିଲାମାନେ ଏକ ନିର୍ମଳ, ସ୍ୱଚ୍ଛ, ପରିଷ୍କାର ଓ ଆବିଳତା ଶୂନ୍ୟ, ସରଳ ଓ ସୁକୋମଳ ମନଟିଏ ପାଇଥାନ୍ତି ଯାହାକି ପିଲାମାନଙ୍କ ପାଇଁ ଭଗବାନଙ୍କର ଏକ ଅମୂଲ୍ୟ ଦାନ ବୋଲି ପରିଗଣିତ ହୋଇଥାଏ । ପିଲାମାନେ ସେମାନଙ୍କର ଜୀବନର ଅୟଂଆରମ୍ଭରୁ ଏକ ବାଧାମୁକ୍ତ ଓ ସରସ ସୁନ୍ଦର ଜୀବନଚର୍ଯ୍ୟାର ପଥ ବରଣ କରିନେଇ ଅଜଣାର ସଂଧାନରେ ବ୍ରତୀ ହୋଇଥାଆନ୍ତି । ସେମାନଙ୍କର ଅନିସନ୍ଧିସ୍ନୁ ମନ ତାଙ୍କୁ ଏହି ପଥରେ ଯାତ୍ରା କରିବାପାଇଁ ସହାୟକ ହୋଇଥାଏ । ଆମେ ଜଣେ ଜଣେ ଗୋଟିଏ ଗୋଟିଏ କୁନି ବୈଜ୍ଞାନିକର କଅଁଳିଆ ମନ ନେଇ ଆମ ଜୀବନ ଯାତ୍ରା ଆରମ୍ଭ କରିଥାଉ । କିନ୍ତୁ ଧିରେ ଧିରେ ଆମ ମନ ଭିତରେ ଲୁଚି ରହିଥିବା ଅନ୍ତର୍ନିହିତ ବୈଜ୍ଞାନିକ ଉତ୍‌କଣ୍ଠା ପରିସ୍ଥିତି ଓ ପରିବେଶର ପ୍ରଚଣ୍ଡ ଝଡ଼ପରେ ଜଳି ପୋଡ଼ି ପାଉଁଶ ହୋଇଯାଏ ଏବଂ ଏହି କ୍ଷତି ଆମ ପାଇଁ ଜୀବନର ସର୍ବଶ୍ରେଷ୍ଠ କ୍ଷତି ବୋଲି ପରିଗଣିତ ହୋଇଥାଏ ।

ବିଜ୍ଞାନ ଶିକ୍ଷାର ଗୁଣବତ୍ତାରେ ଉନ୍ନତି ପାଇଁ ଗୁରୁତ୍ୱପୂର୍ଣ୍ଣ ସୁଯୋଗ ଓ ସମ୍ଭାବନାମୟ ଭବିଷ୍ୟତକୁ ଚିହ୍ନଟ କରିବା ପାଇଁ ବହୁତ ଗୁଡ଼ିଏ ଷ୍ଟଡି ରିପୋର୍ଟ ଦେଶରେ ପ୍ରସ୍ତୁତ ହୋଇଛି । କିନ୍ତୁ ଏହି ଷ୍ଟଡି ରିପୋର୍ଟରୁ ଅଧିକାଂଶ ଷ୍ଟଡି ରିପୋର୍ଟ ସେମାନଙ୍କର ଉପସଂହାର ଓ ଅନୁମୋଦନରେ ବିଜ୍ଞାନ କିପରି ଏକ ସୁସ୍ଥ ଓ ମଙ୍ଗଳମୟ ଭବିଷ୍ୟତର ସ୍ୱପ୍ନ ଦେଖିଥାଏ ଓ ସେହି ସ୍ୱପ୍ନକୁ ସାକାର କରିବା ପାଇଁ କିପରି ଏକ ଉଜ୍ଜ୍ୱଳମୟ ବୈଜ୍ଞାନିକ ନବ ଦିଗନ୍ତ ସୃଷ୍ଟି କରିଥାଏ ସେ ବିଷୟରେ ପୁଂଖାନୁପୁଂଖ ବିଶ୍ଳେଷଣ କରି ଯୁବ ସମାଜ ଆଗରେ ଏକ ଗୌରବୋଜ୍ଜ୍ୱଳ ଆଲୋକ ବର୍ତ୍ତିକା ପ୍ରଜ୍ଜ୍ୱଳିତ କରାଇବାରେ ସଫଳକାମୀ ହୋଇନଥାନ୍ତି ।

ପଦାର୍ଥ ବିଜ୍ଞାନର କଥା ବିଚାରକୁ ନିଆଯାଉ । ବିଗତ ୧୦୦ ବର୍ଷ ମଧ୍ୟରେ ଅତ୍ୟନ୍ତ ବୈପ୍ଳବିକ ଆବିଷ୍କାର ଓ ଉଦ୍ଭାବନ ଏ କ୍ଷେତ୍ରରେ ସଂଗଠିତ ହୋଇଛି । ସ୍ପେଶାଲ ରିଲେଟିଭିଟି (Special Relativity), ଜେନେରାଲ ରିଲେଟିଭିଟି (General

Relativity), କ୍ୱାଣ୍ଟମ ମେକାନିକ୍ସ (Quantum Mechanics) ଏବଂ ଏଭଳି ବହୁ ଅଭୂତପୂର୍ବ ତଥ୍ୟାବଳୀ ଆମ ଜ୍ଞାନ ରାଜ୍ୟର ଦିଗ୍‌ବଳୟକୁ ସଂପ୍ରସାରିତ କରାଇବାରେ ବହୁଳ ଯୋଗଦାନ ଦେଇଛି ଯାହାକି ସତ୍ୟ (Truth) ଓ ବାସ୍ତବତା (Reality)କୁ ନେଇ ଆମ ମନରେ ବସାବାନ୍ଧି ରହିଥିବା ଚିରାଚରିତ ଚିନ୍ତାଧାରାର ଆମୂଳଚୂଳ ପରିବର୍ତ୍ତନ କରାଇବାରେ ଯଥେଷ୍ଟ ସହାୟକ ହୋଇଛି । ବିଗତ ଦେଖିବାକୁ ଗଲେ ୧୦ବର୍ଷ ମଧ୍ୟରେ ସଂଗଠିତ ହୋଇଥିବା ବହୁବିଧ ଅନୁସଂଧାନ ପ୍ରକ୍ରିୟା ବିଶ୍ୱ ବ୍ରହ୍ମାଣ୍ଡର ଜନ୍ମ ଓ ଗଠନ ସମ୍ବନ୍ଧରେ ବହୁ ତଥ୍ୟ ଉନ୍‌ମୋଚନ କରିବାରେ ସହାୟକ ହୋଇଛି । କିନ୍ତୁ ବଡ଼ ଦୁର୍ଭାଗ୍ୟର କଥା ଯେ ଉଚ୍ଚ ଇଂରାଜୀ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ମାନଙ୍କରେ ଏହି ଯୁଗାନ୍ତକାରୀ ଆବିଷ୍କାର ଓ ଉଦ୍‌ଭାବନର କୌଣସି ରୂପରେଖ ପାଠ୍ୟକ୍ରମରେ ଆଦୌ ପ୍ରତିଫଳିତ ହୁଏ ନାହିଁ ।

ଏଭଳି ଶିକ୍ଷାଶାସ୍ତ୍ର ସମ୍ବନ୍ଧୀୟ ଉପାୟ ବା ପନ୍ଥାର ମୂଳ ଚେରଟି ହେଲା ବିଜ୍ଞାନର ଊର୍ଦ୍ଧ୍ୱମୁଖୀ ଗତିରେ ସମ୍ପୂର୍ଣ୍ଣ ରୂପେ ବିଶ୍ୱାସ । ବିଜ୍ଞାନ ବହୁ ଉତ୍‌ଥାନ ପତନ, ଆରୋହଣ ଓ ଅବତରଣର ପର୍ବ ସଂପାଦିତ କରି ଆଜି ଏକବିଂଶ ଶତାବ୍ଦୀର ନବ ନିର୍ମିତ ପାହାଚରେ ପାଦ ଥାପିଛି । ଆଜିର ଆଧୁନିକ ଯୁଗରେ ପହଞ୍ଚିବା ପାଇଁ ବିଜ୍ଞାନକୁ ବହୁ ପଥ ଅତିକ୍ରାନ୍ତ କରିବାକୁ ପଡ଼ିଛି । ବହୁ ଘାତ ପ୍ରତିଘାତ ଓ ସଂଘର୍ଷକୁ ପିଠେଇ ଦେଇ ବିଜ୍ଞାନ ଆଜି ନବଯୁଗର ନବ ନାଗରିକଙ୍କ ପାଖରେ ନବ କଳେବରରେ ଦଣ୍ଡାୟମାନ । ବିଜ୍ଞାନ ଖାଲି ବୈଷୟିକ ଶାସ୍ତ୍ରର ଗୁଡ଼ାଏ ପେଡ଼ି ପେଟରା ନୁହେଁ, ଏହା ସୁଦୂର ବିସ୍ତାରିତ ଏକ ଜ୍ଞାନ ପାରାବାର । ଯୁଗର ଆବର୍ତ୍ତନ ସହ ତାଳ ଦେଇ ଏହା ନୂତନ ରୂପ ବିନ୍ୟାସ ପରିପ୍ରକାଶ କରିଥାଏ । ତେଣୁ ଛାତ୍ରମାନଙ୍କୁ ଆମେ ବିଜ୍ଞାନର ନାନାବିଧ ଆବିଷ୍କାର ଓ ଉଦ୍‌ଭାବନ ସମ୍ବନ୍ଧରେ ଅବଗତ କରାଇବା ଉଚିତ ଯଦ୍ୱାରା ସେମାନଙ୍କର ବୈଜ୍ଞାନିକ ମାନସ ମନ୍ଥନ ପ୍ରକ୍ରିୟା ବଳବତ୍ତର ହୋଇପାରିବ ଓ ନିଜକୁ ସେମାନେ ବୈଜ୍ଞାନିକ ପୂର୍ବ ସୂରୀଙ୍କ ଛାଞ୍ଚରେ ପକାଇବାକୁ ଚେଷ୍ଟିତ ହେବେ । ବିଜ୍ଞାନ ଶିକ୍ଷାକୁ ଖାଲି ପାଶ୍-ଫେଲ୍ ଓ ପରୀକ୍ଷାର ଫଳାଫଳ ଉପରେ ପର୍ଯ୍ୟବେଶିତ ନକରି ସମ୍ପୂର୍ଣ୍ଣ ଜ୍ଞାନକୈନ୍ଦ୍ରିକ ବିକାଶ ଉପରେ ଦଣ୍ଡାୟମାନ ହେବାକୁ ପଡ଼ିବ । ତେବେ ଯାଇଁ ଶିକ୍ଷାର ମାହାତ୍ମ୍ୟ ଛାତ୍ରଛାତ୍ରୀମାନେ ହୃଦୟଙ୍ଗମ କରିବେ ଓ ନିଜ ନିଜର ଜୀବନକୁ ସୁଚାରୁରୂପେ ପରିଚାଳିତ କରିବାରେ ସମର୍ଥ ହେବେ ।

ବିଜ୍ଞାନର ଜନ୍ମ ଓ ଜୟଯାତ୍ରାର କାହାଣୀ ବିଶ୍ୱର ଯେକୌଣସି ଦୁଃସାହସିକ କାହାଣୀ ସହ ସମ୍ପୂର୍ଣ୍ଣ ଭାବେ ସମକକ୍ଷ । ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ ସହ ଜଡ଼ିତ ଲୋମହର୍ଷଣକାରୀ କାହାଣୀ ଗୁଡ଼ିକ ବୈଜ୍ଞାନିକ ଗତି ପ୍ରଗତିର ମାନଦଣ୍ଡ ରୂପେ ସାବ୍ୟସ୍ତ ହୋଇପାରିଛି । ଏହି ବୈଜ୍ଞାନିକ କାହାଣୀର ଅଧ୍ୟାୟ ଗୁଡ଼ିକ ଧିରେ ଧିରେ ଉନ୍‌ମୋଚିତ ହେବା ସଂଗେ ସଂଗେ ତାହା ଆମକୁ ଆମର ଐତିହ୍ୟ ଓ ବୈଜ୍ଞାନିକ ପରମ୍ପରା ସମ୍ପର୍କରେ ଅବଗତ କରାଇଥାଏ ତଥା ଆମ ଚତୁଃପାର୍ଶ୍ୱରେ ଘେରି ରହିଥିବା ମନଲୋଭା ପ୍ରକୃତି ସମ୍ବନ୍ଧରେ ଆମର ଜ୍ଞାନର ଦିଗ୍‌ବଳୟକୁ ମଧ ସଂପ୍ରସାରିତ କରାଇଥାଏ ।

ବିଜ୍ଞାନ ସମସ୍ତ ଲୋମହର୍ଷଣକାରୀ କାହାଣୀ ଠାରୁ ବି ଅଧିକ ଲୋମହର୍ଷଣକାରୀ, ଆକର୍ଷଣୀୟ, ଓ ଚିତ୍ତବିନୋଦନଧର୍ମୀ ଆଇମା'ର କାହାଣୀଟିଏ ପରିହୋଇଥାଏ । ଦିନ ପରେ ଦିନ ଆମ ଆଗରେ ଆମର ପରିଚୟ ଯେପରି ତାର ନୂତନ ପୃଷ୍ଠା ଉନ୍ମୋଚନ କରି ଚାଲିଥାଏ ଠିକ୍ ସେହିପରି ବିଜ୍ଞାନର ଆଇ ମାଆର କାହାଣୀ ପେଡ଼ିଟି ଆମ ଆଗରେ ଦିନ ପରେ ଦିନ ତାର ନବୀନତମ ରୂପରେଖ ମଧ ପ୍ରକଟ କରି ଚାଲିଥାଏ । ସମୟ ସହ ତାଳ ଦେଇ ବିଜ୍ଞାନର ଗତି ପ୍ରଗତି ନବ କଳେବର ରୂପରେ ଆମ ଆଗରେ ଉଭା ହୋଇଥାଏ, ପ୍ରକଟ ହୋଇଥାଏ ।

ଭଲ ଜୀବନଟିଏ ଜୀଇଁବା ପାଇଁ ଯେପରି ସଂଗୀତ, କଳା ଓ ସାହିତ୍ୟର ଆବଶ୍ୟକତା ପଡ଼ିଥାଏ ଠିକ୍ ସେହିପରି ବିଜ୍ଞାନର ବି । ବିଜ୍ଞାନ ଗୋଠ ଛଡ଼ା ଗାଈଟିଏ ପରି ନୁହେଁ ଯେ ସେ ଗାଈଟିକୁ ନେଇ ଆପଣ ଆଉ ଗୋଟେ ଖୁଣ୍ଟରେ ଆଡ଼େଇ ବାନ୍ଧି ଦେଇ ଆସି ଶାନ୍ତିର ନିଶ୍ୱାସ ନେବେ । ବିଜ୍ଞାନ ଆପଣଙ୍କ ଜୀବନର ଏକ ଅମୂଲ୍ୟ ସମ୍ପତ୍ତି ଠିକ୍ ଅନ୍ୟ ଯେ କୌଣସି ସମ୍ପତ୍ତି ପରି । ତା'ର ଦାମ ଅମୂଲମୂଲ । ତାର ଉପଯୁକ୍ତ ରକ୍ଷଣା ବେକ୍ଷଣ କରାଯିବା ନିତାନ୍ତ ଦରକାର । ଏଇଥିପାଇଁ ଏକ ସାଂସ୍କୃତିକ ଯାଗରଣର ଆବଶ୍ୟକତା ରହିଛି, ଯାହାକି ବିଜ୍ଞାନକୁ ତାର ନାର୍ଯ୍ୟ ଆସନ ପ୍ରଦାନ କରିବ । ଯେପରି ସଂଗୀତ, କଳା ଓ ସାହିତ୍ୟ ଆମ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ଭାବେ ପରିଗଣିତ ହେଉଛି ଠିକ୍ ସେହିପରି ବିଜ୍ଞାନ ମଧ ଆମ ଜୀବନ ସହ ଓତଃପ୍ରୋତଃ ଭାବେ ଜଡ଼ିତ ହୋଇଯିବା ଦରକାର । ଜୀବନକୁ ସରସ, ସୁନ୍ଦର ଓ ମଙ୍ଗଳମୟ

କରିବାରେ ବିଜ୍ଞାନର ଅବଦାନକୁ ମୁକ୍ତ କଣ୍ଠରେ ସ୍ୱୀକାର କରାଯିବା ଆବଶ୍ୟକ । ପ୍ରତ୍ୟେକ ଶିଶୁର ଏହା ଜନ୍ମଗତ ଅଧିକାର ହେବା ବାଂଛନୀୟ ।

ବିଜ୍ଞାନ ପ୍ରତ୍ୟେକ ପ୍ରାପ୍ତ ବୟସ୍କ ବ୍ୟକ୍ତି ବିଶେଷଙ୍କ କ୍ଷେତ୍ରରେ ଏକ ଅନନ୍ୟ ଆବଶ୍ୟକତା । ଏହା ଧ୍ରୁବ ସତ୍ୟ । ଏକ ଉନ୍ମୁକ୍ତ ମନ, ଉନ୍ମୁକ୍ତ ହୃଦୟ, ଉନ୍ମୁକ୍ତ ଆକାଶ ଓ ଉନ୍ମୁକ୍ତ ଦିଗ୍‌ବଳୟକୁ ପାଥେୟ କରି ବ୍ୟକ୍ତି ବିଶେଷଟିଏ ସମୟର ଅସୀମ ପାରାବାରକୁ ଲମ୍ଫପ୍ରଦାନ କରିଥାଏ ଯେପରିକି ଇରାକର ସୈନିକ ଜଣକ ସେଦିନ ପଦାର୍ଥବିଜ୍ଞାନ ପୁସ୍ତକଟିରେ ନିଜ ଜୀବନର ପ୍ରତିଛବିକୁ ଖୋଜି ପାଇବାରେ ସକ୍ଷମ ହୋଇଥିଲା ।

ସମାଜ : ୦୩.୦୧.୨୦୦୯

ଆମ ରୁଚି (ପ୍ରତିଭା ବିଶେଷାଙ୍କ) : ୨୦୦୯



# ମୌଳିକ ଓ ବ୍ୟାବହାରିକ ବିଜ୍ଞାନ - ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ

ବିଜ୍ଞାନ ନାଁରେ ମୌଳିକ ଗବେଷଣା ଓ ପ୍ରୟୋଗାତ୍ମକ ଗବେଷଣା ମଧ୍ୟରେ ପ୍ରାଚୀରଟିଏ ଗଢ଼ିତୋଳିବା ଏକ ନିହାତି ଅଯୌକ୍ତିକ, ଅବାନ୍ତର ଓ ଭ୍ରାନ୍ତ ଧାରଣା ଉପରେ ପର୍ଯ୍ୟବେସିତ କହିଲେ ଅତ୍ୟୁକ୍ତି ହେବନାହିଁ । ମୌଳିକ ଗବେଷଣା କେତେକାଂଶରେ ପ୍ରୟୋଗାତ୍ମକ ଗବେଷଣାଠାରୁ ଉଚ୍ଚତର ମାନଯୁକ୍ତ --- ଏଭଳି ଏକ ଉଦ୍ଧତ ଓ ଉଦ୍ଭଟ ଚିନ୍ତାଧାରା ବହୁ ପୁରାତନ କାଳ ସମ୍ଭୂତ । ଏପରିକି ଆର୍କିମିଡ଼ିସଙ୍କ ସମୟରୁ ମଧ୍ୟ ଏଭଳି ଏକ ଚିନ୍ତାଧାରା ଜନମାନସରେ ବସା ବାନ୍ଧି ରହିଛି । ହେଲେ ପ୍ରକୃତ କଥାଟି କିନ୍ତୁ ଟିକେ ନିଆରା । ଆର୍କିମିଡିସ ପ୍ରାଚୀନ କାଳର କେବଳ ଯେ ଜଣେ ପ୍ରଖ୍ୟାତ ଗାଣିତିଜ୍ଞ ଥିଲେ ତାହା ନୁହେଁ ବରଂ ସେ ଜଣେ ଅତ୍ୟନ୍ତ ଚତୁର ଉଦ୍ଭାବକ ମଧ୍ୟ ଥିଲେ ଯେ କି ଅସଂଖ୍ୟ ବ୍ୟାବହାରିକ ସମସ୍ୟା ମଧ୍ୟରୁ ପ୍ରେରଣା ଗ୍ରହଣ କରି ନିଜର ଜ୍ଞାନ ବୈଭବକୁ ସମୃଦ୍ଧ କରିଥିଲେ । ଆର୍କିମିଡ଼ିସ୍ ବିଶ୍ୱର ସର୍ବପ୍ରଥମ ବ୍ୟକ୍ତି ଥିଲେ ଯେ କି ତରଳ ପଦାର୍ଥ ବିଜ୍ଞାନ ବା ଫ୍ଲୁଇଡ୍ ଫିଜିକ୍ସ ସମ୍ବନ୍ଧରେ ଗଭୀରରୁ ଗଭୀରତମ ଚିନ୍ତା କରିଥିଲେ । ବିଶ୍ୱର ବହୁ ଲୋକ ଯଦିଓ ତାଙ୍କଦ୍ୱାରା ଆବିଷ୍କୃତ ହୋଇଥିବା "ଭାସମାନତାର ନୀତି" ସଂକ୍ରାନ୍ତୀୟ ଅତ୍ୟନ୍ତ ଲୋକପ୍ରିୟ କାହାଣୀ ସମ୍ପର୍କରେ ଅବଗତ ଅଛନ୍ତି ହେଲେ ଖୁବ୍ କମ୍ ଲୋକ ଜାଣନ୍ତି ଯେ ପ୍ରକୃତରେ ସଠିକ ଭାବେ ସେ କଣ ଖୋଜୁଥିଲେ ।

ଦିନେ ଆର୍କିମିଡ଼ିସ ଗାଧୋଇବାପାଇଁ ପାଣି କୁଣ୍ଡରେ ପଶିଗଲାପରେ ହଠାତ୍ ଲକ୍ଷ୍ୟକଲେ ଯେ ପାଣିକୁଣ୍ଡରେ ଜଳର ଆନୁଭୂମିକ ରେଖା ବା ସ୍ତର ଉପରକୁ ଉଠିଗଲା । ତାପରେ ସେ ଲଙ୍ଗଳା ମୁକୁଳାହୋଇ ପାଣି ଜୁଡୁବୁଡୁ ଅବସ୍ଥାରେ ପାଣିକୁଣ୍ଡରୁ ବାହାରି ରାସ୍ତାରେ ଅଣନିଃଶ୍ୱାସି ହୋଇ ଦୌଡ଼ିବାକୁ ଲାଗିଲେ ଏବଂ "ୟୁରେକା, ୟୁରେକା" ବା "ମୁଁ ପାଇଗଲି, ମୁଁ ପାଇଗଲି" ବୋଲି ଗଳାଫଟାଇ ଚିତ୍କାର କରିବାକୁ ଲାଗିଲେ । ତାହାଥିଲା ତାଙ୍କର ବୈଜ୍ଞାନିକ ପାଗଳାମୀ, ବୈଜ୍ଞାନିକ ନିଶା, ବୈଜ୍ଞାନିକ ଉନ୍ମାଦନା ଓ ବିଜ୍ଞାନ ପ୍ରତି ତାଙ୍କର ଅହେତୁକ ଆକର୍ଷଣ, ଶ୍ରଦ୍ଧା, ଭାବପ୍ରବଣତା ଓ ଆପଣା ପଣିଆର ସ୍ୱତଃସ୍ଫୁର୍ତ ପରିପ୍ରକାଶ ।

ଭାବନ୍ତୁ ତ ! ଜଣେ ବ୍ୟକ୍ତି ବିଜ୍ଞାନକୁ ନେଇ କେତେବେଳେ ପାଗଳଟିଏ ହୋଇଯାଏ, ଯେତେବେଳେ ତାର ସମ୍ପୂର୍ଣ୍ଣ ପରିଚୟ, ତାର ସମ୍ପୂର୍ଣ୍ଣ ସ୍ଥିତି ଓ ଅବସ୍ଥିତି, ତାର ସମ୍ପୂର୍ଣ୍ଣ ଜ୍ଞାନ ବୈଭବ ଓ ବିଦ୍‌ବତ୍ତା, ତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସମସ୍ତ ସ୍ୱପ୍ନ ଓ ବାସ୍ତବତା ବିଜ୍ଞାନ ମାଧ୍ୟମରେ ହିଁ ପରିପ୍ରକାଶିତ ହୋଇଥାଏ । ବିଜ୍ଞାନ ତାର ପରିଚୟ ପାଲଟିଯାଏ, ଆଉ ବିଜ୍ଞାନର ପରିଚୟ ସେ । କେଡ଼େ ଚମତ୍କାର କଥାଟିଏ କୁହନ୍ତୁ ତ ! ଏଭଳି ଏକ ସ୍ଥିତିରେ ବିଜ୍ଞାନ, ବୈଜ୍ଞାନିକ ଓ ତାର ଆବିଷ୍କାର ଓ ଉଦ୍ଭାବନ ସବୁ ମିଳିମିଶି ଏକାକାର ହୋଇଯାଇଥାଏ ବିଜ୍ଞାନକୁ ଏକ ମାନବୀୟ ରୂପ ପ୍ରଦାନ କରିବାପାଇଁ ଏବଂ ତାହାହିଁ ହେଲା ବିଜ୍ଞାନର ପ୍ରତିଛବି ବା ରୂପରେଖ ।

ପ୍ରକୃତ ପକ୍ଷେ ଆର୍କିମିଡ଼ିସଙ୍କ ଏହି ଯୁଗାନ୍ତକାରୀ ଆବିଷ୍କାର ଏକ ପ୍ରାକ୍ଟିକାଲ ପ୍ରୋବ୍ଲେମ ସହ ଓତଃପ୍ରୋତଃଭାବେ ଜଡ଼ିତ ଥିଲା ଯାହାର ସମାଧାନ କରିବାପାଇଁ ତାଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଗ୍ରୀକ୍ ସମ୍ରାଟ ହାଇରୋ ଥରେ ଜଣେ ଅଳଙ୍କାର ବ୍ୟବସାୟୀଙ୍କୁ ସ୍ୱର୍ଣ୍ଣ ଖଚିତ ଏକ ରାଜମୁକୁଟ ପ୍ରସ୍ତୁତ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଯଥା ସମୟରେ ଅଳଙ୍କାର ବ୍ୟବସାୟୀ ଜଣକ ରାଜମୁକୁଟଟି ପ୍ରସ୍ତୁତ କରି ରାଜାକୁ ଅର୍ପଣ କରିଥିଲା । ଅଳଙ୍କାର ବ୍ୟବସାୟୀ ଜଣକ ତାର ମୂଲ୍ୟନେଇ ଚାଲିଗଲାପରେ ରାଜା ମନରେ ଭାବିଲେ ଯେ ପ୍ରକୃତରେ ସେ ମୁକୁଟଟି ଶତପ୍ରତିଶତ ସ୍ୱର୍ଣ୍ଣ ନିର୍ମିତ ନାଁ ସେଥିରେ କିଛି ଅନାବଶ୍ୟକ ଖାଦ ମିଶିଛି ? ଅସାଧୁ ବ୍ୟବସାୟୀ ଜଣକ ତାଙ୍କୁ ଠକିଦେଇନିତ ? ତାହା ଜାଣିବାପାଇଁ ଗ୍ରୀକ୍ ସମ୍ରାଟ ହାଇରୋ ଆର୍କିମିଡିସଙ୍କୁ ଡକାଇ ଏ ବିଷୟରେ ବିଶଦ ଆଲୋଚନା କଲେ ଓ ଏହାର ନିର୍ଭୁଲ ଫଳାଫଳ ପ୍ରଦାନ କରିବାକୁ ତାଙ୍କ ଉପରେ ଦାୟିତ୍ୱ ନ୍ୟସ୍ତକଲେ । ଆର୍କିମିଡିସ ରାଜମୁକୁଟର ସାନ୍ଦ୍ରତା ବନାମ ତାର ଭାରସାମ୍ୟତା ବା ପ୍ଳବନର ପରୀକ୍ଷାନିରୀକ୍ଷା କରି ଏହି ସମସ୍ୟାର ସଠିକ ସମାଧାନ କରିଥିଲେ । ଫ୍ଲୁଇଡ୍ ଫିଜିକ୍ସ ବା ତରଳ ପଦାର୍ଥବିଜ୍ଞାନକୁ ତାଙ୍କର ପ୍ରୟୋଗାତ୍ମକ ଅବଦାନର ଫଳସ୍ୱରୂପ ଜଳସେଚନରେ ବହୁଳଭାବେ ବ୍ୟବହୃତ ହେଉଥିବା ସ୍କ୍ରିୟୁପମ୍ପର ଆବିଷ୍କାର ଅନସ୍ୱୀକାର୍ଯ୍ୟ ।

ଏହିପରି ବହୁ ବିଶ୍ୱପ୍ରସିଦ୍ଧ ଗାଣିତିଜ୍ଞ ଓ ବୈଜ୍ଞାନିକମାନଙ୍କ ଯୁଗାନ୍ତକାରୀ ଆବିଷ୍କାର ଓ ଉଦ୍ଭାବନର ଫଳାଫଳ ଯାହାକି ମୌଳିକ ଓ ପ୍ରୟୋଗାତ୍ମକ ଗବେଷଣା ମଧ୍ୟରେ ଏକ ସୁନ୍ଦର ପୋଲଟିଏ ନିର୍ମାଣ କରିବାରେ ଅଭୂତପୂର୍ବ ସହାୟକ ହୋଇପାରିଛି

ସେପରି ଅସଂଖ୍ୟ ଉଦାହରଣ ବୈଜ୍ଞାନିକ ଇତିହାସର ଗୌରବୋଜ୍ଜ୍ୱଳ ପୃଷ୍ଠା ମଣ୍ଡନକରି ବିଜ୍ଞାନର ଚଲାପଥକୁ କାଳେକାଳେ ସମୃଦ୍ଧ ଓ ଋଦ୍ଧିମନ୍ତ କରିପାରିଛି । କାର୍ଲ ଫ୍ରେଡରିକ ଗଜ୍ (Carl Friedrich Gauss) ନମ୍ବର ଥିଓରିରୁ ଆରମ୍ଭ କରି ଜମିଜମା ସର୍ଭେ (Land Surveying) ଓ ପୃଥିବୀର ଆକାର ଓ କ୍ଷେତ୍ରଫଳ ଅଧ୍ୟୟନ (Geodesy) କ୍ଷେତ୍ରକୁ ଗଭୀରଭାବେ ପ୍ରବେଶ କରିଥିଲେ । ଲର୍ଡ଼ କେଲଭିନ୍, ଏଣ୍ଟ୍ରୋପିର ପ୍ରକୃତି (Nature of Entropy) ଅର୍ଥାତ୍ କୌଣସି ପ୍ରକ୍ରିୟାର ଉତ୍ତାପ ଯାହାର ତାହାର ଯାନ୍ତ୍ରିକ କାମପାଇଁ ମିଳିପାରେ ନାହିଁ ତାହାର ମାପ କରିବାପରି ଏକ ଭୌତିକ ସତ୍ତାହୀନ ତତ୍ତ୍ୱ ଉପରେ ଗବେଷଣାକରି ତାପ ସଞ୍ଚାଳନ ବିଜ୍ଞାନ (Thermo Dynamiods) ରେ ଦ୍ୱିତୀୟ ନିୟମର ଆବିଷ୍କାର କରିବାରେ ସହାୟକ ହୋଇଥିଲେ । ସେ ମଧ୍ୟ ପ୍ରଥମକରି ଆଟଲାଣ୍ଟିକ ମହାସାଗରର ଆରପାର୍ଶ୍ୱରେ ଟେଲିଗ୍ରାଫ୍ କେବୁଲ ବିଛାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ବିଂଶ ଶତାବ୍ଦୀରେ ନୋବେଲ ପ୍ରାଇଜ ବିଜେତା ପିରେ ଗିଲ୍ଲେସ୍ ଡେ ଜେନ୍ନେସ୍ (Pirre Gilles de Gennes) ଶିଳ୍ପ ରସାୟନ ବିଜ୍ଞାନର ଜଟିଳତମ ସମସ୍ୟାରୁ ଅଭୂତପୂର୍ବ ପ୍ରେରଣା ଲାଭକରି ମୌଳିକ ପଦାର୍ଥବିଜ୍ଞାନ କ୍ଷେତ୍ରରେ ଅତି ଚମତ୍କାର ଥିଓରିମାନ ସୃଷ୍ଟିକରିଥିଲେ । ତାଙ୍କର ସମସାମୟିକ ଅନ୍ୟଜଣେ ନୋବେଲ ପ୍ରାଇଜ ବିଜେତା ଚାର୍ଲସ୍ ଟୋନେସ୍ (Charles Townes) ଉଲ୍ଲେଖ କରିଥିଲେ ଯେ ତାଙ୍କର ନିଜର ଗବେଷଣା ଯେ କେବଳ ବ୍ୟାବହାରିକ ପଦାର୍ଥବିଜ୍ଞାନଦ୍ୱାରା ପ୍ରେରଣା ଲାଭକରି ସମୃଦ୍ଧ ହୋଇଥିଲା ତାହା ନୁହେଁ ବରଂ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ସଂଘଟିତ ହୋଇଥିବା ଅସଂଖ୍ୟ ଆବିଷ୍କାର, ରେଡ଼ିଓ ଆଷ୍ଟ୍ରୋନୋମିର ସମ୍ପୂର୍ଣ୍ଣ ପ୍ରକ୍ଷେତ୍ର ବ୍ୟାବହାରିକ ପ୍ରଯୁକ୍ତିବିଦ୍ୟା ଆବିଷ୍କାର କରୁଥିବା ମହାନ୍ ବ୍ୟକ୍ତିମାନଙ୍କର ଆକସ୍ମିକଭାବରେ ପ୍ରୀତିକର ଆବିଷ୍କାର କରିବାର ଭାବପ୍ରବଣତାରୁ ହିଁ ଜନ୍ମନେଇଛି ।

ବିଜ୍ଞାନର ଇତିହାସରେ ସଂଗଠିତହୋଇଥିବା ଏପରି ସର୍ବୋତକୃଷ୍ଟ ତଥା ସବୁ ସୀମା ସରହଦ ପାର କରିଥିବା ଏବଂ ମାନବ ଜ୍ଞାନର ବାହାରେ ଥିବା ଅବିସ୍ମରଣୀୟ ଘଟଣା ପ୍ରବାହର ଇତିବୃତ୍ତ ପେଣ୍ଡୁଲମଟିଏ ପରି ମୌଳିକ ଓ ବ୍ୟାବହାରିକ ବିଜ୍ଞାନ ଭିତରେ ସଦାସର୍ବଦା ଦୋଳାୟିତ ହେଉଥାଏ । ଆଜିର ବିଶେଷ ଜ୍ଞାନ ସମ୍ପନ୍ନ ଦୁନିଆରେ ମୌଳିକ ଓ ବ୍ୟାବହାରିକ ବିଜ୍ଞାନ ମଧ୍ୟରେ ଅସଂଖ୍ୟ କୃତ୍ରିମ ବିଭାଜନରେଖା

ଟଣାଯାଇପାରୁଛି । ଗତାନୁଗତିକ ଧାରଣା ହେଲା ଏହି ଯେ ବ୍ୟାବହାରିକ ବୈଜ୍ଞାନିକ (Applied Scientists) ମାନେ ଗବେଷଣାପାଇଁ ଉଦ୍ଦିଷ୍ଟ ଆର୍ଥିକ ଅନୁଦାନର ସିଂହ ଭାଗଟିକୁ ମାରିନେଯାଆନ୍ତି ଆଉ ଅପର ପକ୍ଷରେ ମୌଳିକ ବୈଜ୍ଞାନିକ (Basic Scientists) ମାନେ ବିଶ୍ୱର ସର୍ବଜନ ପ୍ରଶଂସିତ ଗବେଷଣା ଜର୍ଣ୍ଣାଲମାନଙ୍କରେ ନିଜର ବହୁମୁଖୀ ଗବେଷଣା ନିବନ୍ଧଗୁଡ଼ିକୁ ପ୍ରକାଶ କରାଇ ବାହାବାହା ନେବା ସଙ୍ଗେ ସଙ୍ଗେ ସବୁତକ ପ୍ରାଇଜକୁ ମଧ୍ୟ ନିଜ ନିଜର ଗଣ୍ଠିଲିରେ ବାନ୍ଧି ଘରକୁ ବୋହି ନେଇଯାଆନ୍ତି । ପ୍ରକୃତ ସତ୍ୟଟି କିନ୍ତୁ ସତରେ ଭାରି ଜଟିଳ ଏବଂ ତାହା ମୌଳିକ ଗବେଷଣା ଓ ବ୍ୟାବହାରିକ ଗବେଷଣା ମଧ୍ୟରେ କେଉଁଠି ନାଁ କେଉଁଠି ନିଜର ଆସ୍ଥାନ ଜମେଇ ବସି ରହିଥାଏ ।

ପ୍ରକୃତ ସତକଥାଟି ହେଲା ମୌଳିକ ସମସ୍ୟାପରି ପ୍ରାକ୍ଟିକାଲ ସମସ୍ୟା ମଧ୍ୟ ସମାନଭାବରେ ଦୃଷ୍ଟି ଆକର୍ଷଣକାରୀ ହୋଇପାରେ ଏବଂ ଏହା ପ୍ରାୟ ନୂତନ ମୌଳିକ ବିଜ୍ଞାନର ଉଦ୍ଭାବନର ପଥପ୍ରଦର୍ଶକ ହୋଇଥାଏ । ପ୍ରକୃତରେ ନିର୍ଦ୍ଦିଷ୍ଟରୂପେ ଏହା କୁହାଯାଇପାରେ ଯେ ନୂତନ ପ୍ରଯୁକ୍ତିବିଦ୍ୟାର ଉଦ୍ଭାବନ ଏବଂ ବୈଜ୍ଞାନିକ ଆବିଷ୍କାର ପାଇଁ ଏହାର ବ୍ୟବହାର ମଧ୍ୟରେ ଏକ ନିବିଡ଼ ସମ୍ପର୍କ ରହିଛି ।

ତେଣୁ ସମ୍ଭବତଃ ମୌଳିକ ଓ ବ୍ୟାବହାରିକ ଗବେଷଣା ମଧ୍ୟରେ ଏପରି ଏକ ପ୍ରୀତିଭରା ସମ୍ପର୍କ ଓ ଭାବର ଆଦାନପ୍ରଦାନଯୋଗୁଁ ହିଁ ଉଭୟଙ୍କ ମଧ୍ୟରେ ଏକ ଉତ୍ତମ ସହାବସ୍ଥାନ ଓ ସହବନ୍ଧନ ସ୍ଥାପନା କରାଯାଇପାରୁଛି । ମୌଳିକ ସମସ୍ୟାଗୁଡ଼ିକରୁ ଉପଯୁକ୍ତ ପ୍ରେରଣାଲାଭକରି ନୂତନ ପ୍ରଯୁକ୍ତିବିଦ୍ୟାର ବିକାଶ ସମ୍ଭବପର ହୋଇଥାଏ ଏବଂ ପ୍ରକାରାନ୍ତରେ ଯାହାର ବ୍ୟାବହାରିକ ଦିଗଗୁଡ଼ିକ ପୁନଶ୍ଚ ନୂତନ ମୌଳିକ ବିଜ୍ଞାନର ସିଂହଦ୍ୱାର ଉନ୍ମୋଚନ କରାଇବାରେ ମଧ୍ୟ ବିଶେଷ ସହାୟକ ହୋଇଥାଏ । କୌଣସି ଏକ ବିଜ୍ଞାନାଗାରରେ ସୃଷ୍ଟି ହୋଇଥିବା ମୌଳିକ ବୈଜ୍ଞାନିକ ଜ୍ଞାନ ସମ୍ପତ୍ତି ସେହି ବିଜ୍ଞାନାଗାରର ସରହଦ ଡ଼େଇଁ ବିଶ୍ୱର କୋଣ ଅନୁକୋଣରେ ପହଞ୍ଚିଯାଇଥାଏ ଏବଂ ସମୟାନୁକ୍ରମେ ବିଜ୍ଞାନର ଆବର୍ତ୍ତନରେ ତାହା ପୁଣି ସେହି ବିଜ୍ଞାନାଗାରକୁ ଫେରିଆସିବା କୌଣସି ବିଚିତ୍ର କଥା ନୁହେଁ ।

ଆମେ ବିଦ୍ୱତ ସମାଜର ସମ୍ମାନାସ୍ପଦ ସଭ୍ୟମାନେ ହିଁ ମୌଳିକ ଓ ବ୍ୟାବହାରିକ ବିଜ୍ଞାନ ମଧ୍ୟରେ ଏକ କୃତ୍ରିମ ବିଭେଦ ସୃଷ୍ଟି କରିଛେ ଯାହାକି ବିଜ୍ଞାନର ଜୟଯାତ୍ରାର

ଅନିର୍ବାଣ ଚଲାପଥରେ ଅଯଥା ଘର୍ଷଣ ସୃଷ୍ଟିକରି ଦାବାନଳରେ ପରିଣତ ହେଉଛି । ଫଳ ସ୍ୱରୂପ ପ୍ରଗତିର ରାଜପଥରେ ମହାପ୍ରତିବନ୍ଧକ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ମୌଳିକ ଓ ବ୍ୟାବହାରିକ ବିଜ୍ଞାନର ସ୍ଥିତି ଓ ଅବସ୍ଥିତି ଦୋଦୁଲ୍ୟମାନ ହେଉଛି । ତେଣୁ ସମୟର ଆହ୍ୱାନକୁ ଉପେକ୍ଷା ନକରି ମୌଳିକ ଓ ବ୍ୟାବହାରିକ ବିଜ୍ଞାନ ମଧ୍ୟରେ ପ୍ରକୃତ ସମନ୍ୱୟତା ରକ୍ଷା କରାଯାଇପାରିଲେ ବିଜ୍ଞାନର ଏହି ଦୁଇଟି ପ୍ରମୁଖ ଧାରା ଗୋଟିଏ ସ୍ରୋତସ୍ୱିନୀରେ ପ୍ରବାହିତ ହୋଇପାରିବ ଏବଂ ମୌଳିକ ଚିନ୍ତାଚେତନା ଓ ପ୍ରୟୋଗାତ୍ମକ କାର୍ଯ୍ୟକଳାପକୁ ବିଶ୍ୱ ସମୃଦ୍ଧି ପଥରେ ସୁପରିଚାଳିତ କରାଯାଇପାରିବ ।

ଦୂରଦର୍ଶୀ : ଜୁନ୍ ୨୦୦୯



# ଉଚ୍ଚଶିକ୍ଷାରେ ସଂକଟ

ଭାରତବର୍ଷରେ ଉଚ୍ଚଶିକ୍ଷା ଅସଫଳତାର ଖଟା ମିଠା ସ୍ୱାଦ ଦିନ ପରେ ଦିନ ଚାଖି ଚାଲିଛି । ମାତ୍ର ୭ ପ୍ରତିଶତ ଭାରତୀୟ କଲେଜ ବାରଣ୍ଡା ମାଡ଼ି ଥାଆନ୍ତି । ତନ୍ମଧ୍ୟରୁ ଅଧିକାଂଶ ଛାତ୍ର ଭଗ୍ନ ଓ ଜରାଜୀର୍ଣ୍ଣ ଶ୍ରେଣୀ ଗୃହରେ ବିତସ୍ପୃହ ଭାବେ ଶିକ୍ଷା ଲାଭ କରିଥାଆନ୍ତି । ସେମାନଙ୍କ ପାଖରେ ଲାଇବ୍ରେରୀ ନଥାଏ, ବିଜ୍ଞାନାଗାର ନଥାଏ କିମ୍ବା କମ୍ପ୍ୟୁଟର ମଧ୍ୟ ନଥାଏ । ୮୦ ଭାଗ ଛାତ୍ର କୌଣସି ନିଯୁକ୍ତି ପାଇଁ ଅନୁପଯୁକ୍ତ ହୋଇଥାନ୍ତି । ଯେଉଁ ଛାତ୍ର ଛାତ୍ରୀମାନଙ୍କ ବାପା ମା'ମାନେ ଧନୀ ସେମାନେ ତାଙ୍କ ପୁଅ ଝିଅ ମାନଙ୍କୁ ବିଦେଶରେ ଶିକ୍ଷା ପ୍ରଦାନ କରାଇଥାଆନ୍ତି । ସେମାନେ ଉଡ଼ାଜାହାଜ ଚଢ଼ି ସାତସମୁଦ୍ର ତେର ନଈ ପାର ହୋଇ ବିଦେଶ ମାଟିରେ ନିଜର ଭାଗ୍ୟ ନିର୍ମାଣ କରିଥାଆନ୍ତି । ମାତ୍ର ୧ ପ୍ରତିଶତ ଛାତ୍ର ଆଇ.ଆଇ.ଟି, ଆଇ.ଆଇ.ଏମ୍ ଓ ଅନ୍ୟାନ୍ୟ ପ୍ରମୁଖ ଶିକ୍ଷାନୁଷ୍ଠାନ ମାନଙ୍କରେ ପଦାର୍ପଣ କରି ନିଜର ଭାଗ୍ୟ ସହ ଲଢ଼ିଥାଆନ୍ତି ଓ ତାଙ୍କୁ ନେଇ ଛାତି ଫୁଲେଇ ଆମେ ବାହା ବାହା କରିଥାଉ । ସେମାନଙ୍କର ଅଭିଭାବକମାନେ ଗାଁ ଦାଣ୍ଡରେ ଢୁଙ୍ଗୁରା ପିଟି ନିଜର ପାରିବାର ପଣିଆର ବିଜୟ ପତାକା ସଗର୍ବେ ଉଡ଼ାଇଥାଆନ୍ତି ।

ଉଚ୍ଚଶିକ୍ଷାର ମାନ ନିର୍ଦ୍ଧାରଣ ପାଇଁ ବହୁ ଜାତୀୟ କମିଶନ ଆସିଲେ ଆଉ ଗଲେ, ହେଲେ ସହଜରେ ପରିତ୍ୟାଗ କରି ହେଉନଥିବା ସଂରକ୍ଷଣ ଭାବଧାରାର ମାୟା ଜାଲ ଭିତରେ ଆମେ ଛନ୍ଦି ହୋଇ ପଡ଼ି ଯାଉଥିବାରୁ କୌଣସି ସଂସ୍କାର ବ୍ୟବସ୍ଥା ଠିକ୍ ଭାବେ କାର୍ଯ୍ୟକାରୀ ହୋଇପାରୁନାହିଁ । ଶିକ୍ଷାର ଗଠନ ଶୈଳୀରେ ମୌଳିକ ତଥା ସୁଦୂର ପ୍ରସାରୀ ସମ୍ପୂର୍ଣ୍ଣ ଆନ୍ଦୋଳନାତ୍ମକ ପରିବର୍ତ୍ତନ ଆଜି ଅତ୍ୟନ୍ତ ଆବଶ୍ୟକ ହୋଇପଡ଼ିଛି ଯାହାକି ଏକାକାଳରେ ଧାର୍ଯ୍ୟ ନିୟମ, ଆର୍ଥିକ ଅନୁଦାନ, କ୍ଷମତା, ଫ୍ୟାକଲ୍‌ଟି ଓ ନାଆଁ ଲେଖା ବ୍ୟବସ୍ଥା ଉପରେ ଗଭୀର ମନଯୋଗ କରିପାରିବ ଓ ଏସବୁକୁ ସଠିକ୍ ଭାବେ ନିୟନ୍ତ୍ରିତ କରିପାରିବ । ଏପରି ସଂସ୍କାର ବ୍ୟବସ୍ଥା ଏକ ମୁକ୍ତ ଉଚ୍ଚ ବ୍ୟବସ୍ଥାର ସୃଷ୍ଟି କରିପାରିବ ଯାହାକି ସ୍ୱାଧୀନ ନିୟାମକ ବ୍ୟବସ୍ଥା ଦ୍ୱାରା ପୂର୍ଣ୍ଣ ତଦାରଖ କରାଯାଇପାରିବ ଏବଂ ସରକାରୀ ସ୍କଲାରସିପ୍ ମାଧ୍ୟମରେ ଆର୍ଥିକ

ଅନୁଦାନ ପ୍ରଦାନ କରାଯାଇପାରିବ । ଏପରି ଏକ ଅଭିନବ ବ୍ୟବସ୍ଥା ଆମ ରୁଗ୍ଣ ଶିକ୍ଷା ବ୍ୟବସ୍ଥାରେ ଏକ ଆଶାର କିରଣ ସଞ୍ଚାର କରିପାରିବ ଯାହାକି ଉଚ୍ଚଶିକ୍ଷା କ୍ଷେତ୍ରରେ ଥିବା ପ୍ରଚଣ୍ଡ ଆବଶ୍ୟକତାକୁ ପୂରଣ କରିବାରେ ପରମ ସହାୟକ ହେବ ।

ଭାରତବର୍ଷରେ ଆଜି ୧୬୦ ନିୟୁତ ଛାତ୍ର କଲେଜଶିକ୍ଷା ଲାଭ କରିବାକୁ ଆବଶ୍ୟକ ବୟସରେ ପଦାର୍ପଣ କରିଛନ୍ତି । ପ୍ରାୟ ୧୧ ନିୟୁତ ଛାତ୍ର ବା ୭ ପ୍ରତିଶତ ଏବେ ବିଭିନ୍ନ ଡିଗ୍ରୀ କଲେଜରେ ଅଧ୍ୟୟନ କରୁଛନ୍ତି । ଏପରି ଡିଗ୍ରୀ କଲେଜର ସଂଖ୍ୟା ପ୍ରାୟ ୧୬ ହଜାର ଓ ତନ୍ମଧ୍ୟରୁ ୧୫ ହଜାର କଲେଜ ଘରୋଇ କଲେଜ । ଇଞ୍ଜିନିୟରିଂ ଓ ପରିଚାଳନା ଶିକ୍ଷା କ୍ଷେତ୍ରରେ ବୃତ୍ତିଗତ ଡିଗ୍ରୀ ଲାଭ କରୁଥିବା ପ୍ରାୟ ୯୦ ଭାଗ ଛାତ୍ର ୧୦ ହଜାରରୁ ଊର୍ଦ୍ଧ୍ୱ ଘରୋଇ ପ୍ରତିଷ୍ଠାନ ମାନଙ୍କରେ ଶିକ୍ଷାଲାଭ କରିଥାନ୍ତି । ଦେଶରେ ଥିବା ବିଭିନ୍ନ ଘରୋଇ ମେଡ଼ିକାଲ କଲେଜ ଗୁଡ଼ିକରୁ ପ୍ରାୟ ୪୦ ପ୍ରତିଶତ ଡାକ୍ତର ମେଡ଼ିକାଲ୍ ଶିକ୍ଷା ଲାଭ କରିଥାନ୍ତି । ପ୍ରାୟ ୧ ଲକ୍ଷ ୭୦ ହଜାର ଭାରତୀୟ ଛାତ୍ର ବିଭିନ୍ନ ଦେଶରେ ଅଧ୍ୟୟନ କରିଥାନ୍ତି ଓ ସେମାନେ ବର୍ଷକୁ ପ୍ରାୟ ୩.୫ ବିଲିୟନ ଡଲାର ଅର୍ଥରାଶି ବିଦେଶରେ ଖର୍ଚ୍ଚ କରିଥାନ୍ତି । ଏକ ହିସାବରୁ ଜଣାପଡ଼ିଛି ଯେ ଦେଶରେ ବର୍ଷକୁ ଉଚ୍ଚଶିକ୍ଷା କ୍ଷେତ୍ରରେ ପ୍ରାୟ ୧୦ ବିଲିୟନ ଡଲାରରୁ ଊର୍ଦ୍ଧ୍ୱ ଅର୍ଥରାଶି ବ୍ୟୟ ହୋଇଥାଏ ଯାହାକି ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି.)ର ୧ ପ୍ରତିଶତରୁ କମ୍ । ସରକାରୀ ଖର୍ଚ୍ଚ ରାଶିରେ ଏକ ଶିକ୍ଷାନୁଷ୍ଠାନରୁ ଅନ୍ୟ ଶିକ୍ଷାନୁଷ୍ଠାନ ମଧ୍ୟରେ ବହୁଳ ଅସମାନତା ପରିଲକ୍ଷିତ ହୋଇଥାଏ । ଆଇ.ଆଇ.ଟି ମାନଙ୍କରେ ଅଧ୍ୟୟନ କରୁଥିବା ଜଣେ ଛାତ୍ର ପାଇଁ ବର୍ଷକୁ ପ୍ରାୟ ୧ ଲକ୍ଷରୁ ୨ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଥିଲା ବେଳେ ଗାଁଗଣ୍ଡା ଓ ନିପଟ ମଫସଲ ଅଞ୍ଚଳରେ ଥିବା କଲେଜ ମାନଙ୍କରେ ଅଧ୍ୟୟନ କରୁଥିବା ଛାତ୍ରଟିଏ ପିଛା ବର୍ଷକୁ ମାତ୍ର ୨ ହଜାର ଟଙ୍କା ସରକାରଙ୍କର ଖର୍ଚ୍ଚ ହୋଇଥାଏ ।

ଘରୋଇ ଉଚ୍ଚଶିକ୍ଷା ପ୍ରତିଷ୍ଠାନ ଗୁଡ଼ିକ ହତୋତ୍ସାହୀ ଛାତ୍ର ଗୋଷ୍ଠୀ, ବିଶୃଙ୍ଖଳିତ ନୀତିନିୟମ ବ୍ୟବସ୍ଥା, ନିଅଁଣ୍ଟିଆ ଛାତ୍ର ଅଧିଗ୍ରହଣ କ୍ଷମତା, ମଧ୍ୟମ ଗୁଣସମ୍ପନ୍ନ ବା ଦ୍ୱିତୀୟ ଶ୍ରେଣୀର ଶିକ୍ଷକ ଗୋଷ୍ଠୀ ଏବଂ ଅନୁପଯୋଗୀ ପାଠ୍ୟ ନିର୍ଘଣ୍ଟର ମାୟାଜାଲରେ ଛନ୍ଦି ହୋଇ ଶିକ୍ଷା ବ୍ୟବସ୍ଥା ପରିଚାଳନା କରିଥାନ୍ତି । ସରକାର ବାହାଦୁର ଦରମା, ଛାତ୍ର ମାନଙ୍କ ଟ୍ୟୁସନ୍ ଫି, ପାଠ୍ୟକ୍ରମ, ଅନୁଷ୍ଠାନର ଛାତ୍ର ଅଧିଗ୍ରହଣ କ୍ଷମତା, ଅନୁଷ୍ଠାନ ପ୍ରତିଷ୍ଠା ପାଇଁ ଆବଶ୍ୟକୀୟ ଜମିର ଆବଣ୍ଟନ ଓ ଅନୁଷ୍ଠାନର ପରିଚାଳନା ପାଇଁ ଆବଶ୍ୟକୀୟ ସୁବିଧା ସୁଯୋଗ ଆଦି ଯୋଗାଇ ଦେଇଥାଆନ୍ତି ।

ଏପରି ଏକ ସୁବୃହତ୍ ଓ ସୁବିସ୍ତୃତ ବ୍ୟବସ୍ଥାରେ ମୌଳିକ ପରିବର୍ତ୍ତନ ଆଣିବା ଏତେ ସହଜ କଥା ନୁହେଁ । ନିମ୍ନରେ ସୂଚୀତ ବିଶେଷ ୫ଟି ଦିଗ ପ୍ରତି ଦୃଷ୍ଟି ଦିଆଯାଉ । ପ୍ରଥମତଃ ସମ୍ପ୍ରତି ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଦ୍ୱାରା ପରିଚାଳିତ ହେଉଥିବା ଲାଇସେନ୍ସରାଜ ବ୍ୟବସ୍ଥାରେ ପରିବର୍ତ୍ତନ ଅଣାଯିବା ଦରକାର । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଏବଂ ଅଲ୍ ଇଣ୍ଡିଆ କାଉନ୍‌ସିଲ୍ ଫର୍ ଟେକ୍ନିକାଲ୍ ଏଜୁକେସନ ଏବଂ ଅନ୍ୟାନ୍ୟ ନିୟାମକ ସଂସ୍ଥା ଗୁଡ଼ିକ ସରକାରୀ ନିୟନ୍ତ୍ରଣରୁ ସମ୍ପୂର୍ଣ୍ଣଭାବେ ମୁକ୍ତ ହେବା ଆବଶ୍ୟକ ଏବଂ ଏଗୁଡ଼ିକ ପ୍ରକୃତ ପକ୍ଷେ ସ୍ୱାଧୀନ ସଂସ୍ଥା ଭାବେ ପରିଚାଳିତ ହେବା ସର୍ବାଦୌ କାମ୍ୟ । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ନାମକରଣରେ ପରିବର୍ତ୍ତନ କରାଯାଇ ଯେଉଁ ନୂତନ ସଂସ୍ଥାଟି ଗଠିତ ହେବ ତାହା ଡିଗ୍ରୀ ପ୍ରଦାନ କରୁଥିବା ପ୍ରତିଷ୍ଠାନ ଗୁଡ଼ିକୁ ଗୁଣବତ୍ତା ଭିତ୍ତିରେ ସ୍ୱତନ୍ତ୍ର ସାର୍ଟିଫିକେଟ୍ ପ୍ରଦାନ କରିବ ଏବଂ ଯଦିଏହି ପ୍ରତିଷ୍ଠାନ ଗୁଡ଼ିକ ନିଜ ନିଜର ଗୁଣବତ୍ତା ବଜାୟ ନରଖନ୍ତି ତେବେ ଏହି ସ୍ୱତନ୍ତ୍ର ସାର୍ଟିଫିକେଟର ପ୍ରତ୍ୟାହାର ମଧ୍ୟ କରାଯାଇପାରିବ । ସରକାରୀ ସ୍ତରରେ ସ୍ୱୀକୃତ ସଂସ୍ଥା ଗୁଡ଼ିକ ଯଥା ଅଲ୍ ଇଣ୍ଡିଆ କାଉନ୍‌ସିଲ୍ ଫର୍ ଟେକ୍ନିକାଲ୍ ଏଜୁକେସନ୍ ଏବଂ ମେଡ଼ିକାଲ୍ କାଉନ୍‌ସିଲ୍ ଅଫ୍ ଇଣ୍ଡିଆ ସ୍ୱୟଂ ଶାସିତ ବୋର୍ଡ଼ ଦ୍ୱାରା ପରିଚାଳିତ ହେବା ଦରକାର ଯାହାକି ବିଶ୍ୱସ୍ତରୀୟ ଶିକ୍ଷା ବ୍ୟବସ୍ଥା ପ୍ରଚଳିତ କରିବା ସଙ୍ଗେ ସଙ୍ଗେ ଡିଗ୍ରୀର ଆବଶ୍ୟକତା, ପାଠ୍ୟ ନିର୍ଘଣ୍ଟ, ଆବଶ୍ୟକୀୟ ସୁବିଧା ସୁଯୋଗ, ଶିକ୍ଷକମାନଙ୍କ ଶିକ୍ଷାଗତ ଯୋଗ୍ୟତା, ନାମଲେଖାର ମାନ ଏବଂ ଗବେଷଣା ପ୍ରୋଟୋକଲ୍‌ରେ ମଧ୍ୟ ଉଚ୍ଚତର ସ୍ତର ନିର୍ଦ୍ଧାରଣ କରିବ । ଏହି ବୋର୍ଡ଼ଗୁଡ଼ିକ ଏକ ନ୍ୟାସନାଲ୍ ସାର୍ଟିଫିକେସନ୍ ପ୍ରକ୍ରିୟା ମାଧ୍ୟମରେ ଅନ୍ୟାନ୍ୟ ବୃତ୍ତିଗତ ଶିକ୍ଷା ଯଥା – ଆଇନ୍, ମେଡ଼ିସିନ୍, ଆର୍କିଟେକ୍ଚର, ଡେଣ୍ଟିଷ୍ଟ୍ରୀ, ଇଞ୍ଜିନିୟରିଂ ଆଦି ଶିକ୍ଷା ମଧ୍ୟ ପରିଚାଳନା କରିବେ । ଏହି ସମସ୍ତ ନିୟାମକ ଏଜେନ୍‌ସୀ ଗୁଡ଼ିକର ବୋର୍ଡ଼ ମେମ୍ବରମାନେ ସରକାରଙ୍କ ଦ୍ୱାରା ନୁହେଁ ବରଂ ଉପଯୁକ୍ତ ଭାବେ ନିଯୁକ୍ତି ପାଇଥିବା ସେମାନଙ୍କ ବୋର୍ଡ଼ର ନିର୍ଦ୍ଦିଷ୍ଟ ମନୋନୟନକାରୀ କମିଟି ମାଧ୍ୟମରେ ହିଁ ମନୋନୀତ ହେବା ଉଚିତ୍ ।

ଦ୍ୱିତୀୟ ପ୍ରମୁଖ ପ୍ରକ୍ଷେତ୍ରଟି ହେଲା ସରକାରୀ ପୁଞ୍ଜିଲଗାଣ ବ୍ୟବସ୍ଥା । ସରକାରୀ ସ୍ୱୀକୃତି ପ୍ରାପ୍ତ ପ୍ରତିଷ୍ଠାନ ଗୁଡ଼ିକରେ ନାମ ଲେଖାଇ ଅଧ୍ୟୟନ କରୁଥିବା ସମସ୍ତ ଛାତ୍ରଛାତ୍ରୀମାନଙ୍କ ପଢ଼ାଖର୍ଚ୍ଚ କେନ୍ଦ୍ର ସରକାର ବହନ କରିବା ଉଚିତ୍ । ବେସରକାରୀ ପ୍ରତିଷ୍ଠାନ ମାନଙ୍କରେ ପଢୁଥିବା ଛାତ୍ରଟିଏ ବର୍ଷକୁ ନାଁ ଲେଖା, ହଷ୍ଟେଲରେ

ରହିବା ଓ ଖିଆପିଆ ଖର୍ଚ୍ଚ, ପାଠପଢ଼ା ପାଇଁ ଉଦ୍ଦିଷ୍ଟ ବହିପତ୍ର ଓ ଅନ୍ୟାନ୍ୟ ସାମଗ୍ରୀ ଗୁଡ଼ିକର କିଣା କଟା ବାବଦରେ ବର୍ଷକୁ ପ୍ରାୟ ୧ ଲକ୍ଷ ଟଙ୍କା ଖର୍ଚ୍ଚ କରିଥାଏ । ଏହି ଖର୍ଚ୍ଚର ଅର୍ଦ୍ଧେକ ସ୍କଲାରସିପ୍ ବାବଦରେ ସରକାର ବହନ କରିବା କଥା । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଛାତ୍ର ଛାତ୍ରୀମାନଙ୍କ ଅଧ୍ୟୟନ ପାଇଁ ସରକାର ଖର୍ଚ୍ଚ ବହନ କରିବା କଥା । ଛାତ୍ର ଛାତ୍ରୀଙ୍କ ବ୍ୟାଙ୍କ ଆକାଉଣ୍ଟରେ ସିଧାସଳଖ ଭାବେ ଏହି ସ୍କଲାରସିପ୍ ଅର୍ଥ ରାଶି ଜମା ଦିଆଯିବା ଉଚିତ୍ । ରାଜ୍ୟ ସରକାରମାନେ ଛାତ୍ରଛାତ୍ରୀମାନଙ୍କର ଏହି ବ୍ୟାଙ୍କ ଆକାଉଣ୍ଟରେ ଥିବା ଜମା ରାଶି ଉପରେ ଆଉ କିଛି ଅର୍ଥରାଶି ଜମା କରିପାରିବେ ଅବା ନିଜ ନିଜ ରାଜ୍ୟରେ ଥିବା ବିଭିନ୍ନ ଶିକ୍ଷାନୁଷ୍ଠାନ ମାନଙ୍କୁ ଅତିରିକ୍ତ ପୁଞ୍ଜି ରାଶି ମଧ୍ୟ ପ୍ରଦାନ କରିପାରିବେ । ଭଲ ଛାତ୍ର ଛାତ୍ରୀ ଅଧିଗ୍ରହଣ କରିବା ପାଇଁ ଶିକ୍ଷାନୁଷ୍ଠାନ ମାନଙ୍କୁ ନିଜ ନିଜ ମଧ୍ୟରେ ପ୍ରବଳ ପ୍ରତିଯୋଗିତା କରିବାକୁ ପଡ଼ିବ । ଏହା ଫଳରେ ଶିକ୍ଷାନୁଷ୍ଠାନମାନଙ୍କର ମାନ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସୁବିଧା ସୁଯୋଗ କ୍ଷେତ୍ରରେ ମଧ୍ୟ ଅସାଧାରଣ ଅଭିବୃଦ୍ଧି ପରିଲକ୍ଷିତ ହେବ । ଶିକ୍ଷକମାନଙ୍କ ଦରମାରେ ବୃଦ୍ଧି ହେବା ସହିତ ନାନାଦି ଶିଳ୍ପ ସଂସ୍ଥାମାନେ ଅତ୍ୟନ୍ତ ଆଗଭର ହୋଇ ଶିକ୍ଷା ସଂକ୍ରାନ୍ତୀୟ ବିଭିନ୍ନ ସେବା ପ୍ରଦାନ କରିବାକୁ ଶିକ୍ଷାନୁଷ୍ଠାନମାନଙ୍କ ସମ୍ମୁଖରେ ଲମ୍ବା ଧାଡ଼ି ଲଗାଇଦେବେ । ଯଦି ସରକାର ବର୍ଷକୁ ପ୍ରତି ଛାତ୍ର ପିଛା ୫୦ ହଜାର ଟଙ୍କା ଖର୍ଚ୍ଚ କରନ୍ତି ତେବେ ଦେଶର ୧୨ ନିୟୁତ ଛାତ୍ରଛାତ୍ରୀମାନଙ୍କ ପାଇଁ ବର୍ଷକୁ ୬୦ ହଜାର କୋଟି ଟଙ୍କା ଖର୍ଚ୍ଚ ହେବ ଯାହାକି ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି.)ର ପ୍ରାୟ ୧.୧ ପ୍ରତିଶତ ହେବ ଏବଂ ଏହା ଆଜିର ବ୍ୟୟ ପରିମାଣର ପ୍ରାୟ ୨ଗୁଣ ଅଟେ ।

ଯଦି ଶିକ୍ଷାବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବେ ଉନ୍ମୁକ୍ତ ହୋଇଥାଏ ତେବେ ନାଟକୀୟ ଢ଼ଙ୍ଗରେ ଖୁବ୍ ଶୀଘ୍ର ଶିକ୍ଷାନୁଷ୍ଠାନ ମାନଙ୍କରେ ଛାତ୍ର ଅଧିଗ୍ରହଣ କ୍ଷମତାରେ ମଧ୍ୟ ଅଭିବୃଦ୍ଧି ଘଟିବ । ଶିକ୍ଷାର ନିର୍ଦ୍ଧାରିତ ମାନ ବଜାୟ ରଖୁଥିବା ଲାଭଦାୟକ ଶିକ୍ଷାନୁଷ୍ଠାନମାନଙ୍କର ଗଠନ ଓ ସମ୍ପ୍ରସାରଣକୁ ଆବଶ୍ୟକୀୟ ପ୍ରୋତ୍ସାହନ ଦିଆଯିବା ଆବଶ୍ୟକ । ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଓ ପରିଚାଳନା କ୍ଷେତ୍ରରେ ବିଦେଶୀ ମାଲିକାନା ଓ ଜଏଣ୍ଟ ଭେଞ୍ଚର୍ ପାଇଁ ଅନୁମତି ପତ୍ର ନିର୍ବିଘ୍ନରେ ପ୍ରଦାନ କରାଯିବା ଉଚିତ୍ । ଛାତ୍ରବୃତ୍ତି ସରକାରୀ ଓ ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କୁ ଉପଲବ୍ଧ ହେବା ଉଚିତ୍ ଯାହାକି ଏକ ଅଗ୍ରଗାମୀ ଶିକ୍ଷାବ୍ୟବସ୍ଥାର ଆଧାରଶିଳାର ଭୂମିକା ସମ୍ପାଦିତ କରିବ । ଭାରତୀୟ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ

(ଆଇ.ଆଇ.ଟି.), ଭାରତୀୟ ପରିଚାଳନା ପ୍ରତିଷ୍ଠାନ (ଆଇ.ଆଇ.ଏମ୍.) ସର୍ବଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନ (ଏ.ଆଇ.ଆଇ.ଏମ୍.ଏସ୍.) ଓ ପ୍ରମୁଖ ଶ୍ରେଷ୍ଠ ବିଶ୍ୱବିଦ୍ୟାଳୟ ଗୁଡ଼ିକ ନିଜ ନିଜର ପରିଚାଳନା ବୋର୍ଡ଼ ମାଧ୍ୟମରେ କାର୍ଯ୍ୟ କରିଥାଆନ୍ତି । ସେମାନେ ସମ୍ପୂର୍ଣ୍ଣ ସ୍ୱାଧୀନ ଓ ସ୍ୱୟଂ ପରିଚାଳିତ ଶିକ୍ଷାନୁଷ୍ଠାନ ଭାବେ କାର୍ଯ୍ୟ କରିବା ଉଚିତ୍ ଏବଂ ସରକାରୀ ନିୟନ୍ତ୍ରଣରୁ ସମ୍ପୂର୍ଣ୍ଣଭାବେ ମୁକ୍ତ ହେବା ଆବଶ୍ୟକ । ଦେଶର ପ୍ରମୁଖ ଓ ଅତି ବିଶିଷ୍ଟ ଶିକ୍ଷାନୁଷ୍ଠାନ ଗୁଡ଼ିକ ନିଜ ନିଜର ଏଣ୍ଡୋମେଣ୍ଟ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପାଠ୍ୟକ୍ରମ ପାଇଁ ଫି ଧାର୍ଯ୍ୟ କରିବା ଓ ଛାତ୍ରଛାତ୍ରୀମାନଙ୍କ ପାଇଁ ଅତିରିକ୍ତ ଅର୍ଥ ସାହାଯ୍ୟ ଯୋଜନା ପ୍ରଣୟନ କରିବା ଉଚିତ୍ ଯଦ୍ୱାରା ଛାତ୍ରଛାତ୍ରୀମାନେ ପରମ ସୌଭାଗ୍ୟ ଲାଭ କରିପାରିବେ । ପ୍ରତିଷ୍ଠିତ ଭାରତୀୟ ଶିଳ୍ପୋଦ୍ୟୋଗୀମାନେ ଘରୋଇ ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଆଗଭର ହୋଇ ଆସିବା ଉଚିତ୍ ଯେପରିକି ବିଶ୍ୱର ବିଭିନ୍ନ ଦେଶରେ ପ୍ରାୟ ଦେଖାଯାଇଥାଏ ।

ଏକ ମୁକ୍ତ ଉଚ୍ଚଶିକ୍ଷା ବ୍ୟବସ୍ଥା ଯାହାକି ସ୍କଲାରସିପ୍ ଭିତ୍ତିକ ପୁଞ୍ଜିନିବେଶ କାର୍ଯ୍ୟକ୍ରମ ଉପରେ ପର୍ଯ୍ୟବେଶିତ,ତହିଁରେ ଫ୍ୟାକଲ୍‌ଟି ମାନଙ୍କ ପୂର୍ଣ୍ଣ ବିକାଶ ପାଇଁ ସମ୍ଭାବନା ଓ ସୁଯୋଗର ସିଂହଦ୍ୱାର ଉନ୍ମୁକ୍ତ ହୋଇ ରହିଥାଏ । ପ୍ରଥମତଃ ଦେଶର ପ୍ରମୁଖ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ ଗୁଡ଼ିକ ଗବେଷଣା ଓ ବିକାଶର ମୁଖ୍ୟକେନ୍ଦ୍ରଭାବେ ଗଢ଼ି ଉଠିବେ ଏବଂ ଏହି କେନ୍ଦ୍ରଗୁଡ଼ିକ ଫ୍ୟାକଲ୍‌ଟି ମାନଙ୍କୁ ଉପଯୁକ୍ତ ଭାବେ ପ୍ରଶିକ୍ଷଣ ପ୍ରଦାନ କରି ଦେଶର ବିଭିନ୍ନ ଉଚ୍ଚଶିକ୍ଷା ବ୍ୟବସ୍ଥା ମଧ୍ୟକୁ ପ୍ରେରଣ କରିବେ । ଆମେରିକାରେ ୧୦ ରୁ ୧୫ଟି ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟ ଯଥା ଏମ୍.ଆଇ.ଟି., ଷ୍ଟାନ୍‌ଫୋର୍ଡ଼, ଚିକାଗୋ ଆଦି ବିଶ୍ୱବିଦ୍ୟାଳୟ ଗୁଡ଼ିକରୁ ଫ୍ୟାକଲ୍‌ଟି ମାନେ ସଫଳ ଭାବେ ଉତ୍ତୁରି ଆସି ଅନ୍ୟାନ୍ୟ ଉଚ୍ଚ ଶିକ୍ଷାନୁଷ୍ଠାନ ମାନଙ୍କରେ ନିଜ ନିଜର ପରାକାଷ୍ଠା ମାଧ୍ୟମରେ କୀର୍ତ୍ତିମାନ ପ୍ରତିଷ୍ଠା କରିଥାନ୍ତି । ଦ୍ୱିତୀୟତଃ ଫ୍ୟାକଲ୍‌ଟି ମାନଙ୍କ ମାସିକ ଦରମା ବ୍ୟବସ୍ଥା ସରକାରଙ୍କ ନିୟନ୍ତ୍ରଣ ବାହାରେ ରହୁଥିବାରୁ ବହୁ ସଂଖ୍ୟାରେ ମେଧାବୀ ଅଧ୍ୟାପକମାନେ ଶିକ୍ଷକତା ବୃତ୍ତିକୁ ଆଦର ସହକାରେ ବରଣ କରିବାକୁ ଆଗଭର ହେବେ । ତୃତୀୟତଃ ଆକ୍ରେଡିଟେସନ୍ ଏଜେନ୍ସୀମାନଙ୍କ ଦ୍ୱାରା ଫ୍ୟାକଲ୍‌ଟି ବିକାଶ ଓ ମାନ ନିର୍ଦ୍ଧାରଣ ପ୍ରକ୍ରିୟାର ତଦାରଖ କ୍ରମାଗତ କରାଯିବା ଶ୍ରେୟସ୍କର ହେବ । ଚତୁର୍ଥତଃ କେନ୍ଦ୍ରସରକାର ବିଜ୍ଞାନ ଓ ଇଂଜିନିୟରିଂ ରିସର୍ଚ୍ଚ ବୋର୍ଡ଼କୁ ପ୍ରଚୁର ପରିମାଣରେ ଆବଶ୍ୟକୀୟ

ଅର୍ଥରାଶି ଓ ସ୍ୱୟଂ ପରିଚାଳନା କ୍ଷମତା ପ୍ରଦାନ କରିବା ଉଚିତ୍ ଯଦ୍ୱାରା ପ୍ରକୃତରେ ଉଚ୍ଚମାନର ଗବେଷଣା ଓ ଉନ୍ନୟନ ପରିଯୋଜନାମାନ ହାତକୁ ନିଆଯାଇପାରିବ ଓ ତାହା ଇଚ୍ଛାନୁରୂପ ସଫଳତା ମଧ୍ୟ ପ୍ରଦାନ କରିବ । ଶେଷରେ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ମଧ୍ୟ ନିଜ ନିଜର ଗବେଷଣା ଅନୁଦାନ ମାଧ୍ୟମରେ ଗବେଷଣା କାର୍ଯ୍ୟକ୍ରମ ଓ ଗବେଷଣା ଲବ୍ଧ ଫଳାଫଳର ପ୍ରକାଶନ ପାଇଁ ଉପଯୁକ୍ତ ପ୍ରୋତ୍ସାହନ ଦେବା ଉଚିତ୍ ।

ଶିକ୍ଷାନୁଷ୍ଠାନମାନଙ୍କର ନାଁ ଲେଖା ପ୍ରକ୍ରିୟା ଅତ୍ୟନ୍ତ ସ୍ୱଚ୍ଛ ଓ ନିର୍ମଳ ହେବା ଉଚିତ୍ । ଏହା ନିର୍ଦ୍ଦିଷ୍ଟ ପଏଣ୍ଟ (ଗୁଣାତ୍ମକମାନ) ଉପରେ ଆଧାରିତ ହେବା ସଙ୍ଗେ ସଙ୍ଗେ ନୀତି ନିୟମ ପ୍ରଣୟନକାରୀ ସଂସ୍ଥା ମାନଙ୍କ ଦ୍ୱାରା ତଦାରଖ ହେବା ମଧ୍ୟ ଉଚିତ୍ ।

ଉପରେ ବର୍ଣ୍ଣିତ ଉଚ୍ଚଶିକ୍ଷାରେ ସଂସ୍କାର ବ୍ୟବସ୍ଥା କଣ ଶିକ୍ଷାର ଦୃତ ଘରୋଇକରଣ ଅବା ଶିକ୍ଷାବ୍ୟବସ୍ଥାକୁ ସରକାରୀ ନିୟନ୍ତ୍ରଣର ଅଳିନ୍ଦ ବାହାରକୁ ନେଇଯିବାକୁ ଉଦ୍ଦିଷ୍ଟ ? ସତ କହିବାକୁ ଗଲେ ତାହା ଘଟିବାକୁ ଆରମ୍ଭ କରିଦେଲାଣି । ପ୍ରକୃତରେ ଏଭଳି ସଂସ୍କାର ବ୍ୟବସ୍ଥା ଖୋଲା ନୀତିନିୟମର ପ୍ରଣୟନ ଓ ପ୍ରଚଳନ, ଶିକ୍ଷାର ଉଚ୍ଚତର ମାନ ନିର୍ଦ୍ଧାରଣ, ନୀତିନିଷ୍ଠ, ପ୍ରବୀଣ, ଧୂରନ୍ଧର ଓ ମେଧାବୀ ଶିକ୍ଷକ ସମାଜ ଏବଂ ଯୁବ ଓ ପ୍ରଜ୍ଞାବାନ ଛାତ୍ରସମାଜ ବ୍ୟବସ୍ଥା ସମ୍ପର୍କରେ ଅବଗତ ହେବା ପାଇଁ ସ୍ୱଚ୍ଛ ଓ ନିର୍ମଳ ପ୍ରବେଶ ଅଧିକାର ଲାଭ କରିବେ । ଯେ ପର୍ଯ୍ୟନ୍ତ ଦେଶର କୌଣସି ସମସ୍ୟା ଲାଭା ଉଦ୍‌ଗୀରଣ ପରି ଆକାଶ ଛୁଆଁ ଭୟଙ୍କର ରୂପରେଖ ନ ନେଇଛି ସେ ପର୍ଯ୍ୟନ୍ତ ଗଣତନ୍ତ୍ର ସୁପ୍ତ ଅବସ୍ଥାରେ ନିଜ ଶୟନ କକ୍ଷରେ ପଡ଼ିରହିଥାଏ । ଉଚ୍ଚଶିକ୍ଷା ବ୍ୟବସ୍ଥା ଆଜି ଠିକ୍ ସେହିପରି ଏକ ପରିସ୍ଥିତିରେ ପଡ଼ି ରହିଛି ଏବଂ ତାହାର କୁମ୍ଭକର୍ଣ୍ଣ ନିଦ୍ରା ଭାଙ୍ଗିବା ପାଇଁ ଆଗାମୀ କାଲିର ଯୁବଶକ୍ତିକୁ ଜ୍ଞାନାସ୍ତ୍ର ଧରି ଜ୍ଞାନ ସଂଗ୍ରାମ କରିବାକୁ ପଡ଼ିବ । ଜ୍ଞାନର ଏହି ମହାସଂଗ୍ରାମରେ ଜ୍ଞାନ ପିପାସୁମାନଙ୍କୁ ଜ୍ଞାନବୀରର ଭୂମିକା ସମ୍ପାଦିତ କରିବାକୁ ପଡ଼ିବ । ତେବେ ଯାଇ ମହାଭାରତୀୟ କର୍ମକ୍ଷେତ୍ରରେ ମହାଜ୍ଞାନୋଦୟ ସମ୍ଭବପର ହୋଇପାରିବ ।

ସମାଜ : ୦୩.୦୬.୨୦୦୯



# ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା - ଏକ ଅଭିନବ ପରିକଳ୍ପନା

ସମ୍ପ୍ରତି ୧୮ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ବିଭିନ୍ନ ରାଜ୍ୟରେ ପ୍ରତିଷ୍ଠା ହୋଇଥିବା ବେଳେ କେନ୍ଦ୍ର ସରକାର ଏବେ ପୁଣି ୧୨ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରୁଛନ୍ତି ଏବଂ ପ୍ରତି ରାଜ୍ୟରେ ଗୋଟିଏ ଲେଖାଏଁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ନୀତିଗତ ନିଷ୍ପତ୍ତି ନେଇଛନ୍ତି । ଏହା ଏକ ବିଶାଳ ଜାତୀୟ କର୍ମ ଯୋଜନା ଯାହା ପାଇଁ ବଜେଟ୍‌ରୁ ୩୨୮୦ କୋଟି ଟଙ୍କା ବ୍ୟୟ ମଞ୍ଜୁରୀ କରାଯାଇଛି । ୨୦୦୮ ମସିହାର ପ୍ରାକ୍ କାଳରେ ଭାରତ ସରକାର ଘୋଷଣା କରିଥିଲେ ଯେ ଆଗାମୀ ୫ବର୍ଷ ମଧ୍ୟରେ ଦେଶରେ ୩୦ଟି ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ, ୮ଟି ନୂଆ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଏବଂ ୭ଟି ଭାରତୀୟ ପରିଚାଳନା ପ୍ରତିଷ୍ଠାନ ପ୍ରତିଷ୍ଠା କରାଯିବ । ଜାତୀୟ ଜ୍ଞାନ କମିଶନର ସୁପାରିଶକୁ ଭିତ୍ତି କରି କେନ୍ଦ୍ର ସରକାର ଉଚ୍ଚଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ମାନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଆବଶ୍ୟକୀୟ ସଂପ୍ରସାରଣ ପାଇଁ ପ୍ରଚୁର ପରିମାଣର ଅର୍ଥରାଶି ବ୍ୟୟ ବରାଦ କରିବାକୁ ଯୋଜନା ଅଟକଳ କରିଛନ୍ତି । କଲେଜ ଓ ବିଶ୍ୱ ବିଦ୍ୟାଳୟ ଶିକ୍ଷକମାନଙ୍କ ଦରମା ହାରରେ ୭୦ ପ୍ରତିଶତ ଅଭିବୃଦ୍ଧି ଆଣିବା ମଧ୍ୟ କେନ୍ଦ୍ର ସରକାରଙ୍କ ଯୋଜନାରେ ଅନ୍ତର୍ଭୁକ୍ତ ଅଛି ।

ଆନ୍ତର୍ଜାତିକ ର୍‍ୟାଙ୍କିଙ୍ଗ ଅନୁଯାୟୀ ଭାରତବର୍ଷ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କ୍ଷେତ୍ରରେ ବହୁପଛରେ ପଡ଼ିଥିବା ପରିପ୍ରେକ୍ଷୀରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଏଭଳି ଏଭ ରାଷ୍ଟ୍ରୀୟ ଅଭିବୃଦ୍ଧି ପରିଯୋଜନା ନିଶ୍ଚିତ ରୂପେ ଏକ ଶୁଭ ସମ୍ବାଦ । ଅପରପକ୍ଷରେ ଆନ୍ତର୍ଜାତିକ ସ୍ତରରେ ତୁଳନା କଲେ ଭାରତୀୟ ଶିକ୍ଷକ ସମାଜ ମଧ୍ୟ ଅପେକ୍ଷାକୃତ କମ୍ ବେତନ ପାଇଥାନ୍ତି । ରାଷ୍ଟ୍ରୀୟ ଉଚ୍ଚ ଶିକ୍ଷାନୁଷ୍ଠାନ ମାନଙ୍କରେ ଛାତ୍ରମାନେ ମଧ୍ୟ ନିଜ ମନ ମୁତାବକ ଆସନଟିଏ ପାଇବାରେ ଅତ୍ୟନ୍ତ ବିତସ୍ପୃହ ହୋଇଥାନ୍ତି ଏବଂ ଆଟଙ୍ଗା କୁମାରୀକା ସମଗ୍ର ଉଚ୍ଚଶିକ୍ଷା ବ୍ୟବସ୍ଥା ମଧ୍ୟରେ ଏପରି ଏକ ଚିତ୍ର ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । ବିଶ୍ୱବିଦ୍ୟାଳୟ ସ୍ତରରେ ଲାଭ କରୁଥିବା ଭାରତୀୟ ଯୁବଗୋଷ୍ଠୀଙ୍କ ସଂଖ୍ୟା ତୁଳନାତ୍ମକ ଭାବେ ଚୀନ୍‌ର ଯୁବଗୋଷ୍ଠୀଙ୍କ ସଂଖ୍ୟାର ଅର୍ଦ୍ଧେକ

ଅଟେ ଏବଂ ଅଧିକାଂଶ ଲାଟିନ୍ ଆମେରିକା ତଥା ଅନେକ ମଧ୍ୟବିତ୍ତ ରୋଜଗାର ସମ୍ପନ୍ନ ରାଷ୍ଟ୍ରଠାରୁ ମଧ୍ୟ ଭାରତ ଏ କ୍ଷେତ୍ରରେ ପଛରେ ପଡ଼ିରହିଛି ।

ଉଚ୍ଚଶିକ୍ଷାର ସର୍ବୋଚ୍ଚ ସ୍ତର ବିନ୍ୟାସରେ ଭାରତ ଏକ ବିଶେଷ ସମସ୍ୟାର ସମ୍ମୁଖୀନ ହୋଇଥାଏ । ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ, ଭାରତୀୟ ପରିଚାଳନା ପ୍ରତିଷ୍ଠାନ ଏବଂ ସର୍ବଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନ ଭଳି ବିଶ୍ୱବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥାର ପରିଧି ବାହାରେ ଥିବା କେତେକ ସ୍ୱନାମଧନ୍ୟ ଓ ଉଲ୍ଲେଖନୀୟ ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନକୁ ବାଦ ଦେଲେ ଅତ୍ୟନ୍ତ ପ୍ରତିଷ୍ଠା ସମ୍ପନ୍ନ ଶିକ୍ଷାନୁଷ୍ଠାନ ଦେଶରେ ପ୍ରାୟ ବିରଳ । ପ୍ରକୃତ ପକ୍ଷେ ଭାରତବର୍ଷରେ ଥିବା ୩୮୪ଟି ବିଶ୍ୱବିଦ୍ୟାଳୟ ପୃଥିବୀର ସର୍ବଶ୍ରେଷ୍ଠ ୧୦୦ଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ଗଣ୍ୟତା ଲାଭ କରିପାରିନାହାନ୍ତି । ସାଧାରଣତଃ ଯେତେବେଳେ ଭାରତବର୍ଷ ଉଚ୍ଚଶିକ୍ଷା କ୍ଷେତ୍ରରେ କୌଣସି ବଳିଷ୍ଠ ସଂସ୍କାରମୂଳକ ଓ ଇନ୍ନୋଭେଟିଭ୍ ପ୍ରଦକ୍ଷେପ ଗ୍ରହଣ କରିବାକୁ ଆଗଭର ହୋଇଥାଏ ସେତେବେଳେ ବିଶ୍ୱବିଦ୍ୟାଳୟ ଗୁଡ଼ିକୁ ଅଣଦେଖା କରି ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଭଳି ସମ୍ପୂର୍ଣ୍ଣ ନୂତନ ଅନୁଷ୍ଠାନର ଜନ୍ମଗ୍ରହଣରେ ଗଭୀର ଯୋଗଦାନ ଦେଇଥାଏ । କୌଣସି ନିର୍ଦ୍ଦିଷ୍ଟ ଷ୍ଟ୍ରାଟେଜି ବିନା ଯଦି ଭାରତବର୍ଷ ବିପୁଳ ଅର୍ଥ ଓ ମାନବ ସମ୍ବଳ ବିନିଯୋଗ କରି ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ, ବିକାଶ ଓ ସମ୍ପ୍ରସାରଣ କରିବା ପାଇଁ ଚେଷ୍ଟିତ ହୁଏ ତେବେ ସେଭଳି ପଦକ୍ଷେପ ବେକାରରେ ହିଁ ଯାଇଥାଏ ଓ ଅସଫଳତାର ମୁଖ ଦର୍ଶନ ଅବଶ୍ୟମ୍ଭାବୀ ହୋଇଥାଏ । ଦେଶର କେତେକ ନୂତନ ବିଶ୍ୱବିଦ୍ୟାଳୟକୁ ଆମେରିକୀୟ ମଡ଼େଲ ଢ଼ାଞ୍ଚାରେ ପକାଇ ସେଥିରୁ ଆବଶ୍ୟକୀୟ ସୁଫଳ ଲାଭ କରିବା ପାଇଁ ଉଚ୍ଚ ସ୍ତରରେ ଆଲୋଚନା ହୋଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ସେ କ୍ଷେତ୍ରରେ ବିହିତ ପଦକ୍ଷେପ ନିଆଯାଇପାରିନାହିଁ ।

ମୌଳିକ ଦୃଷ୍ଟିକୋଣରୁ ଏକ ଭଗ୍ନପ୍ରାୟ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାକୁ କେବଳ ପୁଞ୍ଜି ଓ ସମ୍ବଳର ସୁଅ ଛୁଟେଇଦେବା ଏକ ମସ୍ତବଡ଼ ଭୁଲ୍ ବୋଲି ସାବ୍ୟସ୍ତ ହେବ । ନୂତନ ଅଭିନବ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଉତ୍ତମ ସକାରାତ୍ମକ ପରିଯୋଜନା ଏକାନ୍ତ ଆବଶ୍ୟକ । ସାମ୍ପ୍ରତିକ ଶିକ୍ଷାବ୍ୟବସ୍ଥାର ଦୁର୍ବଳତାକୁ ସଠିକ୍ ହୃଦୟଙ୍ଗମ କରି ତହିଁରୁ ଉଚିତ୍ ଶିକ୍ଷା ଲାଭ କଲେ ହିଁ ନୂତନ ଶିକ୍ଷା ବ୍ୟବସ୍ଥାର ଶିଳାନ୍ୟାସ ସମ୍ଭବ

ହୋଇପାରିବ । ଶିକ୍ଷାନୁଷ୍ଠାନମାନଙ୍କୁ ପୁଞ୍ଜି ଓ ସମ୍ବଳର ବିନିଯୋଗ ପୂର୍ବରୁ ନିମ୍ନଲିଖିତ କେତେକ ଜରୁରୀ ବିଷୟ ପ୍ରତି ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ ।

**ଦାୟିତ୍ୱବୋଧତା ଶୂନ୍ୟ ଅମଲାତନ୍ତ୍ର (Bureaucracy without Accountability)**

ସମ୍ବେଦନଶୀଳ ରହିତ ଶକ୍ତ ଅମଲାତନ୍ତ୍ର ପାଇଁ ଭାରତ ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି ଏବଂ ଉଚ୍ଚଶିକ୍ଷା ଏପରି ଏକ ହାତଗଢ଼ା ଛାଞ୍ଚରେ ଠିକ୍ ଭାବେ ଖାପ ଖାଇ ପଡ଼ିଯାଉଛି । କେତେକ ନିର୍ଣ୍ଣୟ ମଧ୍ୟ ଅମଲାତନ୍ତ୍ରର ବିନା ଅନୁମତିରେ ନିଆଯାଇପାରେ ଏବଂ ନିର୍ଣ୍ଣାୟକ ପ୍ରକ୍ରିୟାର ଚକଟି ଧିରେ ଧିରେ ତାକୁ ପେଷଣ କରିଦେଇଥାଏ । ଦୁର୍ନୀତିର ଭୟ ଅବା ବ୍ୟବସ୍ଥାରୁ ନିୟନ୍ତ୍ରଣର ହ୍ରାସ ଅମଲାତନ୍ତ୍ରକୁ ପଦମର୍ଯ୍ୟାଦା ସହ ଶକ୍ତ ଭାବେ ବାନ୍ଧି ରଖିଦେଇଥାଏ । କଲେଜ ଓ ବିଶ୍ୱବିଦ୍ୟାଳୟ ମାନଙ୍କର ଶିକ୍ଷକ ତଥା ଏକାଡ଼େମୀକ୍ କ୍ଷେତ୍ରରେ ନେତୃତ୍ୱ ନେଉଥିବା ମାନ୍ୟଗଣ ବ୍ୟକ୍ତି ବିଶେଷମାନେ ଉଚ୍ଚଶିକ୍ଷା କ୍ଷେତ୍ରରେ କୌଣସି ଅଭିନବ ଉପାୟର ପ୍ରବର୍ତ୍ତନ ପାଇଁ ସେପରି କିଛି ବି ଆର୍ଥିକ ପ୍ରୋତ୍ସାହନ ପାଇ ନଥାନ୍ତି - ପ୍ରକୃତରେ ତାହାର ଠିକ୍ ଓଲଟା ହିଁ ଘଟିଥାଏ । ଏପରି ଏକ ରୁଗ୍ଣ ଅମଲାତାନ୍ତ୍ରିକ ପୃଷ୍ଠଭୂମିରେ ଦେଶରେ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ସମ୍ପୂର୍ଣ୍ଣ ଅସମ୍ଭବ ବ୍ୟାପାର ଅଟେ । ଯଦି ନୂତନ ଭାବେ ପ୍ରତିଷ୍ଠା ହେବାକୁ ଯାଉଥିବା ଏହି ପ୍ରତିଷ୍ଠାନ ଗୁଡ଼ିକ କେନ୍ଦ୍ରସରକାରଙ୍କ ଦାୟିତ୍ୱ ତଥା ଯେଉଁ ରାଜ୍ୟରେ ପ୍ରତିଷ୍ଠା ହେବ ସେ ରାଜ୍ୟର ଦାୟିତ୍ୱକୁ ସମ୍ପୂର୍ଣ୍ଣ ରୂପେ ମୁଣ୍ଡେଇବାକୁ ଓ ସହ୍ୟ କରିବାକୁ ପ୍ରସ୍ତୁତ ଥିବ ତେବେ ଅମଲାତାନ୍ତ୍ରିକ ବୋଝ ଆଉ ବୋଝ ଭଳି ଲାଗିବ ନାହିଁ ଏବଂ ସବୁକିଛି ବ୍ୟାପାର ଠିକ୍ ଠିକ୍ ଭାବେ ସମ୍ପାଦିତ ହୋଇଯିବ ।

**ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଉପଯୁକ୍ତ ସ୍ଥାନ ଚୟନ (Location)**

ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ଅତ୍ୟନ୍ତ ସୌହାର୍ଦ୍ଦ୍ୟ ଓ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ପ୍ରତିଷ୍ଠିତ ହେବା ଉଚିତ୍ । ସମଗ୍ର ପୃଥିବୀରେ ଥିବା ସର୍ବୋତ୍ତମ ବିଶ୍ୱବିଦ୍ୟାଳୟ ଗୁଡ଼ିକ ବଡ଼ ବଡ଼ ସହରରେ ଅବା ବଡ଼ ବଡ଼ ସହରର ଖୁବ୍ ନିକଟରେ ପ୍ରତିଷ୍ଠିତ ହୋଇଛି ଅବା ବୌଦ୍ଧିକ ପରମ୍ପରା ଓ ସୁଦୃଢ଼ ବୁନିୟାଦ୍ ସମ୍ପନ୍ନ ସ୍ଥାନମାନଙ୍କରେ ପ୍ରତିଷ୍ଠା କରାଯାଇଛି । ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଲେଖାଏଁ ଅତ୍ୟନ୍ତ ଉଚ୍ଚମାନ ସମ୍ପନ୍ନ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଯଦିଓ ସମ୍ପୂର୍ଣ୍ଣରୂପେ ଏକ ସ୍ୱାଗତଯୋଗ୍ୟ ଓ

ସମୁଚିତ ଚିନ୍ତାଧାରା ହେଲେ ସେଥିପାଇଁ ଆବଶ୍ୟକ ପଡୁଥିବା ପ୍ରଚଣ୍ଡ ବୌଦ୍ଧିକ ଓ ସଫ୍ଟୱେୟାର ଭିତ୍ତିଭୂମି ତଥା ବିଶ୍ୱବିଦ୍ୟାଳୟ ନିକଟରେ ହାଇଟେକ୍ ଶିକ୍ଷ ସଂସ୍ଥାମାନଙ୍କର ବହୁଳ ଅଭାବ ପରିସ୍ଥିତି ପାଇଁ ଆଦୌ ଅନୁକୂଳ ହେଉନାହିଁ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୂର୍ବଭାରତରେ ଭୁବନେଶ୍ୱର ସହରର ବୌଦ୍ଧିକ ରୂପରେଖ ଦିନପରେ ଦିନ ଦ୍ରୁତ ଗତିରେ ବଦଳି ଚାଲିଛି । ଭୁବନେଶ୍ୱର ସହରକୁ ଦେଶର ସୂଚନା ପ୍ରଯୁକ୍ତି ବିଦ୍ୟାର ରାଜଧାନୀ ବୋଲି ନାମକରଣ କରାଗଲାଣି । ଭୁବନେଶ୍ୱରର ନାଁ ଏବେ “ସାଇବରେଶ୍ୱର” ହେଲାଣି । କୋରାପୁଟ୍‌ରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା, ଭୁବନେଶ୍ୱରରେ ଭାରତୀୟ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ ଓ ନ୍ୟାସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ, ଏଜୁକେସନ ୟାଣ୍ଡ ରିସର୍ଚ୍ଚ (ନାଇସର୍)ର ପ୍ରତିଷ୍ଠା ତଥା କଟକ ନିକଟରେ ଜାତୀୟ ଆଇନ୍ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ରାଷ୍ଟ୍ରୀୟ ପ୍ରଗତିର ଗୋଟିଏ ଗୋଟିଏ ସଫଳ ମାଇଲ୍ ଖୁଣ୍ଟ । ବିଶେଷ କରି ଚନ୍ଦ୍ରଶେଖରପୁରରେ ଇନ୍‌ଫୋସିଟି ଓ ସଫ୍ଟୱେୟାର ଟେକ୍ନୋଲୋଜି ପାର୍କ ଅଫ୍ ଇଣ୍ଡିଆର ପ୍ରତିଷ୍ଠା ଭୁବନେଶ୍ୱର ସହରର ବୌଦ୍ଧିକ ଓ ସୂଚନା ପ୍ରଯୁକ୍ତି ବିଦ୍ୟାର ମାନଚିତ୍ରକୁ ସମ୍ପୂର୍ଣ୍ଣରୂପେ ବଦଳାଇ ଦେଇଛି । ସଫ୍ଟୱେୟାର ରପ୍ତାନୀ କ୍ଷେତ୍ରରେ ଏବର୍ଷ ଓଡ଼ିଶା ଦେଶରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସମସ୍ତଙ୍କ ଆଖି ଆଜି ଓଡ଼ିଶା ଉପରେ ସନ୍ନିବେଶିତ । ଭୁବନେଶ୍ୱର “ବିଦ୍ୟାନଗରୀ”ର ମାନ୍ୟତା ଲାଭ କରିସାରିଲାଣି । ବହୁ ଶିକ୍ଷ ସଂସ୍ଥାର ଓଡ଼ିଶାକୁ ଦ୍ରୁତ ଆଗମନ ତଥା ଇଞ୍ଜିନିୟରିଂ, ଟେକ୍ନୋଲୋଜି, ମେଡ଼ିକାଲ୍, ଆର୍କିଟେକ୍‌ଚର୍, ପରିଚାଳନା ଶିକ୍ଷା, ବ୍ୟାଙ୍କିଙ୍ଗ୍, ଫେସନ୍ ଟେକ୍ନୋଲୋଜି, ହୋଟେଲ୍ ମ୍ୟାନେଜମେଣ୍ଟ, ଫିଲ୍ମ ଓ ଟେଲିଭିଜନ୍ ଇନ୍‌ଷ୍ଟିଚ୍ୟୁଟ୍, ଆନିମେସନ୍ ଟେକ୍ନୋଲୋଜି ଆଦି ପାଠ୍ୟକ୍ରମର ବହୁଳ ପ୍ରଚଳନ ରାଜ୍ୟରେ ବୈଷୟିକ ଶିକ୍ଷା କ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିବାରେ ସହାୟକ ହୋଇଛି । ଦେଶର ପ୍ରଥମ ଓ ଏକମାତ୍ର ସଂସ୍କୃତି ବିଶ୍ୱବିଦ୍ୟାଳୟ ଭୁବନେଶ୍ୱର ମାଟିରେ ହିଁ ଗଢ଼ି ଉଠିଛି । ରାଜ୍ୟରେ ଏବେ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ଜାତୀୟ ଆଇନ୍ ବିଶ୍ୱବିଦ୍ୟାଳୟ, ଟେକ୍ନୋଲୋଜି ବିଶ୍ୱବିଦ୍ୟାଳୟ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଆଦି ସମସ୍ତ ବିଶ୍ୱବିଦ୍ୟାଳୟକୁ ମିଶାଇ ୧୫ଟି ବିଶ୍ୱବିଦ୍ୟାଳୟ ସ୍ଥାପିତ ଏବଂ ସମସ୍ତ ବିଶ୍ୱବିଦ୍ୟାଳୟ ନିଜ ନିଜର ଗୁଣଗାରିମାରେ ମହିମାନ୍ୱିତ । କେବଳ ଭୁବନେଶ୍ୱର ସହର ଭିତରେ ୬ଟି ବିଶ୍ୱବିଦ୍ୟାଳୟ ଏବେ

କର୍ମରତ । ସେଗୁଡ଼ିକ ହେଲେ - ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱଦ୍ୟାଳୟ, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ, ବିଜୁ ପଟ୍ଟନାୟକ ୟୁନିଭରସିଟି ଅଫ୍ ଟେକ୍ନୋଲୋଜି (କର୍ପୋରେଟ୍ ଅଫିସ୍), କିଟ୍ ବିଶ୍ୱବିଦ୍ୟାଳୟ ଏବଂ ଶିକ୍ଷା ଓ ଅନୁସନ୍ଧାନ ବିଶ୍ୱବିଦ୍ୟାଳୟ । ତେଣୁ ଭୁବନେଶ୍ୱରରେ ଏକ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଆଜି ସମୟର ଏକ ମସ୍ତବଡ଼ ଆହ୍ୱାନ ଓ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ଏ ଦିଗରେ ବିହିତ ପଦକ୍ଷେପ ନେବେ ବୋଲି ଆଶା କରାଯାଏ ।

## ଅଧ୍ୟାପନା ବୃତ୍ତି (Academic Profession)

ଭାରତୀୟ ବିଶ୍ୱବିଦ୍ୟାଳୟର ଶିକ୍ଷକ ସମାଜ ଓ ଗବେଷକମାନେ ଅଧିକ ବେତନ ପାଇବାକୁ ନିଶ୍ଚିତରୂପେ ହକଦାର ଏବଂ ଏ କ୍ଷେତ୍ରରେ ସରକାର ନେଉଥିବା ପଦକ୍ଷେପ ଅତ୍ୟନ୍ତ ସ୍ୱାଗତଯୋଗ୍ୟ । ଭାରତୀୟ ଶିକ୍ଷକ ସମାଜ ଶିକ୍ଷାର ଉତ୍ପାଦକତା ମୂଲ୍ୟ ଅପେକ୍ଷା ନିଜର ଦୀର୍ଘ ତଥା ସ୍ଥାୟୀତ୍ୱପୂର୍ଣ୍ଣ ଚାକିରୀ ଉପରେ ଅଧିକ ବିଶ୍ୱାସ ଓ ଭରସା କରିଥାଆନ୍ତି । ଚାକିରୀରେ ସ୍ଥାୟୀତ୍ୱ ସେମାନଙ୍କୁ ପାରିବାରିକ ସ୍ଥାୟୀତ୍ୱ ପ୍ରଦାନ କରିଥାଏ । ମାସ ଶେଷରେ ନିର୍ଦ୍ଦିଷ୍ଟ ପରିମାଣର ଦରମା ଟଙ୍କାଟିକୁ ସ୍ତ୍ରୀ ଓ ପିଲାଛୁଆଙ୍କ ହାତରେ ଠଣ୍ ଠଣ୍ ଟେକିଦେଇ ଶିକ୍ଷକ ବାପୁଡ଼ାଟି ଶାନ୍ତିର ନିଶ୍ୱାସ ମାରିଥାଏ ଓ ମାସର ୩୦ ଦିନ ପେଟ ପୂରାଇ ଗଣ୍ଡେ ଖାଇବା ପାଇଁ ତାର ଆଉ କୌଣସି ଚିନ୍ତା ନଥାଏ । ପୁନଶ୍ଚ ଭାରତୀୟ ଶିକ୍ଷକ ସମାଜ ନବଭାବର ପ୍ରବର୍ତ୍ତନ ଅପେକ୍ଷା ଗତାନୁଗତିକ ନିୟମ ବା ଆଦର୍ଶର ପାଳନ ଉପରେ ବେଶୀ ଗୁରୁତ୍ୱ ପ୍ରଦାନ କରିଥାଆନ୍ତି ଓ ସେଥିପାଇଁ ମଧ୍ୟ ସେମାନେ ପୁରସ୍କୃତ ହୋଇଥାନ୍ତି । ଅପରପକ୍ଷରେ ଯେଉଁ ଅଧ୍ୟାପକମାନେ ନବଭାବର ପ୍ରବର୍ତ୍ତନ ବା ଅଭିନବ ପ୍ରକ୍ରିୟା ମାଧ୍ୟମରେ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିବାରେ ସହାୟକ ହୋଇଥାନ୍ତି ସେମାନେ ପ୍ରାୟ ପୁରସ୍କୃତ ହୋଇନଥାନ୍ତି । ବିଶ୍ୱବିଦ୍ୟାଳୟମାନଙ୍କ ପକ୍ଷରେ ଅତ୍ୟନ୍ତ ପ୍ରତିଭା ସମ୍ପନ୍ନ ଓ ପ୍ରଚଣ୍ଡ ଧିଶକ୍ତିଧାରୀ ଅଧ୍ୟାପକମାନଙ୍କୁ ଧରି ରଖିବା ପାଇଁ ଆବଶ୍ୟକ ହେଉଥିବା ମାର୍କେଟ ରେଟ୍ ଅନୁଯାୟୀ ଦରମା ପ୍ରଦାନ ସମ୍ପୂର୍ଣ୍ଣ ରୂପେ ଅସମ୍ଭବ ବ୍ୟାପାର ଅଟେ । ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟମାନେ ଏଭଳି ଏକ ଦରମାହାର ପ୍ରବର୍ତ୍ତନ କରିବା ଉଚିତ୍ ଯାହାକି ଅଧ୍ୟାପକମାନଙ୍କୁ ଉତ୍ପାଦକତା ଭିତ୍ତିରେ ପୁରସ୍କୃତ କରିବ ଯଦ୍ୱାରା ସେମାନେ ଶିକ୍ଷା କ୍ଷେତ୍ରରେ ନବଦିଗନ୍ତର ଉନ୍ମେଷ ସୃଷ୍ଟି କରିପାରିବେ ।

**ଶିକ୍ଷା ସଂସ୍କୃତିର ପରିଚାଳନା ଓ ବିଧିସଙ୍ଗତ ନିୟନ୍ତ୍ରଣ (Academic Culture & Governance)**

ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ଏବେ ସାଧାରଣ ବର୍ଗୀୟ ଗୁଣ କୈନ୍ଦ୍ରିକ ସଂସ୍କୃତିଭିତ୍ତିରେ ଛନ୍ଦି ହୋଇ ପଡ଼ିଯାଇଛନ୍ତି ଏବଂ ସେମାନଙ୍କର ଅନ୍ୟ କୌଣସି ପ୍ରତିଷ୍ଠାନ ବା ଶିକ୍ଷାନୁଷ୍ଠାନ ସହ କୌଣସି ପ୍ରତିଯୋଗିତାମୂଳକ ସମ୍ପର୍କ ନାହିଁ କହିଲେ ଚଳେ । ବିଶ୍ୱବିଦ୍ୟାଳୟ ଗୁଡ଼ିକ ବହୁ କ୍ଷେତ୍ରରେ ରାଜନୈତିକ ବ୍ୟକ୍ତିବିଶେଷଙ୍କ ଖିଆଲ୍, ଇଚ୍ଛା ବା ଝୁଙ୍କ୍ ଉପରେ ପରିଚାଳିତ ହେଉଥିବାରୁ ନିଜ ନିଜର ଭବିଷ୍ୟତ କର୍ମଯୋଜନାକୁ ଠିକ୍‌ଭାବେ ରୂପାୟିତ କରିପାରୁ ନାହାଁନ୍ତି । ଶିକ୍ଷାନୁଷ୍ଠାନଗୁଡ଼ିକ ନିଜ ନିଜର ପ୍ରତିଷ୍ଠାକୁ ଉତ୍ତମରୂପେ ସାବ୍ୟସ୍ତ କରିବା ତଥା ସୁସ୍ଥ ପରିଚାଳନା ସଂସ୍କୃତିର ଆଧାରଶିଳା ସ୍ଥାପନା କରିବାରେ ଆଦୌ ମନୋନିବେଶ କରୁନାହାଁନ୍ତି । ଅମଲାତନ୍ତ୍ର ବିଶ୍ୱବିଦ୍ୟାଳୟର ସମସ୍ତ କାର୍ଯ୍ୟକ୍ରମର ନିର୍ଦ୍ଧାରଣ, ନିୟନ୍ତ୍ରଣ ଓ ପରିଚାଳନା କରିଥାଏ ଏବଂ ନୂତନତ୍ୱର ପ୍ରବର୍ତ୍ତନ ପ୍ରତି ଅଣଦେଖା କରିଥାଏ । ବିଶ୍ୱବିଦ୍ୟାଳୟଗୁଡ଼ିକ ଯେଉଳି ଭାବେ ପରିଚାଳିତ ହେଉଛି ତାହାର ଗଠନଶୈଳୀରେ ଗଭୀର ପରିବର୍ତ୍ତନ ଅଣା ନଗଲେ ପ୍ରଗତିର ଆଶା ଅତ୍ୟନ୍ତ କ୍ଷୀଣ ବୋଲି ପ୍ରତୀୟମାନ ହୁଏ । ଏକ ଅତିରିକ୍ତ ଚ୍ୟାଲେଞ୍ଜ ହେଲା କେତେକ ରାଜ୍ୟସ୍ତରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଆବଶ୍ୟକୀୟ ଉତ୍କର୍ଷ ସାଧନ କରାଯାଇ ସେଗୁଡ଼ିକୁ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟରେ ମଧ୍ୟ ରୂପାନ୍ତରିତ କରାଯାଇପାରିବ । ଏହା ଏକ ଅତ୍ୟନ୍ତ କଠିନ ବ୍ୟାପାର କାରଣ ସ୍ୱଚ୍ଛ କେତେକ ପ୍ରତିଷ୍ଠାନକୁ ଛାଡ଼ିଦେଲେ ଏଗୁଡ଼ିକ ପ୍ରାୟ ମଧ୍ୟମ ଧରଣର ଗୁଣଯୁକ୍ତ ପ୍ରତିଷ୍ଠାନ ହୋଇଥାନ୍ତି ଏବଂ ଦିନ ରାତି ୨୪ ଘଣ୍ଟା ଅମଲାତନ୍ତ୍ରର ମାୟା ମରୀଚିକା ମଧ୍ୟରେ ଘାଣ୍ଟିଚକଟି ହେଉଥାନ୍ତି । ଫଳତଃ ସେମାନେ କୌଣସି ପରିବର୍ତ୍ତନକୁ ଆଦର ଓ ଆଗ୍ରହର ସହ ବରଣ କରିପାରିନଥାନ୍ତି ଏବଂ ବିକାଶର ପଥ ପ୍ରତିରୋଧ ହୋଇଥାଏ । ଠୁଳ ଠୁଳ ଅର୍ଥରାଶି ବିନିଯୋଗ କଲେ ମଧ୍ୟ ପରିସ୍ଥିତିରେ ସେପରି କିଛି କିଛି ଆଶାଜନକ ସଫଳତା ପରିଦର୍ଶିତ ହୋଇନଥାଏ ।

**ବହୁସ୍ତରରେ ଦୁର୍ନୀତି (Corruption at Many Levels)**

ଦେଶର ଉଚ୍ଚଶିକ୍ଷା ବ୍ୟବସ୍ଥାର ବହୁସ୍ତରରେ ଦୁର୍ନୀତିର ସୁଦୂରପ୍ରସାରୀ ଚେର କାହିଁ କେତେଆଡ଼େ ଲମ୍ବିଯାଇଛି ତାର ଇୟତ୍ତା ନାହିଁ । ଛାତ୍ରଛାତ୍ରୀଙ୍କ ନାମଲେଖା

ସମୟରେ ପ୍ରିୟା ପ୍ରୀତି ତୋଷଣ, ଅଧ୍ୟାପକମାନଙ୍କ ନିଯୁକ୍ତିରେ ସ୍ୱଚ୍ଛତାର ବହୁଳ ଅଭାବ, ପରୀକ୍ଷାରେ ପ୍ରବଞ୍ଚନା, ତାଲିମ୍ ଓ ପ୍ରଶିକ୍ଷଣ ପ୍ରକ୍ରିୟାରେ ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ତାରତମ୍ୟ ସୃଷ୍ଟି ଆଦି ବହୁବିଧ କ୍ଷେତ୍ରରେ ଦୁର୍ନୀତି ଶିକ୍ଷା ବ୍ୟବସ୍ଥାକୁ ଗୋଟାପଣେ ଗ୍ରାସ କରିରଖିଛି । ଆଉ ସବୁଠୁଁ ବଡ଼ କଥାଟି ହେଲା ଦୁର୍ନୀତି ଗବେଷଣା ସଂସ୍କୃତିକୁ ଖାଇ ଧ୍ୱଂସ କରିଦେଇଥାଏ ଏବଂ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ଏହା ଏକ ମସ୍ତବଡ଼ ପ୍ରତିବନ୍ଧକ ଭାବେ ଦଣ୍ଡାୟମାନ ହୋଇଥାଏ ।

**ସବୁସ୍ତରରେ ଶ୍ରେଷ୍ଠତାର ପ୍ରତିପାଦନ (Meritocracy at all Levels)**

ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ଗଭୀରଭାବେ ସବୁସ୍ତରରେ ଯୋଗ୍ୟତା, ଉତ୍କର୍ଷତା, ଶ୍ରେଷ୍ଠତା ଓ ଗୁଣବତ୍ତାକୁ ଉପଯୁକ୍ତ ପ୍ରାଧାନ୍ୟ ଦେଇଥାଆନ୍ତି । ସେମାନେ ରାଷ୍ଟ୍ରର ସର୍ବୋତ୍ତମ ପ୍ରଫେସର, ସର୍ବଶ୍ରେଷ୍ଠ ମେଧାବୀ, ବୁଦ୍ଧିମାନ, ଚତୁର, ଗୁଣୀ ଓ ଜ୍ଞାନୀ ଛାତ୍ରମାନଙ୍କୁ ବିଶ୍ୱବିଦ୍ୟାଳୟରେ ଗ୍ରହଣ କରିଥାଆନ୍ତି । ସେମାନେ ଅତ୍ୟନ୍ତ ଦିପ୍ତୀମାନ ତଥା ଉତ୍କୃଷ୍ଟତମ ଶିକ୍ଷାଗତ ଯୋଗ୍ୟତା ସମ୍ପନ୍ନ ଅଧ୍ୟାପକମାନଙ୍କୁ ନିଯୁକ୍ତି ଦେଇଥାନ୍ତି ଓ ସେମାନଙ୍କୁ ସେମାନଙ୍କର ଗବେଷଣା ଉପଲବ୍ଧି ପାଇଁ ମଧ୍ୟ ପୁରସ୍କୃତ କରିଥାଆନ୍ତି । ଏହି ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ମାନଙ୍କରେ ସବୁକିଛି ନିର୍ଣ୍ଣୟ ଗୁଣାତ୍ମକ ମୂଲ୍ୟବୋଧ ଭିତ୍ତିରେ ହିଁ ନିଆଯାଇଥାଏ । ସେମାନେ ଭାବଚୌର୍ଯ୍ୟ ପ୍ରବୃତ୍ତିକୁ ସର୍ବାଦୌ ବର୍ଜନ କରିଥାଆନ୍ତି ଏବଂ ସେଥିପାଇଁ ଉପଯୁକ୍ତ ଦଣ୍ଡବିଧାନ ମଧ୍ୟ କରିଥାଆନ୍ତି । କୌଣସି ନିଯୁକ୍ତିରେ ପ୍ରିୟା ପ୍ରୀତି ତୋଷଣ ସର୍ବଦା ବର୍ଜନୀୟ ଓ ନିନ୍ଦନୀୟ ହୋଇଥାଏ । ଦୁର୍ନୀତିକୁ ସେଠାରେ କେହି ଘଣ୍ଟ ଘୋଡ଼ାନ୍ତି ନାହିଁ ଏବଂ ଏହା ସର୍ବମୁଖରେ ତିରସ୍କୃତ ହୋଇଥାଏ । ଦୁର୍ଭାଗ୍ୟବଶତଃ ଭାରତୀୟ ଉଚ୍ଚଶିକ୍ଷା ବ୍ୟବସ୍ଥାରେ ପ୍ରାୟ ଏଭଳି ଉଚ୍ଚମାନ ଯୁକ୍ତ ମୂଲ୍ୟବୋଧ ଭିତ୍ତିକ କାର୍ଯ୍ୟକଳାପ ପରିଲକ୍ଷିତ ହୋଇନଥାଏ । ଅନୁସୂଚୀତ ଜାତି, ଅନୁସୂଚୀତ ଉପଜାତି ଓ ଅନ୍ୟ ପଛୁଆବର୍ଗ ଶ୍ରେଣୀରୁ ୪୯ ପ୍ରତିଶତ କୋଟା ଭିତ୍ତିରେ ଅଧ୍ୟାପକ ନିଯୁକ୍ତି ଓ ଛାତ୍ର ଛାତ୍ରୀ ଅଧିଗ୍ରହଣ ପ୍ରକ୍ରିୟା ଯଦିଓ ନିଶ୍ଚିତ ରୂପେ ଏକ ମହତ ଚିନ୍ତାଧାରା ଓ ଯୁଗାନ୍ତକାରୀ ପଦକ୍ଷେପ କିନ୍ତୁ ଏହା ଯୋଗ୍ୟତା ଓ ଗୁଣାତ୍ମକମାନ ଉପରେ ଏକ ଗଭୀର ପ୍ରଶ୍ନବାଚୀ ଲଗାଇ ଦେଇଥାଏ । ଭାରତୀୟ ସମାଜ ବ୍ୟବସ୍ଥା ଓ ରାଜନୈତିକ ପୃଷ୍ଠଭୂମିରେ ଏଭଳି ମହତ ପଦକ୍ଷେପ ଯଦିଓ ଯଥାର୍ଥ ଓ ସର୍ବଜନସମ୍ମତ ହେଲେ ଏକ ଫଳପ୍ରସୂ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପାଇଁ

ଗୁଣାତ୍ମକ ମୂଲ୍ୟବୋଧଭିତ୍ତିକ ଅଧ୍ୟାପକ ନିଯୁକ୍ତି ପ୍ରକ୍ରିୟା ଓ ଛାତ୍ରଛାତ୍ରୀ ଅଧିଗ୍ରହଣ ମୌଳିକ ପ୍ରେରଣାଦାୟକ ନୀତି ହେବା ଏକାନ୍ତ ବାଞ୍ଛନୀୟ ।

## ଗବେଷଣାର ଭୂମିକା (Role of Research)

ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଗବେଷଣା ଅଭିପ୍ରାୟଧର୍ମୀ ହୋଇଥାନ୍ତି । ପୃଥିବୀର ସମସ୍ତ ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଏହି ଚରିତ୍ର ପ୍ରତିପାଦନ କରିଥାଆନ୍ତି । ଏକ ଗବେଷଣା ସଂସ୍କୃତିର ବିକାଶରେ ଭାରତ ବହୁ ସମସ୍ୟାର ସମ୍ମୁଖିନ ହେଉଛି । ଏହା ଏକ ନିଛକ ସତକଥା ଯେ ଆଜି କୌଣସି ଭାରତୀୟ ବିଶ୍ୱବିଦ୍ୟାଳୟ ନିଜକୁ ଏକ ଉତ୍କୃଷ୍ଟତମ ଗବେଷଣା ଅଭିପ୍ରାୟଧର୍ମୀ ପ୍ରତିଷ୍ଠାନ ଭାବେ ଗଢ଼ିତୋଳି ପାରିନାହିଁ । ହଁ, ଅଳ୍ପକେତେକ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ଖୁବ୍ କମ୍ ବିଭାଗରେ ଅତ୍ୟନ୍ତ ଉଚ୍ଚକୋଟୀର ଗବେଷଣା ହେଉଛି ବୋଲି ସେମାନେ ଦାବୀ କରିପାରନ୍ତି ଏବଂ ସେଠାରେ ଅତ୍ୟନ୍ତ ବିଜ୍ଞ ଓ ଅଭିଜ୍ଞ ଅଧ୍ୟାପକମାନେ ଗବେଷକରୂପେ ନିୟୋଜିତ ଅଛନ୍ତି । ବିଶ୍ୱବିଦ୍ୟାଳୟ ପରିସର ବାହାରେ ଥିବା କେତେକ ପଥିତଯଶା ବୈଜ୍ଞାନିକ ଅନୁଷ୍ଠାନ ଯଥା – ଭାରତୀୟ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ, ଟାଟା ମୌଳିକ ଗବେଷଣା ପ୍ରତିଷ୍ଠାନ ଏବଂ ସର୍ବଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନମାନଙ୍କରେ ଅତ୍ୟନ୍ତ ଉଚ୍ଚକୋଟୀର ଗବେଷଣା ସଂଗଠିତ ହୋଇଥାଏ ଯାହାକି ଆନ୍ତର୍ଜାତିକ ସ୍ତରରେ ବେଶ୍ ପ୍ରଶଂସିତ ଓ ସମ୍ମାନୀତ ହୋଇପାରିଛି । ଗବେଷଣା ଅଭିପ୍ରାୟଧର୍ମୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବାଧତାମୂଳକ ହେଲେ ହିଁ ଭାରତ ବିଶ୍ୱସ୍ତରୀୟ ପ୍ରାଧାନ୍ୟ ଓ ମାନ୍ୟତା ଲାଭ କରିପାରିବ ।

## ପୁଞ୍ଜିବିନିଯୋଗ (Resources)

ଦେଶରେ ୧୨ଟି ନୂତନ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ୩୨୮୦ କୋଟି ଟଙ୍କାର ପୁଞ୍ଜି ବିନିଯୋଗ ତଥା ଆନୁସଙ୍ଗିକ ପ୍ରକଳ୍ପ ପାଇଁ ଘୋଷଣା କରାଯାଇଥିବା ଅତିରିକ୍ତ ପୁଞ୍ଜିରାଶି ନିଶ୍ଚିତ ରୂପେ ଏକ ବିରାଟ ଅର୍ଥ ଯୋଜନା । ପ୍ରକୃତରେ ଦେଖିବାକୁ ଗଲେ ଏହି ଅର୍ଥରାଶି ଆବଶ୍ୟକତା ଠାରୁ ଅତ୍ୟନ୍ତ କମ୍ ଅଟେ । ଆର୍ନ୍ତଜାତୀକ ବିଶ୍ୱବିଦ୍ୟାଳୟମାନଙ୍କ ଲିଗ୍‌ରେ ନିଜକୁ ସାମିଲ୍ କରାଇ ପାରୁଥିବା ଏକ ବିଶ୍ୱସ୍ତରୀୟ ଗବେଷଣା ଅଭିପ୍ରାୟଧର୍ମୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ଓ ଏହାର ସ୍ଥିତି ଓ ଗୌରବ ବଜାଇ ରଖିବା ନିଶ୍ଚିତ ରୂପେ ଏକ ବ୍ୟୟ ବହୁଳ ଉଦ୍ୟୋଗ । ଉଦାହରଣ ସ୍ୱରୂପ ଏକ ବିଶାଳ ଗବେଷଣା ଅଭିପ୍ରାୟଧର୍ମୀ ନୂତନ ଚାଇନିଜ୍ ବିଶ୍ୱବିଦ୍ୟାଳୟର ନିର୍ମାଣ

ପାଇଁ ପ୍ରାୟ ୭୦୦ ମିଲିୟନ ଡଲାରର ଅର୍ଥରାଶି ଆବଶ୍ୟକ ପଡୁଥିବା ବେଳେ ଏହାର ମୋଟ୍ ବାର୍ଷିକ ବଜେଟ୍ ପରିମାଣ ପ୍ରାୟ ୪୦୦ ମିଲିୟନ ଡଲାର ହୋଇଥାଏ ।

**ଉପସଂହାର (Conclusion)**

ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଆମ ଆଗରେ ଉଭାହୋଇଥିବା ଅଗଣିତ ଚ୍ୟାଲେଞ୍ଜକୁ ଲକ୍ଷ୍ୟ କଲେ ଆମକୁ ଅତ୍ୟନ୍ତ ହତୋତ୍ସାହ ହେବାକୁ ପଡ଼ିଥାଏ । ଜ୍ଞାନାଶ୍ରୟୀ ଅର୍ଥନୀତିକୁ ଭିତ୍ତିକରି ଭାରତ ଯଦି ଏକ ବିଶାଳ ଟେକ୍ନୋଲୋଜିକାଲ୍ ସୁପରପାୱାର ଭାବେ ବିଶ୍ୱବୁକୁରେ ଦଣ୍ଡାୟମାନ ହେବ ତେବେ ଦେଶରେ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଏକାନ୍ତ ଅପରିହାର୍ଯ୍ୟ । ପ୍ରଥମ ପଦକ୍ଷେପଟି ହେବ ସମସ୍ୟାଗୁଡ଼ିକର ତନ୍ନ ତନ୍ନ ବିଶ୍ଳେଷଣ ଓ ଏହାର ଏକ ବାସ୍ତବ ସମାଧାନର ପଥ ଉନ୍ମୋଚନ । କେବଳ ଅଜସ୍ର ଅର୍ଥରାଶିର ବିନିଯୋଗ କିଛି ସୁଫଳ ପ୍ରଦାନ କରିବ ନାହିଁ । ଅପରପକ୍ଷରେ ଆମେରିକୀୟ ଏକାଡ଼େମୀକ୍ ମଡ଼େଲ୍‌କୁ କପି କଲେ ମଧ ଏହା ଦେଶରେ ଫଳପ୍ରସୂ ହେବ ନାହିଁ । ନିଜର ଏକ ସ୍ୱତନ୍ତ୍ର ଓ ରାଷ୍ଟ୍ରଧର୍ମୀ ଏକାଡ଼େମୀକ୍ ମଡ଼େଲ୍ ହିଁ ଭାରତବର୍ଷକୁ ଏ ଦିଗରେ ଅତ୍ୟନ୍ତ ସହାୟକ ହେବ ।

ସମାଜ : ୦୨.୦୮.୨୦୦୯

ବର୍ତ୍ତିକା (ପୂଜା ବିଶେଷାଙ୍କ) : ୨୦୦୯



# ବିପଦରେ ବିଜ୍ଞାନ

ଜାତୀୟ ସ୍ତରରେ ରାଜନୈତିକ ଦୃଶ୍ୟପଟରେ ପରିବର୍ତ୍ତନ ପରିପ୍ରେକ୍ଷୀରେ ଭାରତୀୟ ବିଜ୍ଞାନର ସାଂପ୍ରତିକ ରୂପରେଖ ସଂପର୍କରେ ଅନୁଶୀଳନ ଓ ଅନୁଧ୍ୟାନ କରିବା ଦୁଇଟି କାରଣ ପାଇଁ ପ୍ରଯୁଜ୍ୟ ମନେ ହୁଏ । ପ୍ରଥମତଃ ଅର୍ଥନୈତିକ ଅଭିବୃଦ୍ଧିର ହାରରେ କ୍ରମାଗତ ଉନ୍ନତି ଆଣିବା ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବା ଆଜି ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ଏହା ସମ୍ଭବ ହେବ ସେତିକି ବେଳେ ଯେତେବେଳେ ରାଷ୍ଟ୍ରର ବୈଷୟିକ ଜ୍ଞାନ ସମ୍ପତ୍ତି ଓ ଦକ୍ଷତା ସହ ଅଭିବୃଦ୍ଧିକୁ ଠିକ୍ ଭାବେ ସଂଯୋଗ କରାଯାଇପାରିବ । ଉଭୟଙ୍କ ମଧ୍ୟରେ ଏକ ସଫଳ ସଂଯୋଜନ ପ୍ରକ୍ରିୟାକୁ କାର୍ଯ୍ୟକାରୀ କରାଯାଇପାରିଲେ ବୈଜ୍ଞାନିକ ଅଭିବୃଦ୍ଧି ଓ ଅର୍ଥନୈତିକ ଅଭିବୃଦ୍ଧି ପ୍ରଗତିର ରେଳ ଧାରଣାରେ କ୍ଷିପ୍ରଗତିରେ ଗତିଶୀଳ ହୋଇପାରିବେ । କେନ୍ଦ୍ରରେ ଅଧିଷ୍ଠିତ ନୂଆ ସରକାର ଜାଣି ରଖିବା ଉଚିତ୍ ଯେ ଭାରତୀୟ ବିଜ୍ଞାନର ଅକଥନୀୟ ଦୁର୍ଦ୍ଦଶାରେ ପରିବର୍ତ୍ତନ ଆଣିବା ପାଇଁ ସର୍ବସାଧାରଣ ଜନତାଙ୍କ ସହଯୋଗ ଏକାନ୍ତ କାମ୍ୟ । ବିଜ୍ଞାନ ଜନାଭିମୁଖୀ ହେଲେ ହିଁ ଜନତାର ସେବାରେ ନିଜକୁ ନିୟୋଜିତ କରିପାରିବ । ବିଜ୍ଞାନର ମାନବୀୟ ରୂପ ହିଁ ବିଜ୍ଞାନକୁ ସମାଜ ଓ ସମାଜରେ ବସବାସ କରୁଥିବା ମଣିଷ ମାନଙ୍କ ନିକଟତର କରାଇପାରିବ । ପ୍ରଧାନମନ୍ତ୍ରୀଙ୍କ ବୈଜ୍ଞାନିକ ଉପଦେଷ୍ଟା କମିଟିର ମାନ୍ୟବର ଅଧ୍ୟକ୍ଷ ପ୍ରଫେସର ସି.ଏନ୍.ଆର୍. ରାଓ ସ୍ପଷ୍ଟ ଓ ମୁକ୍ତ କଣ୍ଠରେ କୁହନ୍ତି ଯେ ଅତ୍ୟନ୍ତ "ରୋଗାକ୍ରାନ୍ତ ଜରାଜୀର୍ଣ୍ଣ ଭାରତୀୟ ବିଜ୍ଞାନର ମୃତ୍ୟୁ ଘଣ୍ଟା ଠଣ ଠଣ ହୋଇ ବାଜି ଉଠିଲାଣି ଓ ଶ୍ମଶାନକୁ ଯିବା ପାଇଁ ଯାହା ଖାଲି କୋକେଇ ସଜା ବାକି ।" ପ୍ରଗତିର ରେଳ ଧାରଣାରେ ବିକାଶ ଓ ଅଭିବୃଦ୍ଧିକୁ ଆଣି ଦଣ୍ଡାୟମାନ କରାଇବାକୁ ହେଲେ ଜନସାଧାରଣଙ୍କ ସମର୍ଥନ ଓ ସହଯୋଗ ଏକାନ୍ତ କାମ୍ୟ । ଆମର ଯାହା କିଛି ବି ଗବେଷଣା, ଯାହା କିଛି ବି ବିଜ୍ଞାନ ସବୁତ ସମାଜର ଅଭିବୃଦ୍ଧି ପାଇଁ ତଥା ସମାଜରେ ବସବାସ କରୁଥିବା ଅଗଣିତ ମଣିଷଙ୍କ ମୁହଁରେ ଟିକେ ହସ ଫୁଟେଇବା ପାଇଁ । ମୃତ୍ୟୁ ଶଯ୍ୟାରେ ଶାୟୀତ ଭାରତୀୟ ବିଜ୍ଞାନକୁ ପୂର୍ନଜନ୍ମ ଦେବାକୁ ହେଲେ ଗଭୀର ବୈଜ୍ଞାନିକ ଅନୁଶୀଳନ ଓ ମାନସ ମନ୍ଥନର ଆବଶ୍ୟକତା ରହିଛି ଓ ନୂଆ ସରକାରଙ୍କୁ ଏ ନେଇ ଗଭୀର ମନନ, ଚିନ୍ତନ ଓ ପଦକ୍ଷେପ ନେବା ଆବଶ୍ୟକ ।

ଅଭିବୃଦ୍ଧିର ଦୁଇଟି ସମାନ୍ତରାଳ ଧାରା ହେଲା ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା । ଅଭିବୃଦ୍ଧିର "ପ୍ରଯୁକ୍ତି ବିଦ୍ୟା" ଅଂଶ ଠାରୁ ସମାଜ ଓ ଜନସାଧାରଣ ବହୁତ କିଛି ଆଶା ରଖିଥାଏ । ସାମାଜିକ ଆଶା ଆକାଂକ୍ଷା ପୂରଣ କରିବାରେ ପ୍ରଯୁକ୍ତିବିଦ୍ୟାର ଭୂମିକା ଅନନ୍ୟ ସାଧାରଣ । ମୁଖ୍ୟତଃ ତିନୋଟି ଦିଗ ଏଥିରେ ଗୁରୁତ୍ୱପୂର୍ଣ୍ଣ । ଜୀବନ ଧାରଣର ମାନରେ କ୍ରମାଗତ ଅଭିବୃଦ୍ଧି, ରାଷ୍ଟ୍ରୀୟ ସୁରକ୍ଷା କ୍ଷେତ୍ରରେ ଅହେତୁକ ଦକ୍ଷତା ପ୍ରଦର୍ଶନ ତଥା ଶିଳ୍ପ ଗବେଷଣା ଓ ବିକାଶ କାର୍ଯ୍ୟକ୍ରମ ପ୍ରତିଯୋଗିତା ମୂଳକ ପ୍ରଯୁକ୍ତିବିଦ୍ୟାର ଉଦ୍ଭାବନ ପାଇଁ ସୁଗମ ପଥର ଉନ୍ମୋଚନ ଯାହାକି ଜାତୀୟ ଅର୍ଥନୀତିକୁ ବହୁଳଭାବେ ପ୍ରଭାବିତ କରିଥାଏ । ସାମାଜିକ ପ୍ରତିବଦ୍ଧତା ପୂରଣ କରିବାରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଏପରି ଯୁଗାନ୍ତକାରୀ ପଦକ୍ଷେପ ରାଷ୍ଟ୍ରୀୟ ଅଭ୍ୟୁଦୟରେ ଯେ ନିରନ୍ତର ସହାୟକ ହେବ - ଏହା ନିଶ୍ଚିତ ସତ୍ୟ ।

ଅପରପକ୍ଷରେ ଅଭିବୃଦ୍ଧିର "ବିଜ୍ଞାନ" ଅଂଶଟି ଜ୍ଞାନର ଜନ୍ମ, ବିକାଶ ଓ ଅଭ୍ୟୁଦୟ ସହ ଓତପ୍ରୋତଃ ଭାବେ ଜଡ଼ିତ ଏବଂ ଏହା ପ୍ରଯୁକ୍ତିବିଦ୍ୟାରୁ ଉପଲବ୍ଧ ହେଉଥିବା ସୁଫଳକୁ ଆବୋରି ନେବା ସଙ୍ଗେ ସଙ୍ଗେ ତାର ଅନ୍ତଃକରଣକୁ ଗ୍ରହଣ କରି ତାର ପୁନଃ ବିକାଶରେ ମନୋନିବେଶ କରିଥାଏ ।

ଭାରତବର୍ଷରେ ୮୦ ଦଶକର ମଧ୍ୟଭାଗ ପର୍ଯ୍ୟନ୍ତ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାଠାରୁ ସାମାଜିକ ପ୍ରତିବଦ୍ଧତାର ଦାୟୀତ୍ୱବୋଧତା ହାସଲ କରିବା କାର୍ଯ୍ୟକ୍ରମଟି ପ୍ରାୟ ସମ୍ପୂର୍ଣ୍ଣ ଭାବେ ସରକାରୀ ଏଜେନ୍ସୀ ମାନଙ୍କ କାନ୍ଧରେ ପଡ଼ି ରହିଥିଲା । ଯୋଜନାବଦ୍ଧ ଓ ସୁରକ୍ଷିତ ଅର୍ଥନୀତିର ଚାରିକାନ୍ଥ ଭିତରେ ରହି ଏହି ସରକାରୀ ଏଜେନ୍ସୀ ଗୁଡ଼ିକ ସେମାନଙ୍କର କାର୍ଯ୍ୟକ୍ରମକୁ ଉତ୍ତମ ଭାବେ ସଂପାଦନ କରୁଥିଲେ ଏବଂ ବେଳେ ବେଳେ ମଧ୍ୟ ଅତ୍ୟନ୍ତ ପ୍ରଶଂସାଭାଜନ ହେଉଥିଲେ । ପାରମାଣବିକ ଓ ମହାକାଶ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ କ୍ରମାଗତ ଅହେତୁକ ଦକ୍ଷତା ପ୍ରତିପାଦନ, ୧୯୭୦-୧୯୮୦ ମସିହା ମଧ୍ୟରେ ସବୁଜ ବିପ୍ଳବ ମାଧ୍ୟମରେ କୃଷି ଉତ୍ପାଦନ କ୍ଷେତ୍ରରେ ନିରନ୍ତର ଅଭିବୃଦ୍ଧି ଓ ରାଷ୍ଟ୍ରୀୟ ସଫଳତାର ବଳିଷ୍ଠ ପ୍ରତିପାଦନ ତଥା ଫାର୍ମାସିୟୁଟିକାଲ୍ କ୍ଷେତ୍ରରେ ଉଚ୍ଚମାନର ଗବେଷଣା ଯୋଗୁ ଅତି ଶସ୍ତାରେ ଉପଲବ୍ଧ ଔଷଧ ପତ୍ର ଭାରତୀୟ ଗୁଣ ଗାରୀମାର ସ୍ୱର୍ଣ୍ଣାଦିତ୍ୟ ସଫଳ କାହାଣୀ ବର୍ଣ୍ଣନା କରିଥାଏ ।

ଏ ସମସ୍ତ ସଫଳତାର ମୂଳ ଉତ୍ସ ଖୋଜି ବାହାର କରିବା କିଛି କଷ୍ଟକର ବ୍ୟାପାର ନୁହେଁ । ଷ୍ଟ୍ରାଟେଜିକ୍ ସେକ୍ଟର ତଥା ସବୁଜ ବିପ୍ଳବ କ୍ଷେତ୍ରରେ ମଧ୍ୟ ରାଷ୍ଟ୍ର

ଏକ ଦୀର୍ଘକାଳୀନ ଲକ୍ଷ୍ୟ ନିର୍ଣ୍ଣୟ କରିବା ସଂଗେ ସଂଗେ ତଦନୁଯାୟୀ ଯୋଜନା ପ୍ରଣୟନ ପୂର୍ବକ ପ୍ରତିବଦ୍ଧତା ସହ ପ୍ରଗତି ପଥର ଯାତ୍ରୀ ହୋଇଥିଲା ଓ ଗନ୍ତବ୍ୟ ସ୍ଥଳରେ ମଧ୍ୟ ଠିକ୍‌ଭାବେ ପହଞ୍ଚି ପାରିଥିଲା । ଦକ୍ଷ ବୈଜ୍ଞାନିକ ମଣ୍ଡଳୀ, ଇଂଜିନିୟର ଓ ପ୍ରଶାସକମାନଙ୍କ ଏକ ସୁଯୋଗ୍ୟ ଗୋଷ୍ଠୀ ଗଠନ କରି ରାଷ୍ଟ୍ର ସେମାନଙ୍କୁ ଏକ ଉତ୍ତମ କର୍ମପ୍ରବଣ ବାତାବରଣ ପ୍ରଦାନ ପୂର୍ବକ ରାଷ୍ଟ୍ରନିର୍ମାଣ ଯଜ୍ଞରେ ସେମାନଙ୍କୁ ସୁବିନିଯୋଗ କଲା । ଯଜ୍ଞରୁ ମନୋବାଞ୍ଛିତ ଫଳ ଲାଭ କରିବା ପାଇଁ ରାଷ୍ଟ୍ର ଅତ୍ୟନ୍ତ ଧୈର୍ଯ୍ୟ ଓ ନିଷ୍ଠାବାନ ହୋଇ ଦିନପରେ ଦିନ ଅପେକ୍ଷା କଲା ଓ ନିରନ୍ତର ପ୍ରଚେଷ୍ଟା ମାଧ୍ୟମରେ ରାଷ୍ଟ୍ର ନିର୍ମାଣ ପ୍ରକ୍ରିୟାକୁ ପରିଚାଳିତ କରି ତହିଁରେ ନିଜର ମାଲିକାନାସ୍ୱତ୍ୱ ମଧ୍ୟ ଜାହିର କଲା । ଫାର୍ମାସିୟୁଟିକାଲ୍ ସେକ୍ଟରରେ ପେଟେଣ୍ଟ ନୀତିନିୟମର ପରିସୀମା ଭିତରେ ରହି ଘରୋଇ ଉଦ୍ୟୋଗମାନେ ନାନାଦି ଔଷଧ ପତ୍ର ସବୁ ପ୍ରସ୍ତୁତ କଲେ ଏବଂ ବିଜ୍ଞାନର ଦକ୍ଷତାକୁ ସୁବିନିଯୋଗ କରି ଏହାର ମୂଲ୍ୟରେ ମଧ୍ୟ କ୍ରମାଗତ ହ୍ରାସ ଘଟାଇଲେ । ତେଣୁ ସେମାନେ ଲାଭବାନ ହୋଇ ସେମାନଙ୍କର ଉଦ୍ୟୋଗକୁ ବ୍ୟବସାୟୀକ ସଫଳତା ପ୍ରଦାନ କଲେ । ଫଳତଃ ସରକାରୀ ବିଜ୍ଞାନାଗାର ଗୁଡ଼ିକ ସହ ସେମାନଙ୍କର ବାହାରେ ପ୍ରତିଯୋଗିତା ଲାଗି ରହିଲା ଓ ଉଭୟ ଘରୋଇ ଓ ସରକାରୀ ପ୍ରତିଷ୍ଠାନ ଗୁଡ଼ିକ ଫଳପ୍ରଦ ପ୍ରତିଷ୍ଠାନ ଭାବେ ମୁଣ୍ଡଟେକି ତିଷ୍ଠି ରହିଲେ ।

ରାଷ୍ଟ୍ର ତାର ବିଶାଳ ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ସୃଷ୍ଟି କରୁଥିବା କୁଶଳୀ ମାନବ ସମ୍ବଳକୁ ଆଧାର କରି ବିଭିନ୍ନ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଗୁଡ଼ିକ ସମାଜରେ ନିଜ ନିଜର ପରାକାଷ୍ଠା ପ୍ରତିପାଦିତ କରୁଥିଲେ ମଧ୍ୟ ଏହି ପ୍ରତିଷ୍ଠାନ ଗୁଡ଼ିକ ପ୍ରକୃତରେ ସେମାନଙ୍କୁ ଅଣଦେଖା କରିଥାନ୍ତି । ମୌଳିକ ବିଜ୍ଞାନ କ୍ଷେତ୍ରରେ ଗୁଣାତ୍ମକ ମାନଯୁକ୍ତ ଉଚ୍ଚତର ଶିକ୍ଷା ଯାହାକି ପ୍ରଯୁକ୍ତିବିଦ୍ୟାର ବିକାଶ ପାଇଁ ପରମ ଆୟୁଧ ଭାବେ ପରିଗଣିତ ହୋଇଥାଏ ତାହା ମଧ୍ୟ କ୍ରମାଗତ ଭାବେ ଅସଫଳତାକୁ ବହୁ ସ୍ୱାଦ ଚାଖିଲା । ପରନ୍ତୁ ଦେଶରକ୍ଷା, ବେସାମରୀକ କ୍ଷେତ୍ର ଏବଂ ବହୁଳ ପ୍ରଚାରିତ ଓ ପ୍ରସାରିତ ସୂଚନା ପ୍ରଯୁକ୍ତିବିଦ୍ୟା ଆଦି ଆବଶ୍ୟକ କରୁଥିବା ଗୁଣାତ୍ମକ ମାନବ ସମ୍ବଳକୁ ଆମର ପ୍ରଚଳିତ ମୌଳିକ ଶିକ୍ଷାବ୍ୟବସ୍ଥା ମେଣ୍ଟେଇ ପାରିଲା । ଏହା ଅତ୍ୟନ୍ତ ଅଗ୍ରହର କଥା ଯେ ଘରୋଇ ପ୍ରତିଷ୍ଠାନମାନଙ୍କରେ କର୍ମରତ ଅନେକ ଉଚ୍ଚପଦାଧିକାରୀ ମୌଳିକ ବିଜ୍ଞାନରେ ଡିଗ୍ରୀ ହାସଲ କରିଛନ୍ତି ଏବଂ ସରକାରୀ ନିୟନ୍ତ୍ରଣାଧିନ ପ୍ରତିଷ୍ଠାନ ମାନଙ୍କରୁ ପରିଚାଳନା ବିଜ୍ଞାନର ଗୁଣାତ୍ମକ କଳାଟିକକ ଆହରଣ କରିଛନ୍ତି ।

ଜଗତୀକରଣ ଏବଂ ଶୀତଳଯୁଦ୍ଧର ଅବସାନ ସବୁକିଛି ଓଲଟ ପାଲଟ କରି ଦେଲା । ଜଗତୀକରଣ ପ୍ରକ୍ରିୟାର ଏକ ପ୍ରମୁଖ ପରିପ୍ରକାଶ ହେଲା - ଗ୍ଲୋବାଲ୍ କ୍ୟାପିଟାଲ୍ ବା ବିଶ୍ୱ ବିତ୍ତୀୟ ଧାରାର ମହାପରାକ୍ରମ ପଦର୍ଶନ ଏବଂ ଅର୍ଥନୈତିକ ବ୍ୟାପାରରେ ରାଷ୍ଟ୍ରଗୁଡ଼ିକର ପ୍ରଭାବରେ କ୍ରମାଗତ ହ୍ରାସ । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଆଉ ଯେଉଁ ସବୁ ପରିବର୍ତ୍ତନ ପରିଲକ୍ଷିତ ହେଲା ତାହା ହେଲା ପେଟେଣ୍ଟ ନୀତିନିୟମ ଓ ଆମଦାନୀ ଶୁଳ୍କରେ ହ୍ରାସ ଇତ୍ୟାଦି, ଯାହାକି ପ୍ରଯୁକ୍ତି ବିଦ୍ୟା ସମ୍ବନ୍ଧ ଆନ୍ତର୍ଜାତିକ ପ୍ରତିଯୋଗିତାର ଏକ ଅନନ୍ୟ ପରିପ୍ରକାଶ ଅଟେ ।

ଭାରତୀୟ କମ୍ପାନୀମାନେ କ୍ରମାଗତ ଭାବେ ଗବେଷଣା ଓ ଉନ୍ନୟନ ଉପରେ ପ୍ରାଧାନ୍ୟ ପ୍ରଦାନ କରି ନିଜକୁ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ବଳିଷ୍ଠ ପ୍ରତିଯୋଗୀ ଭାବେ ବିଶ୍ୱ ବୁକୁରେ ସାବ୍ୟସ୍ତ କରିବାକୁ ଦୃଢ଼ ଚେଷ୍ଟିତ ଅଛନ୍ତି । ଏହା ଦକ୍ଷ ବୈଷୟିକ ମାନବ ସମ୍ବଳର ଚାହିଦାକୁ ବହୁଗୁଣରେ ବୃଦ୍ଧି କରାଇଛି । ପରନ୍ତୁ ଦକ୍ଷ ମାନବ ସମ୍ବଳର ସୃଷ୍ଟି ଓ ଯୋଗାଣ ଚାହିଦା ତୁଳନାରେ ଯଥେଷ୍ଟ କମ ଏବଂ ଦକ୍ଷତାର ସ୍ତର ମଧ୍ୟ ଅତ୍ୟନ୍ତ ନିମ୍ନମାନର ଅଟେ । ଯୁବଶକ୍ତିର ଆଶା, ଆକାଂକ୍ଷା ଓ ସ୍ୱପ୍ନରେ ଦ୍ରୁତ ପରିବର୍ତ୍ତନ ଏବଂ ଅନ୍ୟାନ୍ୟ ଚାକିରୀ ବାକିରୀ ପାଇଁ ଅଜସ୍ର ସୁଯୋଗ ଓ ସମ୍ଭାବନାର ସିଂହଦ୍ୱାର ଉନ୍‌ମୋଚନ ସମସ୍ୟାର ଜଟିଳତାକୁ ଆହୁରି ଅଧିକ ଜଟିଳତର କରି ଗଢ଼ି ତୋଳିଛି ।

ବିଜ୍ଞାନକୁ ନିଜର କ୍ୟାରିୟର ଭାବେ ଗ୍ରହଣ କରିବା ପାଇଁ ଆଜିର ଛାତ୍ର ସମାଜ ସମ୍ପୂର୍ଣ୍ଣ ଭାବେ ବିତସ୍ପୃହ ହେଉଛନ୍ତି । ବିଜ୍ଞାନକୁ ସେମାନେ ସାତ ପର ବୋଲି ମଣୁଛନ୍ତି ଓ ନିଜର ଜୀବନ ଜୀବିକା ନିର୍ବାହରେ ବିଜ୍ଞାନ କୌଣସି ମତେ ତାଙ୍କର ସାହାଯ୍ୟ କରିପାରିବ ନାହିଁ ବୋଲି ସେମାନେ ଦୃଢ଼ ନିଶ୍ଚିତ ହୋଇଯାଉଛନ୍ତି । ସାମ୍ପ୍ରତିକ ସମାଜ ବ୍ୟବସ୍ଥା, ଅର୍ଥନୈତିକ ଧାରା, ପାରିବାରିକ ଚାପ ଓ ସାଙ୍ଗସାଥିମାନଙ୍କ ପ୍ରରୋଚନା ଓ ପ୍ରଭାବ ଛାତ୍ର ସମାଜକୁ ବିଜ୍ଞାନ ଆଡୁ ଟାଣି ଆଣି ଅନ୍ୟ ରାସ୍ତାକୁ ଠେଲି ଦେଉଛି । ଅନ୍ୟ ରାସ୍ତା ଗୁଡ଼ିକ ଯଥା - ସୂଚନା ପ୍ରଯୁକ୍ତିବିଦ୍ୟା, ପରିଚାଳନା ଶିକ୍ଷା, ଇଂଜିନିୟରିଂ, ମେଡ଼ିକାଲ, କମ୍ପ୍ୟୁଟର ସାଇନ୍ସ ଓ ଟେକ୍ନୋଲୋଜି, ବ୍ୟାକିଂଙ୍ଗ ଆଦି ନାନାଦି ଶିକ୍ଷା ବ୍ୟବସ୍ଥା ଛାତ୍ରମାନଙ୍କ ମନକୁ ସମ୍ପୂର୍ଣ୍ଣ ଭାବେ କବଳିତ ରଖି ଦେଉଛି । ତେଣୁ ବିଜ୍ଞାନ ଓ ବୈଜ୍ଞାନିକ ଜୀବନ ଧାରା ସାବତ ପୁଅ ଭାଇ ପରି ସମାଜ ବ୍ୟବସ୍ଥାରୁ ଧିରେ ଧିରେ ବିଛିନ୍ନ ହୋଇଯାଉଛି । ଏ ସମସ୍ତ ସମସ୍ୟାକୁ ହୃଦୟଙ୍ଗମ କରି ପ୍ରଧାନମନ୍ତ୍ରୀ ଅର୍ଥନୀତିର ଯୋଗାଣ - ଚାହିଦା ସମସ୍ତର ମଡ଼େଲ (Supply Demand Equilibrium Model)

ଅନୁଯାୟୀ ଏକ ସୁନ୍ଦର ସମାଧାନର ସୂତ୍ର ନିର୍ଣ୍ଣୟ କରିଛନ୍ତି । ଯୋଗାଣ ପଟରେ ଦକ୍ଷ ବୈଜ୍ଞାନିକ ଓ ପ୍ରଯୁକ୍ତି ବିଦ୍ୟା ବିତ୍ ମାନଙ୍କ ସଂଖ୍ୟାରେ ଅଭିବୃଦ୍ଧି ପାଇଁ ରାଷ୍ଟ୍ର ଆବଶ୍ୟକୀୟ ପଦକ୍ଷେପ ନେବ ଏବଂ ଚାହିଦା ପଟରେ କେନ୍ଦ୍ର ସରକାର ପ୍ରଧାନମନ୍ତ୍ରୀଙ୍କ ତତ୍ତ୍ୱପୂର୍ଣ୍ଣ ବାଣୀ "ପ୍ରଯୁକ୍ତିବିଦ୍ୟା ଭିତ୍ତିକ ଦ୍ରୁତଶୀଳ ସର୍ବମୟ ଅଭିବୃଦ୍ଧି" (Technology - led accelerated inclusive growth) କୁ ବ୍ୟବହାର କରିବା ପାଇଁ ସବୁମନ୍ତେ ପ୍ରୋତ୍ସାହନ ପ୍ରଦାନ କରିବ । ଯେହେତୁ ଏ ସମସ୍ତ ବିଶେଷ କାର୍ଯ୍ୟକ୍ରମର ଫଳ ରୂପାୟନ ପାଇଁ ଯଥେଷ୍ଟ ଅଧିକ ସମ୍ବଳର ଆବଶ୍ୟକତା ରହିଛି ତେଣୁ ପ୍ରଧାନମନ୍ତ୍ରୀ ଘୋଷଣା କରିଛନ୍ତି ଯେ ଆଗାମୀ ବର୍ଷମାନଙ୍କରେ ବିଜ୍ଞାନ କ୍ଷେତ୍ରରେ ଅଧିକରୁ ଅଧିକ ପୁଞ୍ଜି ବିନିଯୋଗ ହେବ ଓ ଏଥିପାଇଁ ସେ ସବୁଜ ସଂକେତ ପ୍ରଦାନ କରିସାରିଛନ୍ତି ଓ ଏ କ୍ଷେତ୍ରରେ ପଛଘୁଞ୍ଚା ଦେବାର ଆଦୌ କୌଣସି ପ୍ରଶ୍ନ ଉଠୁନାହିଁ । ପ୍ରଧାନମନ୍ତ୍ରୀଙ୍କ ନିର୍ଭର ପ୍ରତିଶ୍ରୁତି ଓ କଠୋର କାର୍ଯ୍ୟକ୍ରମ ବିଜ୍ଞାନର ଚଲାପଥକୁ କୁସୁମିତ କରିବ ବୋଲି ସମସ୍ତେ ଆଶାବାଦୀ ଅଛନ୍ତି ଓ ଆଗାମୀ ଦିନରେ ଭାରତବର୍ଷର ବୈଜ୍ଞାନିକ ଆକାଶର ଆଭା ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଯେ ଆଲୋକିତ କରିବ - ଏହା ନିଶ୍ଚିତ ରୂପେ ଧ୍ରୁବ ସତ୍ୟ ।

ପରନ୍ତୁ ବିଜ୍ଞାନ ଓ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ବହୁଳ ପୁଞ୍ଜି ଲଗାଣ ସମସ୍ୟାର ମାତ୍ର ଗୋଟିଏ ଦିଗର କଥା ହିଁ କହିଥାଏ । ନିକଟ ଅତୀତର ପରିସଂଖ୍ୟାନ ଅଭିବ୍ୟକ୍ତ କରିଥାଏ ଯେ କେନ୍ଦ୍ର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟ ପାଖରେ ଥିବା ବଜେଟ୍ ଅର୍ଥରାଶିର ପ୍ରାୟ ଅର୍ଦ୍ଧେକ ପରିମାଣ ଏବେ ବି ସମ୍ପୂର୍ଣ୍ଣ ଭାବେ ଅଣ ବିନିଯୋଗ ହୋଇ ପଡ଼ି ରହିଛି । ପ୍ରକୃତରେ ଚ୍ୟାଲେଞ୍ଜଟି ହେଲା ଏହି ଉପଲବ୍ଧ ଅର୍ଥରାଶିର ଏପରି ପ୍ରକୃଷ୍ଟ ବିନିଯୋଗ ହେବା ଉଚିତ୍ ଯେପରିକି ତାହା ସାମାଜିକ ଭରସା ଓ ଆକାଂକ୍ଷାକୁ ପ୍ରତାରଣା ନକରିବ ।

ନାଗରିକଙ୍କ ଜୀବନଧାରଣ ମାନରେ ଗୁଣାତ୍ମକ ଅଭିବୃଦ୍ଧି ବିଜ୍ଞାନ ଓ ପ୍ରଯୁକ୍ତି ଧର୍ମୀ ଷ୍ଟ୍ରାଟେଜୀ ଦ୍ୱାରା ହିଁ ଅଣାଯାଇ ପାରିବ ଯାହାକି ପଣ୍ଡିତ ନେହେରୁଙ୍କ "ବୈଜ୍ଞାନିକ ମାନସିକତା" ଚିନ୍ତାଧାରା ଉପରେ ପର୍ଯ୍ୟବେସିତ । ରାଷ୍ଟ୍ରର ସର୍ବାଙ୍ଗୀନ ଅର୍ଥନୈତିକ ଅଭିବୃଦ୍ଧି ସେତିକି ବେଳେ ହିଁ ସମ୍ଭବ ହେବ ଯେତେବେଳେ ଅନ୍ତର୍ଦ୍ଦେଶୀୟ ପ୍ରଯୁକ୍ତିବିଦ୍ୟା ରାଷ୍ଟ୍ରର ବିକାଶ ଓ ଅଭ୍ୟୁଦୟ ଧାରା ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଯିବ ଏବଂ

ବିଦେଶରୁ ଲୋଭନୀୟ ପ୍ରଯୁକ୍ତିବିଦ୍ୟାର ଆହରଣ ପ୍ରକ୍ରିୟାରେ ଥୁକୁଲ୍ ହୋଇଯିବ । ଅନ୍ତର୍ଦ୍ଦେଶୀୟ ପ୍ରଯୁକ୍ତିବିଦ୍ୟାର ବିକାଶ ଓ ବିନିଯୋଗ ରାଷ୍ଟ୍ରୀୟ ଗାରୀମାକୁ ଶୀଖର ଦେଶରେ ପହଞ୍ଚାଇ ଦେବ । ବୈଜ୍ଞାନିକ ମାନସିକତାରେ ଅଭ୍ୟୁଦୟ କହିଲେ ଉତ୍ତମ ବିଜ୍ଞାନ ଶିକ୍ଷାର ଗୁରୁତ୍ୱ ପ୍ରଦାନକୁ ବୁଝାଇଥାଏ । ତାର ଅର୍ଥ ନୁହେଁ ଯେ ସାର୍ବଭୌମ ଗଣତାନ୍ତ୍ରୀକ ରାଷ୍ଟ୍ରର ଦ୍ୱାହି ଦେଇ ଆମେ ଅଗଣିତ ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନମାନଙ୍କରେ ନିମ୍ନମାନର ଗବେଷଣା ଦିନରାତି କରିଚାଲିଥିବା । ବ୍ୟକ୍ତିଗତ ଗବେଷଣାକୁ ଆମେ ପୁରସ୍କୃତ କରିବା ସଙ୍ଗେ ସଙ୍ଗେ ମଧ୍ୟ ଦଳଗତ ପ୍ରଚେଷ୍ଟା ଏବଂ ସମନ୍ୱୟତା ଭିତ୍ତିକ ଗବେଷଣା ପ୍ରକଳ୍ପର ସଫଳ ରୂପାୟନ କ୍ଷେତ୍ରରେ ମଧ୍ୟ ଆମେ ପୁରସ୍କୃତ କରିବା ଉଚିତ୍ । ଏଭଳି ପୁରସ୍କାର ଏବେ ବିଶ୍ୱ ବିଜ୍ଞାନ କ୍ଷେତ୍ରରେ ପ୍ରଣୟନ ହେଲାଣି ଯାହାକି ଆଗାମୀ କାଲିର ବୈଜ୍ଞାନିକ ଗବେଷଣା ପାଇଁ ନିଶ୍ଚିତ ରୂପେ ଏକ ଶୁଭ ସଂକେତ ।

ଗୋଟିଏ ବୈଜ୍ଞାନିକ ପ୍ରକ୍ଷେତ୍ର ସହ ଅନ୍ୟ ଗୋଟିଏ ବୈଜ୍ଞାନିକ ପ୍ରକ୍ଷେତ୍ରର ସମନ୍ୱୟତା ମାଧ୍ୟମରେ ବୈଜ୍ଞାନିକ ଗବେଷଣାର ମାନରେ ଗୁଣାତ୍ମକ ଅଭିବୃଦ୍ଧି ଘଟିଥାଏ ଏବଂ ବୈଜ୍ଞାନିକ ଗବେଷଣା ସହ ଜଡ଼ିତ ଛାତ୍ରମାନଙ୍କର ସଂଖ୍ୟା ଓ ଗୁଣାତ୍ମକ ମାନରେ ମଧ୍ୟ ଆଶାତୀତ ଉନ୍ନତି ପରିଲକ୍ଷିତ ହୋଇଥାଏ ।

ଫଳରେ ବିଜ୍ଞାନ ଓ ବୈଜ୍ଞାନିକ ଗବେଷଣା ସହ ସାମାଜିକ ଆଶା ଆକାଂକ୍ଷାକୁ ସଠିକ୍ ରୂପେ ସଂଯୋଗ କରାଯାଇ ରାଷ୍ଟ୍ରୀୟ ବୈଜ୍ଞାନିକ ଆଭିମୁଖ୍ୟକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରାଯାଇପାରିବ ।

ସମାଜ : ୧୩.୦୭.୨୦୦୯

ଆମ ସମୟ : ନଭେମ୍ବର, ୨୦୦୯

ସହକାର (ଶାରଦୀୟ ବଶେଷାଙ୍କ) : ୨୦୦୯



# ଭାରତବର୍ଷରେ ଉଚ୍ଚଶିକ୍ଷା ଓ ଗବେଷଣାର ସାଂପ୍ରତିକ ସ୍ଥିତି

ବହୁ ଅନ୍ୟାନ୍ୟ ପ୍ରକ୍ଷେତ୍ର ପରି ଉଚ୍ଚ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ମଧ୍ୟ ଭାରତବର୍ଷ ବହୁ ବିରୋଧାତ୍ମକ ସ୍ଥିତିର ସମ୍ମୁଖୀନ ହୋଇଥାଏ । ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ନବଭାରତର ନିର୍ମାତା ପଣ୍ଡିତ ଜବାହାରଲାଲ ନେହେରୁ ଦୃଢ଼ ନିଶ୍ଚିତ ଥିଲେ ଯେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମାଧ୍ୟମରେ ଭବିଷ୍ୟତ ଭାରତବର୍ଷର ନବ ନିର୍ମାଣ ସମ୍ଭବପର ହୋଇ ପାରିବ । ଶିକ୍ଷା ହେଉଛି ଏପରି ଏକ ଅମୋଘ ଅସ୍ତ୍ର ଯାହା ନିଶ୍ଚିତ ରୂପେ ଲକ୍ଷ୍ୟ ଭେଦ କରିବ ଓ ଯାହାର ଉପଯୁକ୍ତ ବ୍ୟବହାର କରି କୋଟି କୋଟି ଭାରତୀୟ ନାଗରିକଙ୍କ ସ୍ୱପ୍ନକୁ ସାକାର କରାଯାଇ ପାରିବ । ରାଷ୍ଟ୍ର ନିର୍ମାଣରେ ଶିକ୍ଷାର ଗୁରୁତ୍ୱକୁ ସେ ଠିକ୍ ଉପଲବ୍ଧି କରି ପାରିଥିଲେ । ଇନ୍ନୋଭେସନ ବା ନୂତନତ୍ୱର ପ୍ରବର୍ତ୍ତନ ପ୍ରକ୍ରିୟାରେ ଭାରତବର୍ଷକୁ ଲଞ୍ଚିଙ୍ଗ କରାଯାଇ ବିକାଶର ରାଜରାସ୍ତାରେ ରାଷ୍ଟ୍ରନିର୍ମାଣର ମହାଯଜ୍ଞ ଯେ ସମ୍ପାଦିତ କରାଯାଇପାରିବ – ଏ ନେଇ ସେ ଦୃଢ଼ ପ୍ରତିଜ୍ଞ ଥିଲେ । ସମାଜର ସବୁ ସ୍ତରରେ ଶିକ୍ଷାର ଗୃହ ପ୍ରବେଶ କରାଯାଇପାରିଲେ ନୂତନ ଭାରତବର୍ଷର ସର୍ଜନା ସମ୍ଭବପର ହୋଇପାରିବ - ଏହା ହିଁ ଥିଲା ପଣ୍ଡିତ ନେହେରୁଙ୍କ ମନ, ପ୍ରାଣ ଓ ଆତ୍ମାର ଅହେତୁକ ଅଭୀପ୍ସା ତଥା ରାଷ୍ଟ୍ରପତି ଥିବା ତାଙ୍କର ଭାବପ୍ରବଣତା, ଆବେଗ ଓ ଅନ୍ତରାତ୍ମାର ଗଭୀର ଉଚ୍ଛ୍ୱାସ ।

ଧିରେ ଧିରେ ସମୟ ସହ ତାଳ ଦେଇ ଭାରତବର୍ଷର ବିକାଶର ପଥ ଉନ୍ମୋଚନ ହେଲା ଏବଂ ସାକ୍ଷରତା କାର୍ଯ୍ୟକ୍ରମ ପ୍ରଗତିର ନନ୍ଦିଘୋଷ ରଥରେ ଗୋଟିକ ପରେ ଗୋଟିଏ ସିଡ଼ି ପାହାଚ ଅତିକ୍ରମ କରିଚାଲିଲା । ମୌଳିକ ଓ ମାଧ୍ୟମିକ ଶିକ୍ଷାରେ ପ୍ରଗତି ସମାଜର ସବୁ ସ୍ତରରେ ଦୃଷ୍ଟିଗୋଚର ହେଲା ଓ ଭାରତବର୍ଷର ବିକାଶକୁ ତରୁଣ ଯୁବଗୋଷ୍ଠୀ ନିଜ କାନ୍ଧରେ ନିଜେ ବୋହିବାକୁ ସକ୍ଷମ ହେଲେ । ବିକାଶର ଏହି ମହାପର୍ବରେ ରାଷ୍ଟ୍ରର ଆବାଳ – ବୃଦ୍ଧ – ବନିତା ହସି ହସି ବୀରଦର୍ପରେ ସାମିଲ୍ ହେଲେ ଓ ଯୋଜନାର ସଫଳ ରୂପାୟନକୁ ସମଗ୍ର ରାଷ୍ଟ୍ର ଆଖି ପୁରାଇ ଦେଖିଲା । ଦେଶରେ ବହୁ ଉଚ୍ଚ ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା ହେଲା ଓ ଶିକ୍ଷା କ୍ଷେତ୍ରରେ ଆଶାନୁରୂପ ପ୍ରଗତି ଦୃଷ୍ଟିଗୋଚର ହେଲା । ବହୁ ଛାତ୍ରଛାତ୍ରୀ ଉଚ୍ଚଶିକ୍ଷା ପ୍ରତି ଆଗଭର ହେଲେ ଓ ଅସାମାନ୍ୟ ପାରଦର୍ଶିତା ପ୍ରଦର୍ଶନ କରି ଦେଶ ଓ ଦଶର

ସମ୍ମାନରେ ଅଭିବୃଦ୍ଧି ଘଟାଇଲେ । ହେଲେ ଶିକ୍ଷାର ବହୁଳ ପ୍ରସାର ଫଳରେ ଶିକ୍ଷାର ଗୁଣାତ୍ମକ ମାନରେ କ୍ରମେ ଅବକ୍ଷୟ ଘଟିଲା । ନାନାଦି କାରଣରୁ ଶିକ୍ଷାଦାନ କ୍ଷେତ୍ରରେ ଶିକ୍ଷକମାନଙ୍କ ଅବହେଳା ଓ ତା ସାଙ୍ଗକୁ ଛାତ୍ରଛାତ୍ରୀମାନଙ୍କ ଶିକ୍ଷାପ୍ରତି ଅସହଯୋଗ ମନୋଭାବ ସାମଗ୍ରିକ ଶିକ୍ଷାବ୍ୟବସ୍ଥାକୁ କବଳିତ କରିବାକୁ ଲାଗିଲା । ଅପରପକ୍ଷରେ ଭାରତୀୟ ପରିଚାଳନା ପ୍ରତିଷ୍ଠାନ ଓ ଭାରତୀୟ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ ଓ ଅନ୍ୟାନ୍ୟ ଗୌରବାଦିତ୍ୟ ଓ ସମ୍ଭ୍ରାନ୍ତ ଶିକ୍ଷାନୁଷ୍ଠାନଗୁଡ଼ିକ ଶିକ୍ଷାର ଉଜ୍ଜଳ ଓ ତେଜସ୍ୱିୟ ଆଲୋକ ବର୍ତ୍ତିକା ଭାବେ ଭାରତବର୍ଷର ଗୁଣ ଗାରିମାକୁ ରାଷ୍ଟ୍ର ଓ ରାଷ୍ଟ୍ର ବାହାରେ ପ୍ରଚଣ୍ଡଭାବେ ପ୍ରକଟିତ କରିବାକୁ ଲାଗିଲେ ଓ ଆନ୍ତର୍ଜାତିକ ମାନସମ୍ମାନର ଅଧିକାରୀ ହେଲେ । ଫଳତଃ ବହୁ ବିଶ୍ୱବିଦ୍ୟାଳୟ, କଲେଜ ଏବଂ ଡିମ୍‌ଡ ବିଶ୍ୱବିଦ୍ୟାଳୟଗୁଡ଼ିକ ଏଭଳି ଉଚ୍ଚକୋଟୀର ଶିକ୍ଷାନୁଷ୍ଠାନ ସହ ତାଳଦେଇ ଚାଲିପାରିଲେ ନାହିଁ ଏବଂ ଭାରତବର୍ଷର ବିଶାଳ ଛାତ୍ରସମାଜ ଆବଶ୍ୟକୀୟ ଗୁଣାତ୍ମକ ଶିକ୍ଷା ଲାଭକରିବାରେ ସମ୍ପୂର୍ଣ୍ଣ ରୂପେ ବିଫଳ ହେଲେ । ଛାତ୍ର ସମାଜ ମଧ୍ୟରେ ଅସନ୍ତୋଷର ବହ୍ନି କୁହୁଳିବାକୁ ଲାଗିଲା ଏବଂ ଅନୁଷ୍ଠାନଗୁଡ଼ିକର ଭଙ୍ଗପ୍ରବଣ ଦକ୍ଷତାରେ ମଧ୍ୟ ଆଞ୍ଚ ଆସିଲା ଓ ଶିକ୍ଷାର ମହନୀୟ ସଂସ୍କୃତିରେ ମଧ୍ୟ କଳାଦାଗ ଲାଗିଗଲା ।

ଭାରତବର୍ଷର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କରେ ଅଧ୍ୟୟନରତ ଥିବା ବିଶାଳ ଛାତ୍ରସମାଜ ହିଁ ଭାରତବର୍ଷର ବୌଦ୍ଧିକ ପୁଞ୍ଜି ଓ ଭବିଷ୍ୟତ ଭାରତବର୍ଷର ଗୌରବ ଓ ଗାରିମାର ଗୌରବୋଜ୍ଜ୍ୱଳ ସ୍ମାରକ ବହନ କରିଥାନ୍ତି । ଛାତ୍ରସମାଜ ଭିତରେ ଅଗଣିତ ଜ୍ଞାନପିପାସୁ, ପ୍ରଜ୍ଞାବାନ, ମେଧାବୀ ଓ ଅତ୍ୟନ୍ତ ପ୍ରତ୍ୟୁତ୍ପନ୍ନମତିଯୁକ୍ତ ଗୌରବଦୀପ୍ତ ଛାତ୍ର ଭରପୁର ଅଛନ୍ତି । ସେମାନଙ୍କୁ ନେଇ ନବଭାରତର ନିର୍ମାଣ କରାଯାଇପାରିବ । ସବୁତକ ଅଠା ଖାଲି ଛାତ୍ରସମାଜ ମୁଣ୍ଡରେ ବୋଳିଦେଲେ ଚଳିବନି । ଶିକ୍ଷକ ସମାଜ ମଧ୍ୟ ଶିକ୍ଷାର ଅଧଃପତନ ପାଇଁ ସମପରିମାଣରେ ଦାୟୀ ହେବା ଉଚିତ୍ । ସେମାନଙ୍କର ଉତ୍ତରଦାୟୀତ୍ୱ ସମାଜ ପାଖରେ, ଅଭିଭାବକମାନଙ୍କ ପାଖରେ ଓ ସର୍ବୋପରି ରାଷ୍ଟ୍ରପାଖରେ । ଉତ୍ତର ଦାୟୀତ୍ୱ ଏକ ଅତ୍ୟନ୍ତ ମହନୀୟ ପରିଚାଳନା କଳା ଓ ଏ କଳାର ଆହରଣ ସେମାନଙ୍କ ପାଇଁ ନିତାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି । ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କର ନେତୃବୃନ୍ଦମାନେ ମଧ୍ୟ ଏପରି ପରିଚାଳନା କଳାରେ ଧୂରନ୍ଧର ହେବା ନିତାନ୍ତ ଆବଶ୍ୟକ । ନେତୃତ୍ୱ

ପାଖରେ ଉଚ୍ଚସ୍ତରୀୟ ପରିଚାଳନା ଦକ୍ଷତା, ଅପାର ସୃଜନଶକ୍ତି ଓ ଅଖଣ୍ଡ ଧୈର୍ଯ୍ୟ ରହିବା ଏକାନ୍ତ ଅପରିହାର୍ଯ୍ୟ ଯାହାକୁ ଆଧାର କରି ସେମାନେ ଅସୁମାରୀ ସମସ୍ୟା ସହ ମୁଣ୍ଡକୁ ମୁଣ୍ଡ ଲଢ଼େଇ କରିପାରିବେ ଓ ସମାଧାନର ସରଳ ସୂତ୍ରଟିଏ ଖୋଜି ବାହାର କରିବାରେ ସକ୍ଷମ ହେବେ ।

ଭାରତୀୟମାନେ ଏବେ ଭଲଭାବେ ହୃଦୟଙ୍ଗମ କଲେଣି ଯେ ଆମ ବିଶ୍ୱବିଦ୍ୟାଳୟ ମାନଙ୍କରେ ସବୁକିଛି ବ୍ୟାପାର ଠିକ୍ ଠିକ୍ ଚାଲୁନାହିଁ । ଅବଶ୍ୟ ଏଥିରେ କେତେକ ବ୍ୟତିକ୍ରମ ଯେ ନାହିଁ ତାହା ନୁହେଁ । ଯେଉଁଠି ନେତୃତ୍ୱ ଅତ୍ୟନ୍ତ ଅସାଧାରଣ ବୁଦ୍ଧିମତ୍ତାସମ୍ପନ୍ନ ସେଠାରେ ଫଳାଫଳ ମଧ୍ୟ ଅତ୍ୟନ୍ତ ଚମତ୍କାର ହୋଇଥାଏ । ଶ୍ୟାମ ପିଟ୍ରୋଡ଼ାଙ୍କ ନେତୃତ୍ୱରେ ଉଚ୍ଚପାରଦର୍ଶୀତା ସମ୍ପନ୍ନ ବ୍ୟକ୍ତିବିଶେଷଙ୍କୁ ନେଇ ଗଠିତ ହୋଇଥିବା ନଲେଜ୍ କମିଶନ୍ ବା ଜ୍ଞାନ ଆୟୋଗ ଉଚ୍ଚଶିକ୍ଷା କ୍ଷେତ୍ରରେ ସଂସ୍କାର ପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦିତ କରିଛନ୍ତି । ନିର୍ଦ୍ଦିଷ୍ଟ କେତେକ ଚ୍ୟାଲେଞ୍ଜ ଉପରେ ସର୍ବସାଧାରଣଙ୍କ ଦୃଷ୍ଟି ନିବଦ୍ଧ କରି ତାହାର ସମାଧାନର ପଥ ଖୋଜି ବାହାର କରିବାରେ କମିଶନ୍ ନିଶ୍ଚିତ ଫଳପ୍ରଦ ଭୂମିକା ଗ୍ରହଣ କରିଛି ।

ଗତ କେନ୍ଦ୍ରସରକାର ଦେଶରେ ୮ଟି ନୂଆ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଏବଂ ୧୪ଟି ନୂଆ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଘୋଷଣା କରିଥିଲେ । ଏହା ନିଶ୍ଚିତରୂପେ ଦେଶରେ ଏକ ମହାଆଲୋଡ଼ନ ସୃଷ୍ଟି କରିଥିଲା ଓ ନୂତନ ଯୁବପିଢ଼ି ଆଶା ଓ ଆଲୋକର ସନ୍ଧାନ ପାଇପାରିଥିଲେ । ଦେଶର ଶିକ୍ଷାବ୍ୟବସ୍ଥାରେ ଏପରି ଏକ ଅଦ୍ୱିତୀୟ ରାଷ୍ଟ୍ରୀୟ ଉଦ୍‌ଘୋଷଣ ରାଷ୍ଟ୍ରର ଜ୍ଞାନ ପାରାବାରର ଗଭୀରତାରେ ଅଭିବୃଦ୍ଧି ଆଣିବାରେ ନିଶ୍ଚିତ ରୂପେ ସକ୍ଷମ ହୋଇପାରିଥିଲା । ଏସବୁ ସତ୍ତ୍ୱେ ମଧ୍ୟ ଆମର ବିଶାଳ ଛାତ୍ର ସମାଜ ଓ ଯୁବ ଭାରତୀୟମାନେ ପୂର୍ବପରି ଅଧିକାଂଶ ଦ୍ୱିତୀୟ ସ୍ତରୀୟ ବିଶ୍ୱବିଦ୍ୟାଳୟ, ଉଚ୍ଚଶିକ୍ଷାନୁଷ୍ଠାନ, ଡିମ୍‌ଡ ୟୁନିଭରସିଟି ଓ କଲେଜ ଉପରେ ନିର୍ଭର କରି ପାଠ ପଢ଼ିବେ ଏବଂ ସେମାନଙ୍କର ଜ୍ଞାନ ପିପାସା ଠିକ୍ ଭାବେ ଚରିତାର୍ଥ ହୋଇପାରିବ ନାହିଁ । ତେଣୁ ଏଭଳି ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କରେ ପୂର୍ଣ୍ଣମାତ୍ରାରେ ପୁନଃ ପୁଞ୍ଜି ବିନିଯୋଗ, ଶିକ୍ଷାଦାନ ପ୍ରକ୍ରିୟାରେ ଗୁଣାତ୍ମକ ଅଭିବୃଦ୍ଧି ପାଇଁ ସମ୍ପୂର୍ଣ୍ଣରୂପେ ଦୃଷ୍ଟିଦାନ ଏବଂ ସର୍ବୋପରି ଭିତ୍ତିଭୂମିର ବହୁଳ ବିକାଶ ଏକାନ୍ତ ଅପରିହାର୍ଯ୍ୟ ଅଟେ । ଦେଶରେ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଓ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା

ଯଦିଓ ଏକ ନୂତନ ଶିକ୍ଷାଯୁଗର ବାର୍ତ୍ତାବହର ଭୂମିକା ସମ୍ପାଦିତ କରୁଛି ହେଲେ ଏଭଳି ମହାନ୍ ଗୌରବୋଜ୍ଜ୍ୱଳ ଓ ରାଷ୍ଟ୍ରୀୟ ଧ୍ୱଜାମଣ୍ଡନକାରୀ ଶିକ୍ଷାନୁଷ୍ଠାନଗୁଡ଼ିକ ଉପରେ ଆବଶ୍ୟକୀୟ ଗୁରୁତ୍ୱ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ଦେଶରେ ଆଗଙ୍ଗାକୁମାରୀକା ବିଛେଇ ହୋଇପଡ଼ିଥିବା ଦ୍ୱିତୀୟ ଶ୍ରେଣୀର ବହୁ ଉଚ୍ଚଶିକ୍ଷାନୁଷ୍ଠାନ ଗୁଡ଼ିକର ପୁନଃଉଦ୍ଧାର କରାଯାଇ ଉଚ୍ଚଶିକ୍ଷାର ରାଷ୍ଟ୍ରୀୟ ମାନଦଣ୍ଡରେ ସେଗୁଡ଼ିକୁ ମଧ୍ୟ ତଉଲିବାକୁ ପଡ଼ିବ । ଏଭଳି ଶିକ୍ଷାନୁଷ୍ଠାନଗୁଡ଼ିକର ପୁନରୁତ୍ଥାନ ଆଜିର ଏକ ମସ୍ତବଡ଼ ଆହ୍ୱାନ । ଏ ଆହ୍ୱାନକୁ ଅଣଦେଖା କଲେ ଆଗାମୀ କାଲିର ଛାତ୍ର ସମାଜ ଆମକୁ କ୍ଷମା ଦେବ ନାହିଁ ।

ବିଶିଷ୍ଟ ଆଇନଜ୍ଞ ତଥା ପୂର୍ବତନ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରୀ ଶ୍ରୀଯୁକ୍ତ କପିଲ୍ ସିବଲ୍‌ଙ୍କ ନୂତନ ମନ୍ତ୍ରୀମଣ୍ଡଳରେ ମାନବସମ୍ବଳ ବିକାଶ ମନ୍ତ୍ରଣାଳୟ ଦାୟିତ୍ୱ ଗ୍ରହଣ କରିବା ଦେଶପାଇଁ ଏକ ମସ୍ତବଡ଼ ସୁବର୍ଣ୍ଣ ସୁଯୋଗ । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟର କ୍ୟାବିନେଟ୍ ମନ୍ତ୍ରୀ ଥିଲାବେଳେ ସେ ଏବଂ ତାଙ୍କର ସୁଦକ୍ଷ ଟିମ୍ ମେମ୍ବରମାନେ ଏହି ଗୁରୁତ୍ୱପୂର୍ଣ୍ଣ ବିଭାଗଟିକୁ ଏକ ଚଳଚଞ୍ଚଳ ତଥା ଭାରତବର୍ଷର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ବିକାଶଧାରାର ଏକ ଫଳପ୍ରଦ ଲକ୍ଷ୍ୟସ୍ଥଳଭାବେ ସାବ୍ୟସ୍ତ କରିପାରିଥିଲେ ଯଦ୍ୱାରା ବହୁ ବିଦେଶୀ ଓ ସ୍ୱଦେଶୀ ବୈଜ୍ଞାନିକମାନଙ୍କ ମଧ୍ୟରେ ପାରସ୍ପରିକ ବୈଜ୍ଞାନିକ ବନ୍ଧୁତ୍ୱ ସ୍ଥାପନା କରାଯାଇପାରିଥିଲା । ଭାରତବର୍ଷରେ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ସ୍ଥାପନାଫଳରେ ଶିକ୍ଷାଦାନର ଆନ୍ତର୍ଜାତିକ ଗୁଣାତ୍ମକ ମାନଦଣ୍ଡ ପ୍ରତିଷ୍ଠା କରାଯାଇପାରିବ ଓ ଉଚ୍ଚଶିକ୍ଷା ସମଗ୍ର ବିଶ୍ୱରେ ତାର ନେଟୱାର୍କକୁ ସୁଦୃଢ଼ କରିପାରିବ । ଆନ୍ତର୍ଜାତିକ ସ୍ତରର ବିଶ୍ୱବିଦ୍ୟାଳୟଗୁଡ଼ିକ ସହ ତାଳଦେଇ ଭାରତବର୍ଷରେ ପ୍ରତିଷ୍ଠାହେବାକୁ ଥିବା ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ନିଜର ମାନମର୍ଯ୍ୟାଦାକୁ ଗଗନଚୁମ୍ବୀ ସଫଳତା ପ୍ରଦାନ କରିପାରିବେ ଏବଂ ଆମର ଶିକ୍ଷାଦାନ ବ୍ୟବସ୍ଥା ବହୁଳଭାବେ ଆନ୍ତର୍ଜାତିକ ଛାପ ଲାଭକରିପାରିବ । ଏହାଫଳରେ ଉଚ୍ଚଶିକ୍ଷା ଗ୍ଲୋବାଲ୍ ୟୁନିଭରସିଟି ସ୍ତରରେ ପହଞ୍ଚିଯିବ ଏବଂ ବିଶ୍ୱଗ୍ରାମର ଏହା ଗୋଟିଏ ଗୋଟିଏ ଆଲୋକ ବର୍ତ୍ତିକା ଭାବେ ଉଦ୍‌ଭାସିତ ହେବେ । ଫଳରେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଆଶାୟୀ ଥିବା ଅଗଣିତ ଭାରତୀୟ ଛାତ୍ରଛାତ୍ରୀମାନଙ୍କ ମାନସରାଜ୍ୟରେ ମାନବସମ୍ବଳ ବିକାଶ ମନ୍ତ୍ରଣାଳୟର ଦାୟିତ୍ୱବୋଧ ଏକ ସୁସ୍ଥ ଓ ସୁଦୃଢ଼ ଭିତ୍ତିଭୂମି ପ୍ରତିଷ୍ଠା କରିପାରିବ ଯାହାକି ରାଷ୍ଟ୍ରପାଇଁ ଏକ ଶୁଭ ସଂକେତ ।

**ପଲିସି ସମ୍ବନ୍ଧୀୟ ଗବେଷଣା (Policy Relevant Research) :**
ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାର ପରିଧି ବାହାରେ ପ୍ରତିଷ୍ଠିତ ହୋଇଥିବା ବହୁ ସ୍ୱନାମଧନ୍ୟ ଗବେଷଣା ପ୍ରତିଷ୍ଠାନମାନଙ୍କରେ ମଧ୍ୟ ଅତ୍ୟନ୍ତ ଉଚ୍ଚକୋଟୀର ଗବେଷଣା ସଂଗଠିତ ହୋଇଥାଏ । ଏହି ଅନୁଷ୍ଠାନଗୁଡ଼ିକର ସ୍ଥିତି ଅତ୍ୟନ୍ତ ସୁଦୃଢ଼ ହୋଇଥିବାରୁ ସେଠାରେ ସଂଗଠିତ ହେଉଥିବା ଗବେଷଣାର ମାନ ମଧ୍ୟ ଅତ୍ୟନ୍ତ ପ୍ରଶଂସନୀୟ, ଅହେତୁକ ଗୁଣଧର୍ମୀ ଓ ପ୍ରଚଣ୍ଡ ଦକ୍ଷତାସମ୍ପନ୍ନ ହୋଇଥାଏ । ଏହି ଅନୁଷ୍ଠାନ ଗୁଡ଼ିକ ରାଷ୍ଟ୍ରୀୟ ନୀତି ନିୟମ ନିର୍ଦ୍ଧାରଣକାରୀ ବରିଷ୍ଠ ଅଧିକାରୀମାନଙ୍କୁ ବୈଜ୍ଞାନିକ ପ୍ରଶାସନିକ କ୍ଷେତ୍ରରେ ବହୁ ଗୁରୁତ୍ୱପୂର୍ଣ୍ଣ ଉପଦେଶ ପ୍ରଦାନକରିଥାନ୍ତି । ବିଶେଷକରି ସାମ୍ପ୍ରତିକ କେନ୍ଦ୍ରସରକାର ଅତ୍ୟନ୍ତ ଶକ୍ତିସମ୍ପନ୍ନ, ତେଜସ୍ୱୀ ଓ କର୍ମଠ ହୋଇଥିବାରୁ ରାଷ୍ଟ୍ରୀୟ ନୀତି ନିୟମ ପ୍ରଣୟନ ପାଇଁ ଯଶସ୍ୱୀ ଓ ଲବ୍ଧପ୍ରତିଷ୍ଠ ଗବେଷଣା ପ୍ରତିଷ୍ଠାନମାନଙ୍କରୁ ଆବଶ୍ୟକୀୟ ଉପଦେଶ ଗ୍ରହଣ କରିବାରେ କୌଣସି କୁଣ୍ଠାବୋଧ କରିନଥାନ୍ତି । ନୂତନ ରାଷ୍ଟ୍ରୀୟ ଆଇନ୍ କାନୁନ୍ ପ୍ରଣୟନ ପାଇଁ ଏହି ବୈଜ୍ଞାନିକ ଉପଦେଶ ବେଶ୍ ଫଳପ୍ରଦ ହୋଇଥାଏ । ୟୁନିଅନ ପବ୍ଲିକ୍ ସର୍ଭିସ୍ ବ୍ୟବସ୍ଥା ଯାହାକି ଚିରାଚରିତ ଜଟିଳତା ମଧ୍ୟରେ କେବେଠୁ ଘାଣ୍ଟି-ଚକଟି ହେଉଥିଲା ଏବଂ ଏକ ବାୟୁରୁଦ୍ଧ କୋଠରୀ ମଧ୍ୟରେ ଅଣନିଶ୍ୱାସୀ ହୋଇପଡୁଥିଲା ତାହା ଏବେ ଶାନ୍ତିର ଦୀର୍ଘଶ୍ୱାସ ମାରିପାରୁଛି । ଏହା ସମ୍ଭବ ହୋଇଛି ଏଇଥିପାଇଁ ଯେ ଏହି ବ୍ୟବସ୍ଥା ଏବେ ବାହ୍ୟ ଉପଦେଶ ଗ୍ରହଣ କରିବାକୁ ସ୍ୱତଃପ୍ରବୃତ୍ତ ଭାବେ ଆଗଭର ହେଉଛି ଏବଂ ପଲିସି ରିସର୍ଚ୍ଚ କ୍ଷେତ୍ରରୁ ସ୍ୱନାମଧନ୍ୟ ବ୍ୟକ୍ତିବିଶେଷମାନଙ୍କୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଆସୀନ କରାଇ ଏହାର ଗୁଣାତ୍ମକ ଅଭିବୃଦ୍ଧି ସଂଗଠିତ କରାଉଛି ।

ଇଣ୍ଡିଆନ୍ କାଉନ୍‌ସିଲ୍ ଫର ରିସର୍ଚ୍ଚ ଅନ୍ ଇଣ୍ଟରନ୍ୟାସନାଲ୍ ଇକୋନୋମିକ୍ ରିଲେସନ୍ସ ପ୍ରତିଷ୍ଠାନ ଯେଭଳି ଭାବେ ରାଷ୍ଟ୍ରର ଇକୋନୋମିକ୍ ଡିପ୍ଲୋମାସି ଅର୍ଥାତ୍ ଅର୍ଥନୈତିକ କୂଟନୈତିକତା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦିତ କରୁଛି ଠିକ୍ ସେହିପରି ଅର୍ଥନୈତିକ କ୍ଷେତ୍ରରେ ନ୍ୟାସନାଲ୍ କାଉନ୍‌ସିଲ୍ ଅନ୍ ଆପ୍ଲାଏଡ୍ ଇକୋନୋମିକ୍ ରିସର୍ଚ୍ଚ ପ୍ରତିଷ୍ଠାନ ନିଜର ପରାକାଷ୍ଠା ପ୍ରତିପାଦନ କରି ନିଜ ପାଇଁ ଏକ ସ୍ୱତନ୍ତ୍ର ଆସନ ଜାହିର କରିପାରିଛି । ଠିକ୍ ସେହିପରି ଏମ୍.ଏସ୍. ସ୍ୱାମୀନାଥନ୍ ଫାଉଣ୍ଡେସନ୍ କୃଷି ଗବେଷଣା କ୍ଷେତ୍ରରେ ସମଗ୍ର ବିଶ୍ୱରେ ଅଦ୍ୱିତୀୟ ସ୍ଥାନ ଅଧିକାର କରିପାରିଛି ।

ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ (ସି.ଏସ୍.ଆଇ.ଆର୍.) ଅର୍ନ୍ତଗତ ମହୀଶୂରର ଫୁଡ୍ ଟେକ୍ନୋଲୋଜିକାଲ୍ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ, ନିର୍ଦ୍ଦେଶକ ଡକ୍ଟର ଭି.ପ୍ରକାଶଙ୍କ ନେତୃତ୍ୱରେ ଯୁଗାନ୍ତକାରୀ ଗବେଷଣା କରି ଅନୁଷ୍ଠାନର ନାଁକୁ ଅନ୍ତର୍ଦେଶୀୟ ସ୍ୱୀକୃତି ପ୍ରଦାନ କରିପାରିଛି ।

ଦେଶର ବହୁ ଗବେଷଣା ପ୍ରତିଷ୍ଠାନ ସେମାନଙ୍କର ପ୍ରାକ୍‌କାଳରେ ଫୋର୍ଡ୍ ଫାଉଣ୍ଡେସନ୍‌ର ଆର୍ଥିକ ସହାୟତା ଲାଭକରି ଗଢ଼ି ଉଠିଥିଲା ଏବଂ ବହୁ ଅର୍ଥଦାତାଙ୍କ ମଧ୍ୟରେ ଫୋର୍ଡ୍ ଫାଉଣ୍ଡେସନ୍‌ର ନାଁ ଅତ୍ୟନ୍ତ ଗର୍ବର ସହ ଉଚ୍ଚାରଣ କରାଯାଉଥିଲା । ଠିକ୍ ସେହିପରି ଭାରତବର୍ଷରେ କୃଷି ଗବେଷଣା କ୍ଷେତ୍ରରେ ରକ୍‌ଫେଲ୍ଲର ଫାଉଣ୍ଡେସନ୍‌ର ବଳିଷ୍ଠ ଅବଦାନ ମଧ୍ୟ ଅନସ୍ୱୀକାର୍ଯ୍ୟ ।

ଆଜି ସମଗ୍ର ବିଶ୍ୱରେ ପଲିସି ସମ୍ବନ୍ଧୀୟ ଗବେଷଣା କାର୍ଯ୍ୟକ୍ରମ ସମ୍ପାଦିତ ହେଉଥିବା ଗବେଷଣା ପ୍ରତିଷ୍ଠାନମାନଙ୍କର ଦକ୍ଷତାରେ ପୂର୍ଣ୍ଣ ଅଭିବୃଦ୍ଧି ପାଇଁ ଏକ ନୂତନ ପ୍ରଚେଷ୍ଟା ଜାରି ରହିଛି । ପୁଞ୍ଜିଲଗାଣ କରୁଥିବା ସଂସ୍ଥା ଗୁଡ଼ିକ ନିଜର ଏକ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ସମସ୍ୟାର ସମାଧାନ ପାଇଁ ଗବେଷଣା ପ୍ରତିଷ୍ଠାନଆଡ଼କୁ ନଜର ଦେଉଛନ୍ତି ଏବଂ ସ୍ୱଳ୍ପମିଆଦି ଗବେଷଣା ପ୍ରକଳ୍ପର ସଫଳ ରୂପାୟନ ଉପରେ ମଧ୍ୟ ବିଶେଷ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଏପରିସ୍ଥଳେ ବହୁ ବେସରକାରୀ ପ୍ରତିଷ୍ଠାନ (ଏନ୍.ଜି.ଓ.) ଏବଂ ଏକାଧିକ ଗବେଷଣା ଅନୁଷ୍ଠାନମାନଙ୍କୁ ସମାଜରେ ତିଷ୍ଠି ରହିବା ପାଇଁ ଏଭଳି ପୁଞ୍ଜିଲଗାଣ ଉପରେ ନିର୍ଭରଶୀଳ ହୋଇ ବଞ୍ଚି ରହିବାକୁ ପଡ଼ିବ । ଏଭଳି ଗବେଷଣା ପ୍ରକଳ୍ପ ଗୁଡ଼ିକ ପୁଞ୍ଜିଲଗାଣ କରୁଥିବା ପ୍ରତିଷ୍ଠାନଗୁଡ଼ିକ ଦ୍ୱାରା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପ୍ରାୟ ପରିଚାଳିତ ହେଉଥିବା ଦୃଷ୍ଟିରୁ ସେମାନଙ୍କର ଚପଳ, ଅସ୍ଥିର ଓ ଖାମଖିଆଲି ମନୋବୃତ୍ତି ଉପରେ ଗବେଷଣା ପ୍ରକଳ୍ପର ଭବିଷ୍ୟତ ନିର୍ଭର କରିଥାଏ ଏବଂ ଗବେଷଣା ପ୍ରତିଷ୍ଠାନର ଅନ୍ତଃଦକ୍ଷତାର ଗଠନରେ ଏହାର ସେପରି କୌଣସି ଗୁରୁତ୍ୱପୂର୍ଣ୍ଣ ଅବଦାନ ନଥାଏ ।

**ବୌଦ୍ଧିକ ସ୍ତରରେ ଜାଗୃତି (Think Tank Initiavive) :**

ଭାରତ ସମେତ ବହୁ ବିକାଶଶୀଳ ଓ ବିକଶିତ ରାଷ୍ଟ୍ରମାନଙ୍କରେ ଉଇଲିୟମ୍ ଏବଂ ଫ୍ଲୋରା ହ୍ୱିଲେଟ୍ ଫାଉଣ୍ଡେସନ୍ ଦ୍ୱାରା ବହୁ ଦିନରୁ ବହୁ ଭାବରେ ପ୍ରଚଳିତ ହୋଇଆସୁଥିବା ଆର୍ଥିକ ଅନୁଦାନ ଭିତ୍ତିକ ଗବେଷଣା ପ୍ରକଳ୍ପର ରୂପାୟନରେ ଏବେ ବୌଦ୍ଧିକ ସ୍ତରରେ ଜାଗୃତି ଅଣାଯାଇଛି । ସ୍ୱତନ୍ତ୍ରଭାବେ କିଛି ନିର୍ଦ୍ଦିଷ୍ଟ ପରିମାଣର

ଅର୍ଥରାଶି ଆର୍ଥିକ ଅନୁଦାନ ଲାଭ କରୁଥିବା ଗବେଷଣା ପ୍ରତିଷ୍ଠାନମାନଙ୍କର ଅନ୍ତଃଦକ୍ଷତାର ଅଭିବୃଦ୍ଧିପାଇଁ ଉଦ୍ଦିଷ୍ଟ ହେବ ଯଦ୍ୱାରା ସେହି ଅନୁଷ୍ଠାନ ଗୁଡ଼ିକ ଦିନପରେ ଦିନ ସେମାନଙ୍କର ବୈଜ୍ଞାନିକ ଭିତ୍ତିଭୂମିକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ନୂତନ ଗବେଷଣା ପ୍ରକଳ୍ପର ଫଳପ୍ରଦ ରୂପାୟନରେ ଗଭୀରଭାବେ ମନୋନିବେଶ କରିପାରିବେ । ଏହି ଅର୍ଥରାଶିକୁ ସାଧାରଣ ସହାୟତା ଅନୁଦାନ ବୋଲି ଅଭିହିତ କରାଯିବ ଏବଂ ଏହା ନିର୍ଦ୍ଦିଷ୍ଟଭାବେ ଗବେଷଣା ପ୍ରତିଷ୍ଠାନର ଭିତ୍ତିଭୂମିର ବିକାଶରେ ହିଁ ବିନିଯୋଗ ହେବ । ଉଇଲିୟମ ଏବଂ ଫ୍ଲୋରା ହ୍ୱିଲେଟ୍ ଫାଉଣ୍ଡେସନ୍ କାନାଡ଼ାର ଇଣ୍ଟରନ୍ୟାସ୍‌ନାଲ୍ ଡ଼େଭଲପ୍‌ମେଣ୍ଟ ରିସର୍ଚ୍ଚ ସେଣ୍ଟର ସହ ସଫଳ ଯୋଗସୂତ୍ର ସ୍ଥାପନା କରି ଏକ ଫ୍ଲାଗସିପ୍ ପୋଜେକ୍ଟ ମାଧ୍ୟମରେ "ଥିଙ୍କ୍ ଟ୍ୟାଙ୍କ ଇନିସିଏଟିଭ୍" ବା ବୌଦ୍ଧିକ ସ୍ତରରେ ଜାଗୃତିର ଉନ୍ମେଷ ସୃଷ୍ଟି କରିବାରେ ଫଳପ୍ରଦ ହୋଇପାରିଛି । ପରେ ପରେ ବିଲ୍ ଓ ମିଲିଣ୍ଡା ଗେଟ୍ସ ଫାଉଣ୍ଡେସନ୍ ଏହି ବୈଦ୍ଧିକ ଜାଗୃତିର ପ୍ରବର୍ତ୍ତନ ପ୍ରକ୍ରିୟା ସହ ଅତ୍ୟନ୍ତ ବଦାନ୍ୟତା ଦେଖାଇ ଓତପୋତଃଭାବେ ଜଡ଼ିତ ହୋଇଗଲା ଏବଂ ଏହି ତିନୋଟି ଆର୍ଥିକ ଅନୁଦାନ ପ୍ରଦାନକାରୀ ଅନୁଷ୍ଠାନ ମାଧ୍ୟମରେ ପ୍ରାୟ ୧୦୦ ମିଲିୟନ୍ ଡଲାରର ଅର୍ଥରାଶି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଥିବା ଗବେଷଣା ଅନୁଷ୍ଠାନର ଅନ୍ତଃ ଦକ୍ଷତା ଓ ସେଠାରେ ବିଶ୍ୱସ୍ତରୀୟ ବୈଜ୍ଞାନିକ ଭିତ୍ତିଭୂମିର ପ୍ରତିଷ୍ଠା ପାଇଁ ବିନିଯୋଗ ହେବା ଲକ୍ଷ୍ୟ ସ୍ଥିର ହେଲା । ବିଲ୍ ଓ ମିଲିଣ୍ଡା ଗେଟ୍ସ ଫାଉଣ୍ଡେସନ୍ ଭାରତବର୍ଷରେ ମେଡ଼ିକାଲ୍ ରିସର୍ଚ୍ଚ କ୍ଷେତ୍ରରେ ସର୍ବାଙ୍ଗୀନ ଉତ୍କର୍ଷତା ସାଧନ କରି ଭାରତୀୟମାନେ ଭୋଗୁଥିବା ନାନାଦି ରୋଗ ବେମାରୀରୁ ସେମାନଙ୍କୁ ମୁକ୍ତି ଦେବାପାଇଁ ବହୁ ଆଗରୁ ଏକ ମହତ୍ ପ୍ରଚେଷ୍ଟା ଜାରି ରଖିଛି । କାନାଡ଼ାର ଇଣ୍ଟର ନ୍ୟାସନାଲ୍ ଡ଼େଭଲପ୍‌ମେଣ୍ଟ ରିସର୍ଚ୍ଚ ସେଣ୍ଟର ୨୦୦୯ ମସିହାର ପ୍ରାକ୍ କାଳରେ ୧୧ଟି ଆଫ୍ରିକୀୟ ରାଷ୍ଟ୍ରରେ ଥିବା ବିଭିନ୍ନ ଗବେଷଣା ପ୍ରତିଷ୍ଠାନକୁ ସେମାନଙ୍କର ଅନ୍ତଃଦକ୍ଷତା ଓ ଭିତ୍ତିଭୂମିର ବିକାଶ ପାଇଁ ୨୪ଟି ବଡ଼ ବଡ଼ ଆର୍ଥିକ ଅନୁଦାନ ମାଧ୍ୟମରେ ଆବଶ୍ୟକୀୟ ବିତ୍ତୀୟ ସହାୟତା ଯୋଗାଇ ଦେଇଛି ।

କାନାଡ଼ାର ଇଣ୍ଟରନ୍ୟାସ୍‌ନାଲ୍ ଡେଭଲପ୍‌ମେଣ୍ଟ ରିସର୍ଚ୍ଚ ସେଣ୍ଟର ୨୦୦୯ ମସିହା ଜୁଲାଇମାସ ଶେଷଭାଗରେ ଭାରତ ସମେତ ୫ଟି ଦକ୍ଷିଣ ଏସୀୟ ରାଷ୍ଟ୍ର ଏବଂ ୭ଟି ଲାଟିନ୍ ଆମେରିକୀୟ ରାଷ୍ଟ୍ରମାନଙ୍କରେ ଅର୍ଥନୈତିକ ଓ ସାମାଜିକ ନୀତିନିୟମ ସଂକ୍ରାନ୍ତୀୟ ଗବେଷଣା ପ୍ରକଳ୍ପରେ ବିନିଯୋଗ ଥିବା ଗବେଷଣା ପ୍ରତିଷ୍ଠାନ ମାନଙ୍କରୁ

ଆବଶ୍ୟକୀୟ ଆର୍ଥିକ ଅନୁଦାନ ପ୍ରଦାନ ପାଇଁ ଦରଖାସ୍ତ ଆହ୍ୱାନ କରିଛନ୍ତି । ଏହା ସୁସ୍ପଷ୍ଟ ଯେ ଗବେଷଣା ପ୍ରକଳ୍ପ ପାଇଁ ବୈଦେଶିକ ଆର୍ଥିକ ଅନୁଦାନ ପ୍ରଦାନ କରୁଥିବା ରାଷ୍ଟ୍ର ବା କମ୍ପାନୀ କେବଳ ଏକ ଅଣୁଘଟକର ଭୂମିକା ସମ୍ପାଦିତ କରିଥାଏ ଏବଂ ଦକ୍ଷିଣ ଏସୀୟ ରାଷ୍ଟ୍ର ସମୂହକୁ ପରିଲକ୍ଷିତ କଲେ ଏଭଳି ଅନୁଦାନ ସମୁଦ୍ରକୁ ସଙ୍ଖେପାଣି ସଦୃଶ । ପବ୍ଲିକ୍ ପଲିସିରେ ଉନ୍ନତି ସାଧନ କରିବା ପାଇଁ ଏଭଳି ଏକ ବୈଦେଶିକ ଆର୍ଥିକ ଅନୁଦାନ ନିଶ୍ଚିତ ରୂପେ ଅନ୍ତର୍ଦେଶୀୟ ଅନୁଦାନର ବିକଳ୍ପ ଭାବେ କେବେ ଠିଆ ହୋଇପାରିବ ନାହିଁ । ଭାରତ ସମେତ ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ର କ୍ଷେତ୍ରରେ ଏବେ ଯଥାର୍ଥ ପ୍ରଶ୍ନ ଉଠୁଛି ଯେ ଆମ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାରୁ ଉତ୍ତୁରୁଥିବା ସ୍ନାତକମାନେ ଗବେଷଣା ମାଧ୍ୟମରେ ପବ୍ଲିକ୍ ପଲିସିକୁ ନୂତନ ରୂପରେଖ ପ୍ରଦାନ କରିବାକୁ ଇଚ୍ଛୁକ କି ଅବା ଏଥିପାଇଁ ସେମାନେ ସତରେ ଦକ୍ଷ କି ? ଦ୍ୱିତୀୟତଃ ଆମ ବିଶ୍ୱବିଦ୍ୟାଳୟମାନଙ୍କରେ ଏଭଳି କୌଣସି ଗବେଷଣା ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି କି ଯାହାକି ସରକାରୀ ପଲିସିକୁ ଲକ୍ଷ୍ୟ ଓ ଅଭିପ୍ରାୟ କରି ପରିଚାଳିତ ହେଉଛି ଅବା ଯାହା ସରକାରୀ ପଲିସିକୁ ଯଥେଷ୍ଟ ପ୍ରଭାବିତ କରିପାରିବ ? ତୃତୀୟତଃ ବୌଦ୍ଧିକ ପଣ୍ଡିତଗଣ, ଜ୍ଞାନୀ, ଗୁଣୀ ଓ ଥିଙ୍କ ଟ୍ୟାଙ୍କ ମାନଙ୍କର ସେପରି କୌଣସି ଉଚ୍ଚାଭିଳାଷ ଅବା ମାଧ୍ୟମ ଅଛିକି ଯଦ୍ୱାରା ସେମାନେ ଗବେଷଣାଲବ୍ଧ ଫଳାଫଳର ପରିଧି ବାହାରକୁ ଡେ଼ଇଁ ପଡ଼ି ପବ୍ଲିକ୍ ପଲିସିର ପ୍ରବଳ ପ୍ରତିଫଳ ବା ପ୍ରଭାବର ଦୁନିଆକୁ ଢାବୁଡ଼ି ଧରି ପାରିବେକି ?

ଦେଶର ବିଭିନ୍ନ ବିଜ୍ଞାନାଗାରରେ ସଂଗଠିତ ହେଉଥିବା ଗବେଷଣାଲବ୍ଧ ଫଳାଫଳକୁ ରାଷ୍ଟ୍ରୀୟ ସମ୍ପତ୍ତି ବୋଲି ପରିଗଣିତ କରି ପବ୍ଲିକ୍ ପଲିସି ସହ ପ୍ରାସଙ୍ଗିକତା ଥିବା ଗବେଷଣାକୁ କିପରି ଯଥାର୍ଥ ଭାବେ ବିନିଯୋଗ କରାଯାଇପାରିବ ସେ ନେଇ ଭାରତବର୍ଷ ଏବେ ବିଭିନ୍ନ ଦେଶରେ ଏକ ଉତ୍ତମ ଉଦାହରଣ ସୃଷ୍ଟିକରି ପାରିଛି । ପ୍ରଥମ ଓ ସର୍ବପ୍ରଥମ କଥାଟି ହେଲା କେତେକ ଗବେଷଣାଗାର ଉତ୍କୃଷ୍ଟତମ ପ୍ରଶଂସନୀୟ ମାନଦଣ୍ଡ ଲାଭକରିବା ପରେ ମଧ୍ୟ ବେଳେ ବେଳେ ଅତ୍ୟନ୍ତ କଷ୍ଟକର ଓ ଆପତ୍ତିକର ଢଙ୍ଗରେ ସର୍ବସମ୍ମୁଖରେ ଉଭା ହେଉଛନ୍ତି । ଦ୍ୱିତୀୟତଃ କେନ୍ଦ୍ର ଓ କେତେକ ରାଜ୍ୟ ସରକାର ପବ୍ଲିକ୍ ପଲିସି ସଂକ୍ରାନ୍ତୀୟ ଗବେଷଣାଲବ୍ଧ ଫଳାଫଳକୁ ଆଧାର କରି ଅନେକ ସମୟରେ ବିହିତ କାର୍ଯ୍ୟପନ୍ଥା ମଧ୍ୟ ଗ୍ରହଣ କରୁଛନ୍ତି ଏବଂ ଶେଷରେ

ଭାରତବର୍ଷର ପ୍ରଶିକ୍ଷଣ ଗୋଷ୍ଠୀ ଓ ବିଭିନ୍ନ ଖବର କାଗଜ, ରେଡ଼ିଓ, ଟେଲିଭିଜନ୍ ଇତ୍ୟାଦି ବାର୍ତ୍ତାବାହକ ସଂସ୍ଥା ସମୂହ ବା ମିଡ଼ିଆ ଯାହାକି ଇନ୍ନୋଭେସନ୍, ରିସର୍ଚ୍ଚ ଓ ଉତ୍ତମ ପବ୍ଲିକ୍ ପଲିସିର ଧ୍ୱଜା ସର୍ବଦା ଉଡ଼ାଇଥାନ୍ତି ସେମାନେ ମଧ୍ୟ କୋଲାବୋରେଟିଭ୍ ରିସର୍ଚ୍ଚ ବା ସହଯୋଗିତା ମାଧ୍ୟମରେ ଗବେଷଣା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି ।

ଏହା ଅତ୍ୟନ୍ତ ସୌଭାଗ୍ୟର କଥା ହେବ ଯେ ଗବେଷଣା କ୍ଷେତ୍ରରେ ଥିଙ୍କ ଟ୍ୟାଙ୍କର ପ୍ରଚେଷ୍ଟାକୁ ପ୍ରଚଣ୍ଡଭାବେ ବଳବତ୍ତର କରିଥିବା ତିନି ସହଯୋଗୀ ପ୍ରତିଷ୍ଠାନ କାନାଡ଼ାର ଇଣ୍ଟରନ୍ୟାସନାଲ୍ ଡ଼େଭଲପ୍‌ମେଣ୍ଟ ରିସର୍ଚ୍ଚ ସେଣ୍ଟର, ଉଇଲିୟମ୍ ଓ ଫ୍ଲୋରା ହ୍ୱିଲେଟ୍ ଫାଉଣ୍ଡେସନ୍ ଏବଂ ବିଲ୍ ଓ ମିଲିଣ୍ଡା ଗେଟ୍ସ ଫାଉଣ୍ଡେସନ୍ ଭାରତ ସମେତ ଅନ୍ୟାନ୍ୟ ଦକ୍ଷିଣ ଏସୀୟ ରାଷ୍ଟ୍ରମାନଙ୍କରେ ଥିବା ବିଭିନ୍ନ ଗବେଷଣା ପ୍ରତିଷ୍ଠାନମାନଙ୍କୁ ଆବଶ୍ୟକୀୟ ଆର୍ଥିକ ସହଯୋଗ ପ୍ରଦାନ କରିବେ । ଆମେ ଆଶାବାଦୀ ହେବା ଉଚିତ୍ ଯେ ଏପରି ଏକ ଯୁଗାନ୍ତକାରୀ ଆର୍ଥିକ ଅନୁଦାନ ବ୍ୟବସ୍ଥା ନିଶ୍ଚିତ ରୂପେ ଏକ ବଳିଷ୍ଠ ଫଳାଫଳ ପ୍ରଦାନ କରିବ ।

ଏଭଳି ଏକ ଆର୍ନ୍ତଜାତିକ ବୈଜ୍ଞାନିକ ପୃଷ୍ଠଭୂମିର ପରିପ୍ରେକ୍ଷୀରେ ଆମରାଜ୍ୟ ଓଡ଼ିଶାର କଥା ଟିକେ ବିବେଚନା କରାଯାଉ । ଓଡ଼ିଶାରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଏବେ ସେପରି କୌଣସି ବିଧିବଦ୍ଧ ପଲିସି କାର୍ଯ୍ୟକାରୀ ହେଉନାହିଁ ଏବଂ ଉଚ୍ଚ ଶିକ୍ଷା ବିଭାଗର ବାର୍ଷିକ ବଜେଟ୍ ପରିମାଣର ୯୫ ପ୍ରତିଶତ ଅର୍ଥରାଶି କେବଳ ଶିକ୍ଷକ, ବିଶ୍ୱବିଦ୍ୟାଳୟ ଓ କଲେଜ କର୍ମଚାରୀଙ୍କ ଦରମାରେ ହିଁ ବ୍ୟୟ ହୋଇଥାଏ । ଉଚ୍ଚଶିକ୍ଷା କ୍ଷେତ୍ରରେ ପରିଦୃଷ୍ଟ ହେଉଥିବା ନାନାବିଧ ସମସ୍ୟାର ସମାଧାନର ସୂତ୍ର ଖୋଜି ବାହାର କରିବା ପାଇଁ ରାଜ୍ୟ ସରକାର ଖୁବ୍ ନିକଟ ଅତୀତରେ ଏକ "ଟାସ୍କଫୋର୍ସ" ଗଠନପାଇଁ ନିଷ୍ପତ୍ତି ନେଇଛନ୍ତି ଯେ କି ଏକ ନିର୍ଦ୍ଦିଷ୍ଟ "ରୋଡ଼ ମ୍ୟାପ୍" ପ୍ରସ୍ତୁତ କରି ସରକାରଙ୍କ ପାଖରେ ତାହା ଉପସ୍ଥାପନା କରିବ । ଉଚ୍ଚଶିକ୍ଷା ବ୍ୟବସ୍ଥାକୁ ସମ୍ପୂର୍ଣ୍ଣରୂପେ ଏକ ନବୀନତମ ରୂପରେଖ ପ୍ରଦାନ କରିବା ପାଇଁ ପଞ୍ଚବାର୍ଷିକ ଯୋଜନାର ପ୍ରଣୟନ ଉପରେ ରାଜ୍ୟସରକାର ଅଗ୍ରାଧିକାର ଦେଉଛନ୍ତି । ଓଡ଼ିଶାର ସମସ୍ତ ବିଶ୍ୱବିଦ୍ୟାଳୟର କୁଳପତି, ବୈଷୟିକ ଓ ପରିଚାଳନା ପ୍ରତିଷ୍ଠାନଗୁଡ଼ିକର ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ ଓ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ଠାରୁ ଉପାଦେୟ ପ୍ରସ୍ତାବମାନ ଗ୍ରହଣ କରି ସରକାର ଏ

ସଂକ୍ରାନ୍ତରେ ଆବଶ୍ୟକୀୟ ପଦକ୍ଷେପ ନେବାପାଇଁ ଚେଷ୍ଟିତ ଅଛନ୍ତି । ୨୦୨୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଉଚ୍ଚଶିକ୍ଷାର ରୂପରେଖ ସମ୍ବନ୍ଧରେ ଏକ ଫ୍ରେମ୍‌ୱାର୍କ ପ୍ରସ୍ତୁତି ଉପରେ ସରକାର ମଧ୍ୟ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଶିକ୍ଷାବିତ୍‌ମାନେ, ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷକମାନଙ୍କର ବହୁଳ ଅଭାବ ଏବଂ ଉଚ୍ଚଶିକ୍ଷାକୁ ଆଦରି ନେଉଥିବା ଛାତ୍ରଛାତ୍ରୀଙ୍କ ଗୁଣାତ୍ମକ ମାନଦଣ୍ଡରେ ପ୍ରଚଣ୍ଡଭାବେ ଦ୍ରୁତ ଅଧୋଗତି ପରିଲକ୍ଷିତ ହେଉଥିବା ଉଚ୍ଚଶିକ୍ଷା ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ରୂପେ ପଙ୍ଗୁ କରିଦେଉଛି ବୋଲି ମତବ୍ୟକ୍ତ କରୁଛନ୍ତି । ଶିକ୍ଷାନୁଷ୍ଠାନମାନଙ୍କରେ ଖାଲି ପଡ଼ିଥିବା ଶିକ୍ଷକମାନଙ୍କ ପଦପଦବୀ ଗୁଡ଼ିକ ଖୁବ୍ ଶୀଘ୍ର ପୂରଣ ହେଲେ ସମସ୍ୟାର ଏକ ନିର୍ଦ୍ଦିଷ୍ଟ ଓ ଗୁରୁତ୍ୱପୂର୍ଣ୍ଣ ଦିଗର ସମାଧାନ ସମ୍ଭବ ହୋଇପାରିବ । ପୁନଶ୍ଚ ଶିକ୍ଷାନୁଷ୍ଠାନମାନଙ୍କୁ ସମ୍ପୂର୍ଣ୍ଣ ସ୍ୱୟଂଚାଳିତ କ୍ଷମତା ପ୍ରଦାନ କରାଗଲେ ଏହା ଅତ୍ୟନ୍ତ ସୁଫଳ ପ୍ରଦାନ କରିପାରିବ । ଅଧିକନ୍ତୁ ଆମର ସମ୍ପୂର୍ଣ୍ଣ ଶିକ୍ଷାବ୍ୟବସ୍ଥା ନାଲିଫିତାର ଚକ୍ରବ୍ୟୂହ ଓ ବିଯୁକ୍ତ ଚିନ୍ତାଧାରାର କରାଳ କବଳରେ ପଡ଼ି ଆଜି ନିଷ୍ପେସିତ ହେଉଛି । ଆମର ସାମ୍ପ୍ରତିକ ଶିକ୍ଷାବ୍ୟବସ୍ଥାରେ କର୍ତ୍ତବ୍ୟନିଷ୍ଠ ଶିକ୍ଷକମାନଙ୍କର ଘୋର ଅଭାବ ଆମ ପାଇଁ କାଳ ହେଉଛି ଏବଂ ଗବେଷଣା ପାଇଁ ସୁସ୍ଥ ପରିବେଶଟିଏ କେଉଁଆଡ଼େ ଆଦୌ ପରିଲକ୍ଷିତ ହେଉନାହିଁ । ଏପରି ଏକ ବାସ୍ତବ ଓ ଅଭାବନୀୟ ସ୍ଥିତି ସହ ବନ୍ଧୁତ୍ୱ ସ୍ଥାପନ କରି ଆମେ ସମାଜରେ ବାଟ ଚାଲୁଛୁ ଏବଂ ଉଚ୍ଚଶିକ୍ଷା ଓ ଗବେଷଣାକୁ ଯାହା ଖାଲି ଆଖିଠାର ମାରି ନିଜର ଆତ୍ମ ସର୍ବସ୍ୱ ଦୈନନ୍ଦିନ କର୍ତ୍ତବ୍ୟ ସମ୍ପାଦନରେ ବ୍ରତୀ ରହୁଛୁ ।

ସମାଜ : ୨୩.୦୮.୨୦୦୯



## ସତରେ କ'ଣ ଭାରତୀୟମାନେ ଏକ ଗ୍ଲୋବାଲ୍ ଚ୍ୟାଲେଞ୍ଜ ?

ନିକଟ ଅତୀତରେ ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମା ଗ୍ରୀନ୍ ବେ ଉଇସ୍‌କନ୍‌ସିନ୍ ଠାରେ ଦେଇଥିବା ତାଙ୍କର ଓଜସ୍ୱିନୀ ଅଭିଭାଷଣରେ ଭାରତୀୟ ଓ ଚାଇନିଜ୍ ଛାତ୍ରମାନଙ୍କୁ ଆମେରିକାର ଛାତ୍ରମାନଙ୍କ ପାଇଁ ଏକ ପ୍ରବଳ ପରାକ୍ରମୀ ପ୍ରତିଦ୍ୱନ୍ଦିଭାବେ ବର୍ଣ୍ଣନା କରିଛନ୍ତି । ସେ କୁହନ୍ତି ଯେ କିଛି ବର୍ଷ ପୂର୍ବରୁ ଆମେରିକା ବିଶ୍ୱର ସମସ୍ତ ରାଷ୍ଟ୍ରଙ୍କ ତୁଳନାରେ ଅଧିକ ସ୍ନାତକ ଓ ଡକ୍ଟରାଲ୍ ଡିଗ୍ରୀଧାରୀ ଛାତ୍ର ସୃଷ୍ଟି କରୁଥିଲା । କିନ୍ତୁ ଶିକ୍ଷାର ଆଜି ସେହି ଧାରାରେ ସମ୍ପୂର୍ଣ୍ଣ ରୂପେ ଓଲଟ ପାଲଟ ହୋଇଯାଇଛି । ଏବେ ଭାରତୀୟ ଓ ଚାଇନିଜ୍ ଛାତ୍ରମାନେ ଆମେରିକାର ସାମଗ୍ରିକ ଶିକ୍ଷାବ୍ୟବସ୍ଥାକୁ ଗୋଟାପଣ କରାୟତ୍ତ କରିସାରିଲେଣି ଓ ଆମେରିକାର ବିଶ୍ୱବିଦ୍ୟାଳୟ ଶିକ୍ଷାବ୍ୟବସ୍ଥା ଏହି ଛାତ୍ରମାନଙ୍କ ଦ୍ୱାରା ଏବେ ସମ୍ପୂର୍ଣ୍ଣରୂପେ କବଳିତ । ସେ କୁହନ୍ତି ଯେ ଭାରତୀୟ ଓ ଚାଇନିଜ୍ ଛାତ୍ରମାନଙ୍କ ଏ ଯେଉଁ ପ୍ରଳୟଙ୍କରୀ ଶିକ୍ଷାଝଡ଼ ଆମେରିକା ଅଭିମୁଖେ ଦ୍ରୁତଗତିରେ ମାଡ଼ି ଆସୁଛି ତାହା ଆମେରିକା କାହିଁକି ବିଶ୍ୱର ସମଗ୍ର ଭୂଭାଗକୁ ବିଶାଳ ଶିକ୍ଷା ରଜ୍ଜୁରେ ବନ୍ଧନ କରି ଏସିଆ ମହାଦେଶ ଅଭିମୁଖେ ଅଭିପ୍ରେରିତ କରିବ । ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଏସୀୟ ଛାତ୍ରମାନଙ୍କ ବହୁଳ ପ୍ରବେଶ ଓ ସେଠାରେ ସେମାନଙ୍କର ସ୍ପଷ୍ଟ ଦୃଶ୍ୟମାନ ଅବସ୍ଥିତି ଆମେରିକୀୟ ଛାତ୍ରସମାଜର ଦୃଢ଼ ଭିତ୍ତିଭୂମିକୁ ଦୋହଲାଇ ଦେଉଛି । ଅପର ପକ୍ଷରେ ରାଷ୍ଟ୍ରପତି ଓବାମା ଭାରତ ଓ ଚୀନ୍‌କୁ ବିକାଶ ଓ ଅର୍ଥନୈତିକ ପ୍ରତିଯୋଗିତାର ଜନପ୍ରିୟ ପ୍ରତୀକ ବା ମଡ଼େଲ୍ ଭାବେ ଉପସ୍ଥାପନା କରି ସମଗ୍ର ବିଶ୍ୱର ଧ୍ୟାନ ଏହି ରାଷ୍ଟ୍ର ଦୁଇଟିଙ୍କ ଉପରେ ନିବଦ୍ଧ କରିବାକୁ ଆହ୍ୱାନ ଦେଇଛନ୍ତି ।

ଏହା ଏପରି ପ୍ରଥମ ଘଟଣା ନୁହେଁ ଯେ ରାଷ୍ଟ୍ରପତି ଓବାମା ଏହି ଦୁଇ ରାଷ୍ଟ୍ର ଭାରତ ଓ ଚୀନ୍‌କୁ ବିଶ୍ୱ ଅଭିବୃଦ୍ଧିର ମହାନ୍ ପ୍ରତିକ ଭାବେ ବର୍ଣ୍ଣନା କରିଛନ୍ତି ଯେଉଁ ବ୍ୟବସ୍ଥାରେ କି ଆମେରିକା ଆଉ ତାର ନିଜର ବଡ଼ଭାଇପଣିଆ ବା ଅସାଧାରଣ ଆଧିପତ୍ୟକୁ ସ୍ୱତସିଦ୍ଧ ଭାବେ ଧରିନେଇପାରିବ ନାହିଁ । ଓବାମା ହେଉଛନ୍ତି ଆମେରିକାର ସର୍ବପ୍ରଥମ କୃଷ୍ଣକାୟ ବ୍ୟକ୍ତି ଯେ କି ଆମେରିକାର ରାଷ୍ଟ୍ରପତି ଆସନ ଅଳଂକୃତ କରିବାର ଅଭୂତପୂର୍ବ ଗୌରବର ଅଧିକାରୀ ହୋଇଛନ୍ତି । ତାଙ୍କର ଏହି ଅଦ୍ୱିତୀୟ

ଗୌରବର ମୂକସାକ୍ଷୀ ସମଗ୍ର ବିଶ୍ୱବାସୀ ସେଦିନ ସମ୍ପୂର୍ଣ୍ଣ ସ୍ତବ୍ଧ ଓ ହତବାକ୍ ହୋଇଯାଇଥିଲେ ଓ ତାଙ୍କୁ ଆମେରିକାର ରାଷ୍ଟ୍ରୀୟ ମହାନାୟକ ଭାବେ ଅଜସ୍ର ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

ରାଷ୍ଟ୍ରପତି ଓବାମା ତାଙ୍କର ଗୌରବୋଜ୍ଜ୍ୱଳ ବିଜୟ ପରେ ଆମେରିକାରେ ବସବାସ କରୁଥିବା ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ନେତୃବୃନ୍ଦଙ୍କୁ ଉଦ୍‌ବୋଧନ ଦେଇ ଭାରତ ଓ ଚୀନ୍‌ର ଭୂରି ଭୂରି ପ୍ରଶଂସା କରିଥିଲେ । ଏହି ଉଭୟ ଉଦ୍‌ବୋଧନରେ ରାଷ୍ଟ୍ରପତି ଓବାମା ଭାରତୀୟ ଓ ଚାଇନିଜ୍ ଛାତ୍ରମାନଙ୍କ ପ୍ରଚଣ୍ଡ ଧିଶକ୍ତି,ପ୍ରଜ୍ଞା ଓ ବିଦ୍‌ବତ୍ତାର ଅହେତୁକ ପ୍ରଶଂସା କରିଥିଲେ ଏବଂ ଏହି ଦୁଇରାଷ୍ଟ୍ରର ଛାତ୍ରମାନେ ଯେ ଅତ୍ୟନ୍ତ କଠିନ ପରିଶ୍ରମୀ, କଷ୍ଟ ସହିଷ୍ଣୁ, ଧୈର୍ଯ୍ୟଶୀଳ ଓ ଜ୍ଞାନାନୁରାଗୀ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ତର୍ଜମା କରିଥିଲେ । କଠିନ ଅଧ୍ୟବସାୟ ଓ ଅଜସ୍ର ପରିଶ୍ରମ ପାଇଁ ଭାରତୀୟ ଓ ଚାଇନିଜ୍ ଛାତ୍ରମାନେ ଆଜି ବିଶ୍ୱବନ୍ଦିତ ଓ ତାଙ୍କର ସେହି ଅସାଧାରଣ ଗୁଣ ପାଇଁ ସେମାନେ ବିଶ୍ୱର କୋଣ ଅନୁକୋଣରେ ଅତ୍ୟନ୍ତ ପ୍ରଶଂସା ଭାଜନ ହୋଇପାରୁଛନ୍ତି । କଠିନ ପରିଶ୍ରମ  କରିବା ପାଇଁ ତାଙ୍କ ପାଖରେ ଥିବା ଅସାଧାରଣ ଦକ୍ଷତା ତାଙ୍କୁ ସର୍ବୋତ୍ତମ ସୋପାନରେ ଉପବିଷ୍ଟ କରାଇବାରେ ସହାୟକ ହେଉଛି । ଅପର ପକ୍ଷରେ ଆମେରିକାର ଛାତ୍ରଛାତ୍ରୀମାନେ ଅଧ୍ୟବସାୟ ଓ ପଢ଼ାଶୁଣା ଅପେକ୍ଷା ଟେଲିଭିଜନ୍ ଦେଖିବା ଓ ଭିଡ଼ିଓ ଗେମ୍ ଖେଳିବାରେ ସେମାନଙ୍କର ବହୁମୂଲ୍ୟ ଛାତ୍ରଜୀବନଟିକୁ ବିତାଇ ଦେଉଛନ୍ତି । ଫଳରେ ପାଠପଢ଼ା ଓ ହୋମ୍ ୱାର୍କ ବଳେ ବଳେ ସେମାନଙ୍କ ଜୀବନର ପଛ ଆସନକୁ ଠେଲି ହୋଇ ଚାଲିଯାଉଛି ।

ରାଷ୍ଟ୍ରପତି ଓବାମା ଆମେରିକାର ଛାତ୍ରଛାତ୍ରୀମାନେ ଟେଲିଭିଜନ୍ ଦେଖିବା ଓ ଭିଡ଼ିଓ ଗେମ୍ ଖେଳିବାରେ ବିତାଉଥିବା ବହୁମୂଲ୍ୟ ସମୟ ପାଇଁ ଅତ୍ୟନ୍ତ ବିବ୍ରତ ଓ ଚିନ୍ତିତ ହୋଇ ପଡ଼ିଛନ୍ତି । ସେ କୁହନ୍ତି ଯେ ଆମେରିକାର ଶିକ୍ଷାବ୍ୟବସ୍ଥା ଆଜି ଏପରି ହୋଇଛି ଯେ ଛାତ୍ରଛାତ୍ରୀମାନେ ସେମାନଙ୍କର ଘରେ କଠିନ ଅଧ୍ୟବସାୟ ଓ ଅଜସ୍ର ପରିଶ୍ରମ କରନ୍ତୁ - ତାହା ସେମାନଙ୍କ ଠାରୁ ଆଦୌ ଦାବୀ କରିହେଉନାହିଁ । ଆମେରିକାରେ ବସବାସ କରୁଥିବା ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଅଧିବାସୀମାନଙ୍କୁ ଉଦ୍‌ବୋଧନ ଦେଲା ବେଳେ ମଧ୍ୟ ରାଷ୍ଟ୍ରପତି ଓବାମା ଆମେରିକାର ଶିକ୍ଷାବ୍ୟବସ୍ଥାର କ୍ରମ ଅବକ୍ଷୟମୁଖୀ ମାନଦଣ୍ଡ ଉପରେ ଗଭୀର କ୍ଷୋଭ ପ୍ରକାର କରି ତାର ପୁନରୁଦ୍ଧାର ପାଇଁ ସମସ୍ତଙ୍କର ସାହାଯ୍ୟ ଭିକ୍ଷା କରିଥିଲେ । ଶିକ୍ଷକମାନଙ୍କ କାର୍ଯ୍ୟଦକ୍ଷତାର ସଠିକ୍ ମୂଲ୍ୟାୟନ ପାଇଁସେ ଆଳାପ,

କଥୋପକଥନ, ଭାଷଣ ବା ବକ୍ତୃତାର ମାଧ୍ୟମ ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ଏହି ପ୍ରଣାଳୀର ଆଦର୍ଶାତ୍ମକ ମୂଳତତ୍ତ୍ୱଟି ରହିଛି ଶିକ୍ଷାକ୍ଷେତ୍ରରେ ପରିଚାଳନା କଳାର ଉପଯୁକ୍ତ ପରିପ୍ରୟୋଗ ଉପରେ । ମ୍ୟାନେଜ୍‌ମେଣ୍ଟ ମଡେ଼ଲ୍ ଏକ ଉତ୍କୃଷ୍ଟତମ କଳା ଓ ଶିକ୍ଷା କ୍ଷେତ୍ରରେ ଏହାର ପ୍ରରିପ୍ରୟୋଗ ଅତ୍ୟନ୍ତ ସୃଜନାତ୍ମକ ଫଳାଫଳ ପ୍ରଦାନ କରିଥାଏ ।

ଏହି ବୌଦ୍ଧିକତାସମ୍ପନ୍ନ ପରିଚାଳନା କଳାଟିକୁ ରାଷ୍ଟ୍ରପତି ଓବାମା ଆମେରିକାରେ ବସବାସ କରୁଥିବା ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଅଧିବାସୀମାନଙ୍କ ପାଖରେ ପ୍ରୟୋଗ କରିବାକୁ ଚାହିଁଲେ ଯେ ଆମେରିକାର ଉଚ୍ଚମଧ୍ୟବିତ୍ତ ଶ୍ରେଣୀ ଗୋରା ସାହେବଙ୍କ ପିଲାଙ୍କୁ ଯେପରି ଶିକ୍ଷା କ୍ଷେତ୍ରରେ ଆବଶ୍ୟକୀୟ ଧ୍ୟାନ ଦିଆଯାଉଛି ସେମାନଙ୍କର ପିଲାମାନଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ସେହିପରି ଆଦର ଓ ଯତ୍ନ ନିଆଯାଉଛି । ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଅଧିବାସୀଙ୍କ ବ୍ୟତିରେକ ଆଫ୍ରୋ-ଏସିଆନ୍ ସମ୍ପ୍ରଦାୟର ଅଧିବାସୀମାନେ ସାଧାରଣତଃ ଭାବୁଥିବେ ଯେ ରାଷ୍ଟ୍ରପତି ଓବାମା ମଧ୍ୟ ସେମାନଙ୍କର ପିଲାମାନଙ୍କ କଥା କହୁଛନ୍ତି । ଦୀର୍ଘଦିନରୁ ସେମାନଙ୍କ ମାନସ ରାଜ୍ୟରେ ଏପରି ଏକ ଚିରାଚରିତ ଓ ଗତାନୁଗତିକ ଧାରଣା ବସାବାନ୍ଧି ରହିଛି ଯେ ସେମାନଙ୍କର ପିଲାମାନେ ଶିକ୍ଷା କ୍ଷେତ୍ରରେ ଉଚ୍ଚାଭିଳାଷୀ ହେବା ପାଇଁ ଆଦୌ କାମନା କରିବା ଅନୁଚିତ୍ ଏବଂ ଏହି ଧାରଣା ଏପରି ଭାବେ ବଦ୍ଧପରିକର ହୋଇଯାଇଛି ଯେ ଏହା ତାଙ୍କ ସ୍ମୃତିର ଦିଗ୍‌ବଳୟକୁ ଆକାଶରେ କଳାହାଣ୍ଡିଆ ମେଘ ଢ଼ାଙ୍କିଲା ପରି ସମ୍ପୂର୍ଣ୍ଣ ରୂପେ ଆଚ୍ଛାଦିତ କରି ରଖିଛି । ଏପରି ଚିନ୍ତାଧାରା ତାଙ୍କ ମନ, ପ୍ରାଣ ଓ ଆତ୍ମାର ସରହଦକୁ ଗୋଟାପଣେ ଗ୍ରାସ କରିରଖିଛି କେଉଁ କାଳରୁ । ଅଣଶ୍ୱେତମାନଙ୍କ ପ୍ରତି ଏପରି ପକ୍ଷପାତ ମନୋଭାବ ଆମେରିକାରେ ଶିକ୍ଷାସମ୍ବନ୍ଧୀୟ ଗବେଷଣାର ଏକ ପ୍ରମୁଖ ବିଷୟବସ୍ତୁ ଭାବେ ପରିଗଣିତ ହେଉଛି । ରାଷ୍ଟ୍ରପତି ଓବାମାଙ୍କର ଶିକ୍ଷା ସମ୍ବନ୍ଧୀୟ ଏପରି ଅଭିଭାଷଣ ପ୍ରଦାନ ଓ ତତ୍‌ସହ ଜଡ଼ିତ ଅମୃତ ଅନୁଭବର ଅମୂଲ୍ୟ ସ୍ୱାଦକୁ ସଠିକ୍ ନିରୂପଣ କରିବାକୁ ହେଲେ ଶିକ୍ଷା କ୍ଷେତ୍ରରେ ଆମେରିକାର ଜାତୀୟ ଆବେଗ, ଗୁରୁତ୍ୱ ଓ ଚିନ୍ତାର ଐତିହାସିକ ଚରିତ୍ରଟିକୁ ଖୋଜି ବାହାର କରିବାକୁ ପଡ଼ିବ ।

ଆପଣ ସମଗ୍ର ବିଶ୍ୱରେ ଏପରି ଆଉଗୋଟିଏ ରାଷ୍ଟ୍ର ଖୋଜି ପାଇପାରିବେ ନାହିଁ ଯେଉଁ ରାଷ୍ଟ୍ରଟି ଏକାଧାରରେ ଅର୍ଥନୈତିକ ବିକାଶ କ୍ଷେତ୍ରରେ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ସମ୍ପୂର୍ଣ୍ଣ ଅବଗତି ଥାଇ ମଧ୍ୟ ଶିକ୍ଷାର ଗୁଣାତ୍ମକ ମୂଲ୍ୟହ୍ରାସ ଜନିତ ଭୟକୁ ନେଇ ଗଭୀର ଭାବେ ଚିନ୍ତିତ, ପୀଡ଼ିତ ଓ ଆନ୍ଦୋଳିତ । ପ୍ରକୃତରେ

ଆମେରିକୀୟ ଶିକ୍ଷା ସଂସ୍କୃତିରେ ଶିକ୍ଷାର ଏହି ସର୍ବନାଶ ଲୀଳା ଏକ ଅସାଧାରଣ ଜନପ୍ରିୟ ଶୈଳୀଭାବେ ପ୍ରାୟ ବିବେଚିତ ହୋଇଥାଏ । ଆମେରିକୀୟ ଶିକ୍ଷା ବ୍ୟବସ୍ଥାରେ ଯୁଦ୍ଧ ପରବର୍ତ୍ତୀ ପଲିସିରେ ଏକ ଉଲ୍ଲେଖନୀୟ ମୋଡ଼ ସେତିକିବେଳେ ଆସିଲା ଯେତେବେଳେ ପୂର୍ବତନ ସୋଭିଏତ୍ ୟୁନିୟନ୍ ମହାକାଶକୁ ତାର ସ୍ପୁଟନିକ ଯାନ ପ୍ରକ୍ଷେପଣ କଲା, ଯାହାଥିଲା ବିଶ୍ୱର ସର୍ବପ୍ରଥମ ମହାକାଶ ଯାନ । ମହାକାଶ ଗବେଷଣା କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍‌ର ଏହି ଅସାଧାରଣ ସାଫଲ୍ୟ ଆମେରିକାର ବୌଦ୍ଧିକ ମେରୁଦଣ୍ଡକୁ ସମ୍ପୂର୍ଣ୍ଣ ରୂପେ ଦୋହଲାଇ ଦେଲା ଓ ଆମେରିକା ନିଜକୁ ଅତ୍ୟନ୍ତ ଅସୁରକ୍ଷିତ ମଣିଲା । ଅତ୍ୟନ୍ତ ଭୟ, ବ୍ୟାକୁଳତା, ଅସହାୟତା, ଅସ୍ଥିରତା ଓ ଶାରୀରିକ ଯନ୍ତ୍ରଣାରେ ଆମେରିକା ଭୀଷଣଭାବେ ଛଟପଟ ହେବାକୁ ଲାଗିଲା । ଏଭଳି ଏକ ଅଭୂତପୂର୍ବ ପରିସ୍ଥିତିକୁ ଆମେରିକୀୟ ଶିକ୍ଷା ବ୍ୟବସ୍ଥାରେ ଥିବା ଗୁରୁତର ତ୍ରୁଟି ସହ ସିଧାସଳଖ ଭାବେ ସମୀକରଣ କରାଗଲା ଓ ବ୍ୟାଖ୍ୟାକାରମାନେ ଏଥିପାଇଁ ଆମେରିକୀୟ ଶିକ୍ଷାବ୍ୟବସ୍ଥାରେ ଥିବା ଭୟଙ୍କର ଦୋଷତ୍ରୁଟିକୁ ମାଟିତଳୁ ଖୋଳିତାଡ଼ି ବାହାରକରିବାକୁ ଲାଗିଲେ । ଆମେରିକୀୟ ଶିକ୍ଷା ବ୍ୟବସ୍ଥାରେ ଥିବା ଦୋଷ, ତ୍ରୁଟି ଓ ଦୁର୍ବଳତା ସହ ଏହି ଅଭାବନୀୟ ପରିସ୍ଥିତିକୁ ସମ୍ପୂର୍ଣ୍ଣରୂପେ ଯୋଡ଼ି ଦିଆଗଲା ଓ ପଣସର ସବୁ ଅଠା ଆମେରିକୀୟ ଶିକ୍ଷାବ୍ୟବସ୍ଥା ମୁଣ୍ଡରେ ହିଁ ଲଦି ଦିଆଗଲା । ଏହା ସମସ୍ତେ ହୃଦ୍‌ବୋଧ କଲେ ଯେ ଆମେରିକୀୟ ଶିକ୍ଷାବ୍ୟବସ୍ଥାର ଅପାରଗତା ଗୁଣ ଯୋଗୁଁ ଆମେରିକା ମୁହଁରେ କଳା ବୋଳି ହୋଇଗଲା ଓ ସୋଭିଏତ୍ ୟୁନିଅନ୍ ମହାକାଶ ଗବେଷଣା କ୍ଷେତ୍ରରେ ପ୍ରଥମ ଓ ସର୍ବପ୍ରଥମ ବିଜୟଟୀକା ପିନ୍ଧିବାର ପରମ ସୌଭାଗ୍ୟ ଲାଭ କଲା । ସ୍ପୁଟନିକ୍ ମହାକାଶଯାନର ଐତିହାସିକ ପ୍ରକ୍ଷେପଣ କାର୍ଯ୍ୟକ୍ରମ କାଳକାଳକୁ ବିଶ୍ୱ ଇତିହାସର ଗୌରବୋଜ୍ୱଳ ପୃଷ୍ଠା ମଣ୍ଡନ କରି ରହିଲା ।

ଫଳ ସ୍ୱରୂପ ଶୋଇଥିବା ପୁଅ ଆମେରିକା ଚେହିଁ ଉଠିଲା ଓ ସ୍କୁଲ୍, କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରର ପାଠ୍ୟ ନିର୍ଘଣ୍ଟରେ ବହୁଳଭାବେ ଅସାଧାରଣ ପରିବର୍ତ୍ତନମାନ ଅଣାଗଲା । ଶିକ୍ଷକମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦିଆଯାଇ ସମୟ ସହ ତାଳ ଦେଇ ଚାଲିବାକୁ ଆହ୍ୱାନ ଦିଆଗଲା ଏବଂ ଶିକ୍ଷା କ୍ଷେତ୍ରରେ ପବ୍ଲିକ୍ ଫାଇନାନ୍‌ସିଆଲ୍ ଇନ୍‌ଭେଷ୍ଟମେଣ୍ଟ ଉପରେ ମଧ୍ୟ ଉପଯୁକ୍ତ ଗୁରୁତ୍ୱ ଦିଆଗଲା । ହେଲେ ଅସଫଳତାର ଦାବାଗ୍ନି ଆମେରିକାର ଅସ୍ଥିର ମନ ଭିତରେ ସେମିତି ଭିତରେ ଭିତରେ କୁହୁଳିବାକୁ ଲାଗିଲା ଓ ଆମେରିକାର ବ୍ୟଥିତପ୍ରାଣ ଓ ଅତୃପ୍ତ ଆତ୍ମା ସେମିତି ଗୁମୁରି ଗୁମୁରି

କାନ୍ଦିବାକୁ ଲାଗିଲା । ପ୍ରଚଣ୍ଡ ବୌଦ୍ଧିକ ଭାବଧାରା ସମ୍ପନ୍ନ ପୁସ୍ତକମାନ ମଝିରେ ମଝିରେ ପ୍ରକାଶ ପାଇବାକୁ ଲାଗିଲା, ଯାହାକି ଶିକ୍ଷା କ୍ଷେତ୍ରରେ ଆମେରିକାର ଅଧୋଃପତନର ମନଛୁଆଁ କାହାଣୀ ବର୍ଣ୍ଣନା କରି ଜନମାନସକୁ ସମ୍ପୂର୍ଣ୍ଣରୂପେ କବଳିତ କରି ରଖିଲା ।

ହେଲେ ଘଟଣାର ମୂଳ ମଞ୍ଜିଟି ହେଲା ଶିକ୍ଷା କ୍ଷେତ୍ରରେ ଆମେରିକାର ଅଧୋଃପତନ ଓ ମାନଦଣ୍ଡରେ ହ୍ରାସକୁ ନେଇ ଯେତେ ଯାହା ସତର୍କତାର ଘଣ୍ଟି ଚତୁର୍ଦ୍ଦିଗରେ ବାଜି ଉଠିଲେ ମଧ୍ୟ ବିଦେଶୀ ଛାତ୍ରଛାତ୍ରୀ, ବିଦ୍ୱାନ ମଣ୍ଡଳୀ, ପଣ୍ଡିତବର୍ଗ ଓ ସ୍କଲାରମାନଙ୍କ ପାଇଁ ଆମେରିକା ବିଶ୍ୱର ଏକ ନମ୍ବର ରାଷ୍ଟ୍ରର ମର୍ଯ୍ୟାଦା କେବେବି ହରାଇ ନଥିଲା । ଅଥବା ଆମେରିକାରୁ ପ୍ରକାଶ ପାଉଥିବା ପାଣ୍ଡିତ୍ୟ ପୂର୍ଣ୍ଣ ପୁସ୍ତକ କିମ୍ବା ଜର୍ଣ୍ଣାଲ୍‌ର ସଂଖ୍ୟା ଓ ମାନରେ କେବେ ଭଟ୍ଟା ପଡ଼ିନଥିଲା । ଆମେରିକାର ଶିକ୍ଷା ବ୍ୟବସ୍ଥା ପରି ଆମେରିକାରେ ସୃଷ୍ଟି ହେଉଥିବା ଜ୍ଞାନର ଗନ୍ତାଘର କ୍ରମାଗତ ଭାବେ ଅଧିକରୁ ଅଧିକ ବ୍ୟୟସାପେକ୍ଷ ହେବାକୁ ଲାଗିଲା ଏବଂ ଇଣ୍ଟରନେଟ୍‌ର ଆଗମନ ଫଳରେ ପରିସ୍ଥିତିରେ କିଛିଟା ପରିବର୍ତ୍ତନ ପରିଲକ୍ଷିତ ହେଲା । ବିଗତ କିଛି ବର୍ଷ ଧରି ଚରମପନ୍ଥୀ ଆଧୁନିକ ଉଦାରବାଦର ସ୍ୱର ସୀମିତ ବା ପରିମିତ ସ୍ୱର ଅପେକ୍ଷା ଅଧିକ ସୁବିଧା ସୁଯୋଗର ଦ୍ୱାର ଉନ୍ମୁକ୍ତ କରି ଜନସାଧାରଣଙ୍କ ପାଖରେ ବେଶ୍ ଗ୍ରହଣୀୟ ହୋଇପାରିଛି । ପ୍ରଫେସର ଶୀଲା ସ୍ଲଟର ତାଙ୍କ ଲିଖିତ "ଏକାଡେମିକ୍ କ୍ୟାପିଟାଲିଜିମ୍" ପୁସ୍ତକରେ ଉଚ୍ଚଶିକ୍ଷା କ୍ଷେତ୍ରରେ କର୍ପୋରେଟ୍ ସାମ୍ରାଜ୍ୟର ପ୍ରଭୁତ୍ୱ ବିସ୍ତାର ବା ନିୟନ୍ତ୍ରଣାଧିକାର ପ୍ରାପ୍ତି ଉପରେ ବିଶଦ ପର୍ଯ୍ୟାଲୋଚନା କରିଛନ୍ତି ଯାହାକି ବିଶ୍ୱବିଦ୍ୟାଳୟ ବ୍ୟବସ୍ଥା ଓ ଜ୍ଞାନ ବୈଭବକୁ ଆମେରିକା ଭିତରେ ଏବଂ ସମଗ୍ର ବିଶ୍ୱଜଗତରେ ଏକ ପରମ ଆୟୁଧ ଓ ନିୟନ୍ତ୍ରଣର ମାଧ୍ୟମଭାବେ ପରିପ୍ରୟୋଗ ଉପରେ ଗଭୀର ଆଲୋକପାତ କରିଛନ୍ତି । ଆମେରିକାର ବିଶ୍ୱବିଦ୍ୟାଳୟ ଗୁଡ଼ିକୁ ଆମେରିକା ସରକାରଙ୍କ ଅନୁଦାନରେ ହ୍ରାସ ଯୋଗୁ ଶିକ୍ଷା ସମ୍ବନ୍ଧୀୟ ବ୍ୟକ୍ତିଗତ ଖର୍ଚ୍ଚରେ ନିଶ୍ଚିତ ଅଭିବୃଦ୍ଧି ପରିଲକ୍ଷିତ ହୋଇଛି । ଜାତିଗତ, ଶ୍ରେଣୀଗତ, ଲିଙ୍ଗଗତ ଏବଂ ଆଞ୍ଚଳିତ ତାରତମ୍ୟରେ ମଧ୍ୟ ମାତ୍ରାଧିକ ଅଭିବୃଦ୍ଧି ଘଟିଛି ।

ଆଧୁନିକ ଉଦାରବାଦର ସ୍ୱର ଶିକ୍ଷା ବ୍ୟବସ୍ଥା ଭିତରେ ବିରୋଧୋକ୍ତି ଓ ବୈଷମ୍ୟ ଭାବକୁ ଅଧିକରୁ ଅଧିକ ଶାଣିତ କଲା ଯାହାଫଳରେ ଆମେରିକାର ବିଭିନ୍ନ ପ୍ରାନ୍ତରେ ସଂକଟର ଛାଇ ମୁଣ୍ଡଟେକି ଠିଆହେଲା । ଏପରି ଏକ କ୍ଷେତ୍ର ହେଲା ଶିକ୍ଷାଦାନକୁ ଏକ ବୃତ୍ତି ଭାବେ ବରଣ କରି ନେବା । ସହରମାନଙ୍କରେ ଥିବା

ଶିକ୍ଷାଦାନକୁ ଏକ ବୃତ୍ତି ଭାବେ ବରଣ କରି ନେବା । ସହରମାନଙ୍କରେ ଥିବା ବିଦ୍ୟାଳୟମାନଙ୍କରେ ସହର ତଳି ଅଞ୍ଚଳର ବିଦ୍ୟାଳୟମାନଙ୍କ ଠାରୁ ଅଧିକରୁ ଅଧିକ ଧନୀ ଛାତ୍ରମାନେ ପାଠ ପଢୁଥିବାରୁ ଶିକ୍ଷାର ବାତାବରଣରେ ଶାନ୍ତି ଶୃଙ୍ଖଳାର ଘୋର ଅଭାବ ପରିଲକ୍ଷିତ ହୋଇଥାଏ । ଶିକ୍ଷକମାନେ ଯେଉଁମାନେ କି ବିଶ୍ୱବିଦ୍ୟାଳୟମାନଙ୍କରୁ ୪-୫ ବର୍ଷିଆ ପ୍ରଶିକ୍ଷଣ କୋର୍ସ ଲାଭ କରି ବଡ଼ବଡ଼ ସହରମାନଙ୍କରେ ଥିବା ବିଦ୍ୟାଳୟମାନଙ୍କରେ ଶିକ୍ଷକତା କଲେ ସେମାନଙ୍କର ବୃତ୍ତିଗତ ଜୀବନ ଅତ୍ୟନ୍ତ ନିରାଶାଜନକ ଓ ହତାଶାପୂର୍ଣ୍ଣ ହୋଇଉଠିଲା । ଫଳତଃ ସେମାନେ ଅନ୍ୟାନ୍ୟ ଚାକିରୀ ଆଡ଼କୁ ମୁହଁ ବୁଲାଇଲେ । ଏଭଳି ପରିସ୍ଥିତିରୁ ମୁକୁଳିବା ପାଇଁ ଘରୋଇ ଏଜେନ୍ସି ମାନେ ଫାଷ୍ଟ ଟ୍ରାକ୍ ଟ୍ରେନିଂ ପ୍ରୋଗ୍ରାମ୍ ମାଧ୍ୟମରେ ଗଦା ଗଦା ଶିକ୍ଷକ ଉତାରିଲେ ଯେଉଁମାନେ କି କେବଳ ବିଷୟବସ୍ତୁର ଶିକ୍ଷା ଉପରେ ପ୍ରାଧାନ୍ୟ ଦେଇ ମନସ୍ତାତ୍ତ୍ୱିକ ଓ ସାମାଜିକ ସଚେତନତାକୁ ଗୁରୁତ୍ୱ ଦେଲେ ନାହିଁ । ରାଷ୍ଟ୍ରପତି ଜର୍ଜ ବୁଶ୍‌ଙ୍କ ସମୟରେ "ଯେକେହି ଶିକ୍ଷାଦାନ କରିପାରିବେ" (Anyone can teach) ଏବଂ "ଯାହାକିଛି ଶିକ୍ଷା ଦେଲେ ହିଁ ଯଥେଷ୍ଟ" (Good enough teaching)ର ସ୍ଲୋଗାନ୍ ଆମେରିକାରେ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲା । ଶିକ୍ଷାଦାନର ବୃତ୍ତିଗତ ମର୍ଯ୍ୟାଦା ଓ ବ୍ୟକ୍ତିଗତ ସ୍ୱାଧୀନତାକୁ କ୍ଷୁର୍ଣ୍ଣ କରିବାରେ ଇଲେକ୍‌ଟ୍ରୋନିକ୍ ଶିକ୍ଷାଦାନ ପଦ୍ଧତି (e-learning) ଏବଂ ଅନ୍ୟାନ୍ୟ ପ୍ୟାକେଜ୍ ଶିକ୍ଷା ପଦ୍ଧତିର ପ୍ରଚଳନ ବହୁଳ ଭାବେ ଯୋଗଦାନ ଦେଲା ।

ଏଭଳି ଏକ ଚିତ୍ର ଭାରତବର୍ଷର ପୃଷ୍ଠଭୂମିରେ ଆଦୌ ଅପରିଚିତ ନୁହେଁ । ଶିକ୍ଷାକ୍ଷେତ୍ରରେ ଆମର ପୁଞ୍ଜି ବିନିଯୋଗର ପରିମାଣ ଅତ୍ୟନ୍ତ ସ୍ୱଳ୍ପ ଏବଂ ଉଚ୍ଚମାନଯୁକ୍ତ ଶିକ୍ଷାନୁଷ୍ଠାନ ଯେଉଁମାନେ କି ସତରେ ଭାରତର ଗର୍ବ ଓ ଗୌରବର ଧ୍ୱଜା ଉଡ଼ାଇବାକୁ ସଂକଳ୍ପବଦ୍ଧ ସେମାନଙ୍କର ସଂଖ୍ୟା ମଧ୍ୟ ଅତ୍ୟନ୍ତ ନଗଣ୍ୟ । ଯଦି ଆମେରିକାର ରାଷ୍ଟ୍ରପତି ବାରାକ ଓବାମା ଏକ ପ୍ରତିଯୋଗିତାପୂର୍ଣ୍ଣ ଭାରତବର୍ଷର ଭବିଷ୍ୟତକୁ ନେଇ ସତରେ ଉଦ୍‌ବିଗ୍ନ ତାହେଲେ ସେ ନିଶ୍ଚିତ ରୂପେ ଜଣେ ପ୍ରଚଣ୍ଡ ଜ୍ଞାନଦୀପ୍ତ ଭବିଷ୍ୟତବାଦୀ ଅବା ସେ ବିଶାଳ ଭାରତୀୟ ଯୁବଶକ୍ତିର ଏକ କ୍ଷୁଦ୍ରାତିକ୍ଷୁଦ୍ର ଅଂଶ ବିଶେଷ, ଯେଉଁମାନେ କି ଆଜି ଭାରତୀୟ ଜ୍ଞାନାଶ୍ରୟୀ ସମାଜର ନିର୍ଭୀକ ପ୍ରତିନିଧିତ୍ୱ କରି ଆମେରିକା ସମେତ ବିଶ୍ୱର କୋଣ ଅନୁକୋଣରେ ନିଜର ସୌର୍ଯ୍ୟଦୀପ୍ତ ପ୍ରଜ୍ଞା, ଅଜୟ ପ୍ରତିଭା ଓ ଅପାର ଧୀଶକ୍ତିର ଅଭୂତପୂର୍ବ ପ୍ରଦର୍ଶନକରି ସମଗ୍ର ବିଶ୍ୱବାସୀଙ୍କୁ ସ୍ତବ୍ଧ ଓ ତଟସ୍ଥ କରିଦେଇଛନ୍ତି - ସେମାନଙ୍କର କଥା ହିଁ କହୁଛନ୍ତି । ଏହି "ଗ୍ଲୋବାଲ୍ ଇଣ୍ଡିଆନ୍"

ମାନଙ୍କ ସଂଖ୍ୟା ଭାରତୀୟ ଜନସଂଖ୍ୟା ତୁଳନାରେ ଅତ୍ୟନ୍ତ ନ୍ୟୁନ ଓ ସେମାନେ ପ୍ରାୟ ଭାରତୀୟ ସମାଜ ବ୍ୟବସ୍ଥାର ଉପରସ୍ତରରୁ ହିଁ ଆସିଥାନ୍ତି । ଭାରତୀୟ ଯୁବଶକ୍ତିର ଏହି ଉଦ୍ଦାମ ମହାଭାରତୀୟ ରୂପ ଆମେରିକା ରାଷ୍ଟ୍ରପତି ବରାକ୍ ଓବାମାଙ୍କ ରାତିର ନିଦ ଯଦିଓ ହଜେଇ ଦେଇଛି ହେଲେ ଆମେ ଆମର ପାଦତଳ ମାଟିର ପ୍ରକୃତ ସତ୍ତା ଅନୁଭବ କରିବା ଉଚିତ୍ ଓ ତଦନୁଯାୟୀ ବିହିତ ପଦକ୍ଷେପ ଗ୍ରହଣ କରି ଭାରତୀୟ ଶିକ୍ଷା ବ୍ୟବସ୍ଥାର ଉତ୍ତରୋତ୍ତର ଉନ୍ନତିରେ ବ୍ରତୀ ହେବା ଆଜିର ଏକ ମସ୍ତବଡ଼ ଆହ୍ୱାନ ହୋଇ ଆମ ଆଗରେ ଉଭା ହୋଇଛି ।

ପ୍ରଫେସର ଯଶପାଲ୍ କମିଟି ନିକଟ ଅତୀତରେ ଉଚ୍ଚଶିକ୍ଷା ସଂକ୍ରାନ୍ତରେ ଭାରତ ସରକାରଙ୍କ ପାଖରେ ଉପସ୍ଥାପନା କରିଥିବା ରିପୋର୍ଟ ସମସ୍ୟାର ଭୀମକାୟ ରୂପ ଓ ଏହାର ଆଶୁ ସମାଧାନ ପାଇଁ କିପରି ଏକ ଦୃଢ଼ନିଶ୍ଚିତ ଓ ଜରୁରୀ ପଦକ୍ଷେପ ଆବଶ୍ୟକ ସେ ବିଷୟରେ ଗଭୀର ଭାବେ ଚେତେଇ ଦେଇଛନ୍ତି । ଏହି ରିପୋର୍ଟ ପୁନଶ୍ଚ ଆମକୁ ମନେପକେଇ ଦେଉଛି ଯେ ସମାଧାନର ସୂତ୍ର ଏତେ ସରଳ ନୁହେଁ ଏବଂ ଉଚ୍ଚଶିକ୍ଷା ପ୍ରତିଷ୍ଠାନଗୁଡ଼ିକର ପୁନର୍ବିନ୍ୟାସ, ପୁନଃରୁଦ୍ଧାର ଓ ପୁନଃନିର୍ମାଣ ବ୍ୟତିରେକ ଅନ୍ୟ କୌଣସି ବିକଳ୍ପ ପନ୍ଥା ନାହିଁ । ସମାଧାନର ଗୋଟିଏ ରାସ୍ତା ହୋଇପାରେ ଉଚ୍ଚଶିକ୍ଷାକୁ ଏକ ବଜାର ଭଳି ବିନିଯୋଗ ବା ବ୍ୟବହାର କରିବା ଅବା ବିଦେଶୀ ବିଶ୍ୱବିଦ୍ୟାଳୟ ପାଇଁ ଏହାର ସିଂହଦ୍ୱାର ଉନ୍ମୁକ୍ତ କରିଦେବା । ଏ ଦୁଇଟି ଚିନ୍ତାଧାରା ଯଦିଓ ଅତ୍ୟନ୍ତ ପ୍ରଲୋଭନକାରୀ ହେଲେ ତାହା ଯେ ସାମୟୀକ ଉପଶମ ପ୍ରଦାନ କରିବ ସେ ନେଇ ଆଶା ଖୁବ୍ କ୍ଷୀଣ । ଯଶପାଲ୍ କମିଟିର ଜଣେ ଭିନ୍ନମତାବଲମ୍ବୀ ସଦସ୍ୟ ଯୁକ୍ତି ବାଢ଼ିଥାନ୍ତି ଯେ ଉଚ୍ଚଶିକ୍ଷା ବ୍ୟବସ୍ଥାକୁ ଲାଭଆଶା କରୁଥିବା ବ୍ୟକ୍ତି ବିଶେଷ ବା ଅନୁଷ୍ଠାନ ପାଖରେ ଉନ୍ମୁକ୍ତ କରିଦେଲେ ପ୍ରତିଯୋଗିତାର ପ୍ରୋତ୍ସାହନ ମାଧ୍ୟମରେ ଉଚ୍ଚଶିକ୍ଷାର ଗୁଣାତ୍ମକ ମାନରେ ନିଶ୍ଚିତ ଅଭିବୃଦ୍ଧି ହେବ । ଏପରି ଏକ ଯୁକ୍ତି ଶିକ୍ଷାର ସହଜାତ ଗୁଣ, ବୈଶିଷ୍ଟ୍ୟ ବା ପ୍ରକୃତି ସମ୍ବନ୍ଧରେ ଦୁଇଟି ନିର୍ଦ୍ଦିଷ୍ଟ ଦିଗ ବା ଦୃଷ୍ଟିକୋଣକୁ ଅଦେଖା କରିଥାଏ । ପ୍ରଥମତଃ ଶିକ୍ଷା କ୍ଷେତ୍ରରେ ଯେକୌଣସି ପୁଞ୍ଜି ବିନିଯୋଗ ଯାହାକି ସାମାଜିକ ଗତିଶୀଳତା ଏବଂ ଅଭିବୃଦ୍ଧି ଧର୍ମୀ ଓ ଯାହା ସମାନତା ବା ସାମ୍ୟ ପ୍ରତିଷ୍ଠା ଦିଗରେ ଅତ୍ୟନ୍ତ ଅଭିପ୍ରେରିତ ତାହାର ଦୀର୍ଘ ଯୋଜନା କାଳ ଓ ବିକାଶ ଅବଧି ରହିବା ନିଶ୍ଚିତ ସତ୍ୟ ଏବଂ ପୁଞ୍ଜି ବିନିଯୋଗରୁ ଲାଭ ମିଳିବାଟା ଆକାଶ କଇଁଆ ଚିଲିକା ମାଛ ସଦୃଶ ହେବା ମିଛକଥା ନୁହେଁ । ଏବଂ ଦ୍ୱିତୀୟତଃ କୌଣସି

ଶିକ୍ଷାନୁଷ୍ଠାନରେ କେବଳ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ବା ପାଠ୍ୟକ୍ରମ ଉପରେ ଉଚ୍ଚଶିକ୍ଷା ପ୍ରଦାନ କରିବା ଯଥା କେବଳ ବୈଷୟିକ ଶିକ୍ଷା ଅବା ପରିଚାଳନା ଶିକ୍ଷା ପ୍ରଦାନ ଶିକ୍ଷାବିଜ୍ଞାନ ଦୃଷ୍ଟିକୋଣରୁ ତ୍ରୁଟିପୂର୍ଣ୍ଣ ବୋଲି ଧରାଯାଇଥାଏ କାରଣ ଏହା ଛାତ୍ରଛାତ୍ରୀଙ୍କ ମାନସରାଜ୍ୟରେ ବିଭିନ୍ନ ପାଠ୍ୟକ୍ରମ ମଧ୍ୟରେ ଥିବା ବୌଦ୍ଧିକ ଓ କଳ୍ପନା ସମ୍ଭୁତ ଯୋଗସୂତ୍ରର ସ୍ଥାପନା ଦିଗରେ ସମ୍ପୂର୍ଣ୍ଣ ରୂପେ ବିଫଳ ହୋଇଥାଏ । ସେହି କାରଣରୁ ବିଶ୍ୱର ସର୍ବୋତ୍କୃଷ୍ଟ ବିଶ୍ୱବିଦ୍ୟାଳୟ ଗୁଡ଼ିକ ବୈଷୟିକ ଓ ପରିଚାଳନା ଶିକ୍ଷା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ବିଷୟବସ୍ତୁ ଓ ପାଠ୍ୟକ୍ରମର ମଧ୍ୟ ପ୍ରଚଳନ କରିଥାନ୍ତି ।

ସାଧାରଣତଃ ଲୋକପ୍ରିୟ ସରକାର ସାମାଜିକ ପ୍ରତିବଦ୍ଧତାର ଫଳାଫଳ ଓ ତାର ଦୃଶ୍ୟମାନ ରୂପରେଖକୁ ପରିଦର୍ଶନ କରିବା ପାଇଁ ବର୍ଷ ବର୍ଷ ଧରି ଅପେକ୍ଷା କରିଥାନ୍ତି ଏବଂ ବହୁବିଧ ବିଷୟବସ୍ତୁ ଓ ପାଠ୍ୟକ୍ରମକୁ ନେଇ ଉଚ୍ଚଶିକ୍ଷା ପ୍ରଦାନ କରିବାର ସୁବନ୍ଦୋବସ୍ତ କରିଥାନ୍ତି । ଲାଭ କ୍ଷତିର ହିସାବ ନିକାଶ ଅପେକ୍ଷା ସାମାଜିକ ଦାୟିତ୍ୱବୋଧତା ଶିକ୍ଷାର ଆଭିମୁଖ୍ୟ ହୋଇଥାଏ । ସରକାରୀ ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ରଛାତ୍ରୀମାନେ ପ୍ରଦାନ କରୁଥିବା ଟ୍ୟୁସନ ଫି ଓ ଅନ୍ୟାନ୍ୟ ଆନୁସଙ୍ଗିକ ଫି ତୁଳନାରେ ଶିକ୍ଷାନୁଷ୍ଠାନର ପରିଚାଳନାରେ ସରକାରଙ୍କ ଖର୍ଚ୍ଚ କାହିଁ କେତେଗୁଣ ଅଧିକ ହୋଇଥାଏ । ଅପରପକ୍ଷରେ ଘରୋଇ ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କରେ ଅନବରତ ଲାଭ କ୍ଷତିର ଅଙ୍କ କଷା ଚାଲିଥାଏ ଓ ଛାତ୍ରଛାତ୍ରୀମାନଙ୍କ ଠାରୁ ଆମେ କେତେ ପାଇଲୁ ଓ ତାର ପ୍ରତିବଦଳରେ ଆମେ ତାଙ୍କୁ କେତେ ଦେଲୁ ତାର ସଦା ନିକିତି ତଉଲା ଚାଲିଥାଏ । ନିକିତିର ପାଲାଟି ସବୁବେଳେ ଘରୋଇ ଅନୁଷ୍ଠାନ ଆଡ଼କୁ ଭାରି ହୋଇଥାଏ ଓ ତାଙ୍କ ତହବିଲ୍ ସବୁବେଳେ ମାଲାମାଲ୍ ହୋଇ ରହିଥାଏ । ଛାତ୍ରମାନେ ଯେଉଁ ବିଷୟ ଅଧ୍ୟୟନ କରିବା ପାଇଁ ଅଧିକ ଅର୍ଥ ପ୍ରଦାନ କରିବାକୁ ଆଗ୍ରହୀ ଏବଂ ଯେଉଁ ବିଷୟରେ ବଜାରରେ ଚାକିରୀ ଚାହିଦା ଅଧିକ ଘରୋଇ ପ୍ରତିଷ୍ଠାନମାନେ ନିର୍ଦ୍ଦିଷ୍ଟଭାବେ ସେହି ବିଷୟ ହିଁ ଖୋଲିଥାନ୍ତି । ଶିକ୍ଷା କ୍ଷେତ୍ରରେ ଏହିସବୁ କାରଣରୁ ଶିକ୍ଷାଶାସ୍ତ୍ର ସମ୍ବନ୍ଧୀୟ ଏବଂ ସାମାଜିକ ଦୃଷ୍ଟିକୋଣରୁ ଲାଭବାନ୍ ହୋଇପାରୁଥିବା ପୁଞ୍ଜିବିନିଯୋଗ ସରକାର ବହନ କରିବା ହିଁ ସର୍ବୋତ୍କୃଷ୍ଟ ପରିକଳ୍ପନା ହେବ ।

ପ୍ରଫେସର ଯଶପାଲ୍ କମିଟି ରିପୋର୍ଟ ଏକାଡେମିକ୍ ଲାଇଫ୍‌ର ବୌଦ୍ଧିକ ବିଖଣ୍ଡନ ଉପରେ ଗଭୀର ଆଲୋକପାତ କରିବା ସଂଗେ ସଂଗେ ଏହାର କୁ ଫଳାଫଳ ଉପରେ ସମସ୍ତଙ୍କୁ ଚେତାଇ ଦେଇଛନ୍ତି । ରିପୋର୍ଟଟି ଗଭୀର ମନନ, ଚିନ୍ତନ ଓ

ବିଚାର ପାଇଁ ଆମକୁ ବାଧ୍ୟ କରୁଛି ଏଇଥିପାଇଁ ଯେ କାହିଁକି ଆମର ଅଣ୍ଡର ଗ୍ରାଜୁଏଟ୍ ଶିକ୍ଷାପଦ୍ଧତି ଭାରତୀୟ ଯୁବଶକ୍ତିକୁ ପ୍ରଚଣ୍ଡ ଭାବେ ଉଦ୍‌ବୁଦ୍ଧ କରିବା, ସୃଜନଶୀଳ ପ୍ରତିଭାର ଉନ୍ମେଷପାଇଁ ପ୍ରବର୍ତ୍ତାଇବା ତଥା ସେମାନଙ୍କର ମନ ଓ ପ୍ରାଣରେ ଅହେତୁକ ଉତ୍ସାହ, ଉଦ୍ଦୀପନା ଓ ଜାଗରଣ ଭରି ଦେବାରେ ସମ୍ପୂର୍ଣ୍ଣରୂପେ ବିଫଳ ହେଉଛି ? ପୁନଶ୍ଚ ଶିକ୍ଷା କ୍ଷେତ୍ରରେ ଲିଙ୍ଗଭେଦର ଭୟଙ୍କର ରାକ୍ଷସ ଆମ ସାମାଜିକ ଅବୟବକୁ ଗୋଟାପଣ ଖାଇ ହଜମ କରିଦେଲାଣି । ଉଚ୍ଚଶିକ୍ଷା କ୍ଷେତ୍ରରେ ସଂସ୍କାର ପାଇଁ ପ୍ରଫେସର ଯଶ୍‌ପାଲ୍ କମିଟି ନୂତନ ଦିଶା ଓ ଦିଗନ୍ତର ଆହ୍ୱାନ ଦେବା ସଂଗେ ସଂଗେ ପରିବର୍ତ୍ତନର ଏହି ଅଭିନବ ଚ୍ୟାଲେଞ୍ଜକୁ ଆଦରର ସହ ଗ୍ରହଣ କରିନେବାକୁ ନିର୍ଦ୍ଦେଶ ଦେଇଛନ୍ତି । ଚ୍ୟାଲେଞ୍ଜ କେବଳ ପ୍ରଶାସନିକ ଏବଂ ଅର୍ଥନୈତିକ ଭିତ୍ତିକ ନୁହେଁ ଏହା ମଧ୍ୟ ପାଠ୍ୟକ୍ରମ ଭିତ୍ତିକ ତଥା ଶିକ୍ଷାଶାସ୍ତ୍ର ସମ୍ବନ୍ଧୀୟ ଅଟେ । ଚ୍ୟାଲେଞ୍ଜ ମଧ୍ୟ ଶିକ୍ଷା ବ୍ୟବସ୍ଥାର ଗଠନ ଶୈଳୀ ଉପରେ ଅଙ୍ଗୁଳି ନିର୍ଦ୍ଦେଶ କରିଥାଏ କାରଣ ଏହା ଏକ ସୁଶୃଙ୍ଖଳ, ନିୟମିତ ବା ସୁଚିନ୍ତିତ ଦୃଷ୍ଟିକୋଣ ଦାବୀ କରିଥାଏ । ଜ୍ଞାନର ବିଖଣ୍ଡନ ସମସ୍ୟାର ଛାତି ଭିତରେ ହିଁ ଲୁଚି ରହିଛି ଯାହାକି କଲେଜମାନଙ୍କରେ ନାଁ ଲେଖା କ୍ଷେତ୍ରରେ ଅତ୍ୟନ୍ତ କଡ଼ାକଡ଼ି ବ୍ୟବସ୍ଥାର ପ୍ରଚଳନ କରିବା, ବିଜ୍ଞାନ ଓ ସମାଜ ବିଜ୍ଞାନରୁ ଇଞ୍ଜିନିୟରିଂ ଓ ମେଡ଼ିକାଲ୍ ଶିକ୍ଷାକୁ ପୃଥକ କରିଦେବା ଏବଂ ଅଣ୍ଡର ଗ୍ରାଜୁଏଟ୍ ସ୍ତରରେ ଶିକ୍ଷାଦାନ ବ୍ୟବସ୍ଥାରୁ ଗବେଷଣାକୁ ସମ୍ପୂର୍ଣ୍ଣରୂପେ ଅଲଗା କରିଦେବା ଫଳରେ ସୃଷ୍ଟି ହୋଇଛି । ଏପରି ସମସ୍ୟାର ସମାଧାନ ଦିନକର କଥା ନୁହେଁ ।

ଭାରତବର୍ଷକୁ ଶିକ୍ଷା କ୍ଷେତ୍ରରେ ଏକ ପ୍ରବଳ ପ୍ରତିଦ୍ୱନ୍ଦୀ ବିଶ୍ୱ ମହାଶକ୍ତି ଭାବେ ଅଭିବନ୍ଦିତ କରି ଆମେରିକା ରାଷ୍ଟ୍ରପତି ବାରାକ ଓବାମା ସମଗ୍ର ବିଶ୍ୱରେ ଏକ ଅଦ୍ୱିତୀୟ ଜ୍ଞାନ ବର୍ତ୍ତିକା ପ୍ରଜ୍ୱଳିତ କରିଛନ୍ତି । ହେଲେ ଭାରତ ପ୍ରତି ନିବେଦିତ ତାଙ୍କର ଏହି ଯାଦୁକାରୀ ମହନୀୟ ଅଭିବ୍ୟକ୍ତିରେ ଭାସି ନଯାଇ ଭାରତୀୟମାନେ ଶିକ୍ଷା କ୍ଷେତ୍ରରେ ସମ୍ମୁଖୀନ ହେଉଥିବା ଅସଂଖ୍ୟ ଚ୍ୟାଲେଞ୍ଜର ମୁହାଁମୁହିଁ ସମ୍ମୁଖୀନ ହେବା ଉଚିତ୍ । ସମସ୍ୟାର ମୃତ୍ୟୁ ସମସ୍ୟାର ଏନ୍ତୁଡ଼ିଶାଳରୁ କିପରି ସମ୍ଭବପର ହୋଇପାରିବ ସେ ନେଇ ବିହିତ କାର୍ଯ୍ୟପନ୍ଥା ଗ୍ରହଣ କରିବା ଆଜି ଏକ ମସ୍ତ ବଡ଼ ଆହ୍ୱାନ ।

ସମାଜ : ୦୪.୧୦.୨୦୦୯



# ଉଦ୍‌ଯାନ ବୋମାର ଛାୟା ତଳେ ଜୀବନ !

ନିକଟ ଅତୀତର ତିନୋଟି ପ୍ରମୁଖ ଘଟଣା ପ୍ରବାହ ୧୯୯୮ ମସିହାରେ ସଂଗଠିତ ହୋଇଥିବା ଭାରତର ପାରମାଣବିକ ପରୀକ୍ଷା ନିରୀକ୍ଷା 'ପୋଖରାନ୍-୨'ର ବିଚାରଶୀଳତା, ଅଭିଜ୍ଞତା ଓ ବିଜ୍ଞତାକୁ ନେଇ ଏହାର ନିଜସ୍ୱ ଲାଭ କ୍ଷତିର ସଂକୁଚିତ ପୃଷ୍ଠଭୂମି ଆଧାର ମଧ୍ୟରେ ବିଚାର କରିବା ଦ୍ୱାରା ଯୁକ୍ତିତର୍କ ବା ଆଲୋଚନାର ଦ୍ୱାର ପୁନଃ ଉନ୍ମୁକ୍ତ ହୋଇଯାଇଛି । ବରଂ ଏଭଳି ଆଲୋଚନା ଓ ପ୍ରତିଆଲୋଚନା ଆଣବିକ ପରୀକ୍ଷା ନିରୀକ୍ଷାର ବୁଦ୍ଧିହୀନ ଆଚରଣ, କାର୍ଯ୍ୟ ବା ଧାରାକୁ ଦୃଢ଼ୀକରଣ କରୁଛି । ୧୯୯୮ ମସିହାର ଆଣବିକ ପରୀକ୍ଷା ନିରୀକ୍ଷା 'ପୋଖରାନ-୨'ର ପ୍ରୋଜେକ୍ଟ ଲିଡ଼ର ଡକ୍ଟର କେ. ସାନ୍ଥାନାମ୍ ନିକଟ ଅତୀତରେ ଦାବି କରିଛନ୍ତି ଯେ ୧୯୯୮ ମସିହାରେ ପରୀକ୍ଷିତ ହୋଇଥିବା ଉଦ୍‌ଯାନ ବୋମାରୁ ନିର୍ଗତ ହୋଇଥିବା ଧ୍ୱଂସାତ୍ମକ ଶକ୍ତି (Projected Destructive Energy) ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ୪୫ କିଲୋଟନ୍ ନହୋଇ ୧୫ ରୁ ୨୦ କିଲୋଟନ୍ ଶକ୍ତି ବିଶିଷ୍ଟ ଥିଲା । ତାଙ୍କର ଏହି ଦାବୀ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ, ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ୍ କଲାମ୍ (ଯେ କି ୧୯୯୮ ମସିହାରେ କେନ୍ଦ୍ର ପ୍ରତିରକ୍ଷା ମନ୍ତ୍ରୀଙ୍କ ବୈଜ୍ଞାନିକ ଉପଦେଷ୍ଟା ଥିଲେ) ଏବଂ ସେତେବେଳର ଭାରତୀୟ ଜନତାପାର୍ଟି ସରକାରଙ୍କ ଜାତୀୟ ନିରାପତ୍ତା ଉପଦେଷ୍ଟା ଶ୍ରୀ ବ୍ରଜେଶ ମିଶ୍ରଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାତ ହୋଇଛି । ଡକ୍ଟର କେ. ସାନ୍ଥାନାମ୍‌ଙ୍କ ଦାବୀଙ୍କୁ ଦେଶର ଅତ୍ୟନ୍ତ ପ୍ରଭାବଶାଳୀ ଓ ଓଜନଦାର ବୈଜ୍ଞାନିକ ବ୍ୟକ୍ତିତ୍ୱ ତଥା ଭାରତର ପୂର୍ବତନ ପାରମାଣବିକ ଶକ୍ତି କମିଶନ୍‌ର ଅଧ୍ୟକ୍ଷ ଡକ୍ଟର ପି.କେ. ଆୟାଙ୍ଗାର ସମର୍ଥନ କରିଛନ୍ତି ଏବଂ ତାଙ୍କର ଏହି ସମର୍ଥନ ମଧ୍ୟ ବହୁ ଅନାଗ୍ରହୀ ଆନ୍ତର୍ଜାତିକ ପର୍ଯ୍ୟବେକ୍ଷକଙ୍କ ଦ୍ୱାରା କରାଯାଇଥିବା ସେ ସମୟର ପାରମାଣବିକ ପରୀକ୍ଷା ନିରୀକ୍ଷାର ଟେଷ୍ଟ ଡାଟାର ବିଶ୍ଳେଷଣାତ୍ମକ ଉପସଂହାର ସହ ମୋଟାମୋଟି ସହମତି ପ୍ରକାଶ କରୁଛି ।

ସମସ୍ତଙ୍କୁ ଚକିତ ଓ ଆଶ୍ଚର୍ଯ୍ୟ କଲାଭଳି ଏଭଳି ତଥ୍ୟର ଏବେ ପରିପ୍ରକାଶର କାରଣ ହୁଏତ ହୋଇପାରେ ଯେ କେନ୍ଦ୍ରସରକାରଙ୍କ ଉପରେ ଚାପ ପ୍ରୟୋଗ କରି ପୁନର୍ବାର ଆଣବିକ ପରୀକ୍ଷା ନିରୀକ୍ଷା କରି ଭାରତବର୍ଷ ତାର ନିଜର ଉଦ୍‌ଯାନ

ବୋମାର ଡିଜାଇନ୍‌କୁ ବିଧିସିଦ୍ଧ କରୁ । ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମାଙ୍କ ପ୍ରଶାସନ 'କମ୍ପ୍ରେହେନ୍‌ସିଭ୍ ଟେଷ୍ଟ ବ୍ୟାନ ଟ୍ରିଟି' (ସି.ଟି.ବି.ଟି)କୁ ଅନୁମୋଦନ କଲାପୂର୍ବରୁ ଭାରତ ତାର ଏ କାର୍ଯ୍ୟକ୍ରମକୁ ଠିକ୍ ଭାବେ ସମ୍ପାଦିତ କରିନେବା ଉଚିତ୍ ହେବ କାରଣ ଥରେ ସି.ଟି.ବି.ଟି. ଅନୁମୋଦନ ଲାଭ କଲେ ସବୁ ପାରମାଣବିକ ପରୀକ୍ଷା ନିରୀକ୍ଷାର ଦ୍ୱାର ସବୁଦିନ ପାଇଁ ବନ୍ଦ ହୋଇଯିବ । ଉଦାହରଣସ୍ୱରୂପ ଫ୍ରାନ୍ସ ପୂର୍ଣ୍ଣ ମାତ୍ରାରେ ଥର୍ମୋ ନିୟୁକ୍ଲିୟର ଅସ୍ତ୍ରଶସ୍ତ୍ର ରଖିବା ବା ଉତ୍ପାଦନ କରିବା ପ୍ଳାନ ବା ଅସ୍ତ୍ରାଗାରର ବିକାଶ ପ୍ରକ୍ରିୟାରେ ପ୍ରାୟ ୨୦ଟି ପାରମାଣବିକ ପରୀକ୍ଷା ନିରୀକ୍ଷା କାର୍ଯ୍ୟକ୍ରମ ସମ୍ପାଦିତ କରିଛି ।

ଦ୍ୱିତୀୟତଃ ଭାରତବର୍ଷ ନିକଟ ଅତୀତରେ ପାରମାଣବିକ ଶକ୍ତିଦ୍ୱାରା ପରିଚାଳିତ ହେଉଥିବା ବୁଡ଼ାଜାହାଜ (Sub Marine) ରୁ ପାଣିତଳେ ବନ୍ଧୁକ ଗୁଳି ବା କ୍ଷେପଣାସ୍ତ୍ରର ପ୍ରକ୍ଷେପଣ କରିବା ଦକ୍ଷତାର ଅଧିକାରୀ ହୋଇ ଏହି ମହନୀୟ ଜ୍ଞାନ କୌଶଳର ସାମୁଦ୍ରିକ ପରୀକ୍ଷାମୂଳକ ପ୍ରୟୋଗ ଆରମ୍ଭ କରିଛି । ଭାରତବର୍ଷ ଏଭଳି ୫ଟି ନୌଶକ୍ତିର ମହାନ୍ ଅଧିକାରୀ ହେବା ପାଇଁ ଯୋଜନା ରଖିଛି ଯଦିଓ ପ୍ରଥମଟି ଏବେ ଯୁଦ୍ଧ ବା ଲଢ଼େଇ କରିବା ପାଇଁ କାର୍ଯ୍ୟକ୍ଷମ ହେବାକୁ ଆଉ କିଛି ବର୍ଷ ସମୟ ନେବ ।

ତୃତୀୟତଃ ଭବିଷ୍ୟତରେ ଭାରତର ସମ୍ଭାବ୍ୟ ପାରମାଣବିକ ପରୀକ୍ଷା ନିରୀକ୍ଷା ପାରମାଣବିକ ଶକ୍ତିଦ୍ୱାରା ପରିଚାଳିତ ବୁଡ଼ା ଜାହାଜର ପ୍ରସ୍ତୁତି ତଥା ଆମେରିକା ସହ ଭାରତର ବେସାମରିକ ପାରମାଣବିକ ସହଯୋଗିତାକୁ ନେଇ ପାକିସ୍ତାନ ଏବେ ଅତିମାତ୍ରାରେ ବିଚଳିତ ହୋଇପଡ଼ିଛି । "ଆଟମିକ୍ ସାଇଣ୍ଟିଷ୍ଟ" ନାମକ ପ୍ରଖ୍ୟାତ ବିଜ୍ଞାନଭିତ୍ତିକ ବୁଲେଟିନ୍‌ରେ ରବର୍ଟ ଏସ୍. ନୋରିସ୍ (Robert S. Norris) ଏବଂ ହ୍ୟାନ୍ସ ଏମ୍. କ୍ରିଷ୍ଟେନ୍‌ସେନ୍ (Hans M. Kristensen) ଙ୍କ ଦ୍ୱାରା ପ୍ରକାଶିତ ଏକ ବୈଜ୍ଞାନିକ ନିବନ୍ଧରେ ସେମାନେ ଯୁକ୍ତି ବାଢ଼ିଛନ୍ତି ଯେ ପାକିସ୍ତାନ ଏବେ ପାରମାଣବିକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତି ଦକ୍ଷତାରେ ନିଜର ଅଭିବୃଦ୍ଧି ହାସଲ କରିବା ସଙ୍ଗେ ସଙ୍ଗେ ନିୟୁକ୍ଲିୟର ଶକ୍ତି ସମ୍ପନ୍ନ ନୂତନ ମିଶାଇଲ୍‌ର ବିକାଶ ଓ ଏହାର ଫଳପ୍ରଦ ନିୟୋଜନ ଏବଂ ପାରମାଣବିକ ଅସ୍ତ୍ରଶସ୍ତ୍ରରେ ବ୍ୟବହାର କରିବା ପାଇଁ ନିୟୁକ୍ଲିୟର ଫିସାଇଲ୍ ମ୍ୟାଟେରିଆଲ୍‌ର ପ୍ରସ୍ତୁତି କ୍ଷେତ୍ରରେ ମଧ୍ୟ ନିଜର ସାମର୍ଥ୍ୟକୁ ବହୁମାତ୍ରାରେ ସଂପ୍ରସାରିତ କରିବାରେ ମନପ୍ରାଣ ଦେଇ ଲାଗିପଡ଼ିଛି । ଆମେରିକାର ଇଣ୍ଟେଲିଜେନ୍ସ କମ୍ୟୁନିଟି

ପାକିସ୍ତାନର ପାରମାଣବିକ କାର୍ଯ୍ୟକ୍ରମ ସଂକ୍ରାନ୍ତୀୟ ଏପରି ଏକ ସାଇଣ୍ଟିଫିକ୍ ରିପୋର୍ଟ ନିଆଁରେ ଘିଅ ପକାଇଲା ପରି ପରିସ୍ଥିତି ସୃଷ୍ଟି କରିଛି ।

୧୯୯୮ ମସିହାର 'ପୋଖରାନ୍ - ୨' ପାରମାଣବିକ ପରୀକ୍ଷା ନିରୀକ୍ଷାର ଦୃଢ଼ ସମାଲୋଚକମାନେ ନିଜ ନିଜର ଯୁକ୍ତିକୁ ନ୍ୟାୟ ସଙ୍ଗତ ବୋଲି ପ୍ରତିପାଦିତ କରିବାରେ ଲାଗି ପଡ଼ିଛନ୍ତି । ନାଭିକୀୟ ଅସ୍ତ୍ରଶସ୍ତ୍ରରେ ସଜ୍ଜୀତକରଣ ହେବା ଦ୍ୱାରା ଭାରତବର୍ଷ ଏପରି କୌଣସି ଷ୍ଟ୍ରାଟେଜିକ୍ ଲାଭ ଅର୍ଜନ କରିନାହିଁ ଅବା ଦେଶରକ୍ଷା କ୍ଷେତ୍ରରେ ବ୍ୟୟ ରାଶିରେ ମଧ୍ୟ ସେପରି କୌଣସି ମାତ୍ରାଧିକ ହ୍ରାସ ପରିଲକ୍ଷିତ ହୋଇନାହିଁ । ଆମେରିକା ସହ ଅନୁପୂରତା ସତ୍ତ୍ୱେ ଭାରତବର୍ଷ ଏବେ ବି ଚୀନ୍ ବିରୁଦ୍ଧରେ ଫଳପ୍ରଦ ନିବୃତ୍ତି ଲାଭ କରିପାରି ନାହିଁ । ଭାରତବର୍ଷର 'ନିୟୁକ୍ଲିୟର ପାୱାର ଷ୍ଟାଟସ୍' ବା ପାରମାଣବିକ ଶକ୍ତି ସମ୍ପନ୍ନ ସମ୍ଭ୍ରାନ୍ତପଣିଆର ନିର୍ଭରଯୋଗ୍ୟତା, ବଳିଷ୍ଠତା ଓ ନମନୀୟତାକୁ ନେଇ ଭାରତବର୍ଷର ସର୍ବସାଧାରଣ ଜନତାଙ୍କ ମାନସପଟଳରେ ତଥା ଚୀନ ଓ ପାକିସ୍ତାନର ଉଚ୍ଚ ପଦାଧିକାରୀ ଓ ଅମଲାତାନ୍ତ୍ରିକ ପଲିସି ସର୍କଲରେ ମଧ୍ୟ ସନ୍ଦେହର ବୀଜ ରୋପଣ କରାଯାଇଛି । ସନ୍ଦେହର ଏହି ଘନ କୁହେଳିକାକୁ ମନରାଇଜର ବିସ୍ତୃତ ଦିଗ୍‌ବଳୟରୁ ଅପସାରିତ କରାଇବାକୁ ହେଲେ ପୁନଃ ପାରମାଣବିକ ପରୀକ୍ଷା ନିରୀକ୍ଷାର ଆବଶ୍ୟକତା ରହିଛି ଯାହାକି ସ୍ପଷ୍ଟ ଭାବରେ 'ପ୍ରୋଜେକ୍ଟେଡ୍ ଡେଷ୍ଟ୍ରକ୍‌ଟିଭ୍ ଏନର୍ଜି' ବା ସମ୍ଭାବ୍ୟ ବିଧ୍ୱଂସକାରୀ ଶକ୍ତିର ଉତ୍ପତ୍ତିକୁ ନେଇ ବିଶ୍ୱ ଦରବାରରେ ନିଶ୍ଚିତ ସଫଳତା ପ୍ରତିପାଦିତ କରିବ ।

ଆହୁରି ମଧ୍ୟ, ଭାରତର ଏପରି ପୁନଃ ପାରମାଣବିକ ପରୀକ୍ଷା ନିରୀକ୍ଷା ଆନ୍ତର୍ଜାତିକ କମ୍ୟୁନିଟିର ପ୍ରଚଣ୍ଡ କ୍ରୋଧ ବା ରାଗକୁ ଉତ୍ତେଜିତ କରିବାରେ ଅତ୍ୟନ୍ତ ସହାୟକ ହେବ ଏବଂ ବହୁ କଷ୍ଟରେ ଆମେରିକା ସହ ସମ୍ପାଦିତ ହୋଇଥିବା 'ପାରମାଣବିକ ସହଯୋଗ ଚୁକ୍ତି'କୁ ଏହା ସମୂଳେ ଭାଙ୍ଗି ଚୁର୍‌ମାର୍ କରିଦେବ ଯାହାକି ଭାରତ ପାଇଁ ବଡ଼ ମହଙ୍ଗା ପଡ଼ିବ । ପାରମାଣବିକ ଅସ୍ତ୍ରଶସ୍ତ୍ର ମୁକ୍ତ ବିଶ୍ୱଜଗତର ଦିନରାତି ସ୍ୱପ୍ନ ଦେଖୁଥିବା ଏବଂ ଏଭଳି ଚିନ୍ତାଧାରା ପ୍ରତି ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ ବା ପ୍ରତିଶ୍ରୁତିବଦ୍ଧ ହୋଇଥିବା ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମା ଏବଂ ଯେ କି ଏବେ ନାଟକୀୟ ପଦକ୍ଷେପ ନେଇ ସମଗ୍ର ପୃଥିବୀକୁ ନାଭିକୀୟ ଅସ୍ତ୍ରଶସ୍ତ୍ର ମୁକ୍ତ କରିବାକୁ ଋଷିଆ ସହ ଏକ ନୂତନ ରାଜିନାମା କରବାକୁ ଆଗଭର ହେଉଛନ୍ତି ସେଭଳି ପରିପ୍ରେକ୍ଷୀରେ ଭାରତର ପୁନଃ ପାରମାଣବିକ ପରୀକ୍ଷା ନିରୀକ୍ଷା ବିଶ୍ୱସମାଜ ଦ୍ୱାରା

ଆଦୌ ଆଦୃତ ଓ ଗ୍ରହଣୀୟ ହେବ ନାହିଁ ଏବଂ ତାହା ନିଷ୍ଠୁର ଭାବେ ଅସଙ୍ଗତ ମନେ ହେବ । ଏପରି ଏକ କାର୍ଯ୍ୟକ୍ରମ ଭାରତୀୟ ଉପମହାଦେଶରେ ଅଣୁ ଅସ୍ତ୍ରଶସ୍ତ୍ର ଦୌଡ଼ର ଅନ୍ତହୀନ ଚକ୍ରରେ ଆଉ ଏକ ଘେର ଲଗାଇ ଦେବ ଏବଂ ଏଥିପାଇଁ କେବଳ ଭାରତ ଉପରେ ହିଁ ସମସ୍ତ ନିନ୍ଦା ଅପବାଦର ବୋଝ ଲଦି ଦିଆଯିବ ।

ନାଭିକୀୟ ଅସ୍ତ୍ରଶସ୍ତ୍ରରେ ସଜ୍ଜୀତକରଣ ହେବାର ଦଶକ ଓ ତା ପରବର୍ତ୍ତୀ ଦଶକ ଠାରୁ ମଧ୍ୟ ଭାରତ କ୍ରମାଗତ ଭାବେ ସୀମା ଆରପାରିରୁ ଭୟାନକ ଆକ୍ରମଣର ଶୀକାର ହୋଇଚାଲିଛି । ଭାରତ ପାକିସ୍ତାନ ସହ ଏକ ସମ୍ଭାବ୍ୟ ଯୁଦ୍ଧର ଆଶଙ୍କାକୁ ନେଇ ପ୍ରତିକ୍ଷଣ ମୁହାଁମୁହିଁ ହୋଇଚାଲିଛି ଯାହାକି ଉଭୟ ଦେଶ ପାଇଁ ନିଶ୍ଚିତ ରୂପେ କ୍ଷତିକାରକ ଅଟେ । ତେଣୁ ଭାରତବର୍ଷ କ୍ରମାଗତ ଭାବେ ଦେଶର ଶିକ୍ଷା ଓ ସ୍ୱାସ୍ଥ୍ୟ ସଂକ୍ରାନ୍ତୀୟ ନାନାଦି ସାମାଜିକ ଜନମଙ୍ଗଳ କାର୍ଯ୍ୟକ୍ରମ ଯାହାକି ଦେଶର ଅର୍ଥନୈତିକ ଉତ୍ପାଦକତା ବୃଦ୍ଧିରେ ଯଥେଷ୍ଟ ସହାୟକ ହୋଇଥାଆନ୍ତା ସେଥିପ୍ରତି ଆବଶ୍ୟକୀୟ ଦୃଷ୍ଟି ପ୍ରଦାନ ନ କରି ଦେଶରକ୍ଷା କ୍ଷେତ୍ରରେ ଅତିମାତ୍ରାରେ ପୁଞ୍ଜିବିନିଯୋଗ କରୁଛି । ସେହି କାରଣରୁ ଏ ବର୍ଷର ଦେଶରକ୍ଷା ବଜେଟ୍ ପରିମାଣରେ ମାତ୍ରାଧିକ ଅଭିବୃଦ୍ଧି ମଧ୍ୟ ଘଟିଛି ।

ଭାରତ ହାତରେ ପାରମାଣବିକ ଅସ୍ତ୍ରଶସ୍ତ୍ର ଥିବା ସତ୍ତ୍ୱେ ମଧ୍ୟ ୧୯୯୯ ମସିହାରେ ଭାରତ-ପାକିସ୍ତାନ ସୀମାରେଖା "ଲାଇନ୍-ଅଫ୍-କଣ୍ଟ୍ରୋଲ୍"ର ଭାରତପଟକୁ ପଶିଆସି ପାକିସ୍ତାନ କାରଗିଲ୍ ଯୁଦ୍ଧର ସୂତ୍ରପାତ କରିଥିଲା । ଏହି କାର୍‌ଗିଲ୍ ଯୁଦ୍ଧରେ ବହୁ ସୈନିକ ସହିତ ହେଲେ ଏବଂ କାରଗିଲ୍ ଅକ୍ତିଆର କରିବାକୁ ଭାରତକୁ ପ୍ରଚୁର ଅର୍ଥ ଶ୍ରାଦ୍ଧ କରିବାକୁ ପଡ଼ିଥିଲା । ଡିସେମ୍ବର ୨୦୦୧ ରେ ଭାରତବର୍ଷର ପାର୍ଲାମେଣ୍ଟ ଉପରେ ଉଗ୍ରବାଦୀଙ୍କ ଭୟାନକ ଆକ୍ରମଣ ପରେ ୨୦୦୨ ମସିହାରେ ଏହି ଦୁଇରାଷ୍ଟ୍ର ଅତ୍ୟନ୍ତ ବିପଦ ସଙ୍କୁଳ ଭାବରେ ଏକ ପୂର୍ଣ୍ଣ ଯୁଦ୍ଧର ଖୁବ୍ ନିକଟତର ହୋଇଥିଲେ । ପାରମାଣବିକ ଅସ୍ତ୍ରଶସ୍ତ୍ର ଉଭୟ ଭାରତ ଓ ପାକିସ୍ତାନକୁ ତିନିଗୁଣ ଅନିଷ୍ଟ ସାଧନ କରାଇଛି । ଏହା ପାକିସ୍ତାନର କ୍ରୋଧୋଦ୍ଦୀପନା, ରାଗ ଓ ବିରକ୍ତିର କାରଣ ହୋଇଛି । ଏହା କାରଗିଲ୍‌ରେ ଅନୁପ୍ରବେଶ ଓ ଅଚାନକ ଆକ୍ରମଣର ରୂପରେ ହେଉ ଅବା ଗତବର୍ଷ ନଭେମ୍ବର ୨୬ ତାରିଖରେ ବମ୍ବେର ତାଜମହଲ ହୋଟେଲ ଉପରେ ଉଗ୍ରବାଦୀ ଆକ୍ରମଣ ରୂପରେ ହେଉ । ଏହା ଭାରତୀୟ ମିତାଚାର, ଗାମ୍ଭୀର୍ଯ୍ୟ ଓ ଧୈର୍ଯ୍ୟର ମହାପରୀକ୍ଷାର ବେଳ ଥିଲା ଏବଂ ଯେଉଁ ପରୀକ୍ଷାରେ ନିଶ୍ଚିତ ରୂପେ ଭାରତ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇପାରିଛି । ଏହି ଦୁଇରାଷ୍ଟ୍ର ମଧ୍ୟରେ ନିୟୁକ୍ଲିୟର

ମହାଯୁଦ୍ଧର ଡର ବା ଭୟ ଆନ୍ତର୍ଜାତିକ ସ୍ତରରେ ମାତ୍ରାଧିକ ଆଗ୍ରହର ସୂତ୍ରପାତ କରିଛି ଯାହାକି ପାକିସ୍ତାନର ମନୋବୃତ୍ତି ସହ ଖାପ ଖାଉଥିଲା ବେଳେ ଭାରତକୁ ଏହା ଅତ୍ୟନ୍ତ ଆନ୍ଦୋଳିତ, ଆଲୋଡ଼ିତ ଓ ଉତ୍ତେଜିତ କରୁଛି ।

ନାଭିକୀୟ ଅସ୍ତ୍ରଶସ୍ତ୍ରରେ ସଜ୍ଜୀତକରଣ ବିନା ଭାରତ ପାକିସ୍ତାନ ସହ ଅଧିକ ସହଜରେ ପ୍ରତ୍ୟାକ୍ରମଣ କରିପାରିଥାଆନ୍ତା ଏବଂ ପାକିସ୍ତାନର ସାମରିକ ପରାଜୟ ଅଧିକ ସହଜସାଧ ହୋଇପାରିଥାଆନ୍ତା । ପରନ୍ତୁ ନାଭିକୀୟ ଅସ୍ତ୍ରଶସ୍ତ୍ରରେ ଥରେ ସଜ୍ଜୀତକରଣ ହୋଇଗଲାପରେ ଭାରତପକ୍ଷରେ ଏକ ବିଛୁଆତି ଗଛ ସଦୃଶ ପଡ଼ୋଶୀ ରାଷ୍ଟ୍ର ପାକିସ୍ତାନ ସହ ସମ୍ପର୍କକୁ ଅତ୍ୟନ୍ତ ଚତୁରତାର ସହ ପରିଚାଳନା କରିବାକୁ ପଡ଼ୁଛି ଓ ଶହେଥର ଭାବିଚିନ୍ତି ପାଦେ ଆଗକୁ ପକାଇବାକୁ ପଡ଼ୁଛି । ୧୯୯୮ ମସିହାରେ କେନ୍ଦ୍ରରେ ଥିବା ଭାରତୀୟ ଜନତାପାର୍ଟିର ସରକାର ଅତ୍ୟନ୍ତ ଚତୁରତା ଓ ସୁଚାରୁତା ସହ ବିଶ୍ୱ ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଚଣ୍ଡ ଅଧ୍ୟୟନ କରି ଏ ଦିଗରେ ଦେଶର ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରିତ କରିବା ହୁଏତ ଠିକ୍ ହୋଇଥାଆନ୍ତା ବୋଲି ମନେହୁଏ ।

ଭାରତ ଓ ପାକିସ୍ତାନ ପାଇଁ ଏକତରଫା ଭାବେ ପାରମାଣବିକ ଅସ୍ତ୍ରଶସ୍ତ୍ର ପରିତ୍ୟାଗ କରିବାର କୌଣସି ସମ୍ଭାବନା ନାହିଁ କହିଲେ ଚଳେ । ଯେତେ ଯାହା ହେଲେ ମଧ୍ୟ, ପାରମାଣବିକ ଅସ୍ତ୍ରଶସ୍ତ୍ର ଗୁଡ଼ିକୁ ଯେ ପର୍ଯ୍ୟନ୍ତ ଆମେ ତୀବ୍ର ଭାବରେ ହତାଦର ବା ଘୃଣା ନ କରିଛୁ ସେ ପର୍ଯ୍ୟନ୍ତ ସେ ଗୁଡ଼ିକର ପରୀକ୍ଷା ନିରୀକ୍ଷାକୁ ନେଇ ଆମ ମନ ମଧ୍ୟରେ ବସାବାନ୍ଧି ରହିଥିବା ପ୍ରଚଣ୍ଡ ଭୟ ଓ ଆଶଙ୍କାର ବିଭୀଷିକା ଅନିଶ୍ଚିତ ଭବିଷ୍ୟତ ଆଡ଼କୁ ଆମକୁ ଠେଲି ଦେଉଥିବ । ପ୍ରଚଣ୍ଡ ଅର୍ଥବ୍ୟୟ, ଭୟଙ୍କର ବିପଦ ବା ଅନିଷ୍ଟର ଆଶଙ୍କା ଏବଂ ବୁଦ୍ଧୀଆଣି ଜାଲର ଜଟିଳତା - ଏ ସବୁ କିଛି ମିଳିମିଶି ଅଣୁଅସ୍ତ୍ର ପରୀକ୍ଷା କ୍ଷେତ୍ରରେ ଭାରତର ବାଟ ଓଗାଳି ବସିଛନ୍ତି । ୨୦୧୦ ମସିହାରେ ହେବାକୁ ଥିବା "ନିୟୁକ୍ଲିୟର ନନ୍-ପ୍ରୋଲିଫରେସନ୍ ଟ୍ରିଟି"ର ପାଞ୍ଚବର୍ଷିଆ ରିଭ୍ୟୁ କରିବା ପାଇଁ ଭାରତ ପାଖରେ ଯଥେଷ୍ଟ ଦୃଷ୍ଟିଆକର୍ଷଣକାରୀ କାରଣମାନ ରହିଛି । ଏହା ସମ୍ଭବ ହେଲେ "ଗ୍ଲୋବାଲ୍ ନିୟୁକ୍ଲିୟର ଡିସ୍ଆର୍ମାମେଣ୍ଟ" କାର୍ଯ୍ୟକ୍ରମର ଯଥେଷ୍ଟ ବଳବୃଦ୍ଧି ଘଟିବ ଏବଂ ଏହାର ସଫଳ ରୂପାୟନ ମଧ୍ୟ ଫଳପ୍ରଦ ହେବ ।

ବିଜ୍ଞାନ ଦିଗନ୍ତ : ଡିସେମ୍ବର, ୨୦୦୯

ସହକାର : ଜାନୁୟାରୀ, ୨୦୧୦



# ଶିକ୍ଷା କ୍ଷେତ୍ରରେ ସଂସ୍କାର

ଶିକ୍ଷା ଅଧିକାର ଆଇନ୍ ଯାହାକି ୬-୭ ବର୍ଷ ଧରି କେନ୍ଦ୍ର ସରକାରଙ୍କ ଶୀତଳ ଭଣ୍ଡାରରେ ମୁହଁମାଡ଼ି ପଡ଼ି ରହିଥିଲା ତାହା ପାର୍ଲାମେଣ୍ଟରେ ପାଶ୍ ହୋଇଯିବା ନିଶ୍ଚିତ ରୂପେ ଏକ ଉତ୍ତମ ଭବିଷ୍ୟତ ସୂଚକ ସଙ୍କେତ ଅଟେ । ଏଥି ସହ ଦେଶରେ ୨,୫୦୦ କେନ୍ଦ୍ରୀୟ ବିଦ୍ୟାଳୟର ପ୍ରତିଷ୍ଠା ହେବା ମଧ୍ୟ ସ୍ୱୀକୃତି ଲାଭ କଲା । କିନ୍ତୁ ସାରା ଦେଶରେ ବିଛେଇ ହୋଇ ପଡ଼ିଥିବା ଅଗଣିତ ମ୍ୟୁନିସିପାଲ୍ ଓ ଗ୍ରାମ୍ୟ ବିଦ୍ୟାଳୟର ଅଭିବୃଦ୍ଧି ଓ ସମ୍ପ୍ରସାରଣ ହିଁ ପ୍ରକୃତ ପରୀକ୍ଷାର କ୍ଷେତ୍ରଭାବେ ସାବ୍ୟସ୍ତ ହେବ । ପ୍ରତ୍ୟେକ ରାଜ୍ୟ ସରକାରଙ୍କୁ ଏ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ସମ୍ପାଦିତ କରିବାକୁ ପଡ଼ିବ ଏବଂ ଅପରପକ୍ଷରେ ପବ୍ଲିକ୍ - ପ୍ରାଇଭେଟ୍ ପାର୍ଟନରସିପ୍ ବା ସହଭାଗିତାର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଭାରତ ସରକାରଙ୍କ ମାନବସମ୍ବଳ ବିକାଶ ମନ୍ତ୍ରଣାଳୟର ମାନ୍ୟବର କ୍ୟାବିନେଟ୍ ମନ୍ତ୍ରୀ ଶ୍ରୀ କପିଲ୍ ଶିବଲ୍ ମହୋଦୟ ଦୁଇଟି ମୁଖ୍ୟ ବିଷୟବସ୍ତୁ ଉପରେ ପ୍ରାଧାନ୍ୟ ଦେଉଛନ୍ତି । ପ୍ରଥମତଃ ଭାରତବର୍ଷର ଶିକ୍ଷାର ସିଂହଦ୍ୱାରକୁ ବିଦେଶୀ ବିଶ୍ୱବିଦ୍ୟାଳୟମାନଙ୍କ ସର୍ବମୁଖି ପ୍ରବେଶ ପାଇଁ ଉନ୍ମୁକ୍ତ କରିଦେବା ଏବଂ ଦ୍ୱିତୀୟତଃ ୧୦୦ ଦିନ ମଧ୍ୟରେ ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଉଚ୍ଚ କ୍ଷମତା ସମ୍ପନ୍ନ ଏକ ଜାତୀୟ କମିଶନ୍ - "ନ୍ୟାସନାଲ୍ କମିସନ୍ ଫର୍ ହାୟର ଏଜୁକେସନ୍ ଯାଣ୍ଡ ରିସର୍ଚ୍ଚ" (National Commission for Higher Education & Research) ର ପ୍ରତିଷ୍ଠା । ଏହି କମିଶନ୍ ଦେଶରେ ଥିବା ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କୁ ଯାଞ୍ଚ କରିବା, ନିୟନ୍ତ୍ରଣ କରିବା ଏବଂ ଗ୍ରେଡ୍ ପ୍ରଦାନ କରିବାର ସମସ୍ତ କାର୍ଯ୍ୟକ୍ରମ ନିଜ ହାତକୁ ନେବ ଏବଂ ଏବେ ଦେଶରେ ଥିବା ବିଭିନ୍ନ ନିୟାମକ ସଂସ୍ଥା ଯଥା: ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ୍ (University Grants Commission), ସର୍ବ ଭାରତୀୟ ବୈଷୟିକ ଶିକ୍ଷା ପରିଷଦ (All India Council for Technical Education), ଭାରତୀୟ ବାର୍ କାଉନ୍‌ସିଲ (Bar Council of India) ଏବଂ ଭାରତୀୟ ମେଡ଼ିକାଲ୍ କାଉନ୍‌ସିଲ୍ (Medical Council of India) ମାନଙ୍କର ଶିକ୍ଷା ବିଷୟକ ସମସ୍ତ କାର୍ଯ୍ୟକ୍ରମକୁ ଉପଯୁକ୍ତ ଭାବେ ସମ୍ପାଦନ କରିବ ।

ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଉଦ୍ଦିଷ୍ଟ ଏହି ଜାତୀୟ କମିଶନ୍ ଉଚ୍ଚଶିକ୍ଷା କ୍ଷେତ୍ରରେ ଦେଶର ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଏକ ପ୍ରମୁଖ ଆୟୁଧ ଭାବେ କାର୍ଯ୍ୟ କରିବ । ପାର୍ଲାମେଣ୍ଟରେ ଗୃହୀତ ହେବା ପରେ ବିଭିନ୍ନ ସମୟରେ ଦେଶରେ ସ୍ଥାପନା କରାଯାଇଥିବା ୧୩ଟି ନିୟାମକ ସଂସ୍ଥାର ସମସ୍ତ କାର୍ଯ୍ୟକ୍ରମକୁ ଏହି ଜାତୀୟ କମିଶନ୍ ନିଜର କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କରିବା ଏକାନ୍ତ ଆବଶ୍ୟକ ।

ଡୁପ୍ଲିକେଶନ୍ ବା ଏକାକାମ ଦୁଇଟି ସଂସ୍ଥାଦ୍ୱାରା ସମ୍ପାଦିତ ହେବା ଅବା ମାତ୍ରାଧିକ ନିୟନ୍ତ୍ରଣ ପ୍ରକ୍ରିୟାର ବିଲୋପ ବା ହ୍ରାସ କ୍ଷେତ୍ରରେ କାହାର କୌଣସି ଦ୍ୱିମତ ହେବାର ନାହିଁ । କିନ୍ତୁ ଏଠାରେ ପ୍ରଶ୍ନ ଉଠୁଛି ଯେ କେବଳ ଗୋଟିଏ ମାତ୍ର ସଂସ୍ଥା ଏ ସମସ୍ତ ସଂସ୍ଥା ଗୁଡ଼ିକର ଏକାଡେମିକ୍ ଏବଂ ନିୟାମକ କାର୍ଯ୍ୟକ୍ରମକୁ ସମ୍ପୂର୍ଣ୍ଣଭାବେ ହାତକୁ ନେଇ ଦେଶରେ ଉଚ୍ଚଶିକ୍ଷା ଓ ଗବେଷଣା କ୍ଷେତ୍ରରେ ମୁଣ୍ଡଟେକି ଉଠୁଥିବା ସମସ୍ତ ସମସ୍ୟାର ସଫଳ ସମାଧାନ କରିବା ସଙ୍ଗେ ସଙ୍ଗେ ଅଧିକ ଉନ୍ମୁକ୍ତ ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତନ କରିବା ତଥା ଏକବିଂଶ ଶତାବ୍ଦୀର ଶିକ୍ଷା ଅଗଣାକୁ ସୁଅ ପରି ମାଡ଼ି ଆସୁଥିବା ଅସଂଖ୍ୟ ଚ୍ୟାଲେଞ୍ଜକୁ ମୁହାଁମୁହିଁ ସମ୍ମୁଖୀନ କରିପାରିବତ ?

ଶିକ୍ଷା କ୍ଷେତ୍ରରେ ସଂସ୍କାର ପାଇଁ ପ୍ରଫେସର ଯଶପାଲ୍ କମିଟିର ସୁପାରିଶ୍ ଓ ଜାତୀୟ ଜ୍ଞାନ ଆୟୋଗର ସୁପାରିଶ୍ ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁକୁ ନେଇ ମତ ପାର୍ଥକ୍ୟ ଦେଖାଦେଇଛି । ଜାତୀୟ ଜ୍ଞାନ ଆୟୋଗ ଦେଶରେ ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଉଦ୍ଦିଷ୍ଟ ହେବାକୁ ଥିବା ସର୍ବଶ୍ରେଷ୍ଠ ନିୟାମକ ସଂସ୍ଥା ବା "ଆପେକ୍ସ ବଡ଼ି" (Appex Body) କୁ "ନ୍ୟାସନାଲ୍ କମିଶନ୍ ଫର ହାୟର ଏଜୁକେସନ୍ ଆଣ୍ଡ ରିସର୍ଚ୍ଚ" (National Commission for Higher Education & Research) ବଦଳରେ "ଉଚ୍ଚଶିକ୍ଷା କ୍ଷେତ୍ରରେ ସ୍ୱାଧୀନ ନିୟାମକ ସଂସ୍ଥା" (Independent Regulatory Authority for Higher Education) ବୋଲି ନାମିତ କରିବାକୁ ଚାହୁଁଛି ।

ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଲା ସରକାରୀ ଓ ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କରେ ଉଚ୍ଚଶିକ୍ଷା କ୍ଷେତ୍ରରେ ନାଁ ଲେଖାଇଲାବେଳେ ନିର୍ଣ୍ଣାୟକ ନୀତି ବା ମାନଦଣ୍ଡ (Criteria) ର ଉପଯୁକ୍ତ ଚୟନକୁ ନେଇ ମାନଦଣ୍ଡର ଯାଞ୍ଚ ବା ନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ଏ ନେଇ ଉଠୁଥିବା ବିଭିନ୍ନ ବାଦାନୁବାଦର ଆଶୁ ସମାଧାନ ମଧ୍ୟ ସମସ୍ୟାର ଆଉ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦିଗ ଅଟେ । ଜାତୀୟ ଜ୍ଞାନ ଆୟୋଗ

ସୁପାରିଶ କରିଥିବା "ଉଚ୍ଚଶିକ୍ଷା କ୍ଷେତ୍ରରେ ସ୍ୱାଧୀନ ନିୟାମକ ସଂସ୍ଥା"ର କାର୍ଯ୍ୟପରିସର ଭିତରେ ଦେଶରେ ଥିବା ସମସ୍ତ ବୃତ୍ତିଗତ ଶିକ୍ଷାନୁଷ୍ଠାନ ଯଥା ଇଞ୍ଜିନିୟରିଂ ଓ ପରିଚାଳନା ଶିକ୍ଷାନୁଷ୍ଠାନ ଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାକୁ ଚାହୁଁନାହିଁ । ଏପରିକି ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (Indian Institute of Technology) ଭାରତୀୟ ପରିଚାଳନା ପ୍ରତିଷ୍ଠାନ (Indian Institute of Management)ଗୁଡ଼ିକୁ ମଧ୍ୟ ଏହି "ଆପେକ୍ସ ବଡ଼ି"ରୁ ବାଦ୍ ଦେବାକୁ ଚାହୁଁଛି । ଜାତୀୟ ଜ୍ଞାନ ଆୟୋଗ ଏକ ଅଲଗା "ନ୍ୟାସନାଲ୍ ସାଇନ୍ସ ଯାଣ୍ଡ ଇଂଞ୍ଜିନିୟରିଂ ରିସର୍ଚ୍ଚ ବୋର୍ଡ଼"ର ଗଠନ କରି ସମସ୍ତ କ୍ଷେତ୍ରରେ ଗବେଷଣାର ମାନବୃଦ୍ଧି ପାଇଁ କେନ୍ଦ୍ରସରକରକାରଙ୍କୁ ସୁପାରିଶ କରିଛି ଯଦ୍ୱାରା ଏହି "ଆପେକ୍ସ ବଡ଼ି"ର କାର୍ଯ୍ୟକ୍ରମ ଏକ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ବନ୍ଧା ହୋଇ ରହିବ ।

**ଅନିର୍ଦ୍ଦିଷ୍ଟ ବା ଅସ୍ପଷ୍ଟ ଭବିଷ୍ୟତ :**

ଅତ୍ୟନ୍ତ ବିଶାଳ ଓ ସମ୍ପ୍ରସାରିତ ରୂପରେଖ ଧାରଣ କରିଥିବା "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ୍ ଯାଣ୍ଡ ରିସର୍ଚ୍ଚ" ବା ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଉଦ୍ଦିଷ୍ଟ ଜାତୀୟ କମିଶନ୍‌ର ଗଠନ ଶୈଳୀ (Structure) ଓ କାର୍ଯ୍ୟକ୍ରମ ଧାରା (Functioning) କୁ ଯଶପାଲ୍ କମିଟି ଅନିର୍ଦ୍ଦିଷ୍ଟ ବା ଅସ୍ପଷ୍ଟ ଭବିଷ୍ୟତ ଉପରେ ସମ୍ପୂର୍ଣ୍ଣ ରୂପେ ଛାଡ଼ିଦେଇଛନ୍ତି । ଏ ନେଇ ସର୍ବସାଧାରଣଙ୍କ ମଧ୍ୟରେ ଏକ ବ୍ୟାପକ ଆଲୋଚନା, ପ୍ରତିଆଲୋଚନା ଓ ଯୁକ୍ତିତର୍କର ଆବଶ୍ୟକତା ରହିଛି ଯାହାକି ଯଶପାଲ୍ କମିଟି ନିଜେ ତାଙ୍କର ସୁପାରିଶ୍‌ରେ ଉଲ୍ଲେଖ କରିଛନ୍ତି ଏବଂ ଯାହା ଏ ପର୍ଯ୍ୟନ୍ତ ସମ୍ପାଦିତ ହୋଇନାହିଁ । ଏହି "ଆପେକ୍ସ ବଡ଼ି" ବା ଉଚ୍ଚ ଆୟୁକ୍ତ ସ୍ୱାୟତ୍ତ ଶାସିତ ହେବା ସଙ୍ଗେ ସଙ୍ଗେ ସରକାରୀ ନିୟନ୍ତ୍ରଣରୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ ହେବ ବୋଲି ଯାହା କୁହାଯାଇଛି ତାହା ଏକ ଫମ୍ପା ଆୱାଜ କହିଲେ ଚଳେ । ଶିକ୍ଷାନୁଷ୍ଠାନଗୁଡ଼ିକୁ ନିୟନ୍ତ୍ରାଣାଧିନ କରି ତାହାର ଆବଶ୍ୟକୀୟ ମାନଦଣ୍ଡ ନିର୍ଣ୍ଣୟ କରିବା ଏବଂ ଏହି ମାନଦଣ୍ଡକୁ ସେମାନେ ମାନି ପ୍ରକୃତରେ କାର୍ଯ୍ୟରେ ବିନିଯୋଗ କରୁଛନ୍ତି ନା ନାହିଁ ତାର ପ୍ରକୃଷ୍ଟ ଯାଞ୍ଚ କରିବା ରାଜ୍ୟ ସରକାରଙ୍କ ସମେତ ସମାଜର ବହୁ ସ୍ତରରୁ ବିରୋଧର ସମ୍ମୁଖିନ ହେବ । ଏଭଳି ପ୍ରତିରୋଧର ମୁକାବିଲା କରିବା ପାଇଁ ରାଜନୈତିକ ସହଯୋଗ ଏକାନ୍ତ ଅପରିହାର୍ଯ୍ୟ । ତା ହେଲେ ଏହି କାର୍ଯ୍ୟକ୍ରମ ଫଳପ୍ରସୂ ହେବ ବା କିପରି ?

ନାନାବିଧ ଶିକ୍ଷାନୁଷ୍ଠାନଗୁଡ଼ିକୁ ନିୟନ୍ତ୍ରଣ କରିବା, ଯାଞ୍ଚ କରିବା ଏବଂ ସେଗୁଡ଼ିକୁ ଗ୍ରେଡ୍ ପର୍ଯ୍ୟାୟଭୁକ୍ତ କରିବା ବିଶେଷତଃ ୧୬ଟି କେନ୍ଦ୍ରୀୟ ଏବଂ ୧୫୦୦ଟି ରାଜ୍ୟସ୍ତରୀୟ ବିଶ୍ୱବିଦ୍ୟାଳୟ, ଅଧାଡ଼ଜନ ନୂଆକରି ପ୍ରତିଷ୍ଠା କରାଯାଇଥିବା ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (IIT) ଏବଂ ଭାରତୀୟ ପରିଚାଳନା ପ୍ରତିଷ୍ଠାନ (IIM) "ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଉଦ୍ଦିଷ୍ଟ ଜାତୀୟ କମିଶନ୍" ସମ୍ମୁଖରେ ଏକ ନିଶ୍ଚିତ ଅସମ୍ଭବ ଗୁରୁଭାର ଆଣି ଠିଆ କରାଇବ । ଏହା ଉନ୍ନତି ପଥରେ ପ୍ରତିବନ୍ଧକ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏକ ମନ୍ଥର, ବେଢ଼ଙ୍ଗିଆ ତଥା ମସ୍ତକରେ ଏକ ବିରାଟ ଓଜନଦାର ପାହାଡ଼ ରଖିଲା ପରି ଏକ ଅନୁଷ୍ଠାନର ସୃଷ୍ଟି କରିବ ଯାହାକି ବାଇବେଲ୍‌ରେ ବର୍ଣ୍ଣିତ ଏକ ପ୍ରକାଣ୍ଡ ଜଳଜୀବ ସଦୃଶ କେବଳ ଏକ ସ୍ଥାଣୁ, ପଙ୍ଗୁ ଓ ବୃହଦାକାର ସଂସ୍ଥା ଭାବେ ପ୍ରତିଭାତ ହେବ । ଏଭଳି ଏକ ପରିସ୍ଥିତିର ସମ୍ଭାବ୍ୟ ମୁକାବିଲା କରିବା ପାଇଁ ଯଶପାଲ୍ କମିଟି ରାଜ୍ୟସ୍ତରୀୟ "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ୍ ୟାଣ୍ଡ ରିସର୍ଚ୍ଚ"ର ଗଠନ ପାଇଁ ସୁପାରିଶ୍ କରିଛନ୍ତି । କିନ୍ତୁ ଏପରି ଏକ ରୋଗର ପ୍ରତିକାର ରୋଗ ଅପେକ୍ଷା ଅଧିକ ମାରାତ୍ମକ ହେବ । ରାଜ୍ୟସ୍ତରରେ ଏଭଳି ଅନୁଷ୍ଠାନ ଉଚ୍ଚଶିକ୍ଷାକୁ ଅଧିକ ଦୃଢ଼ୀଭୂତ କରିବା ବଦଳରେ ଖଣ୍ଡ ବିଖଣ୍ଡିତ କରିଦେବ । ପ୍ରକୃତରେ ଏଭଳି ଅନୁଷ୍ଠାନର ପରିଚାଳନାରେ ରାଜ୍ୟ ସରକାରମାନେ ନିଶ୍ଚିତ ରୂପେ ହସ୍ତକ୍ଷେପ କରିବେ । ଅଭିଜ୍ଞତା କୁହେ ଯେ ଏପରି କମିଟିମାନ ରାଜ୍ୟମାନଙ୍କରେ ଥିବା ବିଶ୍ୱବିଦ୍ୟାଳୟମାନଙ୍କର ସ୍ୱାୟତ୍ତ ଶାସନ କ୍ଷମତାକୁ କରାୟତ୍ତ କରିବାକୁ ଚେଷ୍ଟା କରିବ ।

ପ୍ରଫେସର ଯଶପାଲ୍ କମିଟି ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (IIT) ଓ ଭାରତୀୟ ପରିଚାଳନା ପ୍ରତିଷ୍ଠାନ (IIM) ଆଦି ପ୍ରତିଷ୍ଠାନଗୁଡ଼ିକର ପରିଚାଳନା ପାଇଁ ସବ୍‌କମିଟିର ଗଠନ ପାଇଁ ପ୍ରସ୍ତାବ ଦେଇଛି ଯାହାକି "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ ୟାଣ୍ଡ ରିସର୍ଚ୍ଚ" ଅଧୀନରେ କାମ କରିବ । ଯେହେତୁ "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ ୟାଣ୍ଡ ରିସର୍ଚ୍ଚ" ନିଜେ ପ୍ରଧାନତଃ ସରକାରଙ୍କ କର୍ତ୍ତୃତ୍ୱାଧୀନରେ ପରିଚାଳିତ ହେବ ତେଣୁ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ଓ ଭାରତୀୟ ପରିଚାଳନା ପ୍ରତିଷ୍ଠାନ ଆଦି ପ୍ରତିଷ୍ଠାନ ଗୁଡ଼ିକ ଅଧିକ ସ୍ୱାୟତ୍ତ ଶାସନାଧୀନ ହେବା ପରିବର୍ତ୍ତେ ଅଧିକରୁ ଅଧିକ ସରକାରୀ କର୍ତ୍ତୃତ୍ୱାଧୀନ ହୋଇଯିବେ । ଫଳତଃ ଏଭଳି ବିଶ୍ୱପ୍ରସିଦ୍ଧ ପ୍ରତିଷ୍ଠାନଗୁଡ଼ିକ ସରକାରୀ ନିୟନ୍ତ୍ରଣାଧୀନ ରହି କାର୍ଯ୍ୟକରିବାକୁ

ପସନ୍ଦ କରିବେ ନାହିଁ ଏବଂ ସରକାରୀ କର୍ତ୍ତୃତ୍ୱ ବିରୁଦ୍ଧରେ ସଂଗ୍ରାମ କରିବାକୁ ଅଣ୍ଟା ଭିଡ଼ିବେ ଯେପରିକି ଭାରତୀୟ ଜନତାପାର୍ଟି (BJP) ସରକାରଙ୍କ ସମୟରେ ଘଟିଥିଲା । ଏହା ଫଳରେ ପ୍ରତିଷ୍ଠାନକୁ କୌଣସି ଏକାଡେମିକ୍ ସଫଳତା ମିଳିବ ନାହିଁ ବରଂ ବିଦ୍ରୋହର ବହ୍ନି ଭିତରେ ଭିତରେ କୁହୁଳିବାକୁ ଲାଗିବ ଏବଂ ଅଗ୍ନି ନିଆଁ ଶେଷରେ ଆମ ପାଇଁ କାଳ ହେବ ।

ମାନ୍ୟବର କେନ୍ଦ୍ର ମାନବସମ୍ବଳ ବିକାଶମନ୍ତ୍ରୀ ଶ୍ରୀ କପିଲ୍ ଶିବଲ୍ ଆଶାପୋଷଣ କରିଥିଲେ ମଧ୍ୟ "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ ୟାଣ୍ଡ ରିସର୍ଚ୍ଚ" ର ସଫଳତା ପାଇଁ ବୃହତ୍ତର ଆଭିମୁଖ୍ୟ ରଖାଯାଇଥିବା ଗଠନ ଶୈଳୀ, କାର୍ଯ୍ୟଦକ୍ଷତା ପ୍ରଣାଳୀ ତଥା ଏକାଡେମିକ୍ ଏବଂ ରିସର୍ଚ୍ଚ ପାଓ୍ୱାର ସାମ୍ବିଧାନିକ ସଂଶୋଧନ ମାଧ୍ୟମରେ ଅଣାଯାଇପାରିବ ନାହିଁ । ଏପରି ଏକ ସାମ୍ବିଧାନିକ ସଂଶୋଧନ ବିରୋଧୀଦଳଙ୍କ ସହଯୋଗ ବିନା ସମ୍ଭବପର ନୁହେଁ ଏବଂ ସାମ୍ପ୍ରତିକ ଜାତୀୟ ରାଜନୈତିକ ପୃଷ୍ଠଭୂମିରେ ଏଭଳି ସମ୍ଭାବନା ଆଦୌ ନାହିଁ କହିଲେ ଚଳେ । ଏଭଳି ପରିପ୍ରେକ୍ଷୀରେ "ନ୍ୟାସନାଲ୍ କମିଶନ୍ ଫର୍ ହାୟର ଏଜୁକେସନ ୟାଣ୍ଡ ରିସର୍ଚ୍ଚ" ର ଗଠନ ଶୈଳୀ ଓ କାର୍ଯ୍ୟକ୍ରମ ରୂପାୟନ ପ୍ରକ୍ରିୟା ଗଭୀର ଚିନ୍ତା ଓ ଆଲୋଚନା ସାପେକ୍ଷ । ସମ୍ଭବତଃ ଏହା ଏକ ସମନ୍ୱୟ ରକ୍ଷାକାରୀ ସଂସ୍ଥା ହେବା ଦରକାର ଯାହାକି କେବଳ ନିୟନ୍ତ୍ରଣ ଓ ଯାଞ୍ଚ ଏଜେନ୍ସି ଭଳି କାର୍ଯ୍ୟକରିବ - ଏବଂ ଯେଉଁ କାର୍ଯ୍ୟକ୍ରମ ପ୍ରକୃତରେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର କାର୍ଯ୍ୟ ପରିସର ଅନ୍ତର୍ଭୁକ୍ତ ନଥିଲା । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର ସାମ୍ବିଧାନିକ କାର୍ଯ୍ୟକ୍ରମ ଥିଲା ଶିକ୍ଷା କ୍ଷେତ୍ରରେ ଉଚ୍ଚ ମାନଦଣ୍ଡର ନିର୍ଦ୍ଧାରଣ ପ୍ରକ୍ରିୟା ସ୍ଥିର କରିବା ଏବଂ ଏସବୁ ମଧ୍ୟରେ ସଫଳ ସମନ୍ୱୟତା ରକ୍ଷା କରିବା ।

**ବିଦେଶୀ ବିଶ୍ୱବିଦ୍ୟାଳୟର ଆଗମନ:**

ବିଦେଶୀ ବିଶ୍ୱବିଦ୍ୟାଳୟଗୁଡ଼ିକୁ ଭାରତବର୍ଷକୁ ଆମନ୍ତ୍ରଣ କରିଆଣି ଏଠାରେ ସେମାନଙ୍କର କ୍ୟାମ୍ପସ୍ ପ୍ରତିଷ୍ଠା କରିବା ପ୍ରଶ୍ନଟି ଦେଶରେ ଥିବା ବିଭିନ୍ନ ବିଶ୍ୱବିଦ୍ୟାଳୟ ଗୁଡ଼ିକର ମାନବୃଦ୍ଧିରେ କିପରି ସହାୟକ ହୋଇପାରୁଛି ସେ ପରିପ୍ରେକ୍ଷୀରେ ବିଚାର କରାଯିବା ସର୍ବାଦୌ ଆବଶ୍ୟକ । ଏହି କାର୍ଯ୍ୟକ୍ରମକୁ ପର୍ଯ୍ୟାୟକ୍ରମେ ସମ୍ପାଦିତ କରାଯିବା ହିଁ ଉଚିତ୍ ପଦକ୍ଷେପ ହେବ । ଧରାଯାଉ ଦେଶରେ ଥିବା ୨୦ ପ୍ରତିଶତ ଉଚ୍ଚଶିକ୍ଷାନୁଷ୍ଠାନଗୁଡ଼ିକୁ ଚିହ୍ନଟ କରି ପ୍ରଥମେ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରାଯାଇ

ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ତାହାର ଗୁଣାତ୍ମକ ଅଭିବୃଦ୍ଧି ହାସଲ୍ କରିବା ପାଇଁ ଉପଯୁକ୍ତ କାର୍ଯ୍ୟପନ୍ଥା ଗ୍ରହଣ କରାଯିବା ଉଚିତ୍ ହେବ ।

ଦେଶରେ ପ୍ରତିଷ୍ଠିତ ହେବାକୁ ଥିବା ୧୬ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର କଥା ଆଲୋଚନା କରିବା ଏଠାରେ ଅତ୍ୟନ୍ତ ପ୍ରାସଙ୍ଗିକ ମନେ ହେବ । ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁ ଯଥା: ବିଶ୍ୱବିଦ୍ୟାଳୟର ଗଠନଶୈଳୀ ବା ଷ୍ଟ୍ରକ୍‌ଚର କୁ ବାଦ୍ ଦେଲେ ମଧ୍ୟ ଏଠାରେ ପ୍ରଶ୍ନ ଉଠୁଛି ଯେ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ସମାନ ଫିସ୍ ବ୍ୟବସ୍ଥା ପ୍ରଚଳନ କରିବେ କି ? ଏବଂ ଅଧ୍ୟାପକମାନଙ୍କ ଦରମା ଆନ୍ତର୍ଜାତିକ ମାନଦଣ୍ଡ ପରିପ୍ରେକ୍ଷୀରେ ପ୍ରଦାନ କରିବେ କି? ଏହା ଧରିନିଆଯାଇପାରେ ଯେ ବିଦେଶୀ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଭାରତବର୍ଷକୁ ଆସିବେ ସେତିକିବେଳେ ଯେତେବେଳେ ସେମାନେ ଛାତ୍ରଛାତ୍ରୀମାନଙ୍କ ଠାରୁ ଆନ୍ତର୍ଜାତିକ ସ୍ତରର ଫିସ୍ ଆଦାୟ କରିପାରିବେ ଏବଂ ଅଧ୍ୟାପକମାନଙ୍କୁ ମଧ୍ୟ ଆନ୍ତର୍ଜାତିକ ସ୍ତରର ଦରମା ପ୍ରଦାନ କରିପାରିବେ । ଯେପର୍ଯ୍ୟନ୍ତ ନୂଆକରି ଗଢ଼ାଯାଉଥିବା କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଏବଂ କେତେକ ପ୍ରମୁଖ ଜାତୀୟ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ଠାରୁ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ସ୍ତରର ଫିସ୍ ଆଦାୟ କରିବା ପାଇଁ ଅନୁମତି ନ ପାଇବେ ତେବେ ସେମାନେ ବିଦେଶୀ ବିଶ୍ୱବିଦ୍ୟାଳୟଗୁଡ଼ିକ ସହ କିପରି ବା ପ୍ରତିଯୋଗିତାରେ ସମକକ୍ଷ ହୋଇପାରିବେ ? ଯଦି ଏହା ନହୋଇ ପାରୁଛି ତେବେ ଭାରତବର୍ଷର ସର୍ବୋତ୍ତମ ଛାତ୍ର ଓ ଶିକ୍ଷକ ସମାଜ ଏହି ବିଦେଶୀ ବିଶ୍ୱବିଦ୍ୟାଳୟଗୁଡ଼ିକୁ ଆକର୍ଷିତ ହୋଇ ଚାଲିଯିବେ ଏବଂ ଏହା ଫଳରେ ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ସେକେଣ୍ଡ ଗ୍ରେଡ୍ ବିଶ୍ୱବିଦ୍ୟାଳୟ ହୋଇ ସବୁଦିନ ପାଇଁ ପଡ଼ିରହିବେ । ଏଭଳି ଏକ ସାଂଘାତିକ ଓ ଭୟଙ୍କର ଦୃଶ୍ୟପଟ୍ଟରେ ଭାରତବର୍ଷର ଅଗଣିତ  ଛାତ୍ର ସମାଜ ଆଦୌ ଉପକୃତ ହେବେ ନାହିଁ ଏବଂ କେବଳ ସେହିମାନେ ହିଁ ଉପକୃତ ହେବେ ଯେଉଁମାନେ ଏବେ ତାଙ୍କ ପୁଅଝିଅ ମାନଙ୍କୁ ଆକାଶଛୁଆଁ ଫିସ୍ ପ୍ରଦାନ କରି ବିଦେଶ ମାଟିରେ ପାଠ ପଢ଼ାଉଛନ୍ତି ।

୧୯୬୬ ମସିହାରେ ଉଚ୍ଚଶିକ୍ଷାପାଇଁ ଗଠନ କରାଯାଇଥିବା କୋଠାରୀ କମିଶନ୍ ଶିକ୍ଷାକ୍ଷେତ୍ରରେ ଆବଶ୍ୟକୀୟ ସଂସ୍କାର ପାଇଁ ଏକ ବଳିଷ୍ଠ ପ୍ଲାନ ଡକୁମେଣ୍ଟ ପ୍ରସ୍ତୁତ କରିଥିଲେ । ଏଥିରେ ଶିକ୍ଷାକୁ ସିଧାସଳଖ ଭାବେ ଉତ୍ପାଦକତା ସହ ଯୋଡ଼ି ଦିଆଯିବା, ଦଶବର୍ଷ ମଧ୍ୟରେ ସରକାର ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି.)ର

୬ ପ୍ରତିଶତ ଶିକ୍ଷା କ୍ଷେତ୍ରରେ ବିନିଯୋଗ କରିବା, ବିଶ୍ୱବିଦ୍ୟାଳୟମାନଙ୍କରେ ସେଣ୍ଟର୍ସ ଅଫ୍ ଆଡ୍‌ଭାନ୍ସଡ୍ ଷ୍ଟଡିର ପ୍ରତିଷ୍ଠା, ସ୍ୱୟଂଶାସିତ କଲେଜ ବ୍ୟବସ୍ଥାର ପ୍ରବର୍ତ୍ତନ ଏବଂ ଏକ ଅଞ୍ଚଳର ଲୋକ ସମୂହଙ୍କ ପାଇଁ ଆଞ୍ଚଳିକ ବିଦ୍ୟାଳୟର ସ୍ଥାପନା ଆଦିର ମହତ୍ ପରିକଳ୍ପନା କରାଯାଇଥିଲା । ଆର୍ଥିକ ଓ ରାଜନୈତିକ ପ୍ରତିବନ୍ଧକ ଓ କଟକଣା କାରଣରୁ ଏ ମଧ୍ୟରୁ ମାତ୍ର ଅଳ୍ପ କେତୋଟି ଯଥା - କେତେକ ବିଶ୍ୱବିଦ୍ୟାଳୟରେ ସେଣ୍ଟର୍ସ ଅଫ୍ ଆଡ୍‌ଭାନ୍ସଡ୍ ଷ୍ଟଡି ଓ କେତେକ ସ୍ୱୟଂ ଶାସିତ କଲେଜର ପ୍ରତିଷ୍ଠା ଫଳପ୍ରଦ ରୂପରେଖ ନେଇପାରିଥିଲା ।

୧୯୮୬ ମସିହାର ନ୍ୟାସନାଲ୍ ଏଜୁକେସନ୍ ପ୍ଲାନ୍ ବା ଜାତୀୟ ଶିକ୍ଷାନୀତି ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ସୁପାରିଶ କରିଥିଲା । ଏଥି ସହିତ ଜାତୀୟ ଜ୍ଞାନ ଆୟୋଗ ଓ ପ୍ରଫେସର ଯଶପାଲ୍ କମିଟିର ପ୍ରସ୍ତାବ ଶିକ୍ଷା କ୍ଷେତ୍ରରେ ଏକ ବୈପ୍ଳବିକ ସଂସ୍କାର ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ବଳିଷ୍ଠ ପଦକ୍ଷେପ ନେଇପାରିବ । ୧୦୦ ଦିନର କାର୍ଯ୍ୟକ୍ରମ ପାଇଁ ପ୍ରଧାନମନ୍ତ୍ରୀଙ୍କ ବଳିଷ୍ଠ ଉଦ୍‌ଘୋଷଣ ଆମର ଅସ୍ୱାଭାବିକ ନିଦ୍ରାଳୁତା ପଣିଆ ଗୁଣର ପ୍ରତିହତ ପାଇଁ ଏକ କଡ଼ା ଡାକରା ଥିଲା । ଏହାର ଅର୍ଥ ନୁହେଁ ଯେ ବିନା ଯତ୍ନ ଓ ମନଯୋଗ ସହ ଆମେ କାର୍ଯ୍ୟକ୍ରମ ସମ୍ପାଦିତ କରିବା ଅବା କୌଣସି ଆଲୋଚନା, ପ୍ରତିଆଲୋଚନା ଓ ପ୍ରସ୍ତୁତି ବିନା ଆମେ ଅମଣିଆ ଗାଈଗୋଠ ଭଳି ଖାଲି ଆଗକୁ ଆଗକୁ ମାଡ଼ି ଚାଲିଯିବା । ସବୁକିଛି ଭାବିଚିନ୍ତି ନୀତି ସଙ୍ଗତ ଭାବେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆଜି ଏକ ମସ୍ତବଡ଼ ଚ୍ୟାଲେଞ୍ଜ ହୋଇ ଆମ ଆଗରେ ଆସି ଉଭା ହୋଇଛି ।

ସମାଜ : ୨୦.୧୨.୨୦୦୯



# ଇନ୍ନୋଭେସନ୍ ହିଁ ଏକବିଂଶ ଶତାବ୍ଦୀ ଭାରତବର୍ଷର ମହାମନ୍ତ୍ର ହେବ

ଭାରତର ମହାମହିମ ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ଦେବୀସିଂହ ପାଟିଲ୍ ମହୋଦୟା ଜୁନ୍ ୪ ତାରିଖ ଦିନ ପାର୍ଲାମେଣ୍ଟରେ ତାଙ୍କର ଅଭିଭାଷଣ ପ୍ରଦାନ କରି କହିଥିଲେ ଯେ – "ଆଗାମୀ ୧୦ ବର୍ଷ ଇନ୍ନୋଭେସନ୍‌ର ଦଶକ ଭାବେ ରାଷ୍ଟ୍ର ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହେବ" । ଜୁନ୍ ୭ ତାରିଖ ଦିନ ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମା ତାଙ୍କର କାଇରୋ ଅଭିଭାଷଣରେ ମତବ୍ୟକ୍ତ କରିଥିଲେ ଯେ "ଶିକ୍ଷା ଓ ଇନ୍ନୋଭେସନ୍ ଏକବିଂଶ ଶତାବ୍ଦୀର ଚଳନ୍ତି ମୁଦ୍ରା ବା କରେନ୍ସି ଭାବେ ସାବ୍ୟସ୍ତ ହେବ" । ଜୁନ୍ ୩ ତାରିଖରୁ ୫ ତାରିଖ ମଧ୍ୟରେ ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋରେ ଜି - ୨୦ ଢାଞ୍ଚାରେ ପ୍ରଥମ ବିଶ୍ୱ ଇନ୍ନୋଭେସନ୍ ନେତୃତ୍ୱ ସମ୍ମିଳନୀ (ଆଇ-୨୦) ଅନୁଷ୍ଠିତ ହୋଇଥିଲା । ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ (ସି.ଏସ୍.ଆଇ.ଆର୍.)ର ପ୍ରାକ୍ତନ ମହାନିର୍ଦ୍ଦେଶକ ତଥା ଭାରତ ସରକାରଙ୍କ ବିଜ୍ଞାନ ଓ ଶିଳ୍ପ ଗବେଷଣା ବିଭାଗର ପ୍ରାକ୍ତନ ସଚିବ ଡକ୍ଟର ରଘୁନାଥ ଅନନ୍ତ ମାସେଲକର ଭାରତର ପ୍ରତିନିଧିଭାବେ ନିମନ୍ତ୍ରିତ ହୋଇ ଏହି ସମ୍ମିଳନୀରେ ଯୋଗଦାନ କରିଥିଲେ । ଆଇ-୨୦, ଇନ୍ନୋଭେସନ୍ କ୍ଷେତ୍ରରେ ଏକ ନୋବେଲ୍ ପ୍ରାଇଜ୍ ପ୍ରଦାନ ପାଇଁ ନରୱେର ପ୍ରସ୍ତାବକୁ ଅନୁମୋଦନ କରିଥିଲା । ତେଣୁ ଦିଲ୍ଲୀରୁ କାଇରୋ ଓ ତାପରେ ସାନ୍‌ଫ୍ରାନ୍‌ସିସ୍‌କୋ – ସବୁଠି ଇନ୍ନୋଭେସନ୍‌କୁ ନେଇ ଚର୍ଚ୍ଚା ଓ ଜୟଜୟକାର କରାଯାଉଛି । ଜ୍ଞାନର ମହାମନ୍ତ୍ର ସଭିଙ୍କ କାନେ କାନେ ଫୁଙ୍କି ଦିଆଯାଉଛି । ଚେତନାର ଅଭ୍ୟୁଦୟ ଓ ଉନ୍ମେଷ ପାଇଁ ବିଜୟ ସଙ୍ଗୀତର ଉଲ୍ଲାସ ସଭିଙ୍କ ପ୍ରାଣକୋଷରେ ଭରି ଦିଆଯାଉଛି ।

ବୈଜ୍ଞାନିକ ଚେତନାର ଏହି ନବଜାଗର ଦେଶେ ଦେଶେ ତାର ଅଭିନବ ରୂପ ବିନ୍ୟାସର ମହାନୀୟ ଛଟା ପ୍ରକଟ କରିବାରେ ଲାଗିଗଲାଣି । ଉଦାହରଣ ସ୍ୱରୂପ ଆର୍ଜେଣ୍ଟିନା, ଅଷ୍ଟ୍ରେଲିଆ, ସ୍ପେନ୍, ଦକ୍ଷିଣ ଆଫ୍ରିକା, ମାଲୟସିଆ, ୟୁନାଇଟେଡ୍ କିଙ୍ଗ୍‌ଡମ୍ ଆଦି ରାଷ୍ଟ୍ରମାନେ ସେମାନଙ୍କର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟର ନାମକରଣରେ ପରିବର୍ତ୍ତନ କରି ତହିଁରେ "ଇନ୍ନୋଭେସନ୍" ଶବ୍ଦର ସ୍ପଷ୍ଟ ବ୍ୟବହାର

କରିଛନ୍ତି । ତେଣୁ କାହିଁକି "ଇନ୍ନୋଭେସନ୍" ଏପରି ହଠାତ୍ ନିଜର ସ୍ୱଚ୍ଛ ଓ ସ୍ପଷ୍ଟ ରୂପରେଖକୁ ପ୍ରକଟ କରିବାକୁ ଆରମ୍ଭ କଲା ? ଇନ୍ନୋଭେସନ୍‌ଧର୍ମୀ ଅଭିବୃଦ୍ଧି, ଇନ୍ନୋଭେସନ୍‌ଧର୍ମୀ ପୁନର୍ଲାଭ, ଇନ୍ନୋଭେସନ୍‌ଧର୍ମୀ ପ୍ରତିଯୋଗିତାମୂଳକ ପରିସ୍ଥିତି - ଏହି ଶବ୍ଦ ଗୁଚ୍ଛ ଗୁଡ଼ିକ କେବଳ ମାତ୍ର ସ୍ଲୋଗାନ୍ ହୋଇ ଆଉ ରହିନାହାନ୍ତି । ଏଗୁଡ଼ିକ ନିର୍ମମ ସତ୍ୟରେ ପରିଣତ ହୋଇଯାଇଛନ୍ତି ।

ଅତି ସରଳ ଓ ସାବଲୀଳ ଢ଼ଙ୍ଗରେ ଯଦି ଆମେ "ଇନ୍ନୋଭେସନ୍" ଶବ୍ଦଟିର ଅର୍ଥକୁ ସତରେ ବୁଝିବାକୁ ଚାହିଁବା ତେବେ ତାର ଅର୍ଥ ହେବ କଳ୍ପନାର ରୂପାନ୍ତର ମାଧ୍ୟମରେ ନବୀନତମ ପ୍ରୋଡକ୍ଟ, ପ୍ରକ୍ରିୟା ଏବଂ ସେବାର ସୃଷ୍ଟି କରିବାକୁ ଇନ୍ନୋଭେସନ୍ ହିଁ ବୁଝାଇଥାଏ । ଇନ୍ନୋଭେସନ୍ କ୍ଷେତ୍ରରେ ବିଶ୍ୱରେ ଭାରତର ର୍ୟାଙ୍କିଙ୍ଗ ଅତି ନିମ୍ନରେ । "ଇନ୍ନୋଭେସନ୍ ଇଣ୍ଡେକ୍ସ" କ୍ଷେତ୍ରରେ ଭାରତର ସ୍ଥାନ ୪୧ ତମ । ଏପରିକି ମାଲୟସିଆ ୨୫ ତମ ଓ ଚୀନ୍ ୩୭ ତମ ସ୍ଥାନ ଅଧିକାର କରି ଭାରତ ଉପରକୁ ଆସ୍ଥାନ ଜମାଇ ବସିରହିଛନ୍ତି ।

ଅଙ୍କ ଶାସ୍ତ୍ରର ଏହି ଗାଣିତିକ ମାୟାମୃଗ ପଛରେ ନଧାଇଁ ଚାଲନ୍ତୁ ଘଟଣାଟିକୁ ଟିକେ ଅନ୍ୟ ଦୃଷ୍ଟିକୋଣରୁ ବିଶ୍ଲେଷଣ କରିବା । ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ମାଡ୍ରାଜର ଅଶୋକ ଝୁନ୍‌ଝୁନ୍‌ୱାଲା "ୱେୟାରଲେସ୍ ଲୋକାଲ୍ ଲୁପ୍ ଟେକ୍ନୋଲୋଜି" ର ବିକାଶ କଲେ । ଏହି ପ୍ରଯୁକ୍ତି ବିଦ୍ୟା ଭାରତ ପୂର୍ବରୁ ପ୍ରଥମେ ମାଦାଗାସ୍କାର, ଆଙ୍ଗୋଲା ଏବଂ ବ୍ରାଜିଲ୍‌ରେ କାର୍ଯ୍ୟକ୍ଷମ ହେଲା । ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ ତାର "ନୂତନ ସହସ୍ରାବ୍ଦ ଭାରତୀୟ ପ୍ରଯୁକ୍ତିବିଦ୍ୟା ନେତୃତ୍ୱ ଆଧାରିତ ପ୍ରାଥମିକ ପଦକ୍ଷେପ (New Millennium Indian Technology Leadership Initiative)" ଭିତ୍ତିକ ପ୍ରକଳ୍ପ ମାଧ୍ୟମରେ ଶିଳ୍ପୋଦ୍ୟୋଗୀ ବିନୟ ଦେଶପାଣ୍ଡେକୁ ପ୍ରଦାନ କରିଥିବା ଚ୍ୟାଲେଞ୍ଜ ଏବଂ ଆର୍ଥିକ ଅନୁଦାନ ଦ୍ୱାରା ସ୍ୱଳ୍ପ ମୂଲ୍ୟର କମ୍ପ୍ୟୁଟରର ବିକାଶ ସମ୍ଭବପର ହୋଇପାରିଲା । ଏହି ପ୍ରକଳ୍ପ ମାଧ୍ୟମରେ ଏକ ମୋବାଇଲ୍ ପର୍ସନାଲ୍ କମ୍ପ୍ୟୁଟରର ବିକାଶ ଲୋକଲୋଚନକୁ ଆସିଲା । କିନ୍ତୁ ଦୁଃଖର କଥା ଏଭଳି ଏକ ମୋବାଇଲ ପର୍ସନାଲ୍ କମ୍ପ୍ୟୁଟର ଏ ବର୍ଷ ମାଲୟସିଆ ଓ ବ୍ରାଜିଲ୍‌ରେ ପ୍ରସ୍ତୁତ ହେବାକୁ ଯାଇଛି କିନ୍ତୁ ଭାରତରେ ନୁହେଁ । ଭାରତରେ ପେଟେଣ୍ଟ ନୀତି ନିୟମର ସୀମାବଦ୍ଧତା ଗୁଣଯୋଗୁ ଲାଲ୍ କାତି ପରି ଦାଗ ହୋଇଯାଇଥିବା ଚର୍ମରୋଗର ଚିକିତ୍ସା ପାଇଁ ଏକ ଭାରତୀୟ କମ୍ପାନୀ ଦ୍ୱାରା

ପ୍ରସ୍ତୁତ ହୋଇଥିବା ଫାଇଟୋ – ଫାର୍ମାସିଉଟିକାଲ୍ ବ୍ରେକ୍ ଥ୍ରୁ ମେଡିସିନ୍ ପ୍ରଥମେ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ତାର ବ୍ୟାବସାୟିକ ଭିତ୍ତିଭୂମି ସୃଷ୍ଟି କରିବ କିନ୍ତୁ ଭାରତରେ ନୁହେଁ । ଏଠାରେ ଏଭଳି ବହୁ ଉଦାହରଣର ଅବତାରଣା କରାଯାଇପାରେ ।

ଇନ୍ନୋଭେସନ ଜ୍ଞାନକୁ ଅର୍ଥରେ ପରିବର୍ତ୍ତନ କରିଥାଏ । ତେଣୁ ସରସ୍ୱତୀ ଏବଂ ଲକ୍ଷ୍ମୀଙ୍କ ସହାବସ୍ଥାନ ବିଷୟରେ ଆମକୁ ଭଲଭାବେ ହୃଦୟଙ୍ଗମ କରିବାକୁ ପଡ଼ିବ । ହାର୍ଭାଡ୍ ବିଶ୍ୱବିଦ୍ୟାଳୟର ଜର୍ଜ ହ୍ୱାଇଟସାଇଡ୍ସ (George Whitesides) ବିଶ୍ୱର ସର୍ବଶ୍ରେଷ୍ଠ ବୈଜ୍ଞାନିକ ଯାହାଙ୍କର ନାଁ ଓ ଗବେଷଣାକୁ ଉଦାହରଣ ମାଧ୍ୟମରେ ବାରମ୍ବାର ଦୃଷ୍ଟାନ୍ତ ଦିଆଯାଇଥାଏ । ତାଙ୍କ ଦ୍ୱାରା ଗଢ଼ାଯାଇଥିବା ଗବେଷଣା ଭିତ୍ତିକ କମ୍ପାନୀଗୁଡ଼ିକର ମାର୍କେଟ୍ କ୍ୟାପିଟାଲିଜିମ୍ ବା ବଜାର ପୁଞ୍ଜିବାଦର ମୂଲ୍ୟ ଏବେ ୨୦ ବିଲିୟନ୍ ଡଲାରରୁ ଅଧିକ । ଏଭଳି ଏକାଡେମିକ୍ ଶିଳ୍ପୋଦ୍ୟୋଗୀ ଭାରତରେ ନାହିଁ କହିଲେ ଚଳେ । ଆମେରିକାର "ସିଲିକନ୍ ଭ୍ୟାଲି"ରେ ଭାରତୀୟ ଜିନ୍ ତାର ପ୍ରକୃଷ୍ଟ ରୂପରେଖ ପ୍ରକଟ କରୁଥିବା ବେଳେ "ଇଣ୍ଡସ୍ ଭ୍ୟାଲି"ରେ ତାହା ସମ୍ଭବପର ହୋଇପାରୁ ନାହିଁ କାହିଁକି ??

ଏକ "ଇଣ୍ଡିଆନ୍ ମାଇଣ୍ଡ"ରୁ ଏକ "ଇଣ୍ଡିଆନ୍ ମାର୍କେଟପ୍ଲେସ୍"କୁ ଆମର ଯାତ୍ରାରେ ଆମେ ସଫଳ ପାଇପାରୁନାହୁଁ କାହିଁକି ? କାରଣ ଭାରତବର୍ଷ ପାଇଁ ଦରକାର ଏକ ଅତ୍ୟନ୍ତ ଟାଣୁଆ ଇନ୍ନୋଭେସନ୍ ଇକୋ-ସିଷ୍ଟମ୍ । ଏକ ଶକ୍ତିଶାଳୀ ଇକୋ-ସିଷ୍ଟମ୍ ପାଇଁ ଆବଶ୍ୟକ ପଡୁଥିବା ପ୍ରୟୋଜନୀୟ ଆଧାର ଗୁଡ଼ିକ ହେଲା ଭୌତିକ, ବୌଦ୍ଧିକ ଓ ସାଂସ୍କୃତିକ ଭିତ୍ତିଭୂମିର ଅଖଣ୍ଡ ପରାଭବ । ଗବେଷଣାକୁ ବିଜ୍ଞାନାଗାରର ଚାରିକାନ୍ଥ ଭିତରେ ବାନ୍ଧି ରଖିଲେ ଆଉ ଚଳିବ ନାହିଁ । ବୈଜ୍ଞାନିକମାନଙ୍କୁ ବିଜ୍ଞାନାଗାରର ପରିସୀମା ବାହାରକୁ ପ୍ରଚଣ୍ଡ ବୌଦ୍ଧିକ ଉନ୍ମାଦନା ସହ ଲମ୍ଫ ପ୍ରଦାନ କରିବାକୁ ପଡ଼ିବ । କଳ୍ପନା ଓ ସୃଜନଶକ୍ତିର ସୃଷ୍ଟି ସହ ତାର ରକ୍ଷଣାବେକ୍ଷଣ ଓ ଅଭିବୃଦ୍ଧି; ଟେକ୍ନୋଲୋଜି ପାର୍କର ପ୍ରତିଷ୍ଠା; ଏକ ସୁସ୍ଥ ବୌଦ୍ଧିକ ସମ୍ପତ୍ତି ମାଲିକାନାସ୍ୱତ୍ୱ ବ୍ୟବସ୍ଥା; ଅଜ୍ଞତା, ମତାନ୍ଧତା ବା କୁସଂସ୍କାରରୁ ମୁକ୍ତ ଏକ ସୁସ୍ଥ ନିୟନ୍ତ୍ରଣ ବ୍ୟବସ୍ଥା; ଏକ ପ୍ରଗତିଶୀଳ ଏକାଡେମିକ୍ ସର୍କଲ୍ ଯେଉଁମାନେ କି କେବଳ ଗବେଷଣା ନିବନ୍ଧର ପ୍ରକାଶ କର ଅବା ମର ଦର୍ଶନ ଉପରେ ବିଶ୍ୱାସ ନକରି ଗବେଷଣାଲବ୍ଧ ଜ୍ଞାନକୌଶଳ ଓ ଫଳାଫଳର ପେଟେଣ୍ଟ ପଞ୍ଜିକରଣ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ବୈଜ୍ଞାନିକ

ଜର୍ନାଲ୍‌ରେ ପରିପ୍ରକାଶ ସହ ଅଭିବୃଦ୍ଧିର ପଥ ଉନ୍ମୋଚନ କରିବା; ପେଟେଣ୍ଟର ଉଦ୍‌ଭାବକ ଏବଂ ପୁଞ୍ଜି ଲଗାଣକାରୀ ମାନଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପନ କିରବା ତଥା ଆଡ଼ଭେନ୍‌ଚର୍ କ୍ୟାପିଟାଲ୍ ଏବଂ ପ୍ରବଳ ଆବେଗ ଦ୍ୱାରା ପ୍ରଭାବିତ ଇନ୍ନୋଭେସନ୍ ନେତୃତ୍ୱର ଆବଶ୍ୟକତା ଆଦି ବହୁବିଧ ଗୁରୁତ୍ୱପୂର୍ଣ୍ଣ ଚ୍ୟାଲେଞ୍ଜ ଆଜି ସମୟର ଏକ ମସ୍ତବଡ଼ ଆହ୍ୱାନ ।

ଭାରତୀୟମାନଙ୍କ ଜିନ୍‌ରେ ଇନ୍ନୋଭେସନ୍ ବସାବାନ୍ଧି ରହିଛି । ଏହା ସେମାନେ ସେମାନଙ୍କର ପୂର୍ବପୁରୁଷମାନଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ଲାଭ କରିଛନ୍ତି । ଭାରତୀୟ ବୈଦିକ ସଂସ୍କୃତି ଓ ଗୌରବୋଜ୍ଜ୍ୱଳ ବୁନିଆଦ୍‌ର ଚେର ଏତେ ଗଭୀର ଯେ ତାର ଉତ୍ପାଟନ ସମ୍ପୂର୍ଣ୍ଣରୂପେ ଅସମ୍ଭବ ବ୍ୟାପାର । ଜ୍ଞାନ ବୈଭବର ଏହି ଅସାଧାରଣ ଜିନ୍ ପିଢ଼ିପରେ ପିଢ଼ି ଗଡ଼ି ଗଡ଼ି ଆସିଛି ଓ ପରିବର୍ତ୍ତିତ ବୈଜ୍ଞାନିକ ପାଣିପାଗ ତଥା ସାମାଜିକ ସ୍ଥିତି ଓ ଅବସ୍ଥିତି ସହ ତାହା ନିଜକୁ ଖାପ ଖୁଆଇ ନେଇଯାଉଛି ଓ ତାର ନବୀନତମ ରୂପ ପ୍ରକଟ କରୁଛି । ଏପରିକି ଦୂରଦୂରାନ୍ତ ମଫସଲ ଗାଁରେ ବସବାସ କରୁଥିବା ଜଣେ ଅତି ସାଧାରଣ ଭାରତୀୟ ନାଗରିକ ମଧ୍ୟ ଇନ୍ନୋଭେସନ କଳାରେ ଅତ୍ୟନ୍ତ ପ୍ରବୀଣ ଯାହାକି ଅହମଦାବାଦ୍ ସ୍ଥିତ ଭାରତୀୟ ପରିଚାଳନା ପ୍ରତିଷ୍ଠାନର ଅନିଲ୍ ଗୁପ୍ତାଙ୍କ ଯୁଗାନ୍ତକାରୀ "ଶୋଧ ଯାତ୍ରା" ପରିପ୍ରକାଶ କରିଥାଏ । ଅସମ୍ଭବକୁ ସମ୍ଭବ କରିବା କ୍ଷେତ୍ରରେ ଇନ୍ନୋଭେସନ୍‌ଧର୍ମୀ ଗବେଷଣା ପ୍ରକଳ୍ପ କିପରି ପରମ ସହାୟକ ହୋଇଥାଏ ଭାରତୀୟ ପୃଷ୍ଠଭୂମିରେ ତାର ଭୂରି ଭୂରି ଦୃଷ୍ଟାନ୍ତ ରହିଛି ।

"ଗାନ୍ଧୀଆନ୍ ଇଂଜିନିୟରିଂ" ଭାରତ କ୍ଷେତ୍ରରେ ଏକ ଅଭିନବ ଓ ସଫଳ ଉଦାହରଣ ଯାହାକି ସ୍ୱଳ୍ପରୁ ଆରମ୍ଭ କରି ଅଧିକରୁ ଅଧିକ ଲୋକଙ୍କ ପାଇଁ ଯଥେଷ୍ଟ ଲାଭବାନ୍ ହୋଇପାରୁଛି । ଏପରି ଅସାଧାରଣ ଇନ୍ନୋଭେସନ୍ କ୍ଷେତ୍ରରେ ଭାରତର ସ୍ଥାନ ବିଶ୍ୱବିଦିତ ଓ ବିଶ୍ୱବନ୍ଦିତ । ଟାଟା କମ୍ପାନୀର ନାନୋ କାର୍ (୨୦୦୦ ଡଲାର), ସ୍ୱଳ୍ପ ମୂଲ୍ୟଯୁକ୍ତ ଉନ୍ନତ ଧରଣର ହେପାଟିଟିଜ୍-ବି ଭ୍ୟାକ୍‌ସିନ୍ (୧୮ ସେଣ୍ଟ୍‌ସ), ସ୍ୱଳ୍ପାତିସ୍ୱଳ୍ପ ମୂଲ୍ୟ ମୋବାଇଲ୍ ଫୋନ୍ କଲ୍ (୧ ସେଣ୍ଟ) ଆଦି ଅତ୍ୟନ୍ତ ଦୀପ୍ତିମାନ ଉଦାହରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାରତୀୟ ଇନ୍ନୋଭେସନ୍ ଲ୍ୟାଣ୍ଡସ୍କେପ୍‌ର ଢାଞ୍ଚାରେ ପରିବର୍ତ୍ତନ ପରିଲକ୍ଷିତ ହେଉଛି । ପୂର୍ବେ ଭାରତୀୟମାନେ ଯେଉଁ ପ୍ରୋଡକ୍ଟ ପ୍ରସ୍ତୁତ କରୁଥିଲେ ତାହା କେବଳ

ଭାରତୀୟମାନଙ୍କ ପାଇଁ ନୂତନତ୍ୱ ରଖୁଥିଲା ହେଲେ ଏବେ ଟାଟାର ପ୍ରୋଡ଼କ୍ଟ "ନାନୋ କାର୍" ସମଗ୍ର ବିଶ୍ୱ ପାଇଁ ଏକ ନୂତନତ୍ୱର ସ୍ଥାନ ଅଧିକାର କରିଛି । ଏବେ ଭାରତୀୟ ଫାର୍ମାସିଉଟିକାଲ୍ ଇଣ୍ଡଷ୍ଟ୍ରି ବହୁ ନୂତନ ମଲିକ୍ୟୁଲ୍ (New Molecule) ର ସୃଷ୍ଟି କରୁଛି ଯାହାକି ପୂର୍ବରୁ ଉପଲବ୍ଧ ହେଉଥିବା କୌଣସି ମଲିକ୍ୟୁଲ୍‌ର କପି ନୁହେଁ ବରଂ ଏଗୁଡ଼ିକ ନୂତନ ଓ ସ୍ୱତନ୍ତ୍ର ମଲିକ୍ୟୁଲ୍ ଅଟନ୍ତି । ରିଲାଏନ୍ସ ଶିଳ୍ପ ସଂସ୍ଥା ପ୍ରାରମ୍ଭରେ ତାର ବିଶାଳତା, କର୍ମପରିସର, ସୁଯୋଗ, ମାନସିକ ଶକ୍ତି, ଦୃଷ୍ଟିଭଙ୍ଗି ଓ ଆର୍ଥିକ ସ୍ଥିତିକୁ ନେଇ ବିକାଶ ପଥର ଯାତ୍ରୀ ହୋଇଥିଲା । ଏବେ କିନ୍ତୁ କମ୍ପାନୀ ଇନ୍ନୋଭେସନ୍‌ଧର୍ମୀ ଅଭିବୃଦ୍ଧିକୁ ଆଧାର କରି ବିଶ୍ୱ ଜଗତରେ ନିଜର ସ୍ୱତନ୍ତ୍ର ପରିଚୟ ଓ ଆସନ ସୃଷ୍ଟି କରିପାରିଛି ।

"ଇନ୍ନୋଭେସନର ଭାରତୀୟ ଦଶକ" କୁ କିକ୍-ଷ୍ଟାର୍ଟ କରିବା ପାଇଁ ୫ଟି ପ୍ରମୁଖ ପ୍ରସ୍ତାବ ଏଠାରେ ପ୍ରଣିଧାନ ଯୋଗ୍ୟ : ପ୍ରଥମତଃ "ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟ"ର ନାମକରଣରେ ପରିବର୍ତ୍ତନ କରାଯାଇ ଏହାକୁ "ବିଜ୍ଞାନ ଓ ଇନ୍ନୋଭେସନ୍ ମନ୍ତ୍ରଣାଳୟ" ନାମରେ ନାମକରଣ କରାଯାଉ ଯଦ୍ୱାରା ରାଷ୍ଟ୍ରର ଇନ୍ନୋଭେସନ୍ ଏଜେଣ୍ଡାକୁ ଜନସାଧାରଣଙ୍କ ସମ୍ମୁଖରେ ସିଧାସଳଖଭାବେ ଉପସ୍ଥାପନା କରାଯାଇପାରିବ । ଦ୍ୱିତୀୟତଃ ଏକ "ଉଚ୍ଚାଭିଳାଷ ସମ୍ପନ୍ନ ରାଷ୍ଟ୍ରୀୟ ଇନ୍ନୋଭେସନ୍ ପଲିସି"ର ପ୍ରସ୍ତୁତ କରାଯାଉ ଯାହାକି ୨୦୦୩ ମସିହାରେ ପ୍ରସ୍ତୁତ କରାଯାଇଥିବା ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପଲିସିର ସୀମା ସରହଦ ପାରକରି ଏକ ବିସ୍ତୃତ କ୍ୟାନଭାସ୍‌କୁ ଆଲିଙ୍ଗନ କରିପାରିବ । ତୃତୀୟତଃ ଏହି ପଲିସିକୁ କାର୍ଯ୍ୟକାରୀ କରିବା ପାଇଁ ଏକ ବଳିଷ୍ଠ ପ୍ରକ୍ରିୟା ମାଧ୍ୟମରେ ବିଶ୍ୱସ୍ତରୀୟ ଇନ୍ନୋଭେସନ୍ ଲିଡର୍ ମାନଙ୍କୁ ନେଇ ଏକ "ଜାତୀୟ ଇନ୍ନୋଭେସନ୍ କାଉନ୍‌ସିଲ୍"ର ପ୍ରତିଷ୍ଠା କରାଯାଉ । ଏହି କାଉନ୍‌ସିଲ୍‌କୁ ସ୍ୱୟଂଚାଳିତ କ୍ଷମତା ଓ ଅମାପ ଶକ୍ତି ପ୍ରଦାନ କରି ସମାଜ ଓ ସରକାରଙ୍କ ପାଖରେ ଉତ୍ତରଦାୟୀ କରାଯାଉ । ଇନ୍ନୋଭେସନ୍‌ର ଏହି ଦଶକ ମଧ୍ୟରେ ଭାରତକୁ ବିଶ୍ୱର ୧୦ଟି ଅଗ୍ରଣୀ ଇନ୍ନୋଭେସନ୍ ସମୃଦ୍ଧ ରାଷ୍ଟ୍ର ମଧ୍ୟରେ ସ୍ଥାନିତ କରିବା ପାଇଁ ଏହି କାଉନ୍‌ସିଲ୍‌କୁ ଉପଯୁକ୍ତ ବୈଧାନିକ ଅଧିକାର ପ୍ରଦାନ କରାଯାଉ । ଚତୁର୍ଥତଃ ଗାନ୍ଧୀଆନ୍ ଇଞ୍ଜିନିୟରିଂର ମତବାଦ, ନୀତି ଓ ସିଦ୍ଧାନ୍ତକୁ ଭିତ୍ତି କରି ଏକ "ଇଣ୍ଡିଆନ୍ ଇନ୍‌କ୍ଲୁସିଭ୍ ଇନ୍ନୋଭେସନ୍ ଇନିସିଏଟିଭ୍" ଅର୍ଥାତ୍ ଏକ ଭାରତୀୟ ସମଷ୍ଟିଗତ ଇନ୍ନୋଭେସନ ପ୍ରଚେଷ୍ଟାର ଲଞ୍ଚିଙ୍ଗ୍ ମାଧ୍ୟମରେ ଇନ୍‌କ୍ଲୁସିଭ୍ ଗ୍ରୋଥ୍ ବା ସାମୁହିକ ଅଭିବୃଦ୍ଧିର ଗତି

ପ୍ରଗତିକୁ ନିର୍ଦ୍ଦିଷ୍ଟ ରୂପରେଖ ପ୍ରଦାନ କରିବା । ପଞ୍ଚମତଃ ଆମର "ଫ୍ରିଡମ୍ ମୁଭ୍‌ମେଣ୍ଟ" ବା ସ୍ୱାଧିନତା ସଂଗ୍ରାମ ପରି ଏକ "ନ୍ୟାସନାଲ ଇନ୍ନୋଭେସନ୍ ମୁଭମେଣ୍ଟ" ବା ଜାତୀୟ ଇନ୍ନୋଭେସନ୍ ସଂଗ୍ରାମର ଲଞ୍ଚିଙ୍ଗ୍ କରାଯାଉ ଯାହାଫଳରେ କି ଇନ୍ନୋଭେସନ୍ ପ୍ରତ୍ୟେକ ଭାରତୀୟଙ୍କର ଅବସେସନ୍ ବା ଅତି ନିବିଷ୍ଟତା ବା ଆବେଶ ହୋଇଯାଉ । ଏହା ସମ୍ଭବ ହେଲେ ଏକବିଂଶ ଶତାବ୍ଦୀ ଇନ୍ନୋଭେଟିଭ୍ ଭାରତବର୍ଷର ଶତାବ୍ଦୀ ହେବା ପାଇଁ ଯେଉଁ ସ୍ୱପ୍ନ ଦେଖୁଛି ତାହା ନିଶ୍ଚିତ ରୂପେ ଫଳପ୍ରସୂ ହେବ ଏବଂ ସମସ୍ତ ବିଶ୍ୱ ସଫଳତା ଭାରତବର୍ଷର ହାତମୁଠାକୁ ଚାଲିଆସିବ - ଏହା ନିଶ୍ଚିତ ଧ୍ରୁବ ସତ୍ୟ ।

ସମାଜ : ୧୪.୦୧.୨୦୧୦



# ଭାରତବର୍ଷର ବୈଜ୍ଞାନିକ ଭବିଷ୍ୟତର ଭବିଷ୍ୟତ

୨୦୦୪ ମସିହାରେ ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପଲିସିର ରିଭ୍ୟୁ କଲାବେଳେ ଡ଼କ୍ଟର ଏପିଜେ ଅବଦୁଲ କଲାମ ମତବ୍ୟକ୍ତ କରିଥିଲେ ଯେ - ଯେତେବେଳେ ବିଶ୍ୱର ସାମଗ୍ରୀକ ମହାଶକ୍ତି ରାଷ୍ଟ୍ରରାଷ୍ଟ୍ର ମଧ୍ୟରେ ଜ୍ଞାନର ଆଦାନ ପ୍ରଦାନ, ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱ, ବିଭିନ୍ନ ରାଷ୍ଟ୍ରର ବୈଜ୍ଞାନିକ ମହାମଣ୍ଡଳୀ ଦ୍ୱାରା ପ୍ରକାଶ ପାଉଥିବା ବୈଜ୍ଞାନିକ ନିବନ୍ଧ ଜନିତ ଗୁଢ଼ ତତ୍ୱ ତଥା ରାଷ୍ଟ୍ରର ବୈଜ୍ଞାନିକ ବୁନିୟାଦ ଉପରେ ସମ୍ପୂର୍ଣ୍ଣ ରୂପେ ପର୍ଯ୍ୟବେସିତ ସେତେବେଳେ ଭାରତବର୍ଷ ଆଖିବୁଜି ବସି ନରହି ତାର ସମସ୍ତ ବୈଜ୍ଞାନିକ ଶକ୍ତିକୁ କେନ୍ଦ୍ରୀଭୂତ କରି ଇନୋଭେସନର ରାଜରାସ୍ତାରେ ବୀର ଦର୍ପରେ ଆଗକୁ ଆଗକୁ ମାଡ଼ି ଚାଲିବା ଉଚିତ୍ । ଭାରତବର୍ଷର ଏହି ବୈଜ୍ଞାନିକ ଶୋଭାଯାତ୍ରା ସମଗ୍ର ବିଶ୍ୱକୁ ଭାରତୀୟ ଜ୍ଞାନ ବୈଭବର ସମୁଜ୍ଜ୍ୱଳ ଆଭାରେ ଉଦ୍‌ଭାସିତ କରିବ ଏବଂ ଭାରତବର୍ଷ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଧନ୍ୟ ନାନାବିଧ ପ୍ରୋସେସ୍ ଓ ପ୍ରୋଡ଼କ୍ଟର ଉଦ୍‌ଭାବନ ଓ ଆବିଷ୍କାର କରି ସମଗ୍ର ବିଶ୍ୱକୁ ତାର ଜ୍ଞାନ ଗାରିମାରେ ଅଭିପ୍ରେରିତ କରିବ । ବିଶ୍ୱସ୍ତରୀୟ ବୈଜ୍ଞାନିକ ମହାଜାଗରଣର ଏହି ମହାପର୍ବରେ ଭାରତବର୍ଷର ଭୂମିକା ଅନନ୍ୟ ସାଧାରଣ ଭାବେ ସାବ୍ୟସ୍ତ ହେବ ଏବଂ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଅଧିବାସୀ ଭାରତବର୍ଷର ଏହି ବିଶାଳ ଜ୍ଞାନ ଯଜ୍ଞରେ ପୂର୍ଣ୍ଣାହୁତି ପ୍ରଦାନ କରିବେ । ନୂତନ ବିଶ୍ୱବ୍ୟବସ୍ଥାର ନିର୍ମାଣ ପାଇଁ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅବଦାନ ଅନସ୍ୱୀକାର୍ଯ୍ୟ ଏବଂ ଆଜିର ଏହି ମହାବିଶ୍ୱାୟନ ପରିବେଶ ଓ ପରିସ୍ଥିତି ମଧ୍ୟରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କଷଟି ପଥରରେ ମଧ୍ୟ ନିଜକୁ ପରଖି ନେବ ।

ଭାରତ ସରକାରଙ୍କ ବୈଦେଶିକ ଏବଂ ଟ୍ରେଡ୍ ବିଭଗର ଏକ ରିପୋର୍ଟରେ ଉଲ୍ଲେଖ ଅଛି ଯେ କୌଣସି ଏକ ରାଷ୍ଟ୍ରର ସ୍ୱାସ୍ଥ୍ୟ ସେ ରାଷ୍ଟ୍ରର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ସ୍ୱାସ୍ଥ୍ୟ ଉପରେ ନିର୍ଭର କରିଥାଏ । ତେଣୁ ଆମକୁ ଆମ ରାଷ୍ଟ୍ରର ସ୍ୱାସ୍ଥ୍ୟ ଉପରେ ସର୍ବଦା ସଚେତନ ରହିବାକୁ ପଡ଼ିବ-ଏହା ଏକ ନିର୍ବିବାଦୀୟ ସତ୍ୟ କଥା । ଏକ ପ୍ରତିଯୋଗିତାମୂଳକ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥାରେ ମହାପରାକ୍ରମୀ ଇନୋଭେସନ୍ ଦ୍ୱାରା ପ୍ରଚଣ୍ଡ ଭାବେ ଶକ୍ତିଶାଳୀ ହୋଇ ଜ୍ଞାନାଶ୍ରୟୀ ଅଭିବୃଦ୍ଧି ବ୍ୟବସ୍ଥା ଏକ ପ୍ରମୁଖ

ଆୟୁଧ ଭାବେ ନିଜର ସୌର୍ଯ୍ୟଦୀପ୍ତ ରୂପରେଖ ପ୍ରକଟ କରିବ । ଯଦିଓ ଭାରତବର୍ଷ ଅତ୍ୟାଧୁନିକ ପ୍ରଯୁକ୍ତିବିଦ୍ୟାକୁ ଆଧାର କରି ପ୍ରଗତିର ସ୍ୱର୍ଣ୍ଣ ସିଂହାସନରେ ଉପବିଷ୍ଟ ହେବା ପାଇଁ ନିଜର ଅଧିକାରକୁ ସମ୍ପୂର୍ଣ୍ଣରୂପେ ସାବ୍ୟସ୍ତ କରିପାରିଛି ହେଲେ ନିକଟ ଅତୀତର ବୈଜ୍ଞାନିକ ଇତିହାସ କୁହେ ଯେ ବୈଜ୍ଞାନିକ ଗବେଷଣାର ମାନ ଓ ଅଭିବୃଦ୍ଧିରେ ଭାରତ ସାତ ପଛରେ ପଡ଼ିରହିଛି । ଏହା ଏକ ଅତ୍ୟନ୍ତ ଜଟିଳ ପରିସ୍ଥିତି ସୃଷ୍ଟି କରିଥାଏ ଯାହାକି କେବଳ ଆମର ବୈଜ୍ଞାନିକ ବିକାଶ ଓ ଅଭିବୃଦ୍ଧିର ଭବିଷ୍ୟତକୁ ରୂପାୟିତ କରିନଥାଏ ବରଂ ଏକ ରାଷ୍ଟ୍ରଭାବେ ଭାରତବର୍ଷର ଅଭିବୃଦ୍ଧିକୁ ନେଇ ମଧ୍ୟ ଏକ ଦୁଃଖଦ ଚିତ୍ର ପରିବେଷଣ କରିଥାଏ ।

**ସାଂପ୍ରତିକ ସ୍ଥିତି ଓ ଆହ୍ୱାନ :**

ଥମସନ୍ ରିୟୁଟର୍ସ (Thomson Reuters) ଙ୍କ ଦ୍ୱାରା ନିକଟ ଅତୀତରେ ପ୍ରକାଶ ପାଇଥିବା ଏକ ଷ୍ଟଡ଼ି ରିପୋର୍ଟ **"ଗ୍ଲୋବାଲ ରିସର୍ଚ୍ଚ ରିପୋର୍ଟ-ଇଣ୍ଡିଆ"**ରେ ପ୍ରକାଶ ପାଇଛି ଯେ ଏକ ଆଦର୍ଶ ଗବେଷଣା ପରିବେଶ ଉପଲବ୍ଧ ହେଲେ ଭାରତବର୍ଷର ଗବେଷଣା ଉତ୍ପାଦକତା (Research Productivity) ଆସନ୍ତା ୭-୮ ବର୍ଷ ଭିତରେ ଜି-୮ ରାଷ୍ଟ୍ରମାନଙ୍କର ସମକକ୍ଷ ହୋଇପାରିବ ଏବଂ ଏପରିକି ୨୦୧୫-୨୦୨୦ ମସିହା ବେଳକୁ ଭାରତବର୍ଷର ଗବେଷଣା ଉତ୍ପାଦକତା ଜି-୮ ରାଷ୍ଟ୍ରମାନଙ୍କୁ ମଧ୍ୟ ଟପି ଯାଇପାରିବ । ଗତ ଦଶକରେ ଭାରତବର୍ଷର ବାର୍ଷିକ ଗବେଷଣା ନିବନ୍ଧର ପରିପ୍ରକାଶ ସଂଖ୍ୟା ୧୯୯୮ ମସିହାରେ ପ୍ରାୟ ୧୬,୫୦୦ ଥିଲା ବେଳେ ୨୦୦୭ମସିହା ବେଳକୁ ତାହା ପ୍ରାୟ ୩୦ ହଜାରରେ ପହଁଞ୍ଚି ପାରିଥିଲା । ଆମେ ଆମ ନିଜ ପିଠି ଥାପୁଡ଼େଇ ବାହା ବାହା ନେବା ପୂର୍ବରୁ ସାମଗ୍ରୀକ ବୈଜ୍ଞାନିକ ସ୍ଥିତିର ପର୍ଯ୍ୟବେକ୍ଷଣ ଓ ଅନୁଶୀଳନ କରିବା ଏକାନ୍ତ ଅପରିହାର୍ଯ୍ୟ ଯାହାକି ଆମକୁ ଆମ ସହ ସଠିକ୍ ଭାବେ ପରିଚିତ କରାଇଦେବ । ଯଦିଓ ଭାରତ ପ୍ରତିବର୍ଷ ୪ଲକ୍ଷ ଇଞ୍ଜିନିୟରିଂ ଗ୍ରାଜୁଏଟ୍ ଏବଂ ୩ଲକ୍ଷ କମ୍ପ୍ୟୁଟର ବିଜ୍ଞାନ ଗ୍ରାଜୁଏଟ୍ ସୃଷ୍ଟି କରୁଛି ହେଲେ ଦୁଃଖର କଥା ମାତ୍ର ୨୦ ହଜାର ସ୍ନାତକୋତ୍ତର ଡ଼ିଗ୍ରୀଧାରୀ ଓ ୧ ହଜାରରୁ କମ୍ ଡ଼କ୍ଟରାଲ୍ ଡ଼ିଗ୍ରୀଧାରୀ ଛାତ୍ର ସୃଷ୍ଟି ହେଉଛନ୍ତି ।

୨୦୦୭-୨୦୦୮ ଆର୍ଥିକ ବର୍ଷରେ ୧ ନିୟୁତ ଜନସଂଖ୍ୟା ପ୍ରତି ୧୫୬ଜଣ ଗବେଷକ ଥିଲା ବେଳେ ଆମେରିକାରେ ୧ ନିୟୁତ ଜନସଂଖ୍ୟା ପ୍ରତି୪,୭୦୦ ଜଣ

ଗବେଷକ ଥିଲେ । ସଂଖ୍ୟା ଦୃଷ୍ଟିରୁ ଦେଖିବାକୁ ଗଲେ ୨୦୦୭ ମସିହାରେ ଚୀନ୍‌ରେ ୧୪ଲକ୍ଷ ୨୩ହଜାର ଜଣ ଗବେଷକ ଗବେଷଣା କରୁଥିଲା ବେଳେ ଆମେରିକାରେ ୧୫ ଲକ୍ଷ ୭୧ ହଜାର ଜଣ ଗବେଷକ ଗବେଷଣା କରୁଥିଲେ । ଏ କ୍ଷେତ୍ରରେ ଆମେରିକା ବିଶ୍ୱରେ ପ୍ରଥମସ୍ଥାନ ଅଧିକାର କରିଥିଲା ବେଳେ ଚୀନ୍ ଦ୍ୱିତୀୟ ସ୍ଥାନରେ ଥିଲା । ତୁଳନାତ୍ମକ ଭାବେ ଲକ୍ଷ୍ୟ କଲେ ଭାରତବର୍ଷରେ ଏହି ସମୟ ମଧ୍ୟରେ ୧ଲକ୍ଷ ୫୪ହଜାର ୮୦୦ଜଣ ଗବେଷକ ଗବେଷଣା କାର୍ଯ୍ୟରେ ଲିପ୍ତ ରହିଥିଲେ । ୨୦୦୭-୨୦୦୮ ଆର୍ଥିକ ବର୍ଷରେ ଭାରତବର୍ଷରେ ଗବେଷଣା ଓ ଉନ୍ନୟନ ବାବଦରେ ପ୍ରାୟ ୨୪ ବିଲିୟନ୍ ଆମେରିକୀୟ ଡ଼ଲାର ଅର୍ଥରାଶି ବ୍ୟୟ ହୋଇଥିଲା । ତୁଳନାକରି ଦେଖିଲେ ୨୦୦୬ ମସିହାରେ ଚୀନ୍‌ରେ ୧୦୪ ବିଲିୟନ୍ ଆମେରିକୀୟ ଡ଼ଲାର ଓ ଆମେରିକାରେ ୩୬୮ ବିଲିୟନ୍ ଆମେରିକୀୟ ଡ଼ଲାର ଗବେଷଣା ଉନ୍ନୟନ ବାବଦରେ ବ୍ୟୟ ହୋଇଥିଲା । ଏଥିରୁ ଗବେଷଣା ଓ ଉନ୍ନୟନ ପ୍ରତି ଭାରତବର୍ଷର ପ୍ରତିବଦ୍ଧତାର ପ୍ରତିକୂଳ ରୂପରେଖ ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । ଆମ ରାଷ୍ଟ୍ରୀୟ ବୈଜ୍ଞାନିକ ସମ୍ପଦର ଅନନ୍ୟ ସୌର୍ଯ୍ୟଦୀପ୍ତ ପ୍ରତିଭା ଏବଂ ରାଷ୍ଟ୍ରୀୟ ବୈଜ୍ଞାନିକ ଆଶା ଆକାଂକ୍ଷାର ଗଗନଷ୍ପର୍ଶୀ ମୂର୍ଚ୍ଛନା ଲୀଳାବତୀର ଏହି ଗାଣିତିକ ସୂତ୍ର ସହ ଆଦୌ ମେଳ ଖାଉନାହିଁ ।

୨୦୦୭-୨୦୦୮ ଆର୍ଥିକ ବର୍ଷରେ ୪୭ଟି ବିଶ୍ୱବିଦ୍ୟାଳୟକୁ ନେଇ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଦ୍ୱାରା କରାଯାଇଥିବା ଏକ ସର୍ଭେ ରିପୋର୍ଟ ପ୍ରକାଶ କରିଛି ଯେ ଏହି ବିଶ୍ୱବିଦ୍ୟାଳୟମାନଙ୍କରେ ପ୍ରାୟ ୫୧ପ୍ରତିଶତ ଶିକ୍ଷକ ପଦବୀ ଏବେ ଖାଲି ପଡ଼ିଛି । ଏହା ନିଶ୍ଚିତ ରୂପେ ସତ୍ୟ ଯେ ଭାରତବର୍ଷର ପ୍ରାୟ ଅଧିକାଂଶ ଗ୍ରାଜୁଏଟ୍ ଇଞ୍ଜିନିୟର ଯେଉଁମାନେକି କଲେଜର ପ୍ରାୟ ସର୍ବୋତ୍କୃଷ୍ଟ ଛାତ୍ର ଅଟନ୍ତି ସେମାନେ ଚାକିରୀ ବଜାରକୁ ଚାଲିଯାଉଛନ୍ତି । ଏହା ଫଳରେ ବିଶ୍ୱବିଦ୍ୟାଳୟମାନଙ୍କରେ ଶିକ୍ଷକତା ଓ ଗବେଷଣା ବୃତ୍ତିକୁ ଆଦରି ନେଉଥିବା ଶିକ୍ଷକମାନଙ୍କର ଗୁଣାତ୍ମକ ଦକ୍ଷତାରେ କ୍ରମାଗତ ହ୍ରାସ ଘଟୁଛି ଏବଂ ଗବେଷଣା ବୃତ୍ତି ଓ ପ୍ରବୃତ୍ତିରେ ପ୍ରଚଣ୍ଡ ଭଙ୍ଗା ପଡ଼ିଯାଉଛି । ଏପରି ଏକ ଧାରାର ମୂଳକାରଣ ହେଲା ରିସର୍ଚ୍ଚ କ୍ୟାରିୟରରେ ମିଳୁଥିବା ଅର୍ଥ ଅତ୍ୟନ୍ତ ସ୍ୱଳ୍ପ ଏବଂ ଏଥିପାଇଁ ଆବଶ୍ୟକୀୟ ପ୍ରେରଣା ଓ ଦିଗଦର୍ଶନର ଘୋର ଅଭାବ ଗବେଷଣା କ୍ଷେତ୍ରରେ ବହୁମୁଖୀ ଅନ୍ତରାୟ ସୃଷ୍ଟି କରୁଛି । ଏପରି ଏକ ସୁଦୂରପ୍ରସାରୀ ବାର୍ତ୍ତା ଚତୁର୍ଦ୍ଦିଗରେ ବ୍ୟାପିଯାଉଛି ଯାହାକି ଗବେଷଣା ବୃକ୍ଷର ମୂଳକୁ କୁରାଢ଼ୀରେ ଛେଦନ କରିଦେଉଛି ।

ଯୁବ ବୈଜ୍ଞାନିକ ଗୋଷ୍ଠୀଙ୍କ ମନରେ ଏକ ବୈଜ୍ଞାନିକ ଉନ୍ମାଦନା ଓ ଗବେଷଣା ପ୍ରତି ଏକ ଆପଣାର ପଣିଆ ଭରି ଦିଆନଗଲେ ଗବେଷଣା ବୃକ୍ଷଟି ଆଦୌ ଉଧେଇ ପାରିବନାହିଁ ।

ଭାରତବର୍ଷର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଗବେଷଣା ପ୍ରତିଷ୍ଠାନମାନଙ୍କରୁ ଆବଶ୍ୟକୀୟ ସଂଖ୍ୟକ ଡ଼କ୍ଟରାଲ୍ ଡ଼ିଗ୍ରୀଧାରୀ ବ୍ୟକ୍ତିବିଶେଷମାନେ ଉତୁରୁ ନଥିବାରୁ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ନିଯୁକ୍ତି ପାଇଁ ଏମାନଙ୍କର ସଂଖ୍ୟା ଅତ୍ୟନ୍ତ ନିଅଣ୍ଟିଆ ପଡୁଛି । ଏହାଫଳରେ ବିଶ୍ୱବିଦ୍ୟାଳୟ ଶିକ୍ଷକମାନଙ୍କର ଗୁଣାତ୍ମକ ଉତ୍କର୍ଷତାରେ ଅଧୋଗତି ପରିଲକ୍ଷିତ ହେଉଛି ଏବଂ ଏହାର ପ୍ରଭାବ ରାଷ୍ଟ୍ରର ବୌଦ୍ଧିକ ବୁନିୟାଦ୍ ଓ ଭିତ୍ତିଭୂମି ଉପରେ ଗଭୀର ପ୍ରଶ୍ନବାଚୀ ଲଗାଇ ଦେଉଛି । ବୋଝ ଉପରେ ନଳିତା ବିଡ଼ା ପରି ବୈଜ୍ଞାନିକ ପ୍ରତିଷ୍ଠାନ ଓ ବିଶ୍ୱବିଦ୍ୟାଳୟଗୁଡ଼ିକ ଉପରେ ଥିବା ରାଜନୈତିକ ପ୍ରଭାବ ଶନି ଦଶାପରି ଏହି ଅନୁଷ୍ଠାନଗୁଡ଼ିକୁ ତାର କ୍ରୋଧାଗ୍ନିରେ ଜାଳିପୋଡ଼ି ପାଉଁଶ କରିଦେଉଛି । ବୈଜ୍ଞାନିକ ପ୍ରତିଷ୍ଠାନ ଓ ବିଶ୍ୱବିଦ୍ୟାଳୟଗୁଡ଼ିକୁ ମାନ୍ୟତା ପ୍ରଦାନ କରିବା, ଆବଶ୍ୟକୀୟ ଅନୁଦାନ ପ୍ରଦାନ କରିବା କ୍ଷେତ୍ରରେ ସ୍ଥାଣୁତା, ଭିତ୍ତିଭୂମିର ବହୁଳ ଅଭାବ ତଥା ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ଗବେଷଣା ଅନୁଦାନରେ ତାରତମ୍ୟତା ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ଏକ ବିରାଟ ପ୍ରତିବନ୍ଧକ ହୋଇ ଛିଡ଼ାହେଉଛି । ପୁନଶ୍ଚ ବହୁକାଳରୁ ଚଳିଆସୁଥିବା ପଲିସିକୁ ଭିତ୍ତିକରି କେତେକ ନିର୍ଦ୍ଦିଷ୍ଟ ଓ ମନୋନୀତ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଗବେଷଣା କରାଯିବା ଫଳରେ ମୌଳିକ ଗବେଷଣା ଘର ଚୂଲି ମୁଣ୍ଡରେ ସମାଧି ପାଉଛି ଏବଂ ମୁକ୍ତ ଗବେଷଣା ପ୍ରକ୍ଷେତ୍ରର ଦ୍ୱାର ରୁଦ୍ଧ କରି ତାର ଚତୁର୍ଦ୍ଦିଗରେ ତାଗବାଡ଼ ବୁଜି ଦିଆଯାଉଛି । ଏହା ଏକ ସାଧାରଣ ଏବଂ ସର୍ବଜନସମ୍ମତ କଥା ଯେ ବ୍ୟାବହାରିକ ବିଜ୍ଞାନର ବିକାଶ ପାଇଁ ମୌଳିକ ବିଜ୍ଞାନର ଅବଦାନ ଅନସ୍ୱିକାର୍ଯ୍ୟ ଏବଂ ଏହା ମଧ୍ୟ ପ୍ରଯୁକ୍ତିବିଦ୍ୟା ଭିତ୍ତିକ ଅଭ୍ୟୁଦୟ ପାଇଁ ଭିତ୍ତି ପ୍ରସ୍ତର ବୋଲି ପରିଗଣିତ ହୋଇଥାଏ ।

**ଆଗକୁ ଆଗକୁ ପାଦ :**

ଏକ ଜ୍ଞାନାଶ୍ରୟୀ ଅର୍ଥନୀତିଧନ୍ୟ ବିଶ୍ୱବ୍ୟବସ୍ଥାରେ କ୍ରମାଗତ ଭାବେ ସଫଳତା ଭାରତବର୍ଷର ପଦବନ୍ଦନା କରିବାକୁ ହେଲେ ଏକ ଅତ୍ୟନ୍ତ ଉଚ୍ଚମାନଯୁକ୍ତ ଉଚ୍ଚଶିକ୍ଷା ବ୍ୟବସ୍ଥାର ପ୍ରବର୍ତ୍ତନ ହେବା ନିତାନ୍ତ ବାଂଛନୀୟ ଯାହାକି ଅନୁପ୍ରେରଣାରେ ଉଦବୁଦ୍ଧ ହୋଇ ବିଜ୍ଞାନ ଓ

ପ୍ରଯୁକ୍ତିବିଦ୍ୟା ସଂକ୍ରାନ୍ତୀୟ ଗବେଷଣା କ୍ଷେତ୍ରରେ ଯୁଗ ପ୍ରବର୍ତ୍ତକର ଭୂମିକା ସମ୍ପାଦନ କରିବ । ଆବଶ୍ୟକ ହେଉଛି ଏକ ସୁସ୍ଥ ବାତାବରଣ ଓ ପରିବେଶ ଯେଉଁଠାରେ କି ସରକାର, ବିଭିନ୍ନ ବିଶ୍ୱବିଦ୍ୟାଳୟ, ନାନାଦି କମ୍ପାନୀ, ଭେନଚର କ୍ୟାପିଟାଲିଷ୍ଟ ଏବଂ ଅନ୍ୟାନ୍ୟ ଷ୍ଟେକ୍ ହୋଲଡ୍ରମାନେ ଏକ ମଞ୍ଚରେ ଆସୀନ ହୋଇ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ରାଷ୍ଟ୍ରର ଭବିଷ୍ୟତ କର୍ମଯୋଜନାର ସଫଳ ରୂପାୟନ ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିବେ । ଏହା ସମ୍ଭବ ହେଲେ ଦେଶରେ ଏକ ସାଇନ୍ସ ଇକୋ-ସିଷ୍ଟମର ପ୍ରତିଷ୍ଠା ହେବ ଯାହାକି ରାଷ୍ଟ୍ରର ବୈଜ୍ଞାନିକ ଭବିଷ୍ୟତ ଏବଂ ଭବିଷ୍ୟତର ଭବିଷ୍ୟତକୁ ସୁରକ୍ଷିତ କରିରଖିପାରିବ ଏବଂ କ୍ରମାଗତ ବୈଜ୍ଞାନିକ ଅଭିବୃଦ୍ଧି ହାସଲ କରାଯାଇପାରିବ ।

ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଉପଯୁକ୍ତ ରାଷ୍ଟ୍ରୀୟ ପୁଞ୍ଜି ବିନିଯୋଗ ଅଭିବୃଦ୍ଧି ଓ ବିକାଶ କାହାଣୀର କେବଳ ଏକ ଅୟଂ ଆରମ୍ଭ ପର୍ବ କହିଲେ ଅତ୍ୟୁକ୍ତି ହେବନାହିଁ । ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହାସଲ କରିବାକୁ ହେଲେ ସରକାରଙ୍କୁ ଏକ ପ୍ରମୁଖ ଭୂମିକା ସମ୍ପାଦିତ କରିବାକୁ ପଡ଼ିବ ଏବଂ ଏହା ସମ୍ଭବ ହେବ ସେତିକିବେଳେ ଯେତେବେଳେ ବୈଜ୍ଞାନିକ ଗବେଷଣାଗାରଗୁଡ଼ିକର ସଂଖ୍ୟା, ଗୁଣବତ୍ତା ଓ ପରିଚାଳନାରେ ଆଶାନୁରୂପ ଉନ୍ନତି ପରିଲକ୍ଷିତ ହେବ । ଆଗାମୀ କିଛି ବର୍ଷ ମଧ୍ୟରେ ଏ କ୍ଷେତ୍ରରେ ନିଆଯାଉଥିବା କାର୍ଯ୍ୟକ୍ରମର ଫଳପ୍ରଦ ରୂପରେଖ ଲୋକଲୋଚନକୁ ଆସିବ ବୋଲି ଆଶା କରାଯାଏ । ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (Indian Institute of Technology) ମଡ଼େଲ୍‌ର ସଫଳ କାହାଣୀ ଏକ ବିଶାଳ ରୂପରେଖ ମାଧ୍ୟମରେ ଆଗଙ୍ଗା କୁମାରୀକା ପରିପ୍ରକାଶିତ ହେବା ଦରକାର । ଗବେଷଣା ପ୍ରତିଷ୍ଠାନଗୁଡ଼ିକୁ ଆବଶ୍ୟକୀୟ ସ୍ୱୟଂଶାସିତ କ୍ଷମତା ପ୍ରଦାନ କରାଯିବା ଏକ ନିଶ୍ଚିତ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା । ପ୍ରଫେସର, ବୈଜ୍ଞାନିକ ଓ ବୈଜ୍ଞାନିକ ଅନୁଷ୍ଠାନର ମୁଖ୍ୟମାନେ ହିଁ ସାଧାରଣତଃ ଗବେଷଣାର ଲକ୍ଷ୍ୟସ୍ଥଳ ସମ୍ବନ୍ଧରେ ପୂର୍ଣ୍ଣ ଅବଗତ ଥାଆନ୍ତି ଏବଂ ବୈଜ୍ଞାନିକ ଗତିପ୍ରଗତିର ଅବିରାମ ଧାରାରେ ଅଭିବୃଦ୍ଧି ଆଣିବାର ସୁଗମପଥ ସେହିମାନଙ୍କୁ ହିଁ ପ୍ରକୃତରେ ଜଣାଥାଏ । ତେଣୁ ରାଷ୍ଟ୍ରୀୟ ପ୍ରଗତିର ଏହି ମହାଯାତ୍ରାରେ ସେମାନଙ୍କୁ ସାମିଲ୍ କରାଯିବା ଉଚିତ୍ ଯଦ୍ୱାରା ସ୍ୱୟଂଶାସିତ ବୈଜ୍ଞାନିକ ପ୍ରତିଷ୍ଠାନଗୁଡ଼ିକ ବିକାଶପଥର ଯାତ୍ରୀ ହୋଇ ଏକ ସୁସ୍ଥ ବୈଜ୍ଞାନିକ ପରମ୍ପରା ସୃଷ୍ଟି କରିପାରିବେ ।

ରାଷ୍ଟ୍ରରେ ସଂଗଠିତ ହେଉଥିବା ବିଭିନ୍ନ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମର ଫଳାଫଳ ଶିକ୍ଷସଂସ୍ଥାମାନଙ୍କର ସାମଗ୍ରୀକ ଅଭିବୃଦ୍ଧି ପାଇଁ ହିଁ ଉଦ୍ଦିଷ୍ଟ ହୋଇଥାଏ ଏବଂ ସେହିମାନେ ହିଁ ଏହାକୁ ଆଧାର କରି ପ୍ରଗତିର ରାଜାରାସ୍ତାରେ ନିଜର ପ୍ରବଳ ପରାକ୍ରମ ପ୍ରକଟିତ କରିଥାନ୍ତି । ତେଣୁ ଗବେଷଣା ପ୍ରତିଷ୍ଠାନ ଓ ବିଭିନ୍ନ ଶିକ୍ଷସଂସ୍ଥାମାନଙ୍କ ମଧ୍ୟରେ ଏକ ସୁସ୍ଥ ବୈଜ୍ଞାନିକ ସମ୍ବନ୍ଧ ପ୍ରତିଷ୍ଠା ହେବା ଏକାନ୍ତ ବାଂଛନୀୟ । ଏହାଏକ ଅତ୍ୟନ୍ତ ଜରୁରୀ ଓ ଜାତୀୟ ଆବଶ୍ୟକତା ଅଟେ । ଯେଉଁସବୁ କର୍ପୋରେଟ୍ ସେକ୍ଟର ଗୁଡ଼ିକ ବୈଜ୍ଞାନିକ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମରେ ନିରନ୍ତରଭାବେ ଲିପ୍ତ ଅଛନ୍ତି ସେମାନଙ୍କୁ ଉତ୍ତମ ଇନ୍‌ସେନ୍‌ଟିଭ୍ ପ୍ରଦାନ କରାଯିବା ନିତାନ୍ତ ଆବଶ୍ୟକ । ସୂଚନା ପ୍ରଯୁକ୍ତିବିଦ୍ୟା ସହ ଜଡ଼ିତ ଶିକ୍ଷସଂସ୍ଥାମାନଙ୍କୁ ଯେପରି ଭିତ୍ତିଭୂମିର ପ୍ରତିଷ୍ଠାପାଇଁ ଆବଶ୍ୟକୀୟ ଆର୍ଥିକ ଅନୁଦାନ ପ୍ରଦାନ କରାଯାଉଛି ସେହିପରି ଅନ୍ୟାନ୍ୟ ଶିକ୍ଷସଂସ୍ଥାମାନେ ମଧ୍ୟ ଏଭଳି ପ୍ରୋତ୍ସାହନ ପାଇବା ଦରକାର । କର୍ପୋରେଟ୍ ସେକ୍ଟର ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ପାଇଁ ଟିକସରେ ରିହାତି, ସ୍ପେଶାଲ୍ ଇକୋନୋମିକ୍ ଜୋନ୍ ଏବଂ ଗବେଷଣା ଓ ଉନ୍ନୟନ ଭିତ୍ତିକ ଟେକ୍ନୋଲୋଜି ପାର୍କର ପ୍ରତିଷ୍ଠା ଭଳି ନାନାଦି ଇନ୍ନୋଭେଟିଭ୍ କାର୍ଯ୍ୟକ୍ରମ ପାଇଁ ଉପଯୁକ୍ତ ଇନ୍‌ସେନ୍‌ଟିଭ୍ ପ୍ରଦାନ କରାଗଲେ ଗବେଷଣା ଓ ଉନ୍ନୟନର ଧାରାରେ ଆକର୍ଷଣୀୟ ପରିବର୍ତ୍ତନ ପରିଲକ୍ଷିତ ହେବ ।

ଆଜିର ସମୟରେ ଯେତେବେଳେ କି ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ବିଶ୍ୱକୈନ୍ଦ୍ରିକ ହୋଇଯାଇଛି ସେତେବେଳେ ବିଭିନ୍ନ ଆନ୍ତର୍ଜାତିକ ଗବେଷଣା ପ୍ରତିଷ୍ଠାନମାନଙ୍କ ସହ ସହୃଦୟତା ପ୍ରତିଷ୍ଠା ତଥା ଏକ ମହାଦେଶ ସହ ଅନ୍ୟଏକ ମହାଦେଶର ବୈଜ୍ଞାନିକ ସମ୍ପର୍କ ବିଶ୍ୱବୈଜ୍ଞାନିକ ଭିତ୍ତିଭୂମିକୁ ପ୍ରଚଣ୍ଡଭାବେ ସୁଦୃଢ଼ କରିଥାଏ । ଜ୍ଞାନର ବିକେନ୍ଦ୍ରୀକରଣ ଓ ପରସ୍ପର ମଧ୍ୟରେ ବୈଜ୍ଞାନିକ ଭାବାବେଗର ବଣ୍ଟନ ବୈଜ୍ଞାନିକ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମକୁ ଯଥେଷ୍ଟ ତ୍ୱରାନ୍ୱିତ କରିଥାଏ । ସମସ୍ତ ବୈଜ୍ଞାନିକ ସଫଳତାର କାହାଣୀ ଏହି ବିଶ୍ୱ ବୈଜ୍ଞାନିକ ସମ୍ବନ୍ଧର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇଥାଏ ଏବଂ ଏହା ହିଁ ଆଜିର ମୁଖ୍ୟ ବୈଜ୍ଞାନିକ ଆଭିମୁଖ୍ୟ ।

୨୦୦୯ ମସିହାରେ ରସାୟନ ବିଜ୍ଞାନରେ ନୋବେଲ୍ ପ୍ରାଇଜ୍ ବିଜେତା ଭାରତୀୟ ବଂଶୋଦ୍‌ଭବ ଡ଼କ୍ଟର ଭେଙ୍କଟରମଣ ରାମକ୍ରିଷ୍ଣନଙ୍କ କଥା ହିଁ ବିଚାରକୁ ନିଆଯାଉ । ସେ ଭାରତବର୍ଷ ଓ ଅନ୍ୟାନ୍ୟ ବହୁଦେଶ ସହ ଉତ୍ତମ ବୈଜ୍ଞାନିକ ସମ୍ପର୍କ

ପ୍ରତିଷ୍ଠା କରିବାରେ ସଫଳକାମୀ ହୋଇଥିଲେ ତଥା ବହୁ ଆନ୍ତର୍ଜାତୀୟ ସେମିନାର୍ ଓ କନ୍‌ଫରେନ୍ସ ଅନୁଷ୍ଠିତ କରାଇ ଦେଶ ବିଦେଶର ବହୁ ବୈଜ୍ଞାନିକଙ୍କୁ ସେଠାକୁ ଆମନ୍ତ୍ରଣ କରି ନିଜର କର୍ମକ୍ଷେତ୍ର ସହ ଜଡ଼ିତ ବିଭିନ୍ନ ବୈଜ୍ଞାନିକ କାର୍ଯ୍ୟାବଳୀର ଗଭୀର ମନନ, ଚିନ୍ତନ, ବିଶ୍ଳେଷଣ, ଆଲୋଚନା ଓ ପ୍ରତିଆଲୋଚନା ମାଧ୍ୟମରେ ଏକ ସୁନ୍ଦର ବିଶ୍ୱବୈଜ୍ଞାନିକ ପ୍ରକ୍ଷେତ୍ର ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ ଯାହାକି ତାଙ୍କୁ ଜୀବନରେ ଗୋଟିକ ପରେ ଗୋଟିଏ ବୈଜ୍ଞାନିକ ସିଡ଼ି ପାହାଚ ସଫଳ ଭାବେ ଆରୋହଣ କରିବାରେ ସହାୟକ ହୋଇଥିଲା । ଏଭଳି ଏକ ଫଳପ୍ରଦ ପ୍ରଚେଷ୍ଟା ନିଶ୍ଚିତ ରୂପେ ଭାରତବର୍ଷର ବୈଜ୍ଞାନିକ ଇକୋ-ସିଷ୍ଟମକୁ ସମୃଦ୍ଧଶାଳୀ କରାଇବାରେ ସହାୟକ ହେବ ଯାହାକି ନୂତନ ଯୁବ ବୈଜ୍ଞାନିକମାନଙ୍କୁ ଗବେଷଣାର ସଡ଼କରେ ଯାତ୍ରୀଟିଏ ହେବାପାଇଁ ବହୁଳଭାବେ ଅନୁପ୍ରାଣିତ କରିବ ।

ଅନ୍ତତପକ୍ଷେ ବର୍ଷକୁ ଥରେ ଜଣେ ନୋବେଲ୍ ପ୍ରାଇଜ୍ ବିଜେତା ଅବା ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକଙ୍କୁ ଭାରତବର୍ଷର ଯେକୌଣସି ଏକ ବୈଜ୍ଞାନିକ ଅନୁଷ୍ଠାନକୁ ଏକ ସେମିନାର ମାଧ୍ୟମରେ ଆମନ୍ତ୍ରଣ କରି ସେଠାରେ କେବଳ ମନୋନୀତ ଯୁବଭାରତୀୟ ବୈଜ୍ଞାନିକମାନଙ୍କ ସହ ସେମାନଙ୍କର ବୈଜ୍ଞାନିକ ଭାବବିନିମୟ କରାଗଲେ ଯୁବଭାରତୀୟ ମସ୍ତିଷ୍କ ବିଶ୍ୱବୈଜ୍ଞାନିକ ପାଣିପାଗ ସହ ସଠିକ୍ ରୂପେ ପରିଚିତ ହୋଇପାରିବ ଏବଂ ନିଜ ଜୀବନକୁ ବୈଜ୍ଞାନିକ ରାଜରାସ୍ତାରେ ମଧ୍ୟ ସଠିକଭାବେ ପରିଚାଳିତ କରିପାରିବ । ନ୍ୟାସନାଲ୍ ସାଇନ୍ସ ଫାଉଣ୍ଡେସନ୍ ପରି ଏକ ବୈଜ୍ଞାନିକ ଅନୁଷ୍ଠାନ ଗଢାଯାଇ ଏପରି ନିରନ୍ତର ବୈଜ୍ଞାନିକ କାର୍ଯ୍ୟକ୍ରମ ହାତକୁ ନିଆଗଲେ ଭାରତୀୟ ଯୁବଶକ୍ତି ବହୁଳଭାବେ ଉପକୃତ ହେବେ । ଏଥିପାଇଁ ଏକ କେନ୍ଦ୍ରୀୟ ପାଣ୍ଠିର ଗଠନ କରାଯାଇପାରିବ ଯାହାକି ଅନେକ ବଦାନ୍ୟ ବ୍ୟକ୍ତି, ପବ୍ଲିକ ଓ ପ୍ରାଇଭେଟ୍ ଷ୍ଟେକ୍ ହୋଲଡ଼ର୍‌ମାନଙ୍କ ଅଯାଚିତ ଦାନ ଦ୍ୱାରା ସମୃଦ୍ଧ ହେବ ।

ପୁରସ୍କାର, ସମ୍ମାନ ଓ ସମ୍ବର୍ଦ୍ଧନା ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମସହ ଓତପ୍ରୋତଃଭାବେ ଜଡ଼ିତ । ଏହା ଜଣେ ମେଧାବୀ ଯୁବବୈଜ୍ଞାନିକକୁ କଠିନରୁ କଠିନତମ ବୈଜ୍ଞାନିକ ରାସ୍ତାରେ ଚାଲିବାକୁ ଅହେତୁକ ପ୍ରେରଣା ପ୍ରଦାନ କରିଥାଏ । ଏହାର ଗୁରୁତ୍ୱ ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ଆମେ ଆମର କ୍ରୀଡ଼ାବିତ୍‌ମାନଙ୍କୁ ସେମାନଙ୍କର

ସଫଳତା ପାଇଁ ଯେପରି ବିପୁଳ ରାଷ୍ଟ୍ରୀୟ ସମ୍ବର୍ଦ୍ଧନା ଜ୍ଞାପନ କରିଥାଉ ଠିକ୍ ସେହିପରି ଜାତୀୟ, ଆନ୍ତର୍ଜାତୀୟ ଓ ରାଜ୍ୟସ୍ତରୀୟ ପୁରସ୍କାର ବିଜେତା କୃତବିଦ୍ୟ ଯଶସ୍ୱୀ ବୈଜ୍ଞାନିକମାନଙ୍କୁ ଲକ୍ଷ ଲକ୍ଷ ଲୋକଙ୍କ ସମ୍ମୁଖରେ ସ୍ୱାଧୀନତା ଦିବସ ଅବା ଗଣତନ୍ତ୍ର ଦିବସ ଉତ୍ସବରେ ରାଷ୍ଟ୍ରୀୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଉ । ଦେଶର କୋଣ ଅନୁକୋଣରେ ସେମାନଙ୍କର ସଫଳ ବୈଜ୍ଞାନିକ କୃତିକୁ ବଡ଼ ବଡ଼ ହୋଡ଼ିଙ୍ଗ୍ ମାଧ୍ୟମରେ ପ୍ରଦର୍ଶିତ କରାଯାଉ । ଏହା ହେଲେ ସମାଜ ସହ ବିଜ୍ଞାନ ଓତପ୍ରୋତଃଭାବେ ଜଡ଼ିତ ହୋଇପାରିବ ଓ କାଲିର ମଣିଷ ବିଜ୍ଞାନର ଭାଷା ସ୍ପଷ୍ଟଭାବେ ଉଚ୍ଚାରଣ କରିପାରିବ । ଛାତ୍ରଛାତ୍ରୀମାନଙ୍କୁ ଆର୍ଥିକ ପ୍ରୋତ୍ସାହନ, ଉପଯୁକ୍ତ ଇନ୍‌ସେନ୍‌ଟିଭ୍ ଓ ପୁରସ୍କାର ମାଧ୍ୟମରେ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ କରାଇବାକୁ ପଡ଼ିବ । ଉଦାହରଣସ୍ୱରୂପ ସମଗ୍ରଦେଶରୁ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ପ୍ରତି ପ୍ରଚଣ୍ଡ ଆଗ୍ରହ, ଉତ୍ସାସ ଓ ଉଦ୍ଦୀପନା ଥିବା ୧୦୦ଜଣ ଅତ୍ୟନ୍ତ ଉଚ୍ଚକୋଟୀର ପ୍ରଜ୍ଞାବାନ ମେଧାବୀ ଛାତ୍ରଛାତ୍ରୀଙ୍କୁ ବଛାଯାଉ ଏବଂ ସେମାନଙ୍କର ପରବର୍ତ୍ତୀ ଉଚ୍ଚଶିକ୍ଷାପାଇଁ ସମସ୍ତ ଖର୍ଚ୍ଚ ସରକାର ନିଶ୍ଚିତ ବହନକରନ୍ତୁ ଯଦ୍ୱାରା ସେମାନେ ଅତ୍ୟନ୍ତ ଆଗଭର ହୋଇ ଗବେଷଣାକୁ ସେମାନଙ୍କର ବୃତ୍ତି ବା ପେଶା ଭାବେ ଆନନ୍ଦର ସହ ବରଣ କରି ନେଇପାରିବେ । ଏ କ୍ଷେତ୍ରରେ ପ୍ରାଇଭେଟ୍ ସେକ୍ଟରମାନେ ପୃଷ୍ଟପୋଷକତାର ଭୂମିକା ସମ୍ପାଦିତ କରିପାରିବେ ।

ପ୍ରଧାନମନ୍ତ୍ରୀ ମନମୋହନ ସିଂହଙ୍କ ସରକାର ଦେଶରୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ନାନାବିଧ ଉନ୍ନୟନମୂଳକ ପଦକ୍ଷେପ ଗ୍ରହଣ କରିଛନ୍ତି ଯଦ୍ୱାରା ବିକାଶର ଧାରା ତ୍ୱରାନ୍ୱିତ ହୋଇପାରିବ । ଏହି ପ୍ରକ୍ରିୟାର ଫଳପ୍ରସୂପାଇଁ ବହୁବିଧ କାର୍ଯ୍ୟକ୍ରମ ମଧ୍ୟରୁ ଗୋଟିଏ କାର୍ଯ୍ୟକ୍ରମ ହେଲା ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଆବଶ୍ୟକୀୟ ପୁଞ୍ଜିବିନିଯୋଗ ଏବଂ ଏହା ସ୍ୱୀକାର କରି ପ୍ରଧାନମନ୍ତ୍ରୀ ଆଗାମୀ ବର୍ଷମାନଙ୍କରେ ଗବେଷଣା ଓ ଉନ୍ନୟନ ବାବଦରେ ବ୍ୟୟ ଅର୍ଥରାଶିର ପରିମାଣରେ ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ ଭିତ୍ତିରେ ଦୁଇଗୁଣ ବୃଦ୍ଧି କରିବା ପାଇଁ ଘୋଷଣା କରିଛନ୍ତି । ନ୍ୟାସନାଲ ସାଇନ୍ସ ଆଣ୍ଡ ଇଞ୍ଜିନିୟରିଂ ରସିର୍ଚ୍ଚ ବୋର୍ଡ଼ର ଗଠନ ପାର୍ଲାମେଣ୍ଟରେ ଅନୁମୋଦନ ଲାଭ କରିବା ରାଷ୍ଟ୍ରପାଇଁ ଏକ ଅତ୍ୟନ୍ତ ସୁସମ୍ବାଦ ଯାହାକି ଗବେଷଣା ପ୍ରକଳ୍ପ ଗୁଡ଼ିକୁ ଆବଶ୍ୟକୀୟ ଆର୍ଥିକ ଅନୁଦାନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଗବେଷଣାର ଧାରାରେ ଉତ୍ତରୋତ୍ତର ଅଭିବୃଦ୍ଧି ଆଣିବାରେ ଅଭୂତପୂର୍ବ ସହାୟକ ହେବ । ଏପରି ଏକ କାର୍ଯ୍ୟକ୍ରମ ନିଶ୍ଚିତ

ରୂପେ ଏକ ମହତ ପ୍ରୟାସ ଏବଂ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଅଟେ ଯାହାକି ରାଷ୍ଟ୍ରୀୟ ବୈଜ୍ଞାନିକ ଗତି ପ୍ରଗତିର ସ୍ରୋତକୁ ଚଳଚଞ୍ଚଳ କରିବାରେ ମହତ୍ତର ଭୂମିକା ସମ୍ପାଦିତ କରିବ । କେନ୍ଦ୍ରମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅଭିନବ ପ୍ରଚେଷ୍ଟା ମାଧ୍ୟମରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧି ଆଣିବା ଏବଂ ଗତ ୩ବର୍ଷ ମଧ୍ୟରେ ୫ଟି ନୂଆ "ଭାରତୀୟ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ"ର ସ୍ଥାପନା ଦେଶରେ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଏକ ଶକ୍ତିଶାଳୀ ମାଇଲ ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାରତବର୍ଷକୁ ଏକ ବିଶ୍ୱ ବୈଜ୍ଞାନିକ ମହାଶକ୍ତି ଭାବେ ଛାତି ଫୁଲାଇ ଦଣ୍ଡାୟମାନ ହେବାକୁ ହେଲେ ଏକ ସୁସ୍ଥ ବୈଜ୍ଞାନିକ ଭିତ୍ତିଭୂମିକୁ ଆଧାର କରି ଏକ ଅତ୍ୟନ୍ତ ସୁଦୃଢ଼ ସାଇନ୍ସ ଇକୋ-ସିଷ୍ଟମର ନିର୍ମାଣ ଏକାନ୍ତ ପ୍ରଣିଧାନ ଯୋଗ୍ୟ । ଭାରତବର୍ଷକୁ ବିଶ୍ୱ ଉତ୍କର୍ଷତାର ଶ୍ରେଷ୍ଠ ନିଦର୍ଶନ ପ୍ରତିପାଦିତ କରିବାକୁ ହେଲେ ଦେଶର ବିଭିନ୍ନ ସରକାରୀ କାର୍ଯ୍ୟାଳୟ, ବ୍ୟାବସାୟିକ ସଂସ୍ଥା, ସାମରୀକ ଅବା ସମାଜର ବିଭିନ୍ନ ଧାରାରେ ବିନିଯୋଗ ଥିବା ସମଗ୍ର ମାନବସମ୍ବଳ ଅତ୍ୟନ୍ତ ଗୁଣଶାଳୀ, ଆଶାତୀତ ପ୍ରଜ୍ଞାବାନ ଓ ପ୍ରଚଣ୍ଡ ଧିଶକ୍ତି ସମ୍ପନ୍ନ ହେବା ନିତାନ୍ତ ବାଂଛନୀୟ । ସେମାନଙ୍କର ଅଭୂତପୂର୍ବ ସଫଳତା ଓ ନୀତିନିଷ୍ଠ କାର୍ଯ୍ୟଧାରାକୁ ଜନସମାଜ ସମ୍ମୁଖରେ ବଜ୍ରଗମ୍ଭୀର ସ୍ୱରରେ ପ୍ରତିପାଦିତ କରିବାକୁ ପଡ଼ିବ । ଅସାଧାରଣ ଗୁଣ ସମ୍ପନ୍ନ ବୈଜ୍ଞାନିକମାନଙ୍କୁ ସେମାନଙ୍କର କାର୍ଯ୍ୟଦକ୍ଷତା, ନିଷ୍ଠା, ଅସାଧାରଣ ସଫଳତା ଓ ମହାନୁଭବତା ପାଇଁ ପୁରସ୍କାର ଓ ସମ୍ମାନରେ ବିମଣ୍ଡିତ କରାଇବାକୁ ପଡ଼ିବ । ବିଶ୍ୱସ୍ତରରେ ଥିବା ବହୁ ପୁରସ୍କାର ଓ ସମ୍ମାନ ସେମାନଙ୍କୁ ପ୍ରଦାନ କରାଯିବା ଉଚିତ ହେବ । ଏଭଳି ଏକ ଗବେଷଣାଧର୍ମୀ ବୈଜ୍ଞାନିକ ମାନସିକତା ସୃଷ୍ଟି କରାଯାଇପାରିଲେ ସୁଦୂର ପ୍ରସାରୀ ଗୁଣାତ୍ମକ ବୈଜ୍ଞାନିକ କାର୍ଯ୍ୟକଳାପ ନିଶ୍ଚିତ ରୂପେ ଫଳପ୍ରସୂ ହୋଇପାରିବ ଓ ଦେଶର ଅଭିବୃଦ୍ଧି ସହ ଗବେଷଣାକୁ ଅଙ୍ଗାଙ୍ଗୀଭାବେ ଜଡ଼ିତ କରାଯାଇପାରିବ । ବିଶ୍ୱବନ୍ଦିତ ସୂଚନା ଓ ପ୍ରଯୁକ୍ତିବିଦ୍ୟା କମ୍ପାନୀ ଇନ୍‌ଫୋସିସ୍ "ଇନ୍‌ଫୋସିସ୍ ପ୍ରାଇଜ୍" ପ୍ରତିଷ୍ଠା କରି ଏପରି ଏକ ମହତ୍ କାର୍ଯ୍ୟକ୍ରମ ନିକଟ ଅତୀତରେ ହାତକୁ ନେଇଛି । ଭାରତବର୍ଷର ବୈଜ୍ଞାନିକ ଭବିଷ୍ୟତକୁ ଏକ ନୂତନ ଦିଗନ୍ତ ପ୍ରଦାନ କରିବାପାଇଁ ଅସାଧାରଣ ଗବେଷଣା ସଫଳତା ହାସଲ କରିଥିବା ବୈଜ୍ଞାନିକ ତଥା ଭାରତବର୍ଷର ଯୁବପିଢ଼ିଙ୍କ ମାନସରାଜ୍ୟରେ ଗବେଷଣାକୁ ଜୀବନର ପରମ ବ୍ରତଭାବେ ବରଣ କରିନେବା ପାଇଁ ଅହେତୁକ ଉନ୍ମାଦନା ଓ ପ୍ରେରଣା ଭରିଦେବା କ୍ଷେତ୍ରରେ

ମହତ୍ତର ଭୂମିକା ସମ୍ପାଦନା କରୁଥିବା ବୈଜ୍ଞାନିକ ବ୍ୟକ୍ତିବିଶେଷଙ୍କୁ ଏହି ପୁରସ୍କାର ପ୍ରଦାନ କରାଯିବ । ଭାରତବର୍ଷରେ ଏକ ସୁଦୃଢ଼ ଗବେଷଣା ସାମ୍ରାଜ୍ୟ ପ୍ରତିଷ୍ଠା କରିବା ଯୁବପିଢ଼ିଙ୍କ ପରମଧ୍ୟେୟ ହେବା ଉଚିତ୍ ଏବଂ ଏହା ସମ୍ପାଦିତ ହେଲେ ହିଁ ଭାରତବର୍ଷ ବିଶ୍ୱ ବୌଦ୍ଧିକ ପୁନର୍ଜାଗରଣରେ ନିଜର ଆସନ ସୁଦୃଢ଼ କରିପାରିବ ।

ଭାରତବର୍ଷର ବୈଜ୍ଞାନିକ ଭବିଷ୍ୟତର ଭବିଷ୍ୟତ ଓ ବିକାଶର କିମ୍ବଦନ୍ତୀ ଧାରା ରାଷ୍ଟ୍ରୀୟ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମର ସଫଳତା ଉପରେ ହିଁ ସମ୍ପୂର୍ଣ୍ଣ ନିର୍ଭରଶୀଳ ହେବ । ତେଣୁ କେତେ ଶୀଘ୍ର ଆମେ ବିଶ୍ୱ ବୈଜ୍ଞାନିକ ମହାଧାରା ସହ ସାମିଲ୍ ହୋଇପାରୁଛୁ ତାହା ନିର୍ଦ୍ଧାରଣ କରିବ ଭାରତବର୍ଷର ବୈଜ୍ଞାନିକ ଭବିଷ୍ୟତର ସ୍ୱପ୍ନ ଓ ସାର୍ଥକତାର ପରିଚୟ ପତ୍ର ।

ସମାଜ : ୨୮.୦୨.୨୦୧୦



# ଶିକ୍ଷାର ପୁନଃ ଉଦ୍‌ଭାବନକରଣ

## (Reinventing Education)

ଶିକ୍ଷା କ୍ଷେତ୍ରରେ ନୂତନ ମଡ୍ୱେଲ୍‌ର ପ୍ରବର୍ତ୍ତନ ପାଇଁ ନିରନ୍ତର ପରୀକ୍ଷା ନିରୀକ୍ଷା ଓ ପ୍ରଚେଷ୍ଟା ଜାରି ରଖିବା କ୍ଷେତ୍ରରେ ଭାରତବର୍ଷର ଭୌଗୋଳିକ ବିଶାଳତା ଓ ବିଭିନ୍ନତାର ସ୍ୱରୂପ ଏକ ଆଦର୍ଶ ପ୍ଲାଟଫର୍ମ ଭାବେ ନିଶ୍ଚିତ ରୂପେ ସାବ୍ୟସ୍ତ ହେବ ଯାହାକି ଭାରତବର୍ଷକୁ ଏକବିଂଶ ଶତାବ୍ଦୀର ସ୍ୱର୍ଣ୍ଣ ସିଂହାସନରେ ଅଧିଷ୍ଠିତ କରିବା ପାଇଁ ପୂର୍ଣ୍ଣ ସହାୟକ ହେବ ।

ଏଥିରେ କେହି ଦ୍ୱିମତ ହେବାର ନାହିଁ ଯେ ବିଶ୍ୱ ବିଗତ ବର୍ଷମାନଙ୍କରେ ବହୁବିଧ ପରିବର୍ତ୍ତନ ଦେଇ ଗତି କରିଚାଲିଛି ଏବଂ ପରିବର୍ତ୍ତନର ଏହି ମହାଝଡ଼ ସମଗ୍ର ଭାରତୀୟ ଭୂଖଣ୍ଡକୁ ମଧ୍ୟ ପ୍ରଚଣ୍ଡଭାବେ ପ୍ରଭାବିତ କରୁଛି । ଏହା ସତ୍ତ୍ୱେ ମଧ୍ୟ ଆମେ ବିଗତ ୨୦୦ ବର୍ଷ ଧରି ଆମର ଉତ୍ତରପିଢ଼ିର ଦାୟାଦମାନଙ୍କୁ ଶିକ୍ଷା ପ୍ରଦାନ କ୍ଷେତ୍ରରେ ବ୍ୟବହୃତ ପ୍ରକ୍ରିୟାରେ ସେପରି କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣିପାରିନାହୁଁ ।

ଆମ ପିଲାମାନେ ଏହି ଦ୍ରୁତ ପରିବର୍ତ୍ତନଶୀଳ ସମାଜ ଓ ସମାଜ ବ୍ୟବସ୍ଥା ମଧ୍ୟରେ ବଞ୍ଚିରହି ପ୍ରଚଳିତ ଶିକ୍ଷାଦୀକ୍ଷା ଲାଭକରି ଚାକିରୀ ବାକିରୀ କରି ତାଙ୍କୁ ୬୦ ବର୍ଷ ବୟସ ହେଲାବେଳକୁ ଚାକିରୀ କ୍ଷେତ୍ରରୁ ଅବସର ନେଲାବେଳକୁ ପରିବର୍ତ୍ତନର ଯେଉଁ ପ୍ରଖର ସୁଅକୁ ସାମ୍ନା ସାମ୍ନି କରିଥିବେ ସେ ବିଷୟରେ ଆପଣ ଟିକେ ଚିନ୍ତା କରନ୍ତୁ ! ଆମର ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥା ସତରେ କଣ ତାଙ୍କୁ ଏପରି ଏକ ସମ୍ଭାବ୍ୟ ବିଶ୍ୱବ୍ୟବସ୍ଥା ସହ ମୁହାଁମୁହିଁ ଲଢ଼ିବା ପାଇଁ ପ୍ରସ୍ତୁତ କରିପାରିବ ?

ଆମେ ଆମ ପିଲାମାନଙ୍କୁ ଆସେମ୍ବ୍ଲି-ଲାଇନ୍-ଆପ୍ରୋଚ ମାଧ୍ୟମରେ ସମ୍ପ୍ରତି ପ୍ରଦାନ କରୁଥିବା ଶିକ୍ଷା ପ୍ରଣାଳୀକୁ କଣ ଆମେ ନିରନ୍ତର ଭାବେ ପ୍ରଚଳନ କରିରଖିପାରିବା ନା ସେମାନଙ୍କ ମଧ୍ୟରେ ଲୁକ୍କାୟୀତ ହୋଇରହିଥିବା ଅନନ୍ୟ ପ୍ରତିଭାର ଜାଗରଣ, ପ୍ରଜ୍ଞାର ଉନ୍ମେଷ ଓ ଜ୍ଞାନର ବିସ୍ଫୋରଣ ମାଧ୍ୟମରେ ସେମାନଙ୍କର ଗୁଣଗାରିମାର ଅଭ୍ୟୁଦୟ ଓ ଅଭ୍ୟୁତ୍‌ଥାନରେ ସହାୟକ ହୋଇପାରିବା ? ଶିକ୍ଷା ପ୍ରଦାନ ବ୍ୟବସ୍ଥା ସତରେ କଣ ଆମ ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟର ମାତ୍ର ୨୦ବର୍ଷ ବୟସ ମଧ୍ୟରେ ସୀମିତ ହୋଇରହିଥିବ ନା ଆମ ଜୀବନର ଆଭିମୁଖ୍ୟ ଆଜୀବନ ଶିକ୍ଷା ବ୍ୟବସ୍ଥା ମୁଖି ହେବା ଏକାନ୍ତ ଆବଶ୍ୟକ ?

ବିଶ୍ୱପ୍ରସିଦ୍ଧ ମହାନ୍ ଚିନ୍ତା ନାୟକ ମିଃ ଆଲ୍‌ଭିନ୍ ଟଫଲର୍ ତାଙ୍କର "ଥାର୍ଡ଼ ୱେଭ" ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ ଶିଳ୍ପ ଯୁଗର କଳକାରଖାନା ମଡ଼େଲ୍ ଉପରେ ଆଧାରିତ ଗଣଶିକ୍ଷା ବ୍ୟବସ୍ଥା ସର୍ବନିମ୍ନ ମୌଳିକ ଲେଖାପଢ଼ା, ପାଟୀଗଣିତ, ଇତିହାସ ଏବଂ ଅନ୍ୟାନ୍ୟ ଆଉକିଛି ଆନୁସଙ୍ଗିକ ବିଷୟ ବସ୍ତୁ ଉପରେ ପର୍ଯ୍ୟବେସିତ ଅଟେ ଯାହାକୁ କି ମୌଳିକ ଶିକ୍ଷାବ୍ୟବସ୍ଥାର ଉପର ସୋପାନ ବୋଲି ପରିଗଣିତ କରାଯାଇପାରେ । ମୌଳିକ ଶିକ୍ଷାବ୍ୟବସ୍ଥାର ନିମ୍ନ ସୋପାନରେ ପ୍ରଚଳିତ ଶିକ୍ଷାବ୍ୟବସ୍ଥା ତିନୋଟି ପାଠ୍ୟକ୍ରମ ଉପରେ ପ୍ରାୟ ଆଧାରିତ ହୋଇଥାଏ । ସେଗୁଡ଼ିକ ହେଲା ଯେକୌଣସି କାମକୁ ଠିକ୍ ସମୟରେ ଓ ଠିକଣା ଭାବେ ସମ୍ପାଦିତ କରିବା ବା ସମୟାନୁବର୍ତ୍ତିତା (Punctuality), ଆଦେଶାନୁଯାୟୀ  କର୍ମ କରିବା ବା ଆଜ୍ଞାକାରିତା (Obedience) ଏବଂ ଏକା କାମକୁ ବାରମ୍ବାର କରି କର୍ମରେ କର୍ମକୁଶଳତା ହାସଲ କରିବା (Repetitive Work) । ଏହା ସମ୍ଭବ ହେଲେ ପରମ ଆଜ୍ଞାକାରୀ, ଅତ୍ୟନ୍ତ ଭରସାବାନ ଏବଂ ସଫଳ ଉତ୍ପାଦନକ୍ଷମୀ କଳକାରଖାନା କର୍ମୀ ସୃଷ୍ଟି କରିବାରେ ଶିକ୍ଷା ବ୍ୟବସ୍ଥା ସହାୟକ ହେବ । ହେଲେ ଏକବିଂଶ ଶତାବ୍ଦୀର ବିଶ୍ୱବ୍ୟବସ୍ଥା କଣ ଖାଲି  ଏପରି ମାତ୍ର ଦକ୍ଷତା ସମ୍ପନ୍ନ ଛାତ୍ରଟିଏ ପାଇ ନବ ବିଶ୍ୱର ନିର୍ମାଣ କରିପାରିବ ?

ହାର୍ଭାଡ଼ ବିଶ୍ୱବିଦ୍ୟାଳୟରେ ମିଷ୍ଟର ହୋୱାର୍ଡ଼ ଗାର୍ଡ଼ନରଙ୍କ "ପ୍ରୋଜେକ୍ଟ ଜିରୋ" ଆବିଷ୍କାର କରିଥିଲା ଯେ ଜନ୍ମରୁ ୪ ବର୍ଷ ବୟସ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ପିଲା ଧୀଶକ୍ତିର ବହୁବିଧ ଫ୍ରେମୱାର୍କ ଯଥା-ଶୂନ୍ୟ ସମ୍ବନ୍ଧୀୟ ଜ୍ଞାନ, ନାନାଦି ଶବ୍ଦର ଉଚ୍ଚାରଣ ଓ ସେଗୁଡ଼ିକର ଉପଯୁକ୍ତ ବ୍ୟବହାର, ସଙ୍ଗୀତର ମଧୁମୟ ଲାଳିତ୍ୟ ଓ ଅନିର୍ବାଣ ମୂର୍ଚ୍ଛନାର ବିଗଳିତ ସ୍ୱର, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସମ୍ପର୍କର ନିବିଡ଼ ବନ୍ଧନ, ଗାଣିତିକ ସୂତ୍ରର ପରିପ୍ରୟୋଗ, ବ୍ୟକ୍ତିତ୍ୱର ଭାବ ଓ ପ୍ରଭାବ, ଜଳବାୟୁ ଓ ପରିବେଶ ଏବଂ ଭାଷା ସମ୍ବନ୍ଧୀୟ ଜ୍ଞାନ ଓ ଆଚରଣ ସମ୍ବନ୍ଧରେ ଜିନିୟସ ବା ପ୍ରଚଣ୍ଡ ମେଧାବାନ ସ୍ତରରେ ଥାଆନ୍ତି । କିନ୍ତୁ ପିଲାମାନଙ୍କୁ ୨୦ ବର୍ଷ ବୟସ ହେଲାବେଳକୁ ଜିନିୟସ୍‌ର ସ୍ତରରେ ପ୍ରାୟ ୨ ପ୍ରତିଶତ ହ୍ରାସ ପରିଲକ୍ଷିତ ହୋଇଥାଏ । ଏବେ ଆମେ ପିଲାମାନଙ୍କ ଇଣ୍ଟେଲିଜେନ୍ସ ବା ଧୀଶକ୍ତିକୁ ଶିକ୍ଷାଦାନ ମାଧ୍ୟମରେ ପରିପ୍ରକାଶିତ ବା ପରିସ୍ଫୁଟିତ କରୁଛୁ । ପରନ୍ତୁ ଆମକୁ ଆମ ସ୍କୁଲ ଓ କଲେଜମାନଙ୍କରେ ପିଲାମାନଙ୍କ ମଧ୍ୟରେ ଲୁକ୍କାୟିତ ଥିବା ଧୀଶକ୍ତିର ବହୁବିଧ ଫ୍ରେମୱାର୍କକୁ ଲାଳନପାଳନ କରି ତାର ଆନୁସଙ୍ଗିକ ବିକାଶ ପାଇଁ

ଚେଷ୍ଟିତ ହେବା ଦରକାର । ଆମେ ପିଲାମାନଙ୍କର କଳ୍ପନା ରାଜ୍ୟକୁ ପ୍ରଚଣ୍ଡଭାବେ ପ୍ରଜ୍ୱଳିତ କରିବା ଉଚିତ୍ ଏବଂ ଆଇନ୍‌ଷ୍ଟାଇନ୍‌ଙ୍କ ଭାଷାରେ "କଳ୍ପନା ହିଁ ଜ୍ଞାନଠାରୁ ଅଧିକ ଶକ୍ତିଶାଳୀ"–ଏହା ଆମକୁ ସଦାସର୍ବଦା ମନେରଖିବାକୁ ପଡ଼ିବ ।

ସ୍କୁଲ ଓ ବିଶ୍ୱବିଦ୍ୟାଳୟ ସ୍ତରର ପ୍ରଚଳିତ ଶିକ୍ଷାବ୍ୟବସ୍ଥା କେବଳ ଏକ ସୀମିତ ଜ୍ଞାନର ଉପଲବ୍ଧତା ଉପରେ ହିଁ କେନ୍ଦ୍ରୀଭୂତ ହୋଇରହିଥାଏ । ଶିକ୍ଷା ଗ୍ରହଣ ପାଇଁ ଉଦ୍ଦିଷ୍ଟ ୨୦ବର୍ଷ ବୟସ ମଧ୍ୟରେ ଏ ସମସ୍ତ ଉପଲବ୍ଧ ଜ୍ଞାନର ଆବଣ୍ଟନ ପ୍ରକ୍ରିୟା ଯେତେଦୂର ସମ୍ଭବ ସମ୍ପାଦିତ ହୋଇଥାଏ । କିନ୍ତୁ ଏପରି ଏକ ଦୃଶ୍ୟପଟ୍ଟ ଏକବିଂଶ ଶତାବ୍ଦୀ ପାଇଁ ଆଦୌ ସ୍ପୃହଣୀୟ ହେଉନାହିଁ । ଜ୍ଞାନର ପରିସୀମା ଏତେ ବିଶାଳ ଓ ବ୍ୟାପକ ହୋଇଗଲାଣି ଯେ କେବଳ ମାତ୍ର ଗୋଟିଏ ବିଷୟରେ ବିଶେଷଜ୍ଞ ହେବାପାଇଁ ଆମକୁ ଏକାଧିକ ଜୀବନର ଆବଶ୍ୟକତା ପଡ଼ିବ । ଶିକ୍ଷା ଏକ ଆଜୀବନ ସାଧନା ଏବଂ ଶିକ୍ଷାକୁ କିଭଳି ଭାବେ କରାୟତ୍ତ କରିବାକୁ ପଡ଼ିଥାଏ ସେ ବିଷୟରେ ଶିକ୍ଷା ଲାଭ କରିବା ମଧ୍ୟ ଏକାନ୍ତ ଅପରିହାର୍ଯ୍ୟ । ଯେଉଁ ବୟସରେ ଯେଉଁ ଶିକ୍ଷାର ଆବଶ୍ୟକତା ଅଛି ତାକୁ ଆମକୁ ଗ୍ରହଣ କରିବାକୁ ପଡ଼ିବ ଏବଂ ସମୟାନୁଯାୟୀ ବିହୀତ ପଦକ୍ଷେପ ଗ୍ରହଣ କରିବା ମଧ୍ୟ ଏକାନ୍ତ ପ୍ରୟୋଜନ ହେବ ।

ସାମ୍ପ୍ରତିକ ସୁପର ସ୍ପେଶାଲାଇଜେସନ୍ ଯୁଗରେ ଆମେ ଲୋକମାନଙ୍କର କେବଳ ଏକ ବୈଷୟିକ ଗୋଷ୍ଠୀ ସୃଷ୍ଟି କରୁଛୁ ଯେଉଁମାନେ କି ନିଜ ବିଷୟବସ୍ତୁ ଉପରେ ଅତ୍ୟନ୍ତ ପଣ୍ଡିତ, ଧୂରୀଣ ଓ ବିଜ୍ଞ ବୋଲି ଦାବୀ କରନ୍ତି ପରନ୍ତୁ ସେମାନେ ଅନ୍ୟ ଗ୍ରୁପ୍ ବା ଡ଼ିସିପ୍ଲିନ୍ ସହ ବୈଜ୍ଞାନିକ ଭାବ ବିନିମୟ କ୍ଷେତ୍ରରେ ଅପାରଗମ ବୋଲି ସାବ୍ୟସ୍ତ ହେଉଛନ୍ତି । ଶିକ୍ଷାର ସଂରଚନାରେ ଜନସଂଚାର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ ଏବଂ ବିକାଶର ଧାରା ହେଉଛି ସମସ୍ତଙ୍କୁ ଏକ ସ୍ରୋତରେ ବାନ୍ଧି ଚଳିବାର ମହତ୍ତର କଳା । ପ୍ରତ୍ୟେକ ଦିନ ଲୋକମାନେ ଭାବୁଛନ୍ତି ଯେ ବିଶେଷଜ୍ଞମାନଙ୍କ କାର୍ଯ୍ୟକଳାପକୁ ହୃଦୟଙ୍ଗମ କରିବା ପାଇଁ ତାଙ୍କ ପାଖରେ ଆଦୌ କୌଣସି ଦକ୍ଷତା ନାହିଁ, ଏପରିକି ତାଙ୍କର ସେପରି କୌଣସି ଅଧିକାର ମଧ୍ୟ ନାହିଁ; ବିଶେଷଜ୍ଞମାନଙ୍କୁ ଚ୍ୟାଲେଞ୍ଜ କରିବାତ ଦୂରର କଥା । "ନୋ-ହାଓ୍ୱ" ବା ବୈଷୟିକ ଜ୍ଞାନ କୌଶଳକୁ ଜାଣିବାର ମହାଦୌଡ଼ରେ ଆମେ "ନୋ-ହ୍ୱାଟ୍" ଅର୍ଥାତ୍ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ଦିନକୁ ଦିନ ସମ୍ପୂର୍ଣ୍ଣ ଅଜ୍ଞ ହୋଇଚାଲିଛୁ ଏବଂ ଏ ସମସ୍ତ ଜ୍ଞାନର ବ୍ୟବହାର ସମ୍ବନ୍ଧରେ ମଧ୍ୟ ଆମେ

ସନ୍ନିହିତ ଅଛୁ । ଏପରି ଜ୍ଞାନକୌଶଳ ବା "ନୋ-ହାଓ୍ୱା" ର ବିନିଯୋଗ କରି ଧରିତ୍ରୀମାତାର ଗର୍ଭରେ ଯୁଗଯୁଗରୁ ସଞ୍ଚିତ ହୋଇରହିଥିବା ଅମୂଲ୍ୟ ଖଣିଜ ସମ୍ପଦର ନିଷ୍କାସନ କରି ଆମେ ଦିନପରେ ଦିନ ଏହାର ଦ୍ରୁତ ଅବକ୍ଷୟ ଘଟାଇ ଚାଲିଛୁ । ଏ କ୍ଷେତ୍ରରେ ଆମର ୱିଜଡ଼ମ୍ ବା ପ୍ରଜ୍ଞାର ବିନିଯୋଗ କଲେ ଆମେ ଜାଣିପାରିବା ଯେ ଏହା ସମଗ୍ର ମାନବସଭ୍ୟତା ପାଇଁ କେତେଦୂର ଗ୍ରହଣଯୋଗ୍ୟ !

ଆମ ଦେଶ ଭାରତ ପାଇଁ ଚ୍ୟାଲେଞ୍ଜ ଆହୁରି ଅଧିକ ଜଟିଳ । ସ୍କୁଲ ଯିବା ପାଇଁ ଯୋଗ୍ୟ ବିବେଚିତ ୨୦୦ ନିୟୁତରୁ ଅଧିକ ଛାତ୍ରସଂଖ୍ୟା ମଧ୍ୟରୁ ନିମ୍ନ ପ୍ରାଥମିକ ସ୍କୁଲ ସ୍ତରରେ ୩୫ ପ୍ରତିଶତ ଓ ଉଚ୍ଚପ୍ରାଥମିକ ସ୍କୁଲ ସ୍ତରରେ ୫୦ପ୍ରତିଶତ ଛାତ୍ର ସ୍କୁଲ ଛାଡ଼ିଥାନ୍ତି । ଗ୍ରାଜୁଏଟ୍ ବୟସ ପ୍ରାପ୍ତ କରିଥିବା ୨୦ନିୟୁତ ଯୁବକ ଯୁବତୀଙ୍କ ମଧ୍ୟରୁ ପ୍ରାୟ ୩ ନିୟୁତ ଛାତ୍ର କଲେଜ ଶିକ୍ଷା ସମାପ୍ତ କରି ଗ୍ରାଜୁଏଟ୍ ହେବାର ପରମ ସୌଭାଗ୍ୟ ଲାଭ କରିଥାନ୍ତି ଏବଂ ୫ଲକ୍ଷରୁ କମ୍ ଗ୍ରାଜୁଏଟ୍ ପ୍ରାୟ ଚାକିରୀ ପାଇଥାନ୍ତି । ଶିକ୍ଷାର ବହୁବିଧ ଦିଗରେ ଦୃଷ୍ଟି ନିକ୍ଷେପ କରିବାର ଜରୁରୀ ଆବଶ୍ୟକତା ଆଜି ଆମ ସମ୍ମୁଖରେ ଉପନୀତ ହୋଇଛି ଏବଂ ସମୟୋପଯୋଗୀ ବିହିତ ପଦକ୍ଷେପ ହିଁ ସମସ୍ୟାର ଆଶୁ ସମାଧାନର ସୂତ୍ର ବାହାର କରିପାରିବ ।

ପ୍ରଥମତଃ ଆମେ ଆମର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଛାତ୍ର ଛାତ୍ରୀମାନଙ୍କ ମନରେ ଶିକ୍ଷା ପ୍ରତି ଏକ ଅହେତୁକ ଆକର୍ଷଣ, ପ୍ରେମ ଓ ଶ୍ରଦ୍ଧାଭାବ ସୃଷ୍ଟି କରାଇବାକୁ ପଡ଼ିବ । ଉଦାହରଣସ୍ୱରୂପ "ମଣ୍ଟେସାରୀ ଶିକ୍ଷାପଦ୍ଧତି" ଯାହାକି ସମ୍ପୂର୍ଣ୍ଣଭାବେ ଛାତ୍ର କୈନ୍ଦ୍ରିକ ଏବଂ ଏହା ଶିକ୍ଷାପଦ୍ଧତିକୁ ଅତ୍ୟନ୍ତ ଆନନ୍ଦମୟ କରି ଗଢ଼ିତୋଳିଥାଏ । ପିଲାଟିର ପ୍ରାକୃତିକ ଧିଶକ୍ତି (Natural Talent) କୁ ଅଧିକ ପ୍ରୋତ୍ସାହିତ କରିବା ପାଇଁ ଭିଡ଼ିଓ ଭିତ୍ତିକ ଶିକ୍ଷାଦାନ ପ୍ରଣାଳୀ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ଦ୍ୱାରା ବିଭିନ୍ନ ଖେଳକୁଦର ଆୟୋଜନ ଅଧିକ ଫଳପ୍ରଦ ହୋଇଥାଏ । ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକ ଛାତ୍ରଛାତ୍ରୀମାନଙ୍କର ବିଶେଷ ମୌଳିକ ଦକ୍ଷତା ଯଥା-ପଢ଼ାପଢ଼ି, ଲେଖାଲେଖି, ପାଟୀଗଣିତ, ପରିବେଶ ବିଜ୍ଞାନ, ସ୍ୱାସ୍ଥ୍ୟ ଓ ପରିଷ୍କାର ପରିଚ୍ଛନ୍ନତା, ସାମାଜିକ ବିଜ୍ଞାନ ଏବଂ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବ୍ୟକ୍ତିଗତ ଦକ୍ଷତାର ଉନ୍ମେଷ ଉପରେ ଯଥେଷ୍ଟ ପ୍ରାଧାନ୍ୟଦେବା ଉଚିତ୍ । ପିଲାଟିର କଅଁଳିଆ ମନଟି ସଦ୍ୟ ପ୍ରସ୍ଫୁଟିତ ଫୁଲଟିଏ ପରି । ଅତ୍ୟନ୍ତ ନମନୀୟ, କମନୀୟ, ରଙ୍ଗମୟ ଓ ରୂପମୟ । ତାକୁ ଆଦର ସହକାରେ

କୋଳେଇନେବାକୁ ପଡ଼ିଥାଏ, ଆବୋରି ନେବାକୁ ପଡ଼ିଥାଏ । ମନଟି ତାର କୁଳୁକୁଳୁ ବହିଯାଉଥିବା ଝରଣାଟିଏ ପରି । ତାକୁ ଦରକାର ଏକ ଉନ୍ମୁକ୍ତ ଚଲାପଥ ଯେଉଁ ତାର ମନର କଳକଳ ରାଗିଣୀକୁ ବୁଝିପାରୁଥିବ, ଅନୁଭବ କରିପାରୁଥିବ, ଆଦର କରିପାରୁଥିବ । ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସେହିପରି ହୃଦୟସ୍ପର୍ଶୀ ହେବା ଦରକାର, ଦରଦୀ ହେବା ଦରକାର, ଆପଣାର ହେବା ଦରକାର । ତେବେ ଯାଇଁ ଶିକ୍ଷାବ୍ୟବସ୍ଥା ପିଲାଟିର ମନକୁ ଛୁଇଁପାରିବ ଓ ତାକୁ ଆବେଗମୟ କରିପାରିବ ।

ଦ୍ୱିତୀୟତଃ ଉଚ୍ଚପ୍ରାଥମିକ ସ୍କୁଲ ସ୍ତରରେ ଶିକ୍ଷାପ୍ରଦାନର ମୁଖ୍ୟ ଆଭିମୁଖ୍ୟକୁ ନିମ୍ନୋକ୍ତ ପ୍ରକାରରେ ବିଚାର କରାଯାଇପାରେ । ଛୋଟ ଛୋଟ ପିଲାମାନଙ୍କୁ ଶିକ୍ଷା କିପରି ଆହରଣ କରାଯାଏ ସେ ବିଷୟରେ ଉଚିତ୍ ଜ୍ଞାନ ପ୍ରଦାନ କରାଯିବା ଉଚିତ ଏବଂ ସେମାନଙ୍କର ପ୍ରାକୃତିକ ଉତ୍କଣ୍ଠାର ଜାଗରଣ ଓ ଉଦ୍ଭାବନ ପାଇଁ ଶିକ୍ଷକମାନେ ଯଥେଷ୍ଟ ସହାୟକ ହେବା ଏକାନ୍ତ ବାଂଛନୀୟ । ଶିକ୍ଷାପ୍ରଦାନ ପାଇଁ ନାନାବିଧ ବୈଜ୍ଞାନିକ ପ୍ରକ୍ରିୟାର ପରିପ୍ରୟୋଗ ଏକାନ୍ତ ଆବଶ୍ୟକ ଏବଂ ଏଥିପାଇଁ ଏକ ଉତ୍ତମ ଭିତ୍ତିଭୂମି ଓ ଦୃଢ଼ ଶିଳାନ୍ୟାସର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଶିକ୍ଷାପ୍ରଦାନ ବ୍ୟବସ୍ଥା କେବଳ ତଥ୍ୟାଶ୍ରୟୀ ଅନୁଶୀଳନ, ଗ୍ରାଫ୍ ଓ ଚିତ୍ରାବଳୀ ଆଦିର ଉପସ୍ଥାପନାର ସ୍ଥୂଳ ପରିସର ମଧ୍ୟରେ ସୀମିତ ହୋଇ ନରହି ଏକ ଉନ୍ମୁକ୍ତ ବିଶ୍ୱଜଗତର ପରିସର ଅଭିମୁଖି ହେବା ସର୍ବାଦୌ କାମ୍ୟ । ଶିକ୍ଷକମାନେ ଛାତ୍ରମାନଙ୍କର ଅନ୍ୱେଷା ଓ ଆତ୍ମ ଜାଗରଣ ପାଇଁ ପଥ ପ୍ରଦର୍ଶକର ଭୂମିକା ସମ୍ପାଦିତ କଲେ ଛାତ୍ରମାନେ ହିଁ ସେମାନଙ୍କ ଜୀବନର ନାନାବିଧ ସ୍ତର ଦେଇ ଗତି କରି ଜୀବନଯାତ୍ରା ପ୍ରଣାଳୀ ସୁଚାରୁରୂପେ ନିର୍ବାହ କରିପାରିବେ ଓ ଜୀବନର ଲକ୍ଷ୍ୟ ବିଷୟରେ ମଧ୍ୟ ସଚେତନ ହୋଇପାରିବେ ।

ତୃତୀୟତଃ ପରୀକ୍ଷାଫଳ ଉପରେ ମାତ୍ରାଧିକ ଗୁରୁତ୍ୱ ନଦେଇ ହାଇସ୍କୁଲର ପାଠ୍ୟ ନିର୍ଘଣ୍ଟ ନାନାବିଧ ବିଷୟରେ ଛାତ୍ରଛାତ୍ରୀମାନଙ୍କର କୁଶଳୀ ପଣିଆ (Skill) ଓ ଦକ୍ଷତା (Capabilities) ଉପରେ କେନ୍ଦ୍ରୀଭୂତ ହେବା ଉଚିତ୍ । ଉଦାହରଣସ୍ୱରୂପ ଉପଯୁକ୍ତ ବୈଷୟିକ ଦିଗ୍‌ଦର୍ଶକଙ୍କ ତତ୍ତ୍ୱାବଧାନରେ ଛାତ୍ରଛାତ୍ରୀମାନଙ୍କର ଏକ ଗ୍ରୁପ୍ ସେମାନଙ୍କର ନିଜ ସ୍କୁଲରେ ସୌରଶକ୍ତି ସମ୍ପନ୍ନ ପାୱାର ସିଷ୍ଟମର ଡ଼ିଜାଇନ୍, ପ୍ରସ୍ତୁତି ଏବଂ ତାର ସମ୍ପାଦନ ପାଇଁ କାର୍ଯ୍ୟ କରିପାରିବେ । ସେମାନେ ଏପରି ଏକ ପ୍ରକଳ୍ପର ବୈଷୟିକ, ଆର୍ଥିକ ଏବଂ ସାମାଜିକ ଦିଗକୁ ଲକ୍ଷ୍ୟକରି କାର୍ଯ୍ୟକ୍ରମ ହାତକୁ ନେଲେ

ସବୁଶ୍ରେଣୀରୁ ସହାୟତା ମଧ୍ୟ ଲାଭ କରିପାରିବେ । ଛାତ୍ରଛାତ୍ରୀମାନଙ୍କର ଆଉ ଏକ ଟିମ୍ ତାଙ୍କ ଅଞ୍ଚଳରେ ଘଟୁଥିବା ଶିଶୁ ନିର୍ଯ୍ୟାତନା ଜନିତ ଘଟଣାଗୁଡ଼ିକୁ ଲୋକଲୋଚନକୁ ଆଣି ତାର ହ୍ରାସ ଓ ନିରାକରଣ ପାଇଁ ଚେଷ୍ଟିତ ହେଲେ ସହଯୋଗର ହାତ ଚତୁର୍ଦ୍ଦିଗରୁ ପ୍ରସାରିତ ହୋଇ ଆସିବ । ଏହା ହେଲେ ସେମାନଙ୍କର ଭାବନା ରାଜ୍ୟରେ ଆଲୋଡ଼ନ ସୃଷ୍ଟି ହେବ ଏବଂ ସାମାଜିକ ସଚେତନତା ପାଇଁ ନିରନ୍ତର ପ୍ରଚେଷ୍ଟା ଜାରି ରହିବ । ଆମେ ଯେହେତୁ ଜଣେ ଜଣେ ସାମାଜିକ ପ୍ରାଣୀ ସମାଜପ୍ରତି ଆମର ଅଙ୍ଗୀକାରବଦ୍ଧତା ରହିବା ଏକାନ୍ତ ବାଂଛନୀୟ । ଏହା ହେଲେ ଜଟିଳ ଚିନ୍ତା କ୍ଷେତ୍ରରେ ପିଲାମାନଙ୍କର ଦକ୍ଷତାରେ ଆଶାତୀତ ବୃଦ୍ଧି ଘଟିବ ଓ ଶିକ୍ଷାର ପରିସର ମଧ୍ୟ ସୁବ୍ୟାପ୍ତ ହୋଇପାରିବ ।

ଚତୁର୍ଥତଃ ଭବିଷ୍ୟତର ବିଶ୍ୱବିଦ୍ୟାଳୟ ଗୁଡ଼ିକ ଜୀବନବ୍ୟାପୀ ନିରନ୍ତର ଶିକ୍ଷାପାଇଁ ଉପଯୁକ୍ତ ମଡ୍ୟୁଲ ପ୍ରସ୍ତୁତ କରିବା ଉଚିତ୍ ଯଦ୍ୱାରା ଛାତ୍ରଟି ତାର ସୁଦୀର୍ଘ ଜୀବନଯାତ୍ରା ପଥରେ ଯେତେବେଳେ ଯାହା ଆବଶ୍ୟକ କରିବ ସେତେବେଳେ ତାହା ତା ହାତ ପାହାନ୍ତାରେ ଉପଲବ୍ଧ ହୋଇପାରୁଥିବ । ଶିକ୍ଷା ଓ ବିକାଶ ପରସ୍ପରର ପରିପୂରକ ଓ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଉଭୟଙ୍କ ମଧ୍ୟରେ ସଫଳ ସମନ୍ୱୟ ରକ୍ଷା କରିବାକୁ ହେଲେ ଆମେ ଆମର କାର୍ଯ୍ୟଧାରାରେ ପରିବର୍ତ୍ତନ ଆଣିବାକୁ ପଡ଼ିବ ଏବଂ ଶିକ୍ଷାଦାନ ସହ କାର୍ଯ୍ୟଧାରାକୁ ଉପଯୁକ୍ତ ଭାବେ ଯୋଡ଼ିଦେବାକୁ ପଡ଼ିବ । ଉଦାହରଣସ୍ୱରୂପ ସପ୍ତାହରେ ସାମ୍ପ୍ରତିକ ୬ଦିନ ଶିକ୍ଷାଦାନ ପରିବର୍ତ୍ତେ ଶିକ୍ଷାଦାନକୁ ଚାରିଦିନ ମଧ୍ୟର ସୀମିତ ରଖି ଆଉ ୨ ଦିନ ଶିକ୍ଷାରୁ ଉପଲବ୍ଧ ଜ୍ଞାନକୁ କିପରି ବ୍ୟାବହାରିକ ଢ଼ଙ୍ଗରେ ବିନିଯୋଗ କରାଯାଇପାରିବ ସେ ନେଇ ପରୀକ୍ଷା ନିରୀକ୍ଷା କରିବା ଉଚିତ୍ ହେବ । ନୂଆ ନୂଆ ଭାବନା ଓ ଚିନ୍ତାଧାରାକୁ କିପରି ସଠିକ୍ ରୂପାୟିତ କରାଯାଇପାରିବ ତାହା ନେଇ ଛାତ୍ରଛାତ୍ରୀମାନେ ଚେଷ୍ଟିତ ହେବା ଉଚିତ୍ । ଏହି ୨ ଦିନ ଛାତ୍ରଛାତ୍ରୀମାନେ ସମ୍ପୂର୍ଣ୍ଣରୂପେ ଇନ୍ନୋଭେଟିଭ୍ କ୍ରିୟାକଳାପ ମାଧ୍ୟମରେ ବିତାଇବେ ଯଦ୍ୱାରା ସେମାନଙ୍କର ଧିଶକ୍ତି ଓ ପ୍ରଜ୍ଞାରେ ଅହେତୁକ ବିକାଶ ସାଧିତ ହୋଇପାରିବ । ବିଶ୍ୱବିଦ୍ୟାଳୟର ପ୍ରଫେସରମାନେ ନିଜସ୍ୱ ଗବେଷଣା କାର୍ଯ୍ୟକ୍ରମରେ ଲିପ୍ତ ରହିବା ସଙ୍ଗେ ସଙ୍ଗେ ଶିକ୍ଷାଦୀକ୍ଷା କ୍ଷେତ୍ରରେ ସେମାନଙ୍କୁ ଛାତ୍ରଛାତ୍ରୀମାନଙ୍କର ପରମ ସହାୟକର ଭୂମିକା ସମ୍ପାଦିତ କରିବାକୁ ପଡ଼ିବ । ଶିଳ୍ପସଂସ୍ଥାମାନଙ୍କରୁ ଶିଳ୍ପ ବିଶେଷଜ୍ଞମାନଙ୍କୁ ନିମନ୍ତ୍ରଣ କରାଯାଇ ଛାତ୍ରଛାତ୍ରୀମାନଙ୍କର ଗାଇଡ୍ ଓ ମେଣ୍ଟର ହେବା ପାଇଁ ସେମାନଙ୍କୁ ବିଶେଷ ଅନୁରୋଧ କରାଯିବା ଉଚିତ୍ ।

ସମଗ୍ର ବିଶ୍ୱରେ ସଭ୍ୟତାର ବିକାଶ ଓ ଉନ୍ମେଷପାଇଁ ଶିକ୍ଷା ଯେ ଏକ ପରମ ଆବଶ୍ୟକତା-ଏହା ଏକ ଯୁକ୍ତି ରହିତ ପରମ ସତ୍ୟକଥା । ପରନ୍ତୁ ଭାରତବର୍ଷ କ୍ଷେତ୍ରରେ ଚ୍ୟାଲେଞ୍ଜର ବିଶାଳତା ଇନ୍ନୋଭେସନ୍ ଜନିତ କାର୍ଯ୍ୟକଳାପ ପାଇଁ ସୁଯୋଗ ଓ ସମ୍ଭାବନାର ସିଂହଦ୍ୱାର ଉନ୍ମୋଚନ କରିଦେଇଥାଏ । ଆମ ଦେଶର ବିଶାଳତା ଓ ବିବିଧତା ଶିକ୍ଷାର ନୂଆ ନୂଆ ମଡ଼େଲର ପ୍ରବର୍ତ୍ତନ ପାଇଁ ଏକ ଆଦର୍ଶ ପ୍ଲାଟ୍‌ଫର୍ମ ରୂପେ ସାବ୍ୟସ୍ତ ହୋଇଥାଏ ଯାହାକି ଭାରତବର୍ଷକୁ ଏକବିଂଶ ଶତାବ୍ଦୀର ମହାନାୟକ ଭାବେ ପରିଚିତ କରାଇବ । ଶିକ୍ଷାବିତ୍ ଓ ଅଭିଭାବକମାନଙ୍କ ଭୂମିକା ଏ କ୍ଷେତ୍ରରେ ବିଶେଷ ପ୍ରଣିଧାନଯୋଗ୍ୟ । ଦମ୍ଭଧରି ସାହସର ସହ ଚାଲନ୍ତୁ ସମସ୍ତେ ମିଳିମିଶି ଆଗକୁ ପାଦଟିଏ ପକାଇବା । ଆମର ଉତ୍ତରପିଢ଼ି ଓ ରାଷ୍ଟ୍ରର ଭବିଷ୍ୟତ ଆଜି ବିପଦ ସଙ୍କୁଳ, ତାର ଉପଯୁକ୍ତ ସୁରକ୍ଷା ଆମ ସମସ୍ତଙ୍କର ଏକାନ୍ତ କାମ୍ୟ । ଏ ପୃଥିବୀ ଦୀର୍ଘଜୀବୀ ହୋଇ ବଞ୍ଚି ରହୁ ଏହା ସମସ୍ତଙ୍କର ଧ୍ୟେୟ ହେବା ଉଚିତ୍ ।

ସହକାର : ଏପ୍ରିଲ୍-ମଇ, ୨୦୧୦



# ଭାରତୀୟ ବିଜ୍ଞାନର ବୃହତ୍ତର ଚ୍ୟାଲେଞ୍ଜ

## (The Grand Challenges of Indian Science)

ନୋବେଲ୍ ପ୍ରାଇଜ୍ ବିଜେତା ରିଚାର୍ଡ୍ ଫେନ୍‌ମ୍ୟାନଙ୍କ ପ୍ରସିଦ୍ଧ ଜନପ୍ରିୟ ଉକ୍ତିଟି ଥିଲା-”ବିଜ୍ଞାନକୁ ନେଇ ପ୍ରକୃତ ଅସୁବିଧାଟି ହେଲା ନୂତନ ଚିନ୍ତାଧାରାର ଗ୍ରହଣକୁ ନେଇ ନୁହେଁ ବରଂ ପୁରୁଣା ଚିନ୍ତାଧାରାର ବିଦାୟକୁ ନେଇ । ବିଜ୍ଞାନ କ୍ଷେତ୍ରରେ ନୂତନତ୍ୱର ସୃଷ୍ଟିପାଇଁ ନିରନ୍ତର ପ୍ରଚେଷ୍ଟାର ଅମଡ୍ଡାବାଟରେ ନିଶ୍ଚିତରୂପେ କିଛି ପରିମାଣର ଅସମ୍ମାନବୋଧତା ବା ଅସୌଜନ୍ୟବୋଧତା (Irreverence) ରହିବ ହିଁ ରହିବ ଏବଂ ଆମେ ତାକୁ ଆମ ଜୀବନରେ କେତେଦୂର ଗ୍ରହଣ କରି ନେଇପାରୁଛୁ ସେଇଟା ହିଁ ସବୁଠୁଁ ବଡ଼କଥା ହେବ” ।

ଭାରତୀୟ ବିଜ୍ଞାନ ଆଗରେ ପ୍ରଥମ ବୃହତ୍ତର ଚ୍ୟାଲେଞ୍ଜଟି ହେଲା କିଛିଟା ଅସମ୍ମାନବୋଧତା ବା ଅସୌଜନ୍ୟବୋଧତାର ପ୍ରବର୍ତ୍ତନ କରିବା । ଆମର ଛାତ୍ରମାନେ ଅତ୍ୟନ୍ତ ସମ୍ମାନପ୍ରେମୀ ଓ ଗୁଣଗ୍ରାହୀ ବ୍ୟକ୍ତିବିଶେଷ ଅଟନ୍ତି । ଶିକ୍ଷା ବ୍ୟବସ୍ଥାରେ ପ୍ରଚଳିତ ଥିବା ସାମ୍ପ୍ରତିକ ସ୍ତର ବିନ୍ୟାସଯୁକ୍ତ ରିପୋର୍ଟ ସିଷ୍ଟମ (Hierarchial Structure) ଅସମ୍ମାନବୋଧତା ବା ଅସୌଜନ୍ୟବୋଧତାକୁ ହତ୍ୟା କରି ଦେଉଛି । ଅସମ୍ମାନବୋଧତା ବା ଅସୌଜନ୍ୟବୋଧତାକୁ ପ୍ରଶ୍ରୟ ଦେବାର ଅର୍ଥ ହେଲା ପିଲାମାନଙ୍କ ମନରେ ପ୍ରଶ୍ନ ପଚାରିବାର ଜିଜ୍ଞାସା (Questioning Attitude) କୁ ଜୀବିତ ଓ ବଳବତ୍ତର କରି ରଖିବା । ଏହାର ଅର୍ଥହେଲା ସମାଜରେ ଏପରି ଏକ ଶିକ୍ଷାବ୍ୟବସ୍ଥାର ପ୍ରଚଳନ ହେବା ଦରକାର ଯାହାକି ସମ୍ପ୍ରତି ପ୍ରଚଳିତ ଥିବା ଅତ୍ୟନ୍ତ ଶକ୍ତ (Rigid) ତଥା କଳ୍ପନାଶୂନ୍ୟ ପାଠ୍ୟ ନିର୍ଘଣ୍ଟ(Unimaginative Curricula) ର ବିପରୀତ ଧର୍ମୀ ହେଉଥିବ । ଏହାର ଅର୍ଥ ହେଲା ସମ୍ପ୍ରତି ପ୍ରଚଳିତ ଥିବା ଘୋଷବିଦ୍ୟା (Learning by Rote) ବଦଳରେ କର୍ମ ମାଧ୍ୟମରେ ଶିକ୍ଷାର ମହତ୍ତର ଅବଦାନକୁ ସ୍ୱତସିଦ୍ଧ କରିବାର ପ୍ରକ୍ରିୟା (Learning by Doing) ହିଁ ଶ୍ରେୟସ୍କର ହେବ ।

ଦ୍ୱିତୀୟ ବୃହତ୍ତର ଚ୍ୟାଲେଞ୍ଜଟି ହେଲା ଆମର ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥାରେ ମଣିଷଟିଏ ଅପେକ୍ଷା କାଗଜ ଖଣ୍ଡେ ବେଶୀ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚିତ ହେଉଛି ।

ଅମଲାତାନ୍ତ୍ରିକ ହୀନ କ୍ରିୟାକଳାପ ବୁଦ୍ଧିମତ୍ତା ଓ ପ୍ରଜ୍ଞାର ଦିନ ଦ୍ୱିପ୍ରହରରେ ସର୍ବସମ୍ମୁଖରେ ହତ୍ୟା କରୁଛି । ତେଣେ ବିପଦକୁ ହସି ହସି ବରଣ କରି ନେଇ ପାରୁଥିବା ଇନ୍ନୋଭେଟରମାନଙ୍କ ସଂଖ୍ୟା ମଧ୍ୟ ପ୍ରକୃତରେ ବହୁତ କମ୍ । କୌଣସି ପ୍ରୋଡ଼କ୍ଟର ଜୀବନଚକ୍ର (Life Cycle) ଅପେକ୍ଷା ତାର ନିର୍ଣ୍ଣୟ ନେବା ପାଇଁ ଆବଶ୍ୟକ ହେଉଥିବା ସମୟ ଚକ୍ରର ଅବଧି ଯଥେଷ୍ଟ ଅଧିକ ହୋଇଥାଏ । ତେଣୁ ଏକ "ଇନ୍ନୋଭେସନ୍ ଇକୋ ସିଷ୍ଟମ"ର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ ଯେଉଁଥିରେ କି ପ୍ରଶ୍ନ ପଚାରିବାର ଏକ ଅହେତୁକ ଜିଜ୍ଞାସା (Questioning Attitude) ଏବଂ ସୁସ୍ଥ ଅସମ୍ମାନବୋଧତା (Healthy Irreverence) ର ଅଭିବୃଦ୍ଧି ସମ୍ଭବ ହୋଇପାରିବ ।

ତୃତୀୟ ବୃହତ୍ତର ଚ୍ୟାଲେଞ୍ଜଟି ହେଲା ପ୍ରଚଣ୍ଡ ପ୍ରଜ୍ଞାବାନ୍ ଓ ଧିଶକ୍ତି ସମ୍ପନ୍ନ ସୃଜନଶୀଳ ବୈଜ୍ଞାନିକ (Innovative Scientist) ବ୍ୟକ୍ତିବିଶେଷ ମାନଙ୍କର ପ୍ରକୃତ ସୃଷ୍ଟି ହେବା ଦରକାର ଯେଉଁମାନେକି ଯାହା ସାରା ସଂସାର ଦେଖୁଥାଏ ତାକୁ ଦେଖୁଥିଲେ ମଧ୍ୟ ଯାହା ସାରା ସଂସାର ଭାବୁଥାଏ ତାହା ସେମାନେ ଭାବୁନଥାନ୍ତି । ଉଦାହରଣସ୍ୱରୂପ ୨୦୦୫ ମସିହାରେ ମେଡ଼ିସିନ୍ ରେ ନୋବେଲ୍ ପ୍ରାଇଜ୍ ପାଇଥିବା ୱାରେନ୍ ଏବଂ ମାର୍ଶାଲ୍ ସେହି ପର୍ଯ୍ୟାୟର ସୃଜନଶୀଳ ପରମ ମହାନୁଭବ ବ୍ୟକ୍ତିଦ୍ୱ ଥିଲେ । ସାରା ସଂସାରରେ ସମସ୍ତେ ଭାବୁଥିଲେ ଯେ ଗ୍ୟାଷ୍ଟ୍ରିଟିକ୍ ଇନ୍‌ଫ୍ଲେମେସନ୍ ଏବଂ ପାକସ୍ଥଳୀ ଅଲ୍‌ସରେସନ୍‌ର କାରଣ ହେଉଛି ମଣିଷର ଖାଦ୍ୟ ଓ ଜୀବନଯାତ୍ରା ଶୈଳୀରେ ଅନିୟମିତା ଓ ଅସଂଯମତା (Irregularities) କାରଣରୁ । ପରନ୍ତୁ ୱାରେନ୍ ଓ ମାର୍ଶାଲ୍ ପ୍ରମାଣ କରି ଦେଖାଇଦେଲେ ଯେ ହେଲିଓବ୍ୟାକ୍ଟର ପାଇଲୋରୀ (Heliobacter Pyroli) ନାମକ ଏକ ବ୍ୟାକ୍ଟେରିଆ ଏହାର ପ୍ରମୁଖ କାରଣ ଅଟେ । ଏଥିପାଇଁ ସେମାନଙ୍କୁ ବହୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା । ହେଲେ ସେମାନେ ସେମାନଙ୍କର ଗବେଷଣାଲବ୍ଧ ଜ୍ଞାନ ଗାରିମା ଓ ଏହାର ଫଳାଫଳ ଉପରେ ସମ୍ପୂର୍ଣ୍ଣ ଆସ୍ଥାବାନ ଥିଲେ ଏବଂ ଏଥିପାଇଁ ଆଦୌ ବିଚଳିତ ହେଉନଥିଲେ । ଶେଷରେ ସତ୍ୟ ସାବ୍ୟସ୍ତ ହେଲା ଓ ସେମାନଙ୍କର ବିଜୟ ହେଲା ଏବଂ ବିଜୟ ହେଲା ଏଇଥିପାଇଁ ଯେ ସେମାନେ ଯାହା ଦେଖୁଥିଲେ ତାହା ସାରା ଦୁନିଆ ଦେଖୁନଥିଲା । ତାଙ୍କର ଦୃଷ୍ଟିକୋଣ ସାରା ଦୁନିଆଠୁଁ ଅଲଗା ଥିଲା ଏବଂ ତାହା ସ୍ୱତନ୍ତ୍ରତା ଉପରେ ସମ୍ପୂର୍ଣ୍ଣ ରୂପେ ପର୍ଯ୍ୟବେସିତ ଥିଲା ।

ଚତୁର୍ଥ ବୃହତ୍ତର ଚ୍ୟାଲେଞ୍ଜଟି ହେଲା ବଡ଼ ବଡ଼ ସମସ୍ୟାଗୁଡ଼ିକର ସମାଧାନ କରିଦେବା କେବଳ ଯଥେଷ୍ଟ ନୁହେଁ, ସମସ୍ୟାର ସମାଧାନ କରିବାର ପୂର୍ଣ୍ଣ ଦକ୍ଷତା ଯେ ଆପଣଙ୍କ ପାଖରେ ପ୍ରକୃତରେ ଉପଲବ୍ଧ ଅଛି ତାର ସ୍ପଷ୍ଟ ପରିପ୍ରକାଶ ମଧ୍ୟଏକାନ୍ତ ଅପରିହାର୍ଯ୍ୟ । ଉଦାହରଣସ୍ୱରୂପ ଅଣୁ ପରମାଣୁ ସ୍ତରରେ ଜିନ୍‌ର ପ୍ରକୃତିର ଉନ୍ମୋଚନକୁ ନେଇ ଜେମ୍ସ ୱାଟସନ୍ ଅତ୍ୟନ୍ତ ଦୃଢ଼ ନିଶ୍ଚିତ ଥିଲେ ଏବଂ ଏହା ଉପରେ ଗଭୀରରୁ ଗଭୀରତର ଗବେଷଣା କ୍ଷେତ୍ରରେ ନିମଗ୍ନ ରହିଲେ । ଏହି ଗବେଷଣାକୁ ନେଇ ସେ ଏତେ ମାତ୍ରାରେ ବିଜଡ଼ିତ ଓ ଉତ୍ସର୍ଗୀକୃତ ହୋଇଗଲେ ଯେ ଶେଷରେ ତାଙ୍କୁ ଫେଲୋସିପ୍ ପ୍ରଦାନ କରିଥିବା ରକ୍‌ଫେଲର ଫାଉଣ୍ଡେସନ୍ ଠାରୁ ମଧ୍ୟ ନାନାଦି ଭର୍ତ୍ସନା ଶୁଣିବାକୁ ପଡ଼ିଥିଲା । ଆଇନ୍‌ଷ୍ଟାଇନ୍‌ଙ୍କୁ ଯେତେବେଳେ ମାତ୍ର ୧୫ ବର୍ଷ ବୟସ ସେତେବେଳେ ସେ ନିଜକୁ ନିଜେ ପ୍ରଶ୍ନ କରିଥିଲେ ଯେ ଯଦି ସେ ଆଲୋକର ଗତିରେ ଗତି କରନ୍ତି ତେବେ ପୃଥିବୀ ତାଙ୍କୁ କିପରି ଦେଖାଯିବ ? ଏହି ବଡ଼ ପ୍ରଶ୍ନଟି ଶେଷରେ ତାଙ୍କୁ ତାଙ୍କର ସ୍ପେଶାଲ ଥିଓରି ଅଫ୍ ରିଲେଟିଭିଟି ପାଖରେ ପହଁଞ୍ଚାଇ ପାରିଥିଲା ।

ପଞ୍ଚମ ବୃହତ୍ତର ଚ୍ୟାଲେଞ୍ଜଟି ହେଲା ଭାରତୀୟ ବୈଜ୍ଞାନିକମାନଙ୍କୁ ଚିରାଚରିତ ବୈଜ୍ଞାନିକ ଚିନ୍ତାଧାରାର ସୀମା ସରହଦ ବାହାରକୁ ଲମ୍ଫ ପ୍ରଦାନ କରିବାର ମହତ୍ତର କଳାଟିକୁ ମନପ୍ରାଣ ଦେଇ ଆହରଣ କରିବାକୁ ପଡ଼ିବ । ସେଥିପାଇଁ ନୂତନ ବୈଜ୍ଞାନିକ ସାମର୍ଥ୍ୟ ଓ ବିଦ୍‌ବତ୍ତା ଏକାନ୍ତ ପ୍ରୟୋଜନ । ବୈଜ୍ଞାନିକ ମାନସିକତାର ଉଦ୍‌ଗୀରଣ ଓ ପ୍ରଚଣ୍ଡ ବୈଜ୍ଞାନିକ ଭାବାବେଗର ବିସ୍ଫୋରଣ ହେଲେ ହିଁ ସମାଜରେ ନୂତନ ବୈଜ୍ଞାନିକ ଚିନ୍ତା ଚେତନାର ଝଡ଼ ପ୍ରବାହିତ ହେବ । ପୁନେ ସ୍ଥିତ ଜାତୀୟ ରାସାୟନିକ ପ୍ରୟୋଗଶାଳାରେ ୯୦ ଦଶକର ପ୍ରାରମ୍ଭରେ ଏପରି ଏକ " ଆଉଟ୍ ଅଫ୍ ଦି ବକ୍ସ" ଚିନ୍ତାଧାରାର ପ୍ରୋତ୍ସାହନ ପାଇଁ "କାଇଟ୍-ଫ୍ଲାଇଙ୍ଗ-ଫଣ୍ଡ" ନାମରେ ଏକ କ୍ଷୁଦ୍ର ପୁଞ୍ଜି ରାଶିର ସୃଷ୍ଟି କରାଯାଇଥିଲା । ସଫଳତାର ହାରରେ ଯଦି ହଜାରେ ପ୍ରକଳ୍ପ ମଧ୍ୟରୁ କୌଣସି ଗୋଟିଏ ବି ପ୍ରକଳ୍ପ " ଆଉଟ୍ ଅଫ୍ ଦି ବକ୍ସ" ଚିନ୍ତାଧାରା ଉପରେ ପର୍ଯ୍ୟବେସିତ ହୋଇଥାଏ ତାକୁ ପ୍ରୋତ୍ସାହନ ଦେବାପାଇଁ ଏପରି ଏକ ଅଭିନବ ବ୍ୟବସ୍ଥାର ପ୍ରଚଳନ କରାଯାଇଥିଲା । ପ୍ରଚଣ୍ଡ ମହିୟସୀ ଚିନ୍ତାଧାରା ସମ୍ପନ୍ନ ପ୍ରକଳ୍ପ ଗୁଡ଼ିକର ଭୂରି ଭୂରି ପ୍ରଶଂସା କରାଯିବା ସଙ୍ଗେ ସଙ୍ଗେ ଅସଫଳତା ଉପରେ ପର୍ଯ୍ୟବେଶିତ ପ୍ରକଳ୍ପ ଗୁଡ଼ିକୁ

କୌଣସି ପ୍ରକାରର ତିରସ୍କାର କରାଯାଉନଥିଲା । ଏହାର ଫଳାଫଳ ଅତ୍ୟନ୍ତ ଉଲ୍ଲେଖନୀୟ, ଆକର୍ଷଣୀୟ ଓ ଲୋଭନୀୟ ହୋଇଥିଲା ଯାହାକି ମୁକ୍ତ ଚିନ୍ତାଧାରା (Free Thinking) ର ପୂର୍ଣ୍ଣ ବିକାଶ ଓ ପରିପ୍ରକାଶ ପାଇଁ ନବଦିଗନ୍ତର ଉନ୍ମେଷ ସୃଷ୍ଟି କରିବାରେ ପରମ ସହାୟକ ହୋଇଥିଲା ଏବଂ ଜାତୀୟ ରାସାୟନିକ ପ୍ରଯୋଗଶାଳାର ଅଗଣାରେ ଏହି ପରିଯୋଜନାରୁ କେତେକ ଅତ୍ୟନ୍ତ ଉଚ୍ଚକୋଟୀର ବ୍ରେକ୍-ଥ୍ରୁ ପ୍ରୋଜେକ୍ଟର ଜନ୍ମ ସଫଳ ହୋଇଥିଲା । ପରିବର୍ତ୍ତୀ ସମୟରେ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦରେ ନୂତନ ଚିନ୍ତାଧାରାର ବିକାଶ ପାଇଁ " ନିୟୁ-ଆଇଡ଼ିଆ-ଫଣ୍ଡ " ନାମକ ଏକ ପୁଞ୍ଜିରାଶିର ପ୍ରଚଳନ ମାଧ୍ୟମରେ ଏହା ଲକ୍ଷ୍ୟ କରାଗଲା ଯେ ଗବେଷଣା ପାଇଁ ଅର୍ଥର ଅଭାବ ମୁଖ୍ୟକାରଣ ନୁହେଁ ବରଂ ଅଭୂତପୂର୍ବ ସୃଜନଶୀଳଧର୍ମୀ ଫଳପ୍ରସୂ ଚିନ୍ତାଧାରାର ବହୁଳ ଅଭାବ ଗବେଷଣାର ପଥରୁଦ୍ଧ କରୁଛି ।

ଦୂର ଅତୀତରେ ଭାରତୀୟ ବୈଜ୍ଞାନିକମାନଙ୍କ ମାନସ ରାଜ୍ୟକୁ ନୂତନ ଅସାଧାରଣ ବୈଜ୍ଞାନିକ ଚିନ୍ତାଧାରା ପ୍ରଚଣ୍ଡଭାବେ ଆଚ୍ଛନ୍ନ କରିରଖିଥିଲା । କଳିଙ୍ଗ ପୁରସ୍କାର ବିଜେତା ଡ଼ଃ ଜୟନ୍ତ ବିଷ୍ଣୁ ନାର୍ଲିକର ୨୦୦୩ ମସିହାରେ ସାଇଣ୍ଟିଫିକ୍ ଏଜ୍ (Scientific Edge) ନାମକ ଏକ ପୁସ୍ତକ ରଚନା କରିଥିଲେ । ବିଂଶ ଶତାବ୍ଦୀରେ ଭାରତୀୟ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ସଂଗଠିତ ହୋଇଥିବା ପ୍ରମୁଖ ୧୦ଟି ଉତ୍କର୍ଷତାର କାହାଣୀ ସେହି ପୁସ୍ତକରେ ବର୍ଣ୍ଣିତ ହୋଇଅଛି । ୧୯୫୦ ମସିହା ପୂର୍ବର ୫ଟି ଓ ୧୯୫୦ ମସିହା ପରର ୫ଟି ବୈଜ୍ଞାନିକ ଉତ୍କର୍ଷତା ସେଥିରେ ପ୍ରତିପାଦିତ କରାଯାଇଛି । ମଜାର କଥା ହେଉଛି ୧୯୫୦ ମସିହା ପୂର୍ବରୁ ସଂଗଠିତ ହୋଇଥିବା ୫ଟି ବୈଜ୍ଞାନିକ ଉତ୍କର୍ଷତା ବ୍ୟକ୍ତିବିଶେଷମାନଙ୍କର ନିରନ୍ତର ପ୍ରଚେଷ୍ଟା, ଅଦମ୍ୟ ନିଷ୍ଠା ଓ ପ୍ରଚଣ୍ଡ ବୈଜ୍ଞାନିକ ପ୍ରଗଲ୍ଭତାର ଫଳବୋଲି ବର୍ଣ୍ଣିତ ହୋଇଛି । ଯଥା ବିଶ୍ୱପ୍ରସିଦ୍ଧ ଗାଣିତିଜ୍ଞ ରାମାନୁଜନ୍ (ଯାହାଙ୍କର ଅସାଧାରଣ ଗାଣିତିକ ଧିଶକ୍ତି ଏବଂ ଗାଣିତିକ ଫଳାଫଳକୁ ନେଇ ଏବେ ବି ବିଶ୍ୱରେ ଗବେଷଣା ଚାଲୁ ରହିଛି), ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ମେଘନାଦ ସାହା (ଷ୍ଟେଲାର ଆଷ୍ଟ୍ରୋ ଫିଜିକ୍ସ କ୍ଷେତ୍ରରେ ଯାହାଙ୍କର ଆୟନିଜେସନ୍ ଇକ୍ୟୁଏସନ୍ ଏକ ପ୍ରମୁଖ ଭୂମିକା ସମ୍ପାଦିତ କରିଥିଲା), ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ସତ୍ୟେନ୍ଦ୍ରନାଥ ବୋଷ (ଯାହାଙ୍କର ପାର୍ଟିକଲ୍ ଷ୍ଟାଟିଷ୍ଟିକ୍ସ ସଂକ୍ରାନ୍ତୀୟ ଗବେଷଣା ନୂତନ ଦିଗନ୍ତର ଉନ୍ମୋଚନ କରିଥିଲା), ନୋବେଲ୍ ପ୍ରାଇଜ୍ ବିଜେତା ସାର୍ ଚନ୍ଦ୍ରଶେଖର ଭେଙ୍କଟରମଣ

(ରମଣ ଇଫେକ୍ଟର ଉଦ୍ଭାବକ ଯେକି ଭାରତ ମାଟିରେ କାମ କରି ନୋବେଲ୍ ପ୍ରାଇଜ୍ ପାଇବାରେ ଆଜି ପର୍ଯ୍ୟନ୍ତ ଏକମାତ୍ର ଭାରତୀୟ ହେବାର ପରମ ସୌଭାଗ୍ୟ ଲାଭ କରିଛନ୍ତି) ଏବଂ ଜି.ଏନ୍. ରାମଚନ୍ଦ୍ରନ୍ (ଯାହାଙ୍କୁ ମଲିକ୍ୟୁଲାର ବାୟୋ-ଫିଜିକ୍ସର ଜନକ ବୋଲି ଅଭିହିତ କରାଯାଇଥାଏ) ।

ଡ଼ଃ ନାର୍ଲିକର ୧୯୫୦ ମସିହା ପରେ ଦେଶରେ ସଂଗଠିତ ହୋଇଥିବା ୫ଟି ଅସାଧାରଣ ବୈଜ୍ଞାନିକ ସଫଳତାର କାହାଣୀ ବର୍ଣ୍ଣନା କରିଛନ୍ତି । ସେଗୁଡ଼ିକ ହେଲା ସବୁଜ ବିପ୍ଳବ (Green Revolution), ମହାକାଶ ଗବେଷଣା (Space Research), ପାରମାଣବିକ ଶକ୍ତି (Nuclear Energy), ସୁପର କଣ୍ଡକ୍ଟିଭିଟି (Super Conductvity) ଏବଂ ୯୦ ଦଶକରେ ଫଳପ୍ରଦ ହୋଇଥିବା ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର ବିସ୍ତାରିତ ସ୍ୱପ୍ନ । କେବଳ ସୁପର କଣ୍ଡକ୍ଟିଭିଟିକୁ ଛାଡ଼ିଦେଲେ (ଯେଉଁଥିରେ କି ବିଶିଷ୍ଟ ରସାୟନ ବିଜ୍ଞାନୀ ପ୍ରଫେସର ସି.ଏନ୍.ଆର୍ ରାଓ ନିଜର ଅସାଧାରଣ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି) ଅନ୍ୟାନ୍ୟ ସମସ୍ତ ଗବେଷଣା ପ୍ରକଳ୍ପ ଗୁଡ଼ିକ ସରକାରଙ୍କ ଆର୍ଥିକ ଅନୁଦାନ ଉପରେ ପର୍ଯ୍ୟବେସିତ ହୋଇଥିବା ସୁସଂଗଠିତ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଧନ୍ୟ ପ୍ରକଳ୍ପ ଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରାମାନୁଜନ୍, ରମଣ ଓ ବୋଷ ଆଦିଙ୍କ ଦ୍ୱାରା ସୃଷ୍ଟି କରାଯାଇଥିବା ବୈଜ୍ଞାନିକ ମ୍ୟାଜିକ୍ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କାହିଁକି ତାର ଉପଯୁକ୍ତ ବୈଜ୍ଞାନିକ ରୂପବିନ୍ୟାସ ପ୍ରକଟ କରିପାରିଲାନି ? ମହାଭାରତୀୟ ପୂଣ୍ୟଭୂମିରେ ଆଗଙ୍ଗାକୁମାରୀକା ପ୍ରବାହିତ ହୋଇଥିବା ବୈଜ୍ଞାନିକ ଝଡ଼ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କାହିଁକି ଏଡ଼େ ନିଷ୍ପ୍ରଭ ହୋଇଗଲା ? ବୈଜ୍ଞାନିକ ଉନ୍ମେଷ ଓ ଜାଗରଣରେ କାହିଁକି ଭଟ୍ଟା ପଡ଼ିଗଲା ?

ଭାରତର ଗଳିକନ୍ଦିରେ, ବିଜ୍ଞାନାଗାରରେ ତଥା ବିଶ୍ୱବିଦ୍ୟାଳୟମାନଙ୍କରେ ରମଣ ଓ ରାମାନୁଜନ୍‌ଙ୍କ ପରି ଅଦ୍ୱିତୀୟ ପ୍ରତିଭା କେଉଁଠି ନା କେଉଁଠି ନିଶ୍ଚିତ ରୂପେ ଲୁଚିଛପି ରହିଛନ୍ତି । ସେମାନଙ୍କୁ ଖୋଜି ବାହାର କରିବାକୁ ପଡ଼ିବ । ସମାଜର ବଡ଼ଦାଣ୍ଡରୁ ସେମାନଙ୍କୁ ଆବିଷ୍କାର କରିବାକୁ ପଡ଼ିବ । ବୈଜ୍ଞାନିକ ଦୁର୍ଗ ଭିତରୁ ସେମାନଙ୍କୁ ନିଷ୍କୃତି ଦେବାକୁ ପଡ଼ିବ । ସେମାନଙ୍କୁ ଯେତେ ଶୀଘ୍ର ଖୋଜି ବାହାର କରି ସେମାନଙ୍କର ବୈଜ୍ଞାନିକ ଲାଳନ ପାଳନ କରିବାକୁ ପଡ଼ିବ । ଏଥିପାଇଁ ଆମକୁ ହୃଦୟଙ୍ଗମ କରିବାକୁ ପଡ଼ିବ ଯେ ବୌଦ୍ଧିକ ଗଣତନ୍ତ୍ର (Intellectual Democracy) ବୋଲି ସେପରି କୌଣସି

ଜିନିଷ ନାହିଁ । ବିଜ୍ଞାନରେ କୌଣସି ନା କୌଣସି ବ୍ୟକ୍ତିର ପ୍ରାଧାନ୍ୟତା (Elitism) ନିଶ୍ଚିତ ରୂପେ କେଉଁଠି ନା କେଉଁଠି ଫୁଟି ଉଠିବ ଏବଂ ଆମକୁ ତାହା ଗ୍ରହଣ କରି ତାର ଉପଯୁକ୍ତ ପ୍ରୋତ୍ସାହନ ଦେବା ଆଜିର ଏକ ମସ୍ତବଡ଼ ଚ୍ୟାଲେଞ୍ଜ ।

୨୦୦୫ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପ୍ରାଇଜ୍ ପାଇଥିଲେ ମିଃ ଗ୍ଲୁବର, ହଲ୍ ଏବଂ ହ୍ୟାନ୍ସ । ଏହି ଚୟନକୁ ନେଇ ସେତେବେଳେ ନାନା ବାଦାନୁବାଦ ସୃଷ୍ଟି ହେଲା । ବହୁ ଭାରତୀୟ ବୈଜ୍ଞାନିକ ଅନୁଭବ କଲେ ଯେ ଏହି ୩ଜଣଙ୍କ ସହ ଭାରତୀୟ ବଂଶୋଦ୍ଭବ ଡ଼ଃ. ଇ.ସି.ଜି. ସୁଦର୍ଶନ ମଧ୍ୟ ନୋବେଲ୍ ପ୍ରାଇଜ୍ ପାଇବାକୁ ନିଶ୍ଚିତ ରୂପେ ହକ୍‌ଦାର ଥିଲେ । ୨୦୦୯ ମସିହାରେ ପରିସ୍ଥିତି ଭାରତ ସପକ୍ଷରେ ଗଲା । ଭାରତରେ ଜନ୍ମିତ ବୈଜ୍ଞାନିକ ଭେଙ୍କି ରାମକ୍ରିଷନ ରସାୟନ ବିଜ୍ଞାନରେ ଷ୍ଟେଇଜ୍ (Steitz) ଏବଂ ଯୋନାଥ (Yonath) ଙ୍କ ସହ ମିଶି ନୋବେଲ୍ ପ୍ରାଇଜ୍ ପାଇଲେ । ଭେଙ୍କି ଭାରତବର୍ଷରେ ଜନ୍ମ ହେବା ନିଶ୍ଚିତ ରୂପେ ଭାରତ ପାଇଁ ଏକ ବିଶାଳ ସେଲିବ୍ରେସନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସତରେ କଣ ଜଣେ ଭାରତୀୟ ଭାରତବର୍ଷ ମାଟିରେ ଗବେଷଣା କରି ପରବର୍ତ୍ତୀ ନୋବେଲ ପାଇବାରେ ସଫଳକାମୀ ହେବେ ?

କାହିଁକି ନୁହେଁ ? ଏହା ନିଶ୍ଚିତ ରୂପେ ଘଟିପାରେ ? ଭାରତ ସରକାରଙ୍କ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ ଏଜୁକେସନ୍ ଆଣ୍ଡ ରିସର୍ଚ୍ଚ (IISER) ନାମରେ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନମାନ ଖୋଲିଲେ । ତା ପରେ ପରେ ନ୍ୟାସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଫର୍ ସାଇନ୍ସ ଏଜୁକେସନ୍ ଆଣ୍ଡ ରିସର୍ଚ୍ଚ (NISER) ପ୍ରତିଷ୍ଠାନ ମଧ୍ୟଖୋଲିଲା । ବିଜ୍ଞାନ ପ୍ରତି ଛାତ୍ରମାନଙ୍କୁ ଆକୃଷ୍ଟ କରିବାପାଇଁ ସରକାର "ଇନ୍ନୋଭେସନ୍ ଇନ୍ ସାଇନ୍ସ ପରସ୍ୟୁଟ୍ ଫର୍ ଇନ୍ସପାୟାର୍ଡ଼ ରିସର୍ଚ୍ଚ" (INSPIRE) ନାମରେ ସ୍କିମ ସୃଷ୍ଟି କଲେ ଯଦ୍ୱାରା ଲକ୍ଷ ଲକ୍ଷ ମେଧାବୀ ଛାତ୍ରମାନଙ୍କୁ ବିଜ୍ଞାନ ପ୍ରତି ଦୃଢ଼ ଆକର୍ଷିତ କରି ରଖାଯାଇପାରିବ । ବ୍ରେନ୍ ଡ୍ରେନ୍ ର ଦିଗରେ ପରିବର୍ତ୍ତନ ମଧ୍ୟ ପରିଲକ୍ଷିତ ହେଲାଣି । ଭାରତୀୟମାନେ ବିଦେଶ ଛାଡ଼ି ଘରମୁହାଁ ହେଲେଣି । ମା ମାଟିର ଡ଼ାକରାକୁ ସେମାନେ ଆଉ ବେଶୀକାଳ ଉପେକ୍ଷା କରିପାରିବେ ନାହିଁ । ସୂଚନା ପ୍ରଯୁକ୍ତିବିଦ୍ୟା କମ୍ପାନୀ "ଇନ୍‌ଫୋସିସ୍" ମିନି ନୋବେଲ୍ ପ୍ରାଇଜ୍‌ର ପ୍ରତିଷ୍ଠା କରି ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଅସାଧାରଣ ବୈଜ୍ଞାନିକ ପାରଦର୍ଶିତା ପାଇଁ ପୁରସ୍କାର ପ୍ରଦାନ କରୁଛି । ବିଜ୍ଞାନର ବିଭିନ୍ନ କ୍ଷେତ୍ର ପାଇଁ ଏହି ପୁରସ୍କାର ରାଶି ପ୍ରତ୍ୟେକ ୫୦ଲକ୍ଷ ଟଙ୍କାର ରଖାଯାଇଛି । ଭାରତୀୟ ବିଜ୍ଞାନ କ୍ଷେତ୍ରରେ

ଅସୌଜନ୍ୟବୋଧତାର ପ୍ରୋତ୍ସାହନ, ଅନୁଷ୍ଠାନ ଭିତ୍ତିକ ନୂତନ ମୂଲ୍ୟବୋଧର ପ୍ରତିଷ୍ଠା ତଥା ବିପଦ ଓ ଅସଫଳତାକୁ ବରଣ କରିନେବାର ଅହେତୁକ ଉତ୍କଣ୍ଠାର ଜାଗରଣ ହେଲେ ଭାରତୀୟ ବିଜ୍ଞାନ ବୈଜ୍ଞାନିକ ନବଦିଗନ୍ତର ଉନ୍ମୋଚନ କରିବାକୁ ସକ୍ଷମ ହେବ ଏବଂ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ସଫଳ ବୈଜ୍ଞାନିକ କାହାଣୀର ପୁନରାବୃତ୍ତି ନିଶ୍ଚିତ ରୂପେ ସମ୍ଭବ ହୋଇପାରିବ ।

ସମାଜ : ୨୩.୦୪.୨୦୧୦



# "ବ୍ରାଣ୍ଡ ଇଣ୍ଡିଆ"ର ବିପଣନକୁ ନେଇ ପ୍ରଶ୍ନବାଚୀ ?

**(ସମଗ୍ର ଭାରତବର୍ଷଙ୍କୁ ଏକତାର ଶକ୍ତ ରଜ୍ଜୁରେ ବାନ୍ଧି ରଖିବା ପାଇଁ 'ଅଭିବୃଦ୍ଧି' ହିଁ କେବଳ ଏକମାତ୍ର ଆୟୁଧ ନୁହେଁ । ଭାରତବର୍ଷ ସମ୍ମୁଖିନ ହେଉଥିବା ଅଜସ୍ର ଚ୍ୟାଲେଞ୍ଜ ଗୁଡ଼ିକ ଏତେ ବିଶାଳ ଯେ ଯାହାର ମୁକାବିଲା ପାଇଁ କେବଳ ଅର୍ଥନୀତିଜ୍ଞମାନଙ୍କ ଉପରେ ଛାଡ଼ିଦେବା ଉଚିତ୍ ପଦକ୍ଷେପ ହେବ ନାହିଁ ।)**

ଆମେରିକାର ରାଜଧାନୀ ୱାସିଂଟନ୍ ସ୍ଥିତ ଜନ୍ସ ହପକିନ୍ସ ବିଶ୍ୱବିଦ୍ୟାଳୟର "ସାଉଥ୍ ଏସିଆ ଷ୍ଟଡିଜ୍ ପ୍ରୋଗ୍ରାମ୍"ର ନିର୍ଦ୍ଦେଶକ, ବିଶିଷ୍ଟ ଶିକ୍ଷାବିତ୍ ଓ ଲେଖକ ପ୍ରଫେସର ସୁନୀଲ୍ ଖିଲ୍‌ନାନୀ ନିକଟ ଅତୀତରେ ବ୍ରିଟିଶ୍ ମ୍ୟୁଜିୟମ୍‌ରେ "ଭାରତବର୍ଷର ନୂତନ ସମୃଦ୍ଧିର ଦ୍ୱନ୍ଦ୍ୱାତ୍ମକ ରୂପରେଖ" (Paradox of India's New Prosperity) ଉପରେ ନିଜର ସୃଜନାତ୍ମକ ଅଭିଭାଷଣ ପ୍ରଦାନ କରି କୁହନ୍ତି ଯେ ସମଗ୍ର ଭାରତବର୍ଷଙ୍କୁ ଏକତାର ଶକ୍ତ ରଜ୍ଜୁରେ ବାନ୍ଧି ରଖିବା ପାଇଁ 'ଅଭିବୃଦ୍ଧି' ହିଁ କେବଳ ଏକମାତ୍ର ଆୟୁଧ ନୁହେଁ । ଭାରତବର୍ଷ ସମ୍ମୁଖିନ ହେଉଥିବା ଅଜସ୍ର ଚ୍ୟାଲେଞ୍ଜ ଗୁଡ଼ିକ ଏତେ ବିଶାଳ ଯେ ଯାହାର ମୁକାବିଲା ପାଇଁ କେବଳ ଅର୍ଥନୀତିଜ୍ଞମାନଙ୍କ ଉପରେ ଛାଡ଼ିଦେବା ଉଚିତ୍ ପଦକ୍ଷେପ ହେବ ନାହିଁ । ଏହି ଅଭିଭାଷଣ ଯଦିଓ ସମ୍ପୂର୍ଣ୍ଣ ପରିକଳ୍ପନା ଉପରେ ଆଧାରିତ ବା ପରିକଳ୍ପିତ ଥିଲା ହେଲେ ଏହା ଯେ ଆମ ପାଇଁ ଏକ ସମ୍ପୂର୍ଣ୍ଣ ଅପରିଚିତ ଚିନ୍ତାଧାରା ଏହା କହିବା ମଧ୍ୟ ଆଦୌ ଠିକ୍ ହେବ ନାହିଁ ।

ଅଭିଭାଷଣ ପ୍ରସଙ୍ଗରେ ସେ ତାଙ୍କ ଶ୍ରୋତାମଣ୍ଡଳୀଙ୍କୁ ପଚାରିଥିଲେ ଯେ ଆପଣ ଦୁଇଟି "ଟ୍ରାଫିକ୍ ଲେନ୍" ଯାହାକି ସମ୍ପୂର୍ଣ୍ଣରୂପେ ସ୍ଥିର ଅଛି ସେ ବିଷୟରେ କଳ୍ପନା କରନ୍ତୁ । କିଛିକ୍ଷଣ ପରେ ଗୋଟିଏ ଟ୍ରାଫିକ୍ ଲେନ୍‌ରେ ଯାତ୍ରୀମାନେ ଯାତାୟତ କରିବା ଆରମ୍ଭ କଲେ ଏବଂ ଏହା ଦ୍ୱିତୀୟ ଟ୍ରାଫିକ୍ ଲେନ୍‌ରେ ଠିଆ ହୋଇ ରହିଥିବା ଯାତ୍ରୀମାନଙ୍କର ଆଶା ଉଦ୍ରେକ କଲା ଯେ ହୁଏତ କିଛି ସମୟ ପରେ ଏହି ଲେନ୍‌ରେ ମଧ୍ୟ ଯାତ୍ରୀମାନେ ଚଳପ୍ରଚଳ କରିବା ଆରମ୍ଭ କରିବେ । କିନ୍ତୁ ଖୁବ୍ ଶୀଘ୍ର ଏହି ଆଶା ହତାଶାର ରୂପ ନେଲା ଏବଂ ହତାଶା କ୍ରୋଧରେ ପରିଣତ ହେଲା, କାରଣ ଦେଖାଗଲା ଯେ ଅନ୍ୟଏକ ଟ୍ରାଫିକ୍ ଲେନ୍‌ରେ ଠିଆହୋଇ ରହିଥିବା ଯାତ୍ରୀମାନେ ଟ୍ରାଫିକ୍ ସିଗ୍‌ନାଲ୍‌ର

ନିର୍ଦ୍ଦେଶମତେ ତାଙ୍କୁ ଟପି ଯାତ୍ରା କରିବା ଆରମ୍ଭ କଲେ ଏବଂ ସେମାନେ ସେଇମିତି ତାଙ୍କ ଯାତ୍ରା ପଥକୁ ନିରୀକ୍ଷଣ କରି ବୋକାଙ୍କ ଭଳି ଆଁ କରି ଚାହିଁ ରହିଲେ । ଶେଷରେ ସେମାନଙ୍କର ଧୈର୍ଯ୍ୟଚ୍ୟୁତ ହେଲା ଏବଂ ସଂଘର୍ଷର ସୂତ୍ରପାତ ଫଳରେ ଟ୍ରାଫିକ୍ ପୋଷ୍ଟରେ ଭୟଙ୍କର ପରିସ୍ଥିତି ସୃଷ୍ଟି ହେଲା । "ଭାରତବର୍ଷର ନୂତନ ସମୃଦ୍ଧିର ଦ୍ୱନ୍ଦ୍ୱାତ୍ମକ ରୂପରେଖ" ସହ ଏକମତ ନ ହୋଇ ପ୍ରଫେସର ଖିଲନାନୀ ଉପସ୍ଥିତ ଶ୍ରୋତାମଣ୍ଡଳୀଙ୍କୁ ଏ ନେଇ ଯଥେଷ୍ଟ ସଜାଗ ରହିବାକୁ ପରାମର୍ଶ ଦେଇଥିଲେ ।

ପ୍ରଫେସର ଖିଲନାନୀ କୁହନ୍ତି ଯେ ଭାରତବର୍ଷରେ ଗତ ଦଶକରେ ପ୍ରଶଂସନୀୟ ଅର୍ଥନୈତିକ ଅଭିବୃଦ୍ଧି ସତ୍ତ୍ୱେ ମଧ୍ୟ ଟ୍ରାଫିକ୍‌ର ଗୋଟିଏ ଲେନ୍‌ର ଯାତ୍ରୀମାନେ ଅନ୍ୟ ଲେନ୍‌ର ଯାତ୍ରୀମାନଙ୍କ ଠାରୁ ଦ୍ରୁତ ଗତିରେ ଚତୁରତାର ସହ ରାସ୍ତା ଅତିକ୍ରମ କଲାପରି ବୈଷମ୍ୟ ବି ଅତ୍ୟନ୍ତ ସୁଦୂର ପ୍ରସାରିତ ଥିଲା । ଫଳସ୍ୱରୂପ "ମନ୍ଥର ଲେନ୍"ରେ ଠିଆ ହୋଇଥିବା ଯାତ୍ରୀମାନଙ୍କ ମଧ୍ୟରେ ନୈରାଶ୍ୟର ଭାବ ଧିରେ ଧିରେ ଦୃଢ଼ୀଭୂତ ହେଉଛି, ଆଉ ଯଦି ପରିସ୍ଥିତି ଗତିଶୀଳ ନହୁଏ ଏବଂ ଶୀଘ୍ର ଗତିଶୀଳ ନହୁଏ ତେବେ ବ୍ୟାକ୍‌ଲ୍ୟାସ୍ (Backlash) ଯେ ନିଶ୍ଚିତ ରୂପେ ଅବସମ୍ଭାବୀ ଏହା ଶୋହଳ ଅଣା ସତ ଅଟେ ।

ପ୍ରଫେସର ଖିଲାନୀଙ୍କ ପୁସ୍ତକ "ଆଇଡିଆ ଅଫ୍ ଇଣ୍ଡିଆ" (Idea of India) ଭାରତୀୟ ଗଣତନ୍ତ୍ର ପ୍ରତି ଏକ ପ୍ରକୃତ ଶ୍ରଦ୍ଧାଞ୍ଜଳୀ କହିଲେ ଅତ୍ୟୁକ୍ତି ହେବ ନାହିଁ, ଯେଉଁଥିରେ କି ସେ ରାଷ୍ଟ୍ରର ସାଂପ୍ରତିକ ଦିଶା ଓ ଦିଗନ୍ତ ସମ୍ପର୍କରେ ବିଭିନ୍ନ ରଙ୍ଗ ଓ ଉପରଙ୍ଗର ସ୍ୱଚ୍ଛ ପରିପ୍ରୟୋଗ କରିଛନ୍ତି ଏବଂ ଲେଖକ ସ୍ୱତଃ ନିଶ୍ଚିତ ଯେ ବଜାରର ଆଶାବାଦ (Market Optimism) ଅଭିରୂପ ହିଁ ଭାରତର ବର୍ତ୍ତମାନ ଓ ଭବିଷ୍ୟତକୁ ସଠିକ୍ ଢଙ୍ଗରେ ପରିଚାଳିତ କରୁଛି ଓ ଆଗାମୀ କାଲିର ସୂର୍ଯ୍ୟୋଦୟ ଆଡ଼କୁ ରାଷ୍ଟ୍ରର ହାତ ଧରି ବାଟ କଢ଼େଇ ନେଉଛି । ପ୍ରଫେସର ଖିଲନାନୀ ବିଶ୍ୱାସ କରନ୍ତି ଯ "ଅଭିବୃଦ୍ଧି" (Growth) କୁ ନେଇ ଭାରତବର୍ଷ ଅତିଶୟ ଭାବରେ ଦିନରାତି ଘାରି ହେଉଛି କିନ୍ତୁ ଏହାର ବ୍ୟବହାର କରି ସହରାଞ୍ଚଳ ଓ ଗ୍ରାମାଞ୍ଚଳ ତଥା ଧନୀ ଓ ଗରିବଙ୍କ ମଧ୍ୟରେ ଥିବା ଆକାଶପାତାଳର ପ୍ରଭେଦକୁ ହ୍ରାସ କରାଇବା ଦିଗରେ ସେପରି କୌଣସି ବିହିତ ପଦକ୍ଷେପ ଗ୍ରହଣ କରୁନାହିଁ । ଏପରି ଏକ ଷ୍ଟ୍ରାଟେଜି ସଦାସର୍ବଦା ବିପଦ ସହ ସଂଶ୍ଳିଷ୍ଟ ଥାଏ ଏବଂ ଅବଶେଷରେ ଭାରତବର୍ଷରେ ଏକତା

ଓ ଅଖଣ୍ଡତାକୁ ଗୁରୁତର ଭାବେ ପ୍ରଭାବିତ କରିବାରେ ଏହା ସହାୟକ ହୋଇଥାଏ । ଯେତେବେଳେ କି ଭାରତବର୍ଷର ଏକତା ଓ ଅଖଣ୍ଡତା ବିଭିନ୍ନ କାରଣରୁ ନାନାଦି ବାହ୍ୟଚାପର ସମ୍ମୁଖୀନ ହେଉଛି ସେତେବେଳେ ଏପରି ଏକ ପରିସ୍ଥିତିର ଗୁରୁତ୍ୱ ନିଶ୍ଚିତ ରୂପେ ପ୍ରଣିଧାନ ଯୋଗ୍ୟ ।

ଭାରତବର୍ଷର ଏକତୃତୀୟାଂଶ ବିସ୍ତୃତ ସ୍ଥଳାଞ୍ଚଳ (Land Mass) ସରକାରଙ୍କ ଦ୍ୱାରା ଔପଚାରିକ ଭାବରେ ବିଶୃଙ୍ଖଳିତ ଅଞ୍ଚଳଭାବେ ପରିଚିତ ଯାହାର ଅର୍ଥହେଲା ଏହି ଅଞ୍ଚଳମାନଙ୍କରେ ଭାରତ ସରକାରଙ୍କ ପ୍ରଭୁତ୍ୱ ବିବାଦାତ୍ମକ ଅଟେ । ବ୍ରିଟିଶ୍ ମ୍ୟୁଜିୟମ୍‌ର "ଭାରତୀୟ ଗ୍ରୀଷ୍ମଋତୁ ପର୍ବ" ପାଳନ ଅବସରରେ "ଭାରତର ଦୃଷ୍ଟିକୋଣ - ଆଜି ଓ ଆଗାମୀ କାଲି" ଶୀର୍ଷକ ଏକ ଅଭିଭାଷଣ ପ୍ରଦାନ କରି ପ୍ରଫେସର ଖିଲନାନୀ ଏପରି ଏକ ବକ୍ତବ୍ୟ ଉପସ୍ଥାପନା କରିଥିଲେ ।

ପ୍ରଫେସର ଖିଲନାନୀ ଦୃଢ଼ ଯୁକ୍ତି ବାଢ଼ିଥାନ୍ତି ଯେ "ଅଭିବୃଦ୍ଧି" ହିଁ କେବଳ ଏକମାତ୍ର ଅସ୍ତ୍ର ନୁହେଁ ଯାହାକି ଭାରତବର୍ଷକୁ ଏକତାର ଏକ ଶକ୍ତ ରଜ୍ଜୁରେ ବାନ୍ଧି ରଖିପାରିବ । ସେ କୁହନ୍ତି ଯେ ଭାରତବର୍ଷର ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି.) କୁ ନେଇ ଅର୍ଥନୀତିଜ୍ଞଙ୍କ ଦ୍ୱାରା ଜୋର ଜବରଦସ୍ତ ପ୍ରଦାନ କରାଯାଉଥିବା ପ୍ରତିଛବି ରାଷ୍ଟ୍ରୀୟ ରୂପବିନ୍ୟାସର ଗାଲିଚା ତଳେ ଛଦ୍ମବେଶରେ ଲୁଚି ରହି ଟକ୍ ମକ୍ ଗରମ ପାଣିପରି ଅହରହ ଫୁଟୁଥିବା ଉଦ୍‌ବେଗ ବା ଦହନର ନିଛକ ପ୍ରତିଛବିଟିକୁ ଠିକ୍ ମତେ ପରିବେଷଣ କରିବାରେ ବ୍ୟର୍ଥ ହୋଇଥାଏ । "ଅଭିବୃଦ୍ଧି" ରାଷ୍ଟ୍ରୀୟ ପଲିସି ଉପରେ ଶକ୍ତି ଭାବେ ଦଣ୍ଡାୟମାନ ହେବା ଉଚିତ୍ ଏବଂ ଏହା ସଠିକ୍ ଲକ୍ଷ୍ୟ ରଖିବା ଉଚିତ୍ ଯେ ଅର୍ଥନୈତିକ ବିକାଶର ସ୍ରୋତସ୍ୱିନୀ ଧାରା ଜଳର ନିମ୍ନମୁଖି ଗତିପରି ସମାଜର ଉପରସ୍ତରରୁ ନିମ୍ନସ୍ତରକୁ ସଦା ପ୍ରବାହିତ ହେଉଛି ନା ନାହିଁ । ଅନ୍ୟଥା ସେ ତାଗିଦ୍ କରି କୁହନ୍ତି ଯେ ଭାରତବର୍ଷର ସଫଳ କାହାଣୀ ଆଖିଲୁହର ଲବଣାକ୍ତ ସ୍ରୋତରେ ଲୀନ ହେବା ହିଁ ସାର ହେବ ।

**ଏବେ ବି ବେଳ ଗଡ଼ିଯାଇନି (Still not too late)**

ପ୍ରଫେସର ଖିଲନାନୀ ଆଶାବାଦୀ ଯେ ଏପରି ଦ୍ରୁତ ପ୍ରବାହମାନ ସମୟର ସ୍ରୋତକୁ ଏବେ ବି ମାଟି ମନ୍ଧ ଦେଇ ରୋକାଯାଇପାରିବ । ଏପରି ଚାପା ଅସନ୍ତୋଷ ସତ୍ତ୍ୱେ ମଧ୍ୟ ପ୍ରଚଣ୍ଡ ଆଶାବାଦର କିରଣ ଏବେ ବି ଉଜ୍ଜୀବିତ ଅଛି ଏବଂ ଆଶ୍ଚର୍ଯ୍ୟର

କଥା ସେହି ଭାରତୀୟମାନଙ୍କ ପାଖରେ ଏହି ଆଶାର କିରଣ ବଞ୍ଚି ରହିଛି ଯେଉଁମାନେ କି ଭାରତର ନୂତନ ସମୃଦ୍ଧଶାଳୀ ଅବସ୍ଥାରୁ କୌଣସି ଲାଭ ଏପର୍ଯ୍ୟନ୍ତ ଅର୍ଜନ କରିନାହାଁନ୍ତି । ଏହି ଆଶା ଆକାଂକ୍ଷା ଏପରି ଧାରଣା ବା କଳ୍ପନା ଉପରେ ପର୍ଯ୍ୟବେସିତ ଯେ ପରିଶେଷରେ ଏହାର ମିଠା ଫଳ ଯେ ସମାଜ ତଳ ସ୍ତରରେ ନିଶ୍ଚିତ ରୂପେ ପହଁଞ୍ଚିଯିବ – ଏ ନେଇ ସମସ୍ତେ ଆଶାବାଦୀ । କିନ୍ତୁ ଯଦି ତାହା ନ ହୁଏ, ତାହାହେଲେ ଦୁଇଟି ଟ୍ରାଫିକ୍ ଲେନ୍‌ର ଗପ ପରି ଆଶାବାଦ ଈର୍ଷା, ଦ୍ୱେଷ ଓ ସଂଘର୍ଷର ସୂତ୍ରପାତ କରିବ । ପ୍ରଫେସର ଖିଲନାନୀଙ୍କ ଯୁକ୍ତିତତ୍ତ୍ୱର ମୂଳାଧାର ବା କେନ୍ଦ୍ରବିନ୍ଦୁ ଥିଲା ଏହି ଯେ ଭାରତ ସମ୍ମୁଖିନ ହେଉଥିବା ଚ୍ୟାଲେଞ୍ଜ ଗୁଡ଼ିକ ଏତେ ବିଶାଳ ଯେ ତାହା କେବଳ ଅର୍ଥନୀତିଜ୍ଞମାନଙ୍କ ଉପରେ ଛାଡ଼ିଦେବା ଠିକ୍ ହେବ ନାହିଁ ଏବଂ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଯେ କେନ୍ଦ୍ର ସରକାର ଅତ୍ୟନ୍ତ ସହଯୋଗିତାପୂର୍ଣ୍ଣ ମନୋବୃତ୍ତି ସହ ଏଥିରେ ହସ୍ତକ୍ଷେପ କରନ୍ତୁ ଯେପରିକି ରାଷ୍ଟ୍ରୀୟ ପ୍ରଗତିର ଧାରା ଅଭିବୃଦ୍ଧିର ସଡ଼କରେ ପରିଚାଳିତ ହୋଇ ସମାଜର ଦୁର୍ବଳରୁ ଦୁର୍ବଳତର ବ୍ୟକ୍ତିଙ୍କ ଘର ଅଗଣାରେ ପହଁଞ୍ଚିଯାଉ । ରାଜନୀତିଜ୍ଞମାନଙ୍କୁ ତାଙ୍କର ବାର୍ତ୍ତା ଥିଲା ଯେ ମୁଣ୍ଡ ଘୂରେଇ ଦେଉଥିଲା ଭଳି ପରିସଂଖ୍ୟାନର ମାୟାମୃଗ ପଛରେ ଅନ୍ଧ ଭାବରେ ନ ଧାଇଁ ଆପଣ ରାଷ୍ଟ୍ରୀୟ ଅଭିବୃଦ୍ଧିକୁ ସଠିକ୍ ଭାବେ ଅଧ୍ୟୟନ କରନ୍ତୁ ଓ ତାର ମିଠାଫଳକୁ ଗରିବ ଜନତାଙ୍କ ଦ୍ୱାର ଦେଶରେ ପହଁଞ୍ଚାଇବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟିତ ହୁଅନ୍ତୁ । ତାହା ହେଲେ ଗରିବ ଜନତାଙ୍କ ନ୍ୟାର୍ଯ୍ୟ ଅଧିକାର ଓ ସାମାଜିକ ମୂଲ୍ୟବୋଧର ଭିତ୍ତିପ୍ରସ୍ତର ସମାଜର ବଡ଼ଦାଣ୍ଡରେ ସ୍ଥାପିତ ହେବ ।

ପ୍ରଫେସର ଖିଲନାନୀ କୁହନ୍ତି ଯେ ଏହା ନିର୍ବୋଧ ଅର୍ଥନୀତିର ପଶାଖେଳ ନୁହେଁ । ପାଶ୍ଚାତ୍ୟ ରାଷ୍ଟ୍ରମାନେ ଯେଉଁମାନେ କି ଦୃଢ଼ ନିଶ୍ଚିତ ଥିଲେ ଯେ ଅର୍ଥନୈତିକ ଅଭିବୃଦ୍ଧି ହିଁ ରାଷ୍ଟ୍ରୀୟ ପ୍ରଗତିର ରୂପ ଲାବଣ୍ୟକୁ ସମ୍ପୂର୍ଣ୍ଣ ରୂପେ ପରିପ୍ରକାଶିତ କରିପାରିବ – ତାହା ଭୁଲ୍ ବୋଲି ପ୍ରମାଣିତ ହୋଇଛି ଏବଂ ଏହି ରାଷ୍ଟ୍ରମାନଙ୍କର ନିଦ ଏବେ ହଜିଯାଇଛି ଏବଂ ସେମାନେ ହଠାତ୍ ଜାଗ୍ରତ ହୋଇ ବିଛଣାରୁ ଉଠି ବସି ପଡ଼ିଛନ୍ତି । ଭାରତକୁ ଏକ "ବ୍ରାଣ୍ଡ" ଭାବେ ନାମିତ କରି ଏହାର ବିପଣନ କରିବା ପାଇଁ ହେଉଥିବା ପ୍ରଚେଷ୍ଟା ପ୍ରତି ପ୍ରଫେସର ଖିଲନାନୀ ସମସ୍ତଙ୍କୁ ସତର୍କ କରାଇ ଦେଇଛନ୍ତି ।

ପ୍ରଫେସର ଖିଲନାନୀ କୁହନ୍ତି ଯେ ଭାରତ କେବଳ ଏକ "ବ୍ରାଣ୍ଡ" ଭାବେ ଯଥେଷ୍ଟ ନୁହେଁ । ଭାରତ ଦରକାର କରୁଛି ଏପରି ଏକ ଆଭିମୁଖ୍ୟ ଯେ ସମଗ୍ର

ବିଶ୍ୱବ୍ରହ୍ମାଣ୍ଡ ଜାଣୁ ଯେ ଭାରତ ଭଳି ରାଷ୍ଟ୍ରଟିଏ କାହିଁକି ବିଶ୍ୱବୁକୁରେ ଠିଆ ହୋଇଛି ? ଭାରତର ଭବିଷ୍ୟତ କେବଳ ଅର୍ଥନୀତିଜ୍ଞ ଓ ବ୍ରାଣ୍ଡ ମ୍ୟାନେଜରଙ୍କ ଦ୍ୱାରା ନିର୍ଦ୍ଧାରିତ ହେବ ନାହିଁ, ଏହା ରାଷ୍ଟ୍ରନୀତିଜ୍ଞ ଦ୍ୱାରା ନିର୍ଦ୍ଧାରିତ ହେବ । ଅନ୍ୟଅର୍ଥରେ କହିବାକୁ ଗଲେ ଏହା ନିର୍ବୋଧ ରାଜନୀତିର ଏକ ପଶାଖେଳ ନୁହେଁ କି ?

ପ୍ରଫେସର ଖିଲନାନୀ କୁହନ୍ତି ଯେ ଭାରତବର୍ଷର ଆଭିମୁଖ୍ୟକୁ ନେଇ ସେ ଉପସ୍ଥାପନ କରିଥିବା ଏକ କଠୋର ଓ ରୁକ୍ଷ ଚେହେରାର ବିଶ୍ଳେଷଣ ନୂତନ ଭାରତବର୍ଷକୁ ନେଇ ଏକ "ଶୋକ ସମ୍ବାଦ" ବୋଲି ଅନେକଙ୍କ ଧାରଣାକୁ ସେ ଭ୍ରାନ୍ତ ବୋଲି ପ୍ରମାଣ କରି ତାର ଦୃଢ଼ ଖଣ୍ଡନ କରିବାକୁ ଚାହିଁଛନ୍ତି । ସେ ବିଶ୍ୱାସ କରନ୍ତି ଯେ ସବୁ କିଛି ସର୍ବନାଶ, ଅବସାଦ ଓ ନୈରାଶ୍ୟଜନକ ନୁହେଁ । ଗୋଟିଏ କଥା କିନ୍ତୁ ସତ୍ୟ ଯେ ଭାରତବର୍ଷ ଏକ ସଂକୀର୍ଣ୍ଣ ପରିଚୟ ଏବଂ ସାଂପ୍ରଦାୟିକ ରାଜନୀତିର ବଳୟ ଭିତରୁ ବାହାରି ଏକ ମୁକ୍ତ ଭବିଷ୍ୟତ ଓ ଆନନ୍ଦମୟ ବିଶ୍ୱର ସଂରଚନା କରିବା ଦିଗରେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରୁଛି ଯାହାକି ଏକ ସମ୍ଭାବନାମୟ ଭବିଷ୍ୟତ ଆଡ଼କୁ ରାଷ୍ଟ୍ରକୁ ଅଭିପ୍ରେରିତ କରୁଛି । ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଯେ ଜାତିଭେଦ ପ୍ରଥାର ମହାମାରୀ ବିଷାକ୍ତ ବ୍ରାଣ୍ଡ ଏବଂ ଦକ୍ଷିଣ ପନ୍ଥୀ ହିନ୍ଦୁ ଜାତୀୟତାବାଦ ଯାହାକି ଭାରତୀୟ ରାଜନୈତିକ ଲ୍ୟାଣ୍ଡସ୍କେପ୍‌କୁ ବେଶ୍ କିଛିକାଳ ଆଚ୍ଛାଦିତ କରି ରଖିଥିଲା ତାହା ଅନ୍ତତଃପକ୍ଷେ ବର୍ତ୍ତମାନ ପାଇଁ ଦୂରୀଭୂତ ହୋଇଯାଇଛି ଯାହାକି ୨୦୦୯ ମହିହା ଜୁନ୍ ମାସରେ ଅନୁଷ୍ଠିତ ହୋଇଥିବା ପାର୍ଲାମେଣ୍ଟ ଇଲେକ୍‌ସନ୍‌ରେ କଂଗ୍ରେସ୍ ପାର୍ଟିର ବିପୁଳ ବିଜୟ ଫଳରେ ସମଗ୍ର ଦେଶର ସର୍ବସାଧାରଣ ଭୋଟରଙ୍କ ଦ୍ୱାରା ପ୍ରଦାନ କରାଯାଇଥିବା "ଇନ୍‌କ୍ଲୁସିଭ୍ ପଲିଟିକାଲ୍ ଏଜେଣ୍ଡା"ର ଫଳାଫଳ ବୋଲି ପ୍ରାୟ ଅଭିହିତ କରାଯାଇଥାଏ ।

**ଉତ୍ସାହଜନକ ପଦକ୍ଷେପ (Encouraging Signs)**

ପଲିସି ଫ୍ରଣ୍ଟରେ ମଧ୍ୟ ପ୍ରଫେସର ଖିଲନାନୀ କେତେକ ଉତ୍ସାହପ୍ରଦ ପଦକ୍ଷେପକୁ ଚିହ୍ନିତ କରିଥିଲେ । ଉଦାହରଣସ୍ୱରୂପ ଡଃ ମନମୋହନ ସିଂହଙ୍କ ସରକାର ଅତ୍ୟନ୍ତ ଉତ୍ତମ ପଲିସି ଗୁଡ଼ିକୁ ଉତ୍ତମ ପରିଚାଳନା କଳା ମାଧ୍ୟମରେ ଗଚ୍ଛିତ କରି ରଖିବାରେ ସଫଳକାମୀ ହୋଇଥିଲେ । ପରନ୍ତୁ ଏପରି ପ୍ରତିଷ୍ଠା କେବଳ ମାତ୍ର ପରୀକ୍ଷାମୂଳକ ଥିଲା ଏବଂ ଦରକାର ପଡ଼ିଲେ "କୁଇକ୍ ଫିକ୍ସ" ଲଗାଇ ସେଥିରେ

ପରିବର୍ତ୍ତନ କରାଯିବାର ସମ୍ଭାବନାକୁ ମଧ୍ୟ ପ୍ରଶ୍ରୟ ଦିଆଯାଉଥିଲା । ପ୍ରଫେସର ଖିଲନାନୀ ଦେଶର "ସଂରକ୍ଷଣ ପଲିସି" କୁ ନେଇ ଅତ୍ୟନ୍ତ ସମାଲୋଚନାମୂଳକ ହୋଇଉଠିଥିଲେ ଏବଂ ଭାବୁଥିଲେ ଯେ ୧୯୫୦ ଦଶକର ଷ୍ଟାଇଲ୍ "ଯୁକ୍ତାତ୍ମକ ପକ୍ଷପାତିତା" ତାର କାର୍ଯ୍ୟକାରୀତା ବା ଫଳ୍ୟ ପ୍ରଦାନଶକ୍ତି ହରାଇବସିଛି ।

ପରିବର୍ତ୍ତେ, ପରିବର୍ତ୍ତନଶୀଳ ଅର୍ଥନୈତିକ ଅଭିବୃଦ୍ଧିରୁ ସୃଷ୍ଟି ହୋଇଥିବା ମତଭେଦ ଗୁଡ଼ିକର ସଫଳ ସମାଧାନ ପାଇଁ କେନ୍ଦ୍ରସରକାରଙ୍କୁ ଅଧିକରୁ ଅଧିକ ସୃଜନାତ୍ମକ ରାସ୍ତାର ସୃଷ୍ଟି ସମ୍ପର୍କରେ ଚିନ୍ତା କରିବାକୁ ପଡ଼ିବ । ରାଷ୍ଟ୍ରୀୟ ସମ୍ପଦର ସଫଳ ବଣ୍ଟନ ଏବଂ ବହୁବିଧ ସାମାଜିକ ଗ୍ରୁପ୍‌ର ବିରୋଧାତ୍ମକ ଦାବୀ ଗୁଡ଼ିକର ମୀମାଂସା ଆଦି ମୁଦ୍ଦାଗୁଡ଼ିକୁ କେବଳ ପ୍ରଶାସନିକ ବ୍ୟାପାର ବୋଲି ଭାବିଲେ ଚଳିବ ନାହିଁ । ଏପରି ସମସ୍ୟାର ସମାଧାନ ରାଜନୈତିକ ଇଚ୍ଛାଶକ୍ତି ଓ ଆତ୍ମସଚେତନଶୀଳ ଅଙ୍ଗୀକୃତ ଭାବନା ମାଧ୍ୟମରେ ହିଁ କରାଯାଇପାରିବ । ଅନ୍ୟଥା "ଟ୍ରାଫିକ୍ ଲେନ୍"ର ଦୃଶ୍ୟପଟ୍ଟ ସତ୍ୟରେ ହିଁ ପରିଣତ ହେବ ।

ବିଜ୍ଞାନ ଭାରତୀ : ମଇ, ୨୦୧୦



# ଭାରତୀୟ ବିଜ୍ଞାନର ଅନିର୍ବାଣ ଜୟଯାତ୍ରା

## (The Great Indian Technolution)

ପ୍ରଥମ କୃତ୍ରିମ ଉପଗ୍ରହ ପ୍ରକ୍ଷେପଣ କରିବା ଦିନଠୁଁ ଆରମ୍ଭ କରି ଖାଦ୍ୟ ଶସ୍ୟ ଉତ୍ପାଦନରେ ସ୍ୱାବଲମ୍ୱନଶୀଳତା ତଥା ପାରମାଣବିକ ଶକ୍ତି କ୍ଲବର ସଦସ୍ୟତା ଆସନ ଗ୍ରହଣ କରିବା ପର୍ଯ୍ୟନ୍ତ ବିଗତ ୬୦ ବର୍ଷ ମଧ୍ୟରେ ଭାରତ ଏକ ଦରିଦ୍ର ଓ ସଂଗ୍ରାମଶୀଳ ରାଷ୍ଟ୍ରର ପରିଚୟରୁ ମୁକୁଳି ଏକ ଅତ୍ୟାଧୁନିକ ବୈଜ୍ଞାନିକ ମହାଶକ୍ତି ରୂପେ ବିଶ୍ୱ ବୁକୁରେ ଉଦ୍‌ଭାସିତ ହେବା ନିଶ୍ଚିତ ରୂପେ ଏକ ଅନିର୍ବାଣ ବୈଜ୍ଞାନିକ ଜୟଯାତ୍ରାର ସ୍ୱପ୍ନବିଦଗ୍ଧ କାହାଣୀ ବର୍ଣ୍ଣନା କରିଥାଏ । ଭାରତ ତାର ଏହି ସୁଦୀର୍ଘ ଯାତ୍ରା ପଥରେ ବିଶ୍ୱ ଚାପ ଆଗରେ ମୁଣ୍ଡ ନ ନୁଆଁଇ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ନିଜ ପାଇଁ ଏକ ସ୍ୱତନ୍ତ୍ର ଆସନ ପ୍ରତିଷ୍ଠା କରିବା ନିଶ୍ଚିତ ରୂପେ ଏକ ଅଦ୍ୱିତୀୟ ବୈଜ୍ଞାନିକ ସଫଳତାର ଅବର୍ଣ୍ଣନୀୟ କିର୍ତ୍ତୀସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଯେତେବେଳେ ଭାରତବର୍ଷ ସ୍ୱାଧୀନତା ଲାଭ କଲା ସେତେବଳେ ଦେଶର ଆବାଳ-ବୃଦ୍ଧ-ବନିତାଙ୍କ ପରି ରାଜନୈତିକ ନେତୃବୃନ୍ଦ ମଧ୍ୟ ଦେଶର ଭବିଷ୍ୟତକୁ ନେଇ ଅସାଧାରଣ ମନଲୋଭା ସ୍ୱପ୍ନ ଦେଖିବାକୁ ଲାଗିଲେ । ସେମାନେ ଶତାବ୍ଦୀ ଶତାବ୍ଦୀ ଧରି ନିଷ୍ପେଷିତ, ଅବହେଳିତ, ପୀଡ଼ିତ, ଲାଂଛିତ ଓ ବେଦନାର ଶକ୍ତ ପ୍ରହାରରେ ଜର୍ଜରିତ ହୋଇଥିବା ଭାରତବର୍ଷର ବୁକୁ ଉପରେ ଏକ ସ୍ୱପ୍ନ ବିଜଡ଼ିତ ସମୃଦ୍ଧଶାଳୀ ଅତ୍ୟାଧୁନିକ ଭାରତବର୍ଷର ନିର୍ମାଣ କରିବାକୁ ଶପଥ ନେଲେ ଏବଂ ଏହି ମହାନ୍ ଦୃଷ୍ଟିକୋଣର ଏକ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଲା ରାଷ୍ଟ୍ର ସମ୍ମୁଖୀନ ହେଉଥିବା ବୃହତ୍ତର ଅର୍ଥନୈତିକ ଏବଂ ସାମାଜିକ ଚ୍ୟାଲେଞ୍ଜ ଗୁଡ଼ିକୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ତୀକ୍ଷ୍ଣ ଅସ୍ତ୍ର ମାଧ୍ୟମରେ ପ୍ରତିହତ କରିବା ।

ସ୍ୱାଧୀନତାର ପ୍ରାକ୍ କାଳରେ ରାଷ୍ଟ୍ରୀୟ ପୁଞ୍ଜିବିନିଯୋଗ ମାଧ୍ୟମରେ ଏକ ବିଶାଳ ବୈଜ୍ଞାନିକ ପ୍ରତିଷ୍ଠାନ- ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ (Council of Scientific & Industrial Research) ର ଶିଳାନ୍ୟାସ କରାଗଲା । ଷ୍ଟ୍ରାଟେଜିକ୍ ସେକ୍ଟର ବ୍ୟତିରେକ ସମସ୍ତ ଗବେଷଣା ଓ ଉନ୍ନୟନ ପ୍ରକଳ୍ପରେ କାର୍ଯ୍ୟକରିବାକୁ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଗଲା । ଆଜି ଆଗଙ୍ଗାକୁମାରୀକା

ବିଛେଇ ହୋଇ ପଡ଼ିଥିବା ୪୦ଟି ପ୍ରଖ୍ୟାତ ବିଜ୍ଞାନାଗାର ଏବଂ ଏଥିରେ କାର୍ଯ୍ୟରତ ଥିବା ୧୨ହଜାର ବୈଜ୍ଞାନିକଙ୍କୁ ନେଇ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର ବିଶାଳ ବୈଜ୍ଞାନିକ ସାମ୍ରାଜ୍ୟ ସମଗ୍ର ଭାରତ ଭୂଖଣ୍ଡକୁ ତାର ଜ୍ଞାନଦୀପ୍ତ ପ୍ରଚଣ୍ଡ ବୈଜ୍ଞାନିକ ଆଭାରେ ଗୋଟାପଣ ଆଚ୍ଛାଦିତ କରି ରଖିଛି । ଠିକ୍ ସେହିପରି ଭାରତୀୟ କୃଷି ଗବେଷଣା ପରିଷଦ (Indian Council for Agricultural Research) ରାଷ୍ଟ୍ରୀୟ କୃଷି ଉତ୍ପାଦକତାର ଅଭିବୃଦ୍ଧି ସହ ଜଡ଼ିତ ସମସ୍ତ ସମସ୍ୟାର ସୁସମାଧାନ କରିବା ପାଇଁ ସମଗ୍ର ଦେଶରେ ୯୭ଟି ଗବେଷଣା ପ୍ରତିଷ୍ଠାନ ଏବଂ ୪୫ଟି କୃଷିବିଶ୍ୱବିଦ୍ୟାଳୟ ସ୍ଥାପନା କରିଛି ।

ଭାରତ ଏକ ଜଘନ୍ୟ ଉପନିବେଶବାଦ ଓ ଦାରିଦ୍ର୍ୟର ନିର୍ମମ କଷାଘାତରେ ପ୍ରପୀଡ଼ିତ ଏକ ବିକାଶଶୀଳ ରାଷ୍ଟ୍ରର ପରିଚୟ ବହନ କରି ବିଶ୍ୱ ବୁକୁରେ ନିଜର ସ୍ଥିତି ପ୍ରତିପାଦିତ କରୁଥିଲା । ହା-ହୁତାସ, ଦୁଃଖ, ଦୈନ୍ୟ, ଯନ୍ତ୍ରଣା ଓ ପୀଡ଼ାର ଲୋମହର୍ଷଣ କାହାଣୀ ବର୍ଣ୍ଣନା କରୁଥିବା ଭାରତ ନିଜର ପୁନର୍ଜନ୍ମ ପାଇଁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାକୁ ଏକ ପରମ ଆୟୁଧଭାବେ ବରଣ କରିନେଲା । ମୂଲ୍ୟବାନ ରାଷ୍ଟ୍ରୀୟ ସମ୍ପଦର ଉପଯୁକ୍ତ ବିନିଯୋଗ ମାଧ୍ୟମରେ ଭାରତବର୍ଷର ବୈଜ୍ଞାନିକ ନବଜନ୍ମ ପାଇଁ ଅତି ସୁନ୍ଦରପଥଟିଏ ଉନ୍ମୋଚନ ହୋଇଗଲା । ଆଜିଠୁଁ ୬୦ବର୍ଷ ତଳେ ଏ କ୍ଷେତ୍ରରେ ବିନିଯୋଗ କରାଯାଇଥିବା ସମସ୍ତ ପ୍ରଚେଷ୍ଟା ଏବେ ସୁଫଳ ପ୍ରଦାନ କରୁଛି । ଚୀନ୍‌କୁ ଛାଡ଼ିଦେଲେ ଉପନିବେଶବାଦର କାରାଗାରରେ ବହୁକାଳ ନିଷ୍ପେସିତ ହୋଇଥିବା ପୃଥିବୀର ଯେକୌଣସି ରାଷ୍ଟ୍ର ତୁଳନାରେ ଭାରତବର୍ଷର ବୈଜ୍ଞାନିକ ବୈଭବ ଓ ମାନବସମ୍ବଳ ପୃଥିବୀରେ ଦ୍ୱିତୀୟ । ରାଷ୍ଟ୍ରର ଏହି ଅସମ୍ଭବ ଦକ୍ଷତାର ସତରେ କଣ ସୁ ବିନିଯୋଗ କରାଯାଇପାରିଛି ? ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପ୍ରତିଷ୍ଠାନ ଗୁଡ଼ିକ କିଭଳି ଭାବେ ବା ରାଷ୍ଟ୍ରୀୟ ଚ୍ୟାଲେଞ୍ଜକୁ ପ୍ରତିହତ କରିପାରିଛନ୍ତି ? ଏ ସବୁ ପ୍ରଶ୍ନର ଉତ୍ତର ଏତେ ସହଜ ନୁହେଁ । ଉତ୍ତର କିଛି ହଁ ଓ କିଛି ନା ର ଏକ ପେଣ୍ଡାପେଣ୍ଡି ସମ୍ମିଶ୍ରଣ । କେତେକ କ୍ଷେତ୍ରରେ ଭାରତବର୍ଷକୁ ଅସାଧାରଣ ବିଶ୍ୱ ସଫଳତା ମିଳିଥିବା ବେଳେ ଆଉ କେତେବ କ୍ଷେତ୍ରରେ ବଫଳତାର ସ୍ୱାଦ ଚାଖିବାକୁ ପଡ଼ିଛି । ସମସ୍ୟାର ମସ୍ତବଡ଼ ବୋଝ ଏବେ ବି ଆମ କାନ୍ଧରୁ ଓହ୍ଲାଇ ନାହିଁ ଓ କାନ୍ଧ କଟ୍‌କଟ୍ ଡ଼ାକୁଥିଲେ ମଧ୍ୟ କାନ୍ଧରୁ ବୋଝ ଓହ୍ଲାଇଦେବାର କ୍ଷମତା ମଧ୍ୟ ଆମ ହାତରେ ନାହିଁ ।

ପାଞ୍ଚୋଟି ପ୍ରମୁଖ କ୍ଷେତ୍ରରେ ଭାରତବର୍ଷର ଅଭୂତପୂର୍ବ ବୈଜ୍ଞାନିକ ସଫଳତାକୁ ନିଶ୍ଚିତ ରୂପେ ଉପସ୍ଥାପନା କରାଯାଇପାରେ ଯେଉଁଥିରେ କି ଭାରତୀୟ ବୈଜ୍ଞାନିକମାନେ ସେମାନଙ୍କର ଅସାଧାରଣ ବୈଜ୍ଞାନିକ ବିଦ୍‌ବତ୍ତାକୁ ବିଶ୍ୱ ଦରବାରରେ ପ୍ରକୃଷ୍ଟ ରୂପେ ପରିବେଷଣ କରି ଅତ୍ୟନ୍ତ ପ୍ରଶଂସାଭାଜନ ହୋଇପାରିଛନ୍ତି । ଏହି ପାଞ୍ଚୋଟି ରାଷ୍ଟ୍ରୀୟ ଅଭୂତପୂର୍ବ ବୈଜ୍ଞାନିକ ସଫଳତା କେବଳ ଯେ ଅନନ୍ୟ ଅସାଧାରଣ ଆବିଷ୍କାର ଯାହାକି ବିଶ୍ୱ ବୈଜ୍ଞାନିକ ମାନଚିତ୍ରକୁ ସମ୍ପୂର୍ଣ୍ଣରୂପେ ବଦଳାଇ ଦେଇଥିଲା ତା ନୁହେଁ ବରଂ ଏଇଥିପାଇଁ ଉଲ୍ଲେଖଯୋଗ୍ୟ ଯେ ସେ ସବୁ କ୍ଷେତ୍ରରେ ସଫଳତା ବହୁ ସଂଘର୍ଷ, ବାଧା ବିଘ୍ନ ଓ ଘାତ ପ୍ରତିଘାତ ମଧ୍ୟରେ ହାସଲ କରାଯାଇପାରିଥିଲା । ଏପରିକି ଆନ୍ତର୍ଜାତିକ ଅର୍ଥନୈତିକ ବାସନ୍ଦ ବ୍ୟବସ୍ଥା ଭିତରେ ତିଷ୍ଠି ରହି ଏଭଳି ଅସାଧାରଣ ବୈଜ୍ଞାନିକ ସଫଳତା ମଧ୍ୟ ଭାରତର ହାତମୁଠାକୁ ଆସିପାରିଥିଲା । ଅତ୍ୟନ୍ତ ସ୍ୱଳ୍ପ ପୁଞ୍ଜି ବିନିଯୋଗ ଓ ପ୍ରଚଣ୍ଡ ବୈଜ୍ଞାନିକ ମନୋବଳକୁ ଆଧାର କରି ଏଭଳି ଏକ ରାଷ୍ଟ୍ରୀୟ ବୈଜ୍ଞାନିକ ଅଭ୍ୟୁଦୟ ସମ୍ଭବପର ହୋଇପାରିଥିଲା । ଏହି ପ୍ରମୁଖ ୫ଟି କ୍ଷେତ୍ରରେ ସଂଗଠିତ ହୋଇଥିବା ଗତିପ୍ରଗତି ବିଜ୍ଞାନର ଅନ୍ୟ ସମସ୍ତ ଧାରା, ଉପଧାରା ଓ ଦିଗ ଉପରେ ତାର ପ୍ରଚଣ୍ଡ ପ୍ରଭାବ ଜାହିର କଲା ଏବଂ ରାଷ୍ଟ୍ରୀୟ ଜନଜୀବନ ଉପରେ ମଧ୍ୟ ତାର ଅସାଧାରଣ କର୍ତ୍ତୃତ୍ୱକୁ ଦୃଢ଼ୀଭୂତ କଲା ।

### (୧) କୃଷିକ୍ଷେତ୍ର (Agriculture) :

୬୦ବର୍ଷ ପୂର୍ବେ ଭାରତବର୍ଷ ବିଦେଶରୁ ଖାଦ୍ୟଶସ୍ୟ ଆମଦାନୀ କରି ତାର କୋଟି କୋଟି ଲୋକଙ୍କ ପେଟକୁ ଦାନା ଯୋଗାଉଥିଲା । ଭାରତବର୍ଷର କୋଟି କୋଟି ଆବାଳ ବୃଦ୍ଧବନିତା ପାଣି ଜାହାଜରେ ବିଦେଶରୁ ଆମଦାନୀ ହେଉଥିବା ଖାଦ୍ୟଶସ୍ୟକୁ ପେଟରେ ଓଦାକନା ଦେଇ ଆଁ କରି ଚାହିଁ ରହୁଥିଲେ । ୧୯୬୬ ମସିହା ବେଳକୁ ଖାଦ୍ୟଶସ୍ୟର ଆମଦାନୀ ପରିମାଣ ୧୦ନିୟୁତ ଟନ୍‌ରେ ପହଁଞ୍ଚି ଥିଲା । ପରନ୍ତୁ ୧୯୬୮ ମସିହା ବେଳକୁ ଖାଦ୍ୟଶସ୍ୟର ଉତ୍ପାଦନ ପରିମାଣ ୮ନିୟୁତ ଟନ୍‌ରେ ପହଁଞ୍ଚି ଗଲା ଏବଂ ୧୯୭୪ ମସିହା ବେଳକୁ ଭାରତ ଖାଦ୍ୟଶସ୍ୟ ଉତ୍ପାଦନରେ ସ୍ୱାବଲମ୍ବନଶୀଳତା ହାସଲ କରିପାରିଲା । ଭାରତୀୟ କୃଷି ବୈଜ୍ଞାନିକମାନେ ପ୍ରଥମେ ଜାପାନ ଦେଶର ବିଭିନ୍ନ ପ୍ରକାରର ଚାଉଳ ସହ ଭାରତବର୍ଷର ବିଭିନ୍ନ ପ୍ରକାର ଚାଉଳର କୃତ୍ରିମ ମିଳନ କରାଇ ଅଧିକ ଉତ୍ପାଦନକ୍ଷମ ନୂତନ ପ୍ରକାରର ଚାଉଳ ସୃଷ୍ଟି କଲେ ।

ତାପରେ ପରେ ଏହି ପ୍ରକ୍ରିୟାରେ ଗହମ, ମକା, ଆଦି ଅନ୍ୟାନ୍ୟ ଶସ୍ୟବୀଜର ବିଭିନ୍ନ ପ୍ରକାରଭେଦ ସୃଷ୍ଟି ହେଲା । ଏହି ସବୁଜ ବିପ୍ଳବର ଜନକ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡ଼କ୍ଟର ଏମ୍.ଏସ୍. ସ୍ୱାମୀନାଥନ୍ କୁହନ୍ତି ଯେ – "ପ୍ରଯୁକ୍ତିବିଦ୍ୟା ଓ ପବ୍ଲିକ ପଲିସି ମଧ୍ୟରେ ଥିବା ସମନ୍ୱୟର ମହାଶକ୍ତି ହିଁ ଏଥିପାଇଁ ମୁଖ୍ୟତଃ ଦାୟୀ" । ଉତ୍ପାଦକତା କ୍ଷେତ୍ରରେ ଅତ୍ୟନ୍ତ ଉଲ୍ଲେଖନୀୟ ଓ ଫଳପ୍ରଦ ବିକାଶର ଛାପମଧ୍ୟ ମାଛଚାଷ ଓ ଫାର୍ମ ମାନଙ୍କରେ ପାଳିତ ପଶୁମାନଙ୍କ କ୍ଷେତ୍ରରେ ମଧ୍ୟ ପରିଲକ୍ଷିତ ହେଲା । ଆଜି ଭାରତବର୍ଷ ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ବିଶ୍ୱରେ ପ୍ରଥମ ସ୍ଥାନ ଅଧିକାର କରିପାରିଛି ଏବଂ ଏଇଥିପାଇଁ ସମସ୍ତ ସଫଳତାର ଶ୍ରେୟ ଅମୂଲର ଜନ୍ମଦାତା ଶ୍ରୀ ଭର୍ଗିଜ କୁରିୟନ ହିଁ ପାଇଥାନ୍ତି ।

ନୂଆଦିଲ୍ଲୀସ୍ଥିତ ଭାରତୀୟ କୃଷିଗବେଷଣା ପରିଷଦର ଉଦ୍ୟାନ ବିଭାଗର ଡ଼େପୁଟି ଡ଼ାଇରେକ୍ଟର ଜେନେରାଲ୍ ଶ୍ରୀ ଏଚ୍.ପି. ସିଂହ କୁହନ୍ତି ଯେ ଦେଶର ସ୍ୱାଧୀନତା ପୂର୍ବରୁ ହର୍ଟିକଲ୍‌ଚର୍ ଯାହାକି କେବଳ ମାତ୍ର ଏକ ସୌଖିନ ପ୍ରବୃତ୍ତି ବୋଲି ବିବେଚିତ ହେଉଥିଲା ତାହା ଏବେ କୃଷି କ୍ଷେତ୍ରରେ ଏକ ପ୍ରମୁଖ ସେକ୍ଟର ଭାବେ ପରିଗଣିତ ହେଉଛି । ରାଷ୍ଟ୍ରୀୟ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ମାଧ୍ୟମରେ ୭୨ହଜାର ନୂତନ ପ୍ରକାରଭେଦର ସୁରକ୍ଷା କରାଯାଇପାରିଛି ଏବଂ ୧୫୦୦ ପ୍ରକାରର ଅଧିକ ଫଳପ୍ରଦ ଚାଷ ଉପଯୋଗୀ ଭେରାଇଟିର ବିକାଶ ମଧ୍ୟ ସମ୍ଭବପର ହୋଇପାରିଛି । ଫଳତଃ ଭାରତବର୍ଷ ଆଜି ବିଭିନ୍ନ ପ୍ରକାରର ଫଳ ଓ ପନିପରିବା ଉତ୍ପାଦନରେ ସମଗ୍ର ବିଶ୍ୱରେ ଦ୍ୱିତୀୟ ସ୍ଥାନ ଅଧିକାର କରିପାରିଛି । ୧୯୯୧–୯୨ ମସିହାରୁ ୧୯୯୮–୯୯ମସିହା ମଧ୍ୟରେ ଉତ୍ପାଦନ କ୍ଷେତ୍ରରେ ୫୦ପ୍ରତିଶତ ଅଭିବୃଦ୍ଧି ପରିଲକ୍ଷିତ ହୋଇଛି । ଡ଼କ୍ଟର ଏମ୍.ଏସ୍. ସ୍ୱାମୀନାଥନ୍ କୁହନ୍ତି ଯେ ଅଭିବୃଦ୍ଧି ଓ ବିକାଶର ଧାରା ନିରନ୍ତର ଭାବେ ପ୍ରଗତିପଥରେ ପରିଚାଳିତ ହେଉଥିଲେ ମଧ୍ୟ ବିଗତ ୧୫ବର୍ଷ ମଧ୍ୟରେ ନାନାବିଧ ଅର୍ଥନୈତିକ ଓ ପାରିବେଶିକ କାରଣରୁ ଖାଦ୍ୟଶସ୍ୟ ଉତ୍ପାଦନ ଓ ଉତ୍ପାଦକତାରେ ମଧ୍ୟ ଅପେକ୍ଷାକୃତ ସ୍ଥାଣୁତା ପରିଲକ୍ଷିତ ହୋଇଛି ।

ପୁନଶ୍ଚ ସ୍ୱାମୀନାଥନ୍ କୁହନ୍ତି ଯେ ବିଜ୍ଞାନାଗାରରୁ କୃଷିକ୍ଷେତ୍ରକୁ ବୈଷୟିକ ଜ୍ଞାନକୌଶଳର ହସ୍ତାନ୍ତର (Conversion of Scientific Know-how to Field level Do-how) ତଥା ପବ୍ଲିକ୍ ପଲିସି ଓ ପ୍ରଯୁକ୍ତି ବିଦ୍ୟାର ସର୍ବଦିଗବ୍ୟାପ୍ତ ପ୍ରସାରଣର ଆବଶ୍ୟକତା (Need for Technological Diffusion) ମଧ୍ୟରେ ଥିବା ଅନ୍ତରାୟ

(Mismatch) ଏଥିପାଇଁ ଦୁଇଟି ପ୍ରମୁଖ କାରଣ ଅଟେ । ଡ଼କ୍ଟର ସ୍ୱାମୀନାଥନ୍ କୁହନ୍ତି ଯେ "କୃଷି କ୍ଷେତ୍ରରେ ରାଷ୍ଟ୍ରୀୟ ନୀତିନିୟମ ନିର୍ଦ୍ଧାରଣ କରିବା ବହୁଳ ଭାବେ ସାଧାରଣ ପ୍ରଶାସକଙ୍କ ହାତ ମୁଠାରେ ନିୟନ୍ତ୍ରିତ ହୋଇଥାଏ ଯେଉଁମାନଙ୍କ ମଧ୍ୟରୁ ଅନେକ କୃଷିକର୍ମ ଓ କୃଷକଙ୍କ ଜୀବନ ଜୀବିକା ସମ୍ପର୍କରେ ବିଶେଷଭାବେ ଅବଗତ ନଥାନ୍ତି । ଏହା ହେଉଛି ନିଜ ହାତରେ ନିଜେ କ୍ଷତ କରି ତାର ଉପଶମ କଲାଭଳି ଏକ ଅତ୍ୟନ୍ତ ଅବାନ୍ତର ଓ ଅର୍ଥହୀନ ପ୍ରକ୍ରିୟା" ।

**(୨) ନାଭିକୀୟ ବିଜ୍ଞାନ (Nuclear Science) :**

ହିରୋସୀମା ଘଟଣାର ଠିକ୍ ୩ବର୍ଷ ପରେ ଏବଂ ଦେଶ ସ୍ୱାଧୀନ ହେବାର ମାତ୍ର ବର୍ଷକ ପରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ତୃତୀୟ ବିଶ୍ୱର ସର୍ବଶ୍ରେଷ୍ଠ ପରମାଣୁ ବିଜ୍ଞାନୀ ଓ ଅସାଧାରଣ ଧୀମତା ସମ୍ପନ୍ନ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବୈଜ୍ଞାନିକ ଡ଼କ୍ଟର ହୋମି ଜାହାଙ୍ଗୀର ଭାଭାଙ୍କ ନେତୃତ୍ୱରେ ପାରମାଣବିକ ଶକ୍ତି କମିଶନ (Atomic Energy Commission) ର ପ୍ରତିଷ୍ଠା କଲେ । ଡ଼କ୍ଟର ଭାଭାଙ୍କ ନେତୃତ୍ୱରେ ଭାରତର ପାରମାଣବିକ କାର୍ଯ୍ୟକ୍ରମ ବିଶାଳକାୟ ରୂପରେଖ ଧାରଣ କଲା ଏବଂ ଏକ ବୃହତ୍ତର ଶକ୍ତିଭାବେ ଭାରତ ବିଶ୍ୱବୁକୁରେ ସଗର୍ବେ ଦଣ୍ଡାୟମାନ ହେଲା । ସେ ସମୟରେ ପାରମାଣବିକ ଜ୍ଞାନ କୌଶଳ ମାତ୍ର ଅଳ୍ପ କେତେକ ମୁଷ୍ଟିମେୟ ବିକଶିତ ରାଷ୍ଟ୍ରଙ୍କ ନିୟନ୍ତ୍ରଣରେ ଥିଲା ଏବଂ ଏହି ଜ୍ଞାନକୌଶଳ ଅତ୍ୟନ୍ତ ଗୋପନୀୟ ଓ ସୁଦୂର ପରାଭବ ମଧ୍ୟ ଥିଲା । ୧୯୬୬ମସିହାରେ ୟୁରୋପର ମଣ୍ଟ ବ୍ଲାଙ୍କ ଠାରେ ଏକ ବିମାନ ଦୁର୍ଘଟଣାରେ ଡ଼କ୍ଟର ଭାଭା ପ୍ରାଣତ୍ୟାଗ କଲାବେଳକୁ ଭାରତ ପାରମାଣବିକ ରିସର୍ଚ୍ଚ ରିଆକ୍ଟରର ପ୍ରତିଷ୍ଠା କରିସାରିଥିଲା ଏବଂ ୟୁରାନିୟମ ଧାତୁ ଖଣିରୁ ନିଷ୍କାସିତ ହୋଇ ପାରମାଣବିକ ଜାଳେଣୀ ଭାବେ ବ୍ୟବହୃତ ହେଉଥିଲା । ରେଡ଼ିଏସନ୍ ପାଇଁ ଆଇସୋଟୋପ୍‌ର ବିକାଶଭଳି ପାରମାଣବିକ ଶକ୍ତିର ଅନ୍ୟାନ୍ୟ ଶାନ୍ତିପ୍ରିୟ ବିନିଯୋଗ କ୍ଷେତ୍ରରେ ଭାରତ ଅନନ୍ୟ ସଫଳତା ହାସଲ କରିସାରିଥିଲା । ୧୯୭୪ ମସିହାରେ ଇନ୍ଦିରା ଗାନ୍ଧିଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ଭାରତ ରାଜସ୍ଥାନର ପୋଖରାନ୍ ଠାରେ ପ୍ରଥମ ଭୂଗର୍ଭ ପାରମାଣବିକ ବିସ୍ଫୋରଣ ସଂଗଠିତ କରାଇ ବିଶ୍ୱବାସୀଙ୍କୁ ଚକିତ ଓ ସ୍ତମ୍ଭିତ କରିଦେଇଥିଲା । ପାରମାଣବିକ ଶକ୍ତିରେ ଶକ୍ତିଶାଳୀ ହୋଇଥିବା ମୁଷ୍ଟିମେୟ ବିକଶିତ ରାଷ୍ଟ୍ରମାନେ ସେତେବେଳେ ଭାରତ ବିରୁଦ୍ଧରେ ଅର୍ଥନୈତିକ ବାସନ୍ଦ ବ୍ୟବସ୍ଥା ଜାରି

କରିଥିଲେ ଏବଂ ଭାରତର ଅସାଧାରଣ ବୈଜ୍ଞାନିକ ଅଭ୍ୟୁଦୟକୁ ସେମାନେ ସହ୍ୟ କରିପାରିନଥିଲେ । ଏସବୁ ସତ୍ୱେ ମଧ୍ୟ ନାନାଦି ସଂଘର୍ଷ ଓ ଉତ୍‌ଥାନ ପତନ ଭିତରେ ଭାରତ ମୁଣ୍ଡ ଟେକି ଠିଆ ହେଲା ଏବଂ ବିଶ୍ୱ ବୁକୁରେ ନିଜର ଜ୍ଞାନ ଓ ପ୍ରଭୁତ୍ୱକୁ ଜାହିର କଲା । ପାରମାଣବିକ ରିଆକ୍ଟରରେ ଥୋରିୟମ୍ ଧାତୁକୁ ଜାଳେଣୀ ହିସାବରେ ବ୍ୟବହାର କରିବା ପାଇଁ ଏକ ସୁଦୀର୍ଘ ତ୍ରିସ୍ତରୀୟ ପ୍ରକ୍ରିୟାର ବିକାଶ କ୍ଷେତ୍ରରେ ଭାରତ ଅନନ୍ୟ ସଫଳତା ହାସଲ କଲା ଏବଂ ଏହା ଅତ୍ୟନ୍ତ ଖୁସିର କଥା ଯେ ଭୂଗର୍ଭରେ ଥିବା ଥୋରିୟମ୍ ଧାତୁର ଗଚ୍ଛିତ ପରିମାଣ କ୍ଷେତ୍ରରେ ଭାରତ ପୃଥିବୀରେ ପ୍ରଥମ ସ୍ଥାନ ଲାଭ କରିଛି । ଏବେ ଭାରତବର୍ଷରେ ୧୭ଟି ପାରମାଣବିକ ଶକ୍ତି ଉତ୍ପନ୍ନ କେନ୍ଦ୍ର (Atomic Power Station) କାର୍ଯ୍ୟ କରୁଛି ଏବଂ ଆଉ ୬ଟି କେନ୍ଦ୍ର ମଧ୍ୟ ନିର୍ମାଣାଧିନ ଅଛି । ପାରମାଣବିକ ଶକ୍ତି ସମ୍ପନ୍ନ ରାଷ୍ଟ୍ରଭାବେ ଭାରତ ଆଜି ବିଶ୍ୱ ବୁକୁରେ ନିଜର ସ୍ୱତନ୍ତ୍ର ଆସନ ଜାହିର କରିପାରିଛି ।

ଦେଶର ଲବ୍ଧ ପ୍ରତିଷ୍ଠ ପରମାଣୁ ବିଜ୍ଞାନୀ, କେନ୍ଦ୍ର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗର ପ୍ରାକ୍ତନ ସଚିବ ତଥା ବାଙ୍ଗାଲୋରସ୍ଥିତ ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡଭାନ୍ସଡ ଷ୍ଟଡ଼ିଜ୍ ର ନିର୍ଦ୍ଦେଶକ ପ୍ରଫେସର ଡ଼କ୍ଟର ଭି.ଏସ୍. ରାମମୂର୍ତ୍ତି କୁହନ୍ତି ଯେ ପାରମାଣବିକ ବିକାଶ କ୍ଷେତ୍ରରେ ଭାରତର ଅନନ୍ୟ ସଫଳତା ପଛରେ ଡ଼କ୍ଟର ଭାଭାଙ୍କ ଅସାଧାରଣ ନେତୃତ୍ୱ ଓ ମାନବସମ୍ବଳର ମହତ୍ତର ବିକାଶ କ୍ଷେତ୍ରରେ ନିଆଯାଇଥିବା ବଳିଷ୍ଠ ପଦକ୍ଷେପ ମୁଖ୍ୟତଃ ଦାୟୀ । ଆଗାମୀ ଦଶକ ମାନଙ୍କରେ କେବଳ ଭାରତପାଇଁ ନୁହେଁ ବରଂ ସମଗ୍ର ବିଶ୍ୱରେ ପାରମାଣବିକ ଶକ୍ତିର ବିକାଶ କ୍ଷେତ୍ରରେ ମାନବ ସମ୍ବଳ ଏକ ପ୍ରମୁଖ ଚ୍ୟାଲେଞ୍ଜ ଭାବେ ଉଭା ହେବ ଏବଂ ଏହି ଚ୍ୟାଲେଞ୍ଜର ଉପଯୁକ୍ତ ମୁକାବିଲା କରିବା ଏକାନ୍ତ ଅପରିହାର୍ଯ୍ୟ ଅଟେ ।

**(୩) ମହାକାଶ ଗବେଷଣା (Space Research) :**

ପାରମାଣବିକ ଶକ୍ତି ବିଭାଗରୁ ଆଶ୍ଚର୍ଯ୍ୟଜନକ ଭାବେ ମହାକାଶ ବିଭାଗର ଜନ୍ମଲାଭ ହେଲା ୧୫ ଅଗଷ୍ଟ ୧୯୬୯ ମସିହାରେ । ରାଷ୍ଟ୍ରୀୟ ରାଜନୈତିକ ନେତୃତ୍ୱର ପରମ ମହାନୁଭବତା, ଉତ୍ସାହ, ଆଗ୍ରହ ଓ ଉଦ୍ଦୀପନାକୁ ଆଧାର କରି ବିକ୍ରମ ସରାଭାଇଙ୍କ ଭଳି ଏକ ଉତ୍ତୁଙ୍ଗ ବୈଜ୍ଞାନିକ ବ୍ୟକ୍ତିତ୍ୱଙ୍କ ନେତୃତ୍ୱରେ ମହାକାଶ ବିଭାଗ ତାର ବୈଜ୍ଞାନିକ ଜୟଯାତ୍ରା ଆରମ୍ଭ କଲା । ୧୯୬୯ ମସିହାରେ ଭାରତୀୟ ମହାକାଶ ଗବେଷଣା

ପ୍ରତିଷ୍ଠାନ (Indian Space Research Orgazination) ର ଜନ୍ମ ହେଲା ଏବଂ ଏହାର ୬ବର୍ଷ ପରେ ୧୯୭୫ ମସିହାରେ ପ୍ରଥମ ଭାରତୀୟ ଉପଗ୍ରହ "ଆର୍ଯ୍ୟଭଟ୍ଟ" ମହାକାଶକୁ ପ୍ରକ୍ଷେପଣ କରାଗଲା । ସେଦିନରୁ ଆଜି ପର୍ଯ୍ୟନ୍ତ ଏହି ସୁଦୀର୍ଘ ବୈଜ୍ଞାନିକ ଯାତ୍ରାପଥରେ ଭାରତ ମହାକାଶ ଗବେଷଣା କ୍ଷେତ୍ରରେ ବହୁ ଅସାଧାରଣ ସାଫଲ୍ୟ ହାସଲ କରିପାରିଛି । ବେସାମରିକ ଉପଗ୍ରହର ନିର୍ମାଣ ଓ ପ୍ରକ୍ଷେପଣ କ୍ଷେତ୍ରରେ ଭାରତ ବିଶ୍ୱରେ ପ୍ରଥମ ସ୍ଥାନ ଅଧିକାର କରିଛି ଯାହାକି କମ୍ୟୁନିକେସନ୍, ବ୍ରଡ଼କାଷ୍ଟିଙ୍ଗ, ଦୂରନ୍ତର ଶିକ୍ଷା, ପାଣିପାଗ ସଂକ୍ରାନ୍ତୀୟ ତଥ୍ୟ, ପରିବେଶ ସଂକ୍ରାନ୍ତୀୟ ମନିଟରିଂ, ଭୂତତ୍ତ୍ୱ, କୃଷି, ଜୈବବିବିଧତା, ଜମିଜମାର ବ୍ୟବହାର, ସାମୁଦ୍ରିକ ଉପକୂଳବର୍ତ୍ତୀ ଅଞ୍ଚଳର ଉତ୍ତମ ପରିଚାଳନା ଓ ସାମୁଦ୍ରିକ ସମ୍ପଦର ସୁବିନିଯୋଗ, ସହରୀ ଅଞ୍ଚଳର ପରିଚାଳନା ଏବଂ ପ୍ରାକୃତିକ ବିପତ୍ତିର ପରିଚାଳନା କ୍ଷେତ୍ରରେ ସଫଳ ଯୋଗଦାନ ଦେଇପାରିଛି ।

ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠାନ ଏକାସାଙ୍ଗରେ ୧୦ଟି ସ୍ୟାଟେଲାଇଟ୍ ଲଞ୍ଚ୍ କରିବାର ବିଶେଷ ଦକ୍ଷତା ହାସଲ କରିପାରିଛି ଏବଂ ସ୍ୟାଟେଲାଇଟ୍ ଲଞ୍ଚ୍ ପାଇଁ ବ୍ୟବହୃତ ହେଉଥିବା ଯାନର ପୁନଃ ବ୍ୟବହାର ପାଇଁ ଆବଶ୍ୟକୀୟ ଜ୍ଞାନ କୌଶଳର ବିକାଶ ମଧ୍ୟ ସମ୍ଭବପର ହୋଇପାରିଛି । ଖୁବ୍ ନିକଟ ଅତୀତରେ ଚନ୍ଦ୍ରଯାନ-୧ ଚନ୍ଦ୍ରରେ ପହଁଞ୍ଚିବା ଓ ଚନ୍ଦ୍ରର ଅନୁସନ୍ଧାନ କରିବା କ୍ଷେତ୍ରରେ ଅସାମାନ୍ୟ ସଫଳତା ହାସଲ କରିପାରିଛି । ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠାନର ପ୍ରାକ୍ତନ ମୁଖ୍ୟ ଏବଂ ଯୋଜନା ଆୟୋଗର ସଦସ୍ୟ ଡ଼କ୍ଟର କେ. କସ୍ତୁରୀରଙ୍ଗନ୍ କୁହନ୍ତି ଯେ – "ଭାରତର ମହାକାଶ କାର୍ଯ୍ୟକ୍ରମ ଅତ୍ୟନ୍ତ ଅସାଧାରଣ ଏଇଥିପାଇଁ ଯେ ଏହା ସ୍ୱଳ୍ପ ବ୍ୟୟସାପେକ୍ଷ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ବିକାଶ ଓ ଅଭ୍ୟୁଦୟ ସହ ଓତଃପ୍ରୋତ ଭାବେ ଜଡ଼ିତ ହୋଇପାରିଛି । ଅଧିକାଂଶ ବୈଷୟିକ ଜ୍ଞାନକୌଶଳ ଅନ୍ତର୍ଦ୍ଦେଶୀୟ ପ୍ରଯୁକ୍ତିବିଦ୍ୟା ଉପରେ ଆଧାରିତ ଏବଂ ଏ ସବୁର ବିକାଶ ବିକଶିତ ରାଷ୍ଟ୍ରମାନଙ୍କ ଅର୍ଥନୈତିକ ବାସନ୍ଦ ବ୍ୟବସ୍ଥା, ନିଅଣ୍ଟିଆ ଶିଳ୍ପ ଭିତ୍ତିଭୂମି ଏବଂ ଅତି ଜଟିଳ ଇଞ୍ଜିନିୟରିଂ ଇସ୍ୟୁ ମଧ୍ୟରେ ହିଁ ସଂଗଠିତ ହୋଇଥିଲା । ଆମର ନିଜ ଇଞ୍ଜିନିୟରମାନେ ଏହାକୁ ଏକ ଚ୍ୟାଲେଞ୍ଜ ଭାବେ ଗ୍ରହଣ କଲେ ଏବଂ ଅସାଧାରଣ ବୈଜ୍ଞାନିକ ପଟୁତା, ଅନନ୍ୟ ବାଗ୍ମୀତା, ସୃଷ୍ଟି ଧର୍ମୀ ବୈଜ୍ଞାନିକ ମାନସିକତା ଓ ଅଭୂତପୂର୍ବ ଇନୋଭେସନ୍ କ୍ରିୟାକଳାପ ମାଧ୍ୟମରେ ବହୁ ଜଟିଳ ଓ ଗୁଢ଼ତତ୍ତ୍ୱର ସରଳ ସମାଧାନର ପଥ ଆବିଷ୍କାର କଲେ ।"

## (୪) ଜେନୋମିକ୍ସ (Genomics) :

ଜେନେଟିକ୍ କୋଡ୍‌ର ସିକ୍ୱେନ୍‌ସିଂ ଏବଂ ନାନାବିଧ ରୋଗର ନିୟନ୍ତ୍ରଣ ପାଇଁ ଏହାର ପ୍ରକୃଷ୍ଟ ବ୍ୟବହାର କ୍ଷେତ୍ରରେ ଭାରତବର୍ଷ ଅସାଧାରଣ ସାଫଲ୍ୟ ହାସଲ କରିପାରିଛି । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ସଂଗଠିତ ହୋଇଥିବା ପ୍ରଯୁକ୍ତିବିଦ୍ୟା ଭିତ୍ତିକ ବିକାଶ ପ୍ରକ୍ରିୟା ଯୋଗୁଁ ୮୦ ଦଶକର ମଧ୍ୟଭାଗରେ ଜେନେଟିକ୍ କୋଡର ସମ୍ପୂର୍ଣ୍ଣ ସିକ୍ୱେନ୍‌ସିଂ କରିବା ସମ୍ଭବପର ହେଲା । ପ୍ରାରମ୍ଭିକ ଅନିଚ୍ଛା ସତ୍ତ୍ୱେ ମଧ୍ୟ ସମ୍ପୂର୍ଣ୍ଣ ଜିନ୍ ସିକ୍ୱେନ୍‌ସିଂ ପ୍ରକ୍ରିୟା କ୍ଷେତ୍ରରେ ଆବଶ୍ୟକୀୟ ଦକ୍ଷତାର ଅଭିବୃଦ୍ଧି ପାଇଁ ଭାରତ ବିଶ୍ୱ ପ୍ରଯୁକ୍ତିବିଦ୍ୟାର ମହାଦୌଡ଼ରେ ସାମିଲ୍ ହେଲା । ସମ୍ପ୍ରତି ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର ମହାନିର୍ଦ୍ଦେଶକ ଥିବା ଡ଼କ୍ଟର ଏସ୍.କେ. ବ୍ରହ୍ମଚାରୀଙ୍କ ପ୍ରଚଣ୍ଡ ପ୍ରଚେଷ୍ଟା ଯୋଗୁଁ ଏହା ସମ୍ଭବପର ହେଲା । ଡ଼କ୍ଟର ବ୍ରହ୍ମଚାରୀ ଯେତେବେଳେ ଜଣେ ଗବେଷକ ଛାତ୍ର ଥିଲେ ସେତେବେଳେ ସେ ବିଶ୍ୱବିଖ୍ୟାତ ଜେନେଟିସିଷ୍ଟ ଚାର୍ଲସ କ୍ୟାଣ୍ଟର (Charles Cantor) ଙ୍କ ପାଖରେ କାମ କରୁଥିଲେ । ତାଙ୍କର ବୈଜ୍ଞାନିକ ଅନୁଭବ ଓ ଅଭିଜ୍ଞତାକୁ ପାଥେୟ କରି ସେ ଭାରତ ସରକାରଙ୍କୁ ପ୍ରଭାବିତ କରି ଦେଶରେ ଏଭଳି ଗବେଷଣା କାର୍ଯ୍ୟ କରିବାକୁ ପ୍ରସ୍ତାବ ଦେଲେ । ଡ଼କ୍ଟର ବ୍ରହ୍ମଚାରୀ କୁହନ୍ତି ଯେ – "ଏଭଳି ଗବେଷଣା କରିବାକୁ ଭାରତ ପାଖରେ ସ୍ୱତନ୍ତ୍ର ସୁଯୋଗ ଓ ସମ୍ଭାବନା ରହିଛି । ପୁନଶ୍ଚ ଅଗଣିତ ଜନସଂଖ୍ୟାଙ୍କ ଭିତରେ ଜେନେଟିକ୍ କମ୍ପୋଜିସନ୍‌ରେ ଥିବା ବହୁଳ ବିବିଧତା, ଦେଶରେ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଦ୍ରୁତ କ୍ରମବର୍ଦ୍ଧମାନ ଦକ୍ଷତା ଓ ମହାନୁଭବତା ତଥା ଏକ ବିଶାଳ ବୈଜ୍ଞାନିକ ଭିତ୍ତିଭୂମି ଭାରତବର୍ଷକୁ ଏ କ୍ଷେତ୍ରରେ ଏକ ଅଗ୍ରଗାମୀ ରାଷ୍ଟ୍ରର ମାନ୍ୟତା ପ୍ରଦାନ କରିବାକୁ ବାଟ କଢ଼େଇ ନେବ । ୧୯୯୮ ମସିହାରେ ନୂଆଦିଲ୍ଲୀରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଜେନୋମିକ୍ସ ଆଣ୍ଡ ଇଣ୍ଟେଗ୍ରେଟିଭ୍ ବାୟୋଲୋଜି (Institute of Genomics & Integrative Biology) ଗବେଷଣା ପ୍ରତିଷ୍ଠାନର ସ୍ଥାପନା କରି ଡ଼କ୍ଟର ବ୍ରହ୍ମଚାରୀ ଭାରତୀୟ ବୈଜ୍ଞାନିକମାନଙ୍କୁ ଉପଯୁକ୍ତ ନେତୃତ୍ୱ ଓ ଦିଗ୍‌ଦର୍ଶନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଭାରତୀୟ ଜେନେଟିକ୍ କମ୍ପୋଜିସନ୍‌ରେ ଥିବା ବିବିଧତା ସମ୍ପର୍କରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଯୁଗାନ୍ତକାରୀ ଗବେଷଣା କାର୍ଯ୍ୟକ୍ରମ ସଫଳଭାବେ ସମ୍ପାଦିତ କଲେ । ନିକଟ ଅତୀତରେ ଜଣେ ଭାରତୀୟଙ୍କର ସମ୍ପୂର୍ଣ୍ଣ ଜିନୋମ୍‌ର ମ୍ୟାପିଙ୍ଗ ଅତ୍ୟନ୍ତ ସଫଳତାର ସହ ସମ୍ପାଦିତ କରାଯାଇପାରିଛି ଏବଂ ଏଭଳି ଅଭୂତପୂର୍ବ ଗବେଷଣା

ସାଫଲ୍ୟତା ପାଇଁ ଭାରତ ଏ କ୍ଷେତ୍ରରେ କାର୍ଯ୍ୟକରୁଥିବା ପୃଥିବୀର ୮ଟି ରାଷ୍ଟ୍ର ସମୂହଙ୍କର ଥିବା ସ୍ୱତନ୍ତ୍ର କ୍ଲବର ବିଶେଷ ସଦସ୍ୟତା ଲାଭ କରିପାରିଛି ।

**(୫) ସୂଚନା ପ୍ରଯୁକ୍ତିବିଦ୍ୟା (Information Technology) :**

ସୂଚନା ଓ ପ୍ରଯୁକ୍ତିବିଦ୍ୟା ହେଉଛି ଖୁବ୍ ନିକଟ ଅତୀତର ଅତ୍ୟନ୍ତ ମନୋଲୋଭା କାହାଣୀଟିଏ ଏବଂ ସମ୍ଭବତଃ ଭାରତବର୍ଷର ବୈଜ୍ଞାନିକ ମାନଚିତ୍ରରେ ଅତ୍ୟନ୍ତ ଜନାଦୃତ ସଫଳ କୀର୍ତ୍ତି ସ୍ତମ୍ଭ ଯାହାକି ରାଷ୍ଟ୍ରର ଅସୁମାରୀ ଜ୍ଞାନ ବୈଭବ ଓ ପ୍ରଚଣ୍ଡ ବିଦ୍ୱତ୍ତାକୁ ଗଗନଚ୍ୟୁମ୍ବୀ ସଫଳତା ପ୍ରଦାନ କରପାରିଛି । ସୁପର କମ୍ପ୍ୟୁଟିଂ କ୍ଷେତ୍ରରେ ଅସାଧାରଣ ଦକ୍ଷତାର ପ୍ରଦର୍ଶନ, ଏକ ଅତ୍ୟନ୍ତ ବିଶାଳ ଓ ଉଚ୍ଚ ଦକ୍ଷତା ସମ୍ପନ୍ନ ସୂଚନା ପ୍ରଯୁକ୍ତି ବିଦ୍ୟା ଧନ୍ୟ ମାନବସମ୍ବଳଏବଂ ପୃଥିବୀର ଅତ୍ୟନ୍ତ ପ୍ରଗତିଶୀଳ ଓ ପାରଦର୍ଶିତା ସମ୍ପନ୍ନ ସୂଚନା ପ୍ରଯୁକ୍ତିବିଦ୍ୟା କମ୍ପାନୀ ମାନଙ୍କରେ ଅତ୍ୟୁଚ୍ଚ ପଦପଦବୀରେ ଅବସ୍ଥାପିତ ହୋଇଥିବା ଉଚ୍ଚମାନଯୁକ୍ତ ଭାରତୀୟ କୁଶଳୀ ଇଞ୍ଜିନିୟର ଓ ପ୍ରଯୁକ୍ତିବିଦ୍ୟାବିତ୍‌ମାନେ ଭାରତର ଗର୍ବ ଓ ଗୌରବ କହିଲେ ଅତ୍ୟୁକ୍ତି ହେବ ନାହିଁ । ସଫ୍ଟୱେୟାର ସର୍ଭିସ୍ ପ୍ରଦାନ କ୍ଷେତ୍ରରେ ଭାରତ ଆଜି ବିଶ୍ୱରେ ଏକ ନମ୍ବର ରାଷ୍ଟ୍ରର ମାନ୍ୟତା ହାସଲ୍ କରିପାରିଛି । ୨୦୦୮ ମସିହାରେ ୫.୭ ବିଲିୟନ୍ ଡ଼ଲାରରୁ ଅଧିକ ମୂଲ୍ୟର ସଫ୍ଟୱେୟାର ରପ୍ତାନୀ କରିଥିଲା ବେଳେ ଭାରତ ୨୦୧୩ ମସିହା ବେଳକୁ ଏହି ପରିମାଣ ଦ୍ୱିଗୁଣିତ ହେବାର ଆଶା ରଖିଛି । ଏହି ସଫଳତା ଅନ୍ୟାନ୍ୟ ସମସ୍ତ ରାଷ୍ଟ୍ରୀୟ ସଫଳତା ଠାରୁ ଟିକିଏ ଅଲଗା କାରଣ ସଫ୍ଟୱେୟାରର ଉତ୍ପାଦନ ଓ ରପ୍ତାନୀ ବହୁଳଭାବେ ଘରୋଇ ଉଦ୍ୟୋଗମାନଙ୍କ କର୍ତ୍ତୃତ୍ୱାଧିନ ଓ ଏହା ସମ୍ପୂର୍ଣ୍ଣ ରପ୍ତାନୀଭିତ୍ତିକ ଅଟେ ।

ଦେଶର ପ୍ରଖ୍ୟାତ ବୈଜ୍ଞାନିକ ତଥା ପ୍ରଧାନମନ୍ତ୍ରୀଙ୍କ ବୈଜ୍ଞାନିକ ପରାମର୍ଶଦାତା କମିଟିର ଅଧ୍ୟକ୍ଷ ପ୍ରଫେସର ସି.ଏନ୍.ଆର୍.ରାଓ କୁହନ୍ତି ଯେ ବିଶ୍ୱ ବିଜ୍ଞାନର ପୃଷ୍ଠଭୂମିରେ ସଂଗଠିତ ହୋଇଥିବା ଏକ ବିଶାଳ ବୈଜ୍ଞାନିକ ପରିବର୍ତ୍ତନ ଯାହା ଭାରତ ସମ୍ପୂର୍ଣ୍ଣଭାବେ ହାତଛଡ଼ା କରିଦେଇଛି ତାହା ହେଲା ବସ୍ତୁବିଜ୍ଞାନ ଓ ତତ୍‌ସହ ଜଡ଼ିତ ପ୍ରଯୁକ୍ତିବିଦ୍ୟା (Material Science & Technology) । ପ୍ରଫେସର ରାଓ ତାଙ୍କର ଦୁଃଖଦ ଅଭିବ୍ୟକ୍ତି ପ୍ରକାଶ କରି କୁହନ୍ତି ଯେ – "ଭାରତ ସେମି କଣ୍ଡକ୍ଟର ମହାବିପ୍ଳବ କ୍ଷେତ୍ରରେ ସେପରି କୌଣସି ଉଲ୍ଲେଖନୀୟ ଅବଦାନ କରିପାରିନାହିଁ । ପ୍ରକୃତରେ ମାଇକ୍ରୋ ଇଲେକ୍ଟ୍ରୋନିକ୍ସ କ୍ଷେତ୍ରରେ ଗବେଷଣା କଲାଭଳି ଆମ ପାଖରେ ସେପରି କୌଣସି ବିଜ୍ଞାନାଗାର ନାହିଁ ।

ଇଲେକ୍ଟ୍ରୋନିକ୍ ଚିପ୍ସ ପ୍ରସ୍ତୁତ କରିବା ପାଇଁ ଆମ ପାଖରେ ମାତ୍ର ଖୁବ୍ କମ୍ ସଂଖ୍ୟକ ଫାଉଣ୍ଡ୍ରି ଅଛି । ଏବେ ବି ଭାରତ ଇଲେକ୍ଟ୍ରୋନିକ୍ ଚିପ୍ସର ପ୍ରସ୍ତୁତି ପାଇଁ ଅନ୍ୟ ବିଦେଶୀ ରାଷ୍ଟ୍ର ଉପରେ ନିର୍ଭର କରୁଛି" । ଯଦିଓ ଏବେ ନାନୋ ଟେକ୍ନୋଲୋଜି କ୍ଷେତ୍ରରେ କିଛିଟା ଦୃଷ୍ଟି ନିକ୍ଷେପ କରାଯାଉଛି ହେଲେ ବସ୍ତୁ ପ୍ରଯୁକ୍ତି ବିଜ୍ଞାନ (Material Science) କ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ ପାଇଁ ଭାରତକୁ ସମୟାନୁରୂପ ବଳିଷ୍ଠ ପଦକ୍ଷେପ ନେବାକୁ ପଡ଼ିବ ବୋଲି ପ୍ରଫେସର ରାଓ କହିଥାନ୍ତି ।

ବିଜ୍ଞାନର ଆଉ ଅନ୍ୟାନ୍ୟ ବହୁ ବିଭାଗ ରହିଛି ଯେଉଁ କ୍ଷେତ୍ରରେ କି ଗତି ପ୍ରଗତି ଯଦିଓ ନାଟକୀୟ ନୁହେଁ ହେଲେ ତାହା କ୍ରମାଗତ ଅଭିବୃଦ୍ଧିମୁଖୀ ହୋଇ ନିଜର ବୈଜ୍ଞାନିକ ରୂପଲାବଣ୍ୟକୁ ଜନସମାଜ ପାଖରେ ପରିପ୍ରକାଶିତ କରୁଛି । ପଞ୍ଜାବ ବିଶ୍ୱବିଦ୍ୟାଳୟର ଭୂତତ୍ତ୍ୱ ବିଭାଗର ଏମେରିଟସ୍ ପ୍ରଫେସର୍ ଡ଼କ୍ଟର ଏ.କେ. ସାହାଣୀ ଉପରୋକ୍ତ ଉକ୍ତିର ପୃଷ୍ଠ ଭୂମିରେ ବିଜ୍ଞାନର ଅଭୂତପୂର୍ବ ଗୁଣଗାରିମାକୁ ପ୍ରକାଶ କରି କୁହନ୍ତି ଯେ – "ଭାରତବର୍ଷର ବୈଜ୍ଞାନିକ ସଫଳତା ଏକାଧିକ ପର୍ବତମାଳାର ଅତ୍ୟୁଚ୍ଚ ଶୃଙ୍ଗ ସଦୃଶ୍ୟ ପ୍ରଦର୍ଶିତ ହୋଇଥାଏ ଯେଉଁଠାରେ କି ଛୋଟ ଛୋଟ ଶୃଙ୍ଗମାନଙ୍କ ସଂଖ୍ୟା ଖୁବ୍ କ୍ୱଚିତ୍ ଦୃଷ୍ଟିଗୋଚର ହୋଇଥାଏ । ପୃଥିବୀର ଗଠନଶୈଳୀ, ଭୂଗର୍ଭ ଜଳସ୍ତରରେ ସଂଗଠିତ ହେଉଥିବା କ୍ରମାଗତ ପରିବର୍ତ୍ତନ ପ୍ରକ୍ରିୟା, ଗତିଶୀଳ ଭୂକମ୍ପ ଓ ସୁନାମି ସଂକ୍ରାନ୍ତୀୟ ପୂର୍ବ ସତର୍କ ସୂଚନା, ମେରୁସଂକ୍ରାନ୍ତୀୟ ଅଧ୍ୟୟନ ଓ ତଥ୍ୟ ସଂଗ୍ରହ ଏବଂ ଶକ୍ତିର ଅନ୍ୟାନ୍ୟ ଉତ୍ସ ଯଥା କୋଇଲା ସ୍ତରରେ ଗଚ୍ଛିତ ଥିବା ମିଥେନ୍ ବାଷ୍ପ ଏବଂ ଗ୍ୟାସ୍ ହାଇଡ୍ରେଟ୍ସ ଆଦି ସଂକ୍ରାନ୍ତୀୟ ଗବେଷଣା ମଧ୍ୟ ଅତ୍ୟନ୍ତ ଉଲ୍ଲେଖନୀୟ ଘଟଣା ଯାହାକି ଭାରତବର୍ଷର ଭୌଗୋଳିକ ପରିଚୟ ଓ ଶକ୍ତି ସମସ୍ୟାର ଅନନ୍ୟ ପଥ ଉନ୍ମୋଚନ କରିବାରେ ନିଶ୍ଚିତ ରୂପେ ସହାୟକ ହେବ ।

ଜଳବାୟୁର ପୂର୍ବାନୁମାନ ବିଜ୍ଞାନ ଭାରତବର୍ଷର ପୃଷ୍ଠଭୂମିରେ ଅତ୍ୟନ୍ତ ଗୁରୁତ୍ୱ ବହନ କରିଥାଏ କାରଣ ଦେଶର ଅର୍ଦ୍ଧାଧିକ କୃଷିକର୍ମ ବୃଷ୍ଟିପାତ ଉପରେ ହିଁ ନିର୍ଭର କରିଥାଏ । ନ୍ୟାସନାଲ୍ ସେଣ୍ଟର ଫର ମିଡ଼ିୟମ ରେଞ୍ଜ ୱେଦର ଫୋରକାଷ୍ଟିଂ (National Centre for Medium Range Weather Forecasting) ର ମୁଖ୍ୟ ଡ଼କ୍ଟର ଏ.କେ. ବୋହରା କୁହନ୍ତି ଯେ କମ୍ପ୍ୟୁଟିଙ୍ଗ ପାୱାର ବା କମ୍ପ୍ୟୁଟର ବ୍ୟବହାର କ୍ଷେତ୍ରରେ ଅସାଧାରଣ ଶକ୍ତିର ଅଧିକାରୀ ହୋଇ ଅଭୂତପୂର୍ବ ଅଭିବୃଦ୍ଧି ହାସଲ କରିବା, ନୂତନ ଅବଜରଭେସନାଲ୍

ପ୍ଲାଟଫର୍ମର ବିକାଶ ଯଥା-ସ୍ୟାଟେଲାଇଟ୍‌ସ ର୍‌ୟାଡ଼ାର୍ସ, ଉଇଣ୍ଡ ପ୍ରୋଲିଫର୍ସ, ସ୍ୱୟଂପରିଚାଳିତ ପାଣିପାଗ କେନ୍ଦ୍ର, ସାମୁଦ୍ରିକ ଭେଳା ଓ ବହୁ ଅନ୍ୟାନ୍ୟ ପ୍ରକ୍ଷେତ୍ର ଏବଂ ଏସବୁ ସହ ଜଡ଼ିତ ନାନାବିଧ ଭୌତିକ ପ୍ରକ୍ରିୟା ଗୁଡ଼ିକୁ ସଠିକ୍ ହୃଦୟଙ୍ଗମ କରିବା କ୍ଷେତ୍ରରେ ସମଗ୍ର ବିଶ୍ୱରେ ବହୁବିଧ ପ୍ରଗତି ସାଧିତ ହୋଇଥିଲେ ମଧ୍ୟ ଭାରତବର୍ଷରେ ଅଗ୍ରଗତିର ଧାରା ଅତ୍ୟନ୍ତ ମନ୍ଥର । ପାଣିପାଗର ପୂର୍ବାନୁମାନ ପାଇଁ ଦେଶରେ ଏପର୍ଯ୍ୟନ୍ତ ଚିରାଚରିତ ପ୍ରକ୍ରିୟା ସାଇନୋପଟିକ୍ (Synoptic) ର ବ୍ୟବହାର କରାଯାଇଆସୁଅଛି ପରନ୍ତୁ ସମଗ୍ର ବିଶ୍ୱ ଅତ୍ୟାଧୁନିକ ନ୍ୟୁମରିକାଲ୍ ୱେଦର ପ୍ରେଡ଼ିକ୍‌ସନ୍ (Numerical Weather Prediction) ପ୍ରକ୍ରିୟାକୁ କେବେଠୁଁ ଆଦରି ସାରିଲାଣି ଯାହାକି ଅତ୍ୟନ୍ତ ଜଟିଳ ନ୍ୟୁମରିକାଲ୍ ମଡ଼େଲ୍‌ର ବ୍ୟବହାର କରିଥାଏ । ଡ଼କ୍ଟର ବୋହରା ଦେଶରେ ଆବଶ୍ୟକୀୟ କମ୍ପ୍ୟୁଟିଙ୍ଗ ପାୱାର ଏବଂ କୁଶଳୀ ମାନବସମ୍ବଳର ଘୋର ଅଭାବ ପାଇଁ ଦୁଃଖ ପ୍ରକାଶ କରୁଥିଲେ ମଧ୍ୟ ସେ ଗଭୀର ଆଶାବାଦୀ ଯେ ସମ୍ପ୍ରତି ଏ କ୍ଷେତ୍ରରେ ନିଆଯାଉଥିବା ଆଧୁନିକୀକରଣ ଯୋଜନା ନିଶ୍ଚିତ ରୂପେ ସୁଫଳ ପ୍ରଦାନ କରିବ ।

ଇଣ୍ଡିଆନ୍ କାଉନ୍‌ସିଲ୍ ଫର୍ ମେଡ଼ିକାଲ୍ ରିସର୍ଚ୍ଚର ମହାନିର୍ଦ୍ଦେଶକ ଡ଼କ୍ଟର ଭି.ଏମ୍. କାଟୋଚ (Dr. V.M. Katoch) କୁହନ୍ତି ଯେ ସ୍ୱାସ୍ଥ୍ୟ କ୍ଷେତ୍ରରେ ବହୁବିଧ ରୋଗର ନିୟନ୍ତ୍ରଣ ଏବଂ ପରମାୟୁ ଅବଧିର ଦ୍ୱିଗୁଣିତ ବୃଦ୍ଧି ହେବା ପ୍ରମୁଖ ସଫଳତା ବୋଲି ବିବେଚନା କରାଯାଇପାରେ । ଯକ୍ଷ୍ମା, କୁଷ୍ଠ ଓ ଅନ୍ୟାନ୍ୟ ରୋଗ ପାଇଁ ସାମ୍ପ୍ରତିକ ରେଜିମେନ୍‌ର ଡ଼ିଜାଇନ୍ କରିବା କ୍ଷେତ୍ରରେ ଭାରତବର୍ଷ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ପରନ୍ତୁ ମେଡ଼ିକାଲ୍ ରିସର୍ଚ୍ଚର ଏହି ଫଳାଫଳରୁ ଟିକିଏ ହେଲେ ବି କୌଣସି ପ୍ରୋଡ଼କ୍ଟ ବା ପ୍ରୋସେସ୍ ଜନ୍ମଲାଭ କରିପାରିନାହିଁ । ସରକାରଙ୍କ ବିଭିନ୍ନ ବିଜ୍ଞାନ ବିଭାଗ ଓ ନିୟନ୍ତ୍ରଣକାରୀ ଏଜେନ୍ସି ମାନଙ୍କ ମଧ୍ୟରେ ସଫଳ ଯୋଗସୂତ୍ର, ସମନ୍ୱୟ ଓ ଉପଯୁକ୍ତ ସିନର୍ଜି ରହିପାରୁନଥିବାରୁ ଏହା ଫଳପ୍ରଦ ହୋଇପାରୁନାହିଁ । ଡ଼କ୍ଟର କାଟୋଚ କୁହନ୍ତି ଯେ ହେଲ୍‌ଥ ସିଷ୍ଟମର ବିକାଶ ହିଁ ପ୍ରକୃତ ଚ୍ୟାଲେଞ୍ଜ ହେବ ଯାହା ଫଳରେ କି ପ୍ରଯୁକ୍ତିବିଦ୍ୟା ଲୋକଙ୍କର ନିକଟତର ହୋଇପାରିବ ।

ବିଜ୍ଞାନର ସମସ୍ତ ବିଭାଗରେ ପ୍ରକାରାନ୍ତରେ ସେହି ଗୋଟିଏ ସମସ୍ୟା ହିଁ ମୁଣ୍ଡଟେକି ଠିଆହୋଇଛି ଯାହା ହେଲା ଉପଯୁକ୍ତ ମାନବ ସମ୍ବଳର ଘୋର ଅଭାବ । ଭୂତତ୍ତ୍ୱରୁ ଆରମ୍ଭ କରି ଜଳବାୟୁ ବିଜ୍ଞାନ, ନାନୋ ଟେକ୍ନୋଲୋଜି ଏବଂ ବାୟୋ

ଟେକ୍ନୋଲୋଜି ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଗ୍ରାଜୁଏଟ୍ ଏବଂ ପୋଷ୍ଟଗ୍ରାଜୁଏଟ୍ ସ୍ତରରେ ନାଁ ଲେଖାଉଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ପୂର୍ବବର୍ଷ ଭଳି ହୁଏତ ସ୍ଥିର ଅଛି ଅବା ହ୍ରାସ ପାଉଛି । ଗବେଷଣା କ୍ଷେତ୍ରରେ ଫଳାଫଳକୁ ତର୍ଜମା କଲେ ଜଣାଯାଏ ଯେ ବିଶ୍ୱରେ ଯେତେସଂଖ୍ୟକ ଗବେଷଣା ନିବନ୍ଧ ପ୍ରକାଶ ପାଇଥାଏ ତାହାର ୨ ପ୍ରତିଶତରୁ ବି କମ୍ ସଂଖ୍ୟକ ଗବେଷଣା ନିବନ୍ଧ ଭାରତବର୍ଷରୁ ପ୍ରକାଶ ପାଇଥାଏ ଏବଂ ସାଇଟେସନ୍ ର୍ୟାଙ୍କିଙ୍ଗ କ୍ଷେତ୍ରରେ ଭାରତର ସ୍ଥାନ ମଧ୍ୟ ଅତି ନିମ୍ନରେ । ବହୁବର୍ଷ ଧରି ଗବେଷଣା କ୍ଷେତ୍ରରେ ପୁଞ୍ଜି ବିନିଯୋଗ ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନର ୧ ପ୍ରତିଶତର ପାଖାପାଖି ପ୍ରାୟ ଘୂରିବୁଲୁଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୫୮ ମସିହାରେ ଗବେଷଣା କ୍ଷେତ୍ରରେ ପୁଞ୍ଜିବିନିଯୋଗର ପରିମାଣ ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନର ୦.୧୬ ପ୍ରତିଶତ ଥିଲା ।

ପ୍ରଫେସର ଭି.ଏସ୍. ରାମମୂର୍ତ୍ତି ୨ଟି ପ୍ରମୁଖ ରାଷ୍ଟ୍ରୀୟ ଦୁର୍ବଳତାକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି । ପ୍ରଥମତଃ ଅନ୍ତର୍ଦ୍ଦେଶୀୟ ଜ୍ଞାନକୌଶଳକୁ ପ୍ରଯୁକ୍ତି ବିଦ୍ୟାରେ ରୂପାନ୍ତରୀକରଣ ତଥା ବଜାର ଗ୍ରହଣଯୋଗ୍ୟ ପ୍ରୋଡ଼କ୍ଟ ଓ ସେବାର ପ୍ରଦାନ ଏବଂ ଦ୍ୱିତୀୟତଃ ଶିଳ୍ପୋଦ୍ୟୋଗୀ ମନୋଭାବ ଏବଂ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଭେଞ୍ଚର ଫାଇନାନ୍ସିଂକୁ ନେଇ ଥିବା ଦୁର୍ବଳ ଇକୋ-ସିଷ୍ଟମ୍ । ହେଲେ ସେ ମଧ୍ୟ ଅତ୍ୟନ୍ତ ଆଶାବାଦୀ । ସେ କୁହନ୍ତି ଯେ "ଭାରତୀୟ ବ୍ୟବସ୍ଥା ସାମ୍ପ୍ରତିକ ବିଶ୍ୱ ପରିବେଶ ଓ ପରିସ୍ଥିତିକୁ ଆଖି ଆଗରେ ରଖି ନିଦ୍ରା ତ୍ୟାଗ କରି ଉଠିବସିଲାଣି । ଉଚ୍ଚଶିକ୍ଷା କ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ ଏବଂ ଶିଳ୍ପସଂସ୍ଥାମାନଙ୍କରେ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମକୁ ନିରନ୍ତର ପ୍ରୋତ୍ସାହନ ପ୍ରଦାନ ନିଶ୍ଚିତ ରୂପେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଯଦି ଭାରତବର୍ଷ ଆନ୍ତର୍ଜାତିକ ଅର୍ଥନୈତିକ ବାସନ୍ଦ ବ୍ୟବସ୍ଥା ସତ୍ତ୍ୱେ ମହାକାଶ ବିଜ୍ଞାନ ଓ ପାରମାଣବିକ ଶକ୍ତି କ୍ଷେତ୍ରରେ ନିଜର ଅଭୂତପୂର୍ବ ବୈଜ୍ଞାନିକ ସଫଳତା ପ୍ରଦର୍ଶନ କରିପାରିଲା ତେବେ ଏହା ଅନ୍ୟାନ୍ୟ ବୈଜ୍ଞାନିକ ପ୍ରକ୍ଷେତ୍ର ମାନଙ୍କରେ ବିଶ୍ୱସ୍ତରୀୟ ପାରଦର୍ଶିତା ବା କାହିଁକି ପଦର୍ଶନ କରିନପାରିବ ?



# ଶିକ୍ଷା ସଂସ୍କାରର ଭବିଷ୍ୟତ

## (Future of Education Reforms)

କେନ୍ଦ୍ର ମାନବସମ୍ବଳ ବିକାଶ ମନ୍ତ୍ରୀ ଶ୍ରୀ କପିଲ୍ ସିବଲ୍ ୨୦୦୯ ମସିହା ମେ' ମାସରେ ଯେତେବେଳେ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟର ଗୁରୁଦାୟିତ୍ୱ ଗ୍ରହଣ କଲେ ସେତେବେଳେ ତାଙ୍କ ସମ୍ମୁଖରେ ସମସ୍ୟାର ଅଗଣିତ ଛୋଟ ବଡ଼ ପାହାଡ଼ ଆଶ୍ଚର୍ଯ୍ୟଜନକ ଭାବେ ମୁଣ୍ଡ ଟେକି ଠିଆ ହୋଇଥିଲା । ଦେଶରେ ଦକ୍ଷ ମାନବ ସମ୍ବଳର ସୃଷ୍ଟିପାଇଁ ଆବଶ୍ୟକୀୟ ଭିତ୍ତିଭୂମିର ପ୍ରତିଷ୍ଠା ତଥା ଆଗଙ୍କା କୁମାରୀକା ବିଛେଇ ହୋଇ ପଡ଼ିଥିବା ଅସଂଖ୍ୟ ଶିକ୍ଷାନୁଷ୍ଠାନର ଦକ୍ଷତା ବୃଦ୍ଧି କ୍ଷେତ୍ରରେ ସମୟ ଉପଯୋଗୀ ପଦକ୍ଷେପ ନେବା ଏକ ମସ୍ତବଡ଼ ଚ୍ୟାଲେଞ୍ଜ ହୋଇଥିଲା । ସର୍ବୋପରି ଏକବିଂଶ ଶତାବ୍ଦୀର ଅର୍ଥନୀତିରେ ଭାରତୀୟ ଛାତ୍ରମାନେ କିପରି ଦକ୍ଷତା ସମ୍ପନ୍ନ ହୋଇ ଯୋଗ୍ୟତା ଓ ଗୁଣରେ ପାରଦର୍ଶିତା ଲାଭ କରିବା ସଙ୍ଗେ ସଙ୍ଗେ ଉପଯୁକ୍ତ ଭାବେ ରୋଜଗାରକ୍ଷମ ହୋଇପାରିବେ ତାହା ଏକ ମସ୍ତବଡ଼ ଆହ୍ୱାନ ଥିଲା ଏବଂ ଶିକ୍ଷା କ୍ଷେତ୍ରରେ ସଂସ୍କାର ହିଁ ତହିଁରୁ ଜନ୍ମଲାଭ କଲା ।

ଭାରତବର୍ଷର ଯୁବସଂଖ୍ୟା ଏବେ ୬୦୦ ନିୟୁତରେ ପହଁଞ୍ଚିଛି ଯାହାକି ବିକଶିତ ରାଷ୍ଟ୍ର ଆମେରିକା, ଜାପାନ ଓ ୟୁନାଇଟେଡ୍ କିଙ୍ଗଡ଼ମ୍ ସମେତ ସମସ୍ତ ଜି-୮ ରାଷ୍ଟ୍ର ସମୂହର ମିଳିତ ଯୁବ ସଂଖ୍ୟାଠାରୁ ଅଧିକ । ୨୦୨୦ ମସିହା ସୁଦ୍ଧା ଭାରତବର୍ଷର ୬୦ ନିୟୁତ ଯୁବକ ଗ୍ରାଜୁଏଟ୍ ଡ଼ିଗ୍ରୀଧାରୀ ହେବେ । ଉଚ୍ଚଶିକ୍ଷା କ୍ଷେତ୍ରରେ ଆମର ସାମ୍ପ୍ରତିକ ମୋଟ୍ ନାମଲେଖା ଅନୁପାତ ବା ଗ୍ରସ ଏନ୍‌ରୋଲ୍‌ମେଣ୍ଟ ରେସିଓ (Gross Enrolement Ratio) ୧୨.୪ ଅଟେ । ଏହାର ଅର୍ଥ ହେଲା ପ୍ରତିବର୍ଷ ପାଶ୍ କରୁଥିବା ୧୦୦ଜଣ ମାଟ୍ରିକ୍ୟୁଲେସନ୍ ଛାତ୍ରଙ୍କ ମଧ୍ୟରୁ କେବଳ ୧୨.୪ ଜଣ ଛାତ୍ର ଉଚ୍ଚଶିକ୍ଷା କ୍ଷେତ୍ରରେ ପ୍ରବେଶ କରିଥାନ୍ତି । ଆମ ଦେଶରେ ସ୍କୁଲକୁ ଯାଉଥିବା ଛାତ୍ରଛାତ୍ରୀମାନଙ୍କ ସଂଖ୍ୟା ସମ୍ପ୍ରତି ୨୨୦ ନିୟୁତ ଅଟେ । ଆମେ ଯଦି ଆମେରିକା ଓ ୟୁରୋପ୍ ଆଦି ବିକଶିତ ରାଷ୍ଟ୍ରମାନଙ୍କୁ ପରିଲକ୍ଷିତ କରିବା ତେବେ ଦେଖିବା ଯେ ସେଠାରେ ଗ୍ରସ ଏନ୍‌ରୋଲମେଣ୍ଟ ରେସିଓ ୭୦ରେ ପହଁଞ୍ଚିଛି । ସବ୍ – ସାହାରାନ୍ ରାଷ୍ଟ୍ରମାନଙ୍କ କ୍ଷେତ୍ରରେ ଏହି ଅଙ୍କ ମାତ୍ର ୬ରେ ସୀମିତ । ଗ୍ରସ ଏନ୍‌ରୋଲ୍‌ମେଣ୍ଟ ରେସିଓ (ମୋଟ୍ ନାମଲେଖା ଅନୁପାତ)

ଆଧାରରେ ଭାରତବର୍ଷ  ବିଶ୍ୱର ସର୍ବନିମ୍ନ ବିକାଶଶୀଳ ରାଷ୍ଟ୍ରମାନଙ୍କ ନିକଟତର ଅଟେ ଏବଂ ବିକଶିତ ରାଷ୍ଟ୍ରମାନଙ୍କଠାରୁ ଏବେ ବହୁ ଦୂରରେ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ବିକଶିତ ରାଷ୍ଟ୍ରମାନଙ୍କ ସହ ଚ୍ୟାଲେଞ୍ଜ କରିବାର ପ୍ରବଳ ଅଭୀପ୍‌ସା ରଖି ଭାରତବର୍ଷ ପ୍ରଗତିର ମହାଦୌଡ଼ରେ ସାମିଲ୍ ହୋଇଛି  ସେହି ରାଷ୍ଟ୍ରମାନଙ୍କ ଠାରୁ ଆମେ ଏବେ ସାତପଛରେ ପଡ଼ିରହିଛୁ । ଏହାହିଁ ନିର୍ମମ ସତ୍ୟ କଥା । ଅର୍ଥନୈତିକ ଓ ସାମାଜିକ ଅଭ୍ୟୁଦୟ ପାଇଁ ଭାରତବର୍ଷର ମହାସଂଗ୍ରାମ ଯଦିଓ ଜାରି ରହିଛି ହେଲେ ଶିକ୍ଷାର ଆଲୋକ ବର୍ତ୍ତିକା ଘରେ ଘରେ ପ୍ରଜ୍ୱଳିତ କରିବାର ଗୁରୁଦାୟିତ୍ୱରୁ ଆମେ ସମ୍ପୂର୍ଣ୍ଣ ନିଷ୍ପ୍ରଭ ରହୁଛୁ ।

୧ ୯ ୯ ୧ ମସିହାରେ ଅର୍ଥନୈତିକ ସଂସ୍କାର ଓ ଜଗତୀକରଣର ମହାପର୍ବରେ ଭାରତବର୍ଷ ସାମିଲ୍ ହେଲା ଏବଂ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଆମେ ବହୁ ବଳିଷ୍ଠ ପଦକ୍ଷେପ ଗ୍ରହଣ କରି ଉଲ୍ଲେଖନୀୟ ମାଇଲ୍ ଖୁଣ୍ଟ ଅତିକ୍ରମ କରି ଆସିଛୁ । ଦେଶର ମୋଟ୍ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି.) ପରିମାଣର ୬୦ ପ୍ରତିଶତ ସର୍ଭିସ ସେକ୍ଟରମାନଙ୍କ ଦ୍ୱାରା ହିଁ ପୂରଣ ହୋଇଥାଏ ଯାହାକି ବର୍ଷକୁ ୧ ୬ ପ୍ରତିଶତ ହାରରେ କ୍ରମାଗତ ଅଭିବୃଦ୍ଧି ହାସଲ କରିଚାଲିଛି । ପରନ୍ତୁ ଏ ସମସ୍ତ ରାଷ୍ଟ୍ରୀୟ ଧନସମ୍ପତ୍ତି ସମାଜର କ୍ଷୁଦ୍ରାତିକ୍ଷୁଦ୍ର ଅଂଶବିଶେଷ ୧ ୨.୪ ପ୍ରତିଶତ ଛାତ୍ର ଯେଉଁମାନେକି ପ୍ରତିବର୍ଷ ସ୍କୁଲ ଶିକ୍ଷା ସମାପ୍ତ କରି ଉଚ୍ଚଶିକ୍ଷା କ୍ଷେତ୍ରରେ ପ୍ରବେଶ କରିଥାନ୍ତି  ସେମାନଙ୍କର ହିଁ ମୁଣ୍ଡ ଝାଳର ଫଳ । ଅର୍ଥାତ୍ ସର୍ଭିସ ସେକ୍ଟରମାନଙ୍କ ଦ୍ୱାରା ଅର୍ଜନ କରାଯାଉଥିବା ଧନସମ୍ପତ୍ତି (Wealth) କେବଳ  ସେହି କ୍ଷୁଦ୍ର ତଥା ସୀମିତ ୧ ୨.୪ ପ୍ରତିଶତ ଛାତ୍ରମାନଙ୍କ ଘର ସଂସାର ମଧ୍ୟରେ ହିଁ ବାଣ୍ଟି ହୋଇଯାଉଛି । ଆମେ ଯାହା ଚାହୁଁଛୁ ଏବଂ ଶୀଘ୍ର ଚାହୁଁଛୁ ତାହା ହେଲା ଧନସମ୍ପତ୍ତି ସୃଷ୍ଟି କରିବାର ପ୍ରଚଣ୍ଡ କ୍ଷମତା ହାସଲ କରିବା ଯାହାକି ଜଗତୀକରଣର ମୁଖ୍ୟ ଆଭିମୁଖ୍ୟ ଥିଲା ଏବଂ ଯେଉଁ କ୍ଷମତା କେବଳ ସୀମିତ ନହୋଇ ସମାଜର ତୃଣମୂଳ ସ୍ତର ପର୍ଯ୍ୟନ୍ତ ପ୍ରସାରିତ ହୋଇପାରିବ । ଉଭୟ ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଶିକ୍ଷା ଅତ୍ୟନ୍ତ ଅପରିହାର୍ଯ୍ୟ ଅଟେ  କିନ୍ତୁ ତାହା ଯଥେଷ୍ଟ ନୁହେଁ । ଦ୍ୱାଦଶ ଶ୍ରେଣୀରୁ ପାଶ୍ କରୁଥିବା ଅଧିକରୁ ଅଧିକ ସଂଖ୍ୟକ ଛାତ୍ର କଲେଜ ମାନଙ୍କରେ ନାଁ ଲେଖାଇବା ଏକାନ୍ତ ଆବଶ୍ୟକ । ସମଗ୍ର ବିଶ୍ୱରେ ଉଚ୍ଚଶିକ୍ଷା କ୍ଷେତ୍ରରେ ହାରାହାରି ଏନ୍‌ରୋଲ୍‌ମେଣ୍ଟ ରେସିଓ (ନାମଲେଖା ଅନୁପାତ) ୨ ୭ ଅଟେ । ଅର୍ଥନୈତିକ ଅଭିବୃଦ୍ଧିକୁ ସମଗ୍ର ରାଷ୍ଟ୍ରରେ ସମପରିମାଣରେ ପହଁଞ୍ଚାଇବାକୁ ଏକ ପ୍ଲାଟଫର୍ମର ସୃଷ୍ଟି କରିବାକୁ ହେଲେ ଆମକୁ ୨ ୦ ୨ ୦ ମସିହା ସୁଦ୍ଧା ଏହି ଅନୁପାତକୁ ୩୦ରେ ପହଁଞ୍ଚାଇବାକୁ ପଡ଼ିବ ।

କପିଲ୍ ସିବଲ୍ କୁହନ୍ତି ଯେ ଜନସାଧାରଣ ବହୁସମୟରେ ଭାବିଥାନ୍ତି ଯେ ମୁଁ ବିଭିନ୍ନ ପ୍ରଶାସନିକ, ବୈଧାନିକ ଏବଂ ଅମଲାତାନ୍ତ୍ରିକ ପକ୍ରିୟାର କିକ୍-ଷ୍ଟାଟ୍ ବା ଶୁଭାରମ୍ଭ କଲାବେଳେ ଅତ୍ୟନ୍ତ ଦ୍ରୁତଗତିରେ ଧାବମାନ ହେଉଛି ଯାହାକି ଦୀର୍ଘଦିନ ଧରି ଚୁଲିମୁଣ୍ଡରେ ମୁହଁମାଡ଼ି ପଡ଼ିରହିଥିବା ଭାରତୀୟ ଶିକ୍ଷା ବ୍ୟବସ୍ଥାରେ ସଂସ୍କାର ପକ୍ରିୟାକୁ ତ୍ୱରାନ୍ୱିତ କରିବ । ମୁଁ ପୁନଶ୍ଚ ଦୋହରାଇବାକୁ ଚାହେଁ ଯେ ମୁଁ ଆଦୌ ଦ୍ରୁତ ଗତିରେ ଧାବମାନ ହେଉନାହିଁ । ବରଂ ମୁଁ ୧୮ବର୍ଷ ପଛରେ ପଡ଼ିରହିଛି । ଅର୍ଥନୈତିକ ସଂସ୍କାର ବ୍ୟବସ୍ଥା ସହ ଶିକ୍ଷା କ୍ଷେତ୍ରରେ ସଂସ୍କାର ଆମ ଦେଶରେ ଏକାସାଙ୍ଗରେ କାର୍ଯ୍ୟକାରୀ ହେବା ଉଚିତ୍ ଥିଲା କିନ୍ତୁ ତାହା ହେଲା ନାହିଁ। ଆଜି ପରିସ୍ଥିତି ଏପରି ହୋଇଛି ଯେ ଦେଶର ହଜାର ହାଜର ବି.ଏ. ଡ଼ିଗ୍ରୀଧାରୀ ଛାତ୍ର ସପକିପର ବା ଦୋକାନ ଜଗୁଆଳୀ ହୋଇ ବସୁଛନ୍ତି ଅବା ତାଠାରୁ ଆହୁରି ନିମ୍ନସ୍ତରର ଚାକିରୀ ଯଥା ଅଫିସ୍ ପିଅନ ବା ସିକ୍ୟୁରିଟି ଗାର୍ଡ଼ ଭାବେ ଜୀବିକା ନିର୍ବାହ କରୁଛନ୍ତି । ଖୁଚୁରା ବ୍ୟବସାୟ କ୍ଷେତ୍ରରେ ଚାକିରୀ ଭଲ ମିଳୁଛି କାରଣ ଯୁବ ବି.ଏ. ଅବା ବି.ଏସ୍‌ସି. ଡ଼ିଗ୍ରୀଧାରୀ ଛାତ୍ରମାନେ ଶିଳ୍ପ ସଂସ୍ଥା ମାନଙ୍କରେ ଅଲୋଡ଼ା ହେଉଛନ୍ତି କାରଣ ଶିଳ୍ପ ସଂସ୍ଥାମାନେ ଆବଶ୍ୟକ କରୁଥିବା ଦକ୍ଷତା ଓ କାରିଗରୀ ପଣିଆ ଏହି ଯୁବ ସ୍ନାତକମାନଙ୍କ ପାଖରେ ନାହିଁ । ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ମାନୁଫ୍ୟାକଚରିଂଗ ଓ ଅନ୍ୟାନ୍ୟ ଆନୁସଙ୍ଗିକ କ୍ଷେତ୍ରଗୁଡ଼ିକରେ ପ୍ରଚୁର ପୁଞ୍ଜିବିନିଯୋଗର ଆବଶ୍ୟକତା ରହିଛି ଯାହାକି ବହୁ ସଂଖ୍ୟାରେ ଚାକିରି ସୃଷ୍ଟି କରିପାରିବ । ପରନ୍ତୁ ତାହା ଇନ୍ଦ୍ରଧନୁର ଆଉ ଏକ ରୂପ । ଆତ୍ମନିର୍ଭରଶୀଳ ହେବା କ୍ଷେତ୍ରରେ ଯେକୌଣସି ବ୍ୟକ୍ତି ବିଶେଷ ପାଇଁ ପ୍ରଥମ ଓ ସର୍ବପ୍ରଥମ ଆବଶ୍ୟକତାଟି ହେଉଛି ଜ୍ଞାନ, ଯାହାକି ତାକୁ ଉପଯୁକ୍ତ ନିଯୁକ୍ତି ସୁଯୋଗ ପ୍ରଦାନ କରିବ ଅବା ସେ ମଧ୍ୟ ନିଜେ ଏକ ସଫଳ ଶିଳ୍ପୋଦ୍ୟୋଗୀ ହୋଇପାରିବ ଅବା କୌଣସି ପ୍ରତିଷ୍ଠିତ ଶିଳ୍ପ ସଂସ୍ଥାରେ ସେ ଉତ୍ତମ ନିଯୁକ୍ତିଟିଏ ପାଇପାରିବ । ଏଭଳି ଏକ ପୃଷ୍ଠଭୂମିରେ ବିଚାର କଲେ ଏକାସାଙ୍ଗରେ ପ୍ରାଥମିକ, ମାଧ୍ୟମିକ ଏବଂ ଉଚ୍ଚଶିକ୍ଷା କ୍ଷେତ୍ରରେ ବହୁଳ ପରିମାଣରେ ସଂସ୍କାର ବ୍ୟବସ୍ଥାର ଆବଶ୍ୟକତା ଅପରିହାର୍ଯ୍ୟ ଅଟେ । ମୁଁ ସଂସ୍କାର କାହାଣୀଟିକୁ ପ୍ରଥମେ ସେହି ସ୍ତରରୁ ହିଁ ଆରମ୍ଭ କରିବାକୁ ଚାହୁଁଛି ଯେଉଁଠିକି ଶିଶୁଟିଏ ପ୍ରାରମ୍ଭିକ ସ୍ତରରେ ଶିକ୍ଷାର ପ୍ରଥମ ସୋପାନରେ ପଦାର୍ପଣ କରି ପୁସ୍ତକ ଜଗତ ସହ ପରିଚିତ ହୋଇଥାଏ ଏବଂ ଖଡ଼ି ସିଲଟ ଓ କାଗଜ କଲମ ସହ ନିବିଡ଼ ସମ୍ପର୍କ ସ୍ଥାପନ କରିଥାଏ – ତାହା ହେଲା ପ୍ରାଥମିକ ଶିକ୍ଷା ।

ଭାରତ ଦୀର୍ଘ ୨୦୦ ବର୍ଷକାଳ କ୍ରୁର ଉପନିବେଶବାଦର କରାଳ କବଳରେ ପଡ଼ି ଲାଂଛିତ, ଅବହେଳିତ ଓ ଭୂଲୁଣ୍ଠିତ ହେବା ସଙ୍ଗେ ସଙ୍ଗେ ଏକ ବିଶାଳ ଓ ସର୍ବ ଦିଗ ବ୍ୟାପ୍ତ ଜନସମୁଦ୍ରକୁ ଧାରଣ କରି ବିଶ୍ୱ ବୁକୁରେ ସଗର୍ବେ ଦଣ୍ଡାୟମାନ ହେବା ସତରେ ଆଇମା'ର କାହାଣୀପରି ମଜାଳିଆ ଗପଟିଏ ନୁହେଁତ ଆଉ କ'ଣ ? ନିରକ୍ଷରତାର ବ୍ୟାଧିକୁ ପୂର୍ବପୁରୁଷମାନଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ଅର୍ଜନ କରି ଅହରହ ସଂଗ୍ରାମ କରିଚାଲିଥିବା ଭାରତବର୍ଷ ତାର ଗ୍ରାମୀଣ ଇଲାକାରେ ଉପଲବ୍ଧ ଥିବା ପ୍ରାଥମିକ ଶିକ୍ଷାର ନ୍ୟୂନତମ ଭିତ୍ତିଭୂମିକୁ କେବଳ ପାଥେୟ କରି ପଡ଼ିରହିଛି । ୧୯୫୦ ମସିହାରେ ଭାରତୀୟ ସମ୍ବିଧାନର ପ୍ରଚଳନ କାଳରୁ ୬ବର୍ଷରୁ ୧୪ ବର୍ଷ ବୟସର ପିଲାମାନଙ୍କୁ ଶିକ୍ଷା ଅଧିକାର ପ୍ରଦାନ କରିବା ମୌଳିକ ଅଧିକାରର ଅନ୍ତର୍ଭୁକ୍ତ ବୋଲି ବିବେଚିତ ହୋଇ ଆସୁଅଛି । ୧୯୬୮ ଓ ୧୯୮୬ ମସିହାର ଜାତୀୟ ଶିକ୍ଷାନୀତି ଆଧାରରେ ଗୋଟିଏ ପରେ ଗୋଟିଏ ସରକାର ଦେଶରେ ବହୁ ଉନ୍ନୟନ ମୂଳକ ପଦକ୍ଷେପ ଗ୍ରହଣ କଲେ ତଥା ଆନୁଷ୍ଠାନିକ ଓ ପ୍ରଶାସନିକ ଫ୍ରେମୱାର୍କ ମଧ୍ୟରେ ସବୁସ୍ତରରେ ଶିକ୍ଷାର ପ୍ରସାର ପାଇଁ ମଧ୍ୟ ନାନାବିଧ କାର୍ଯ୍ୟକ୍ରମ ରୂପାୟନ କଲେ । ଫଳସ୍ୱରୂପ ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ୧୯୯୧ ମସିହା ସୁଦ୍ଧା ଭାରତବର୍ଷର ୮୦ ପ୍ରତିଶତ ଶିଶୁ ବାପା ମା'ଙ୍କ କୋଳ ଛାଡ଼ି ପ୍ରଥମ ଶ୍ରେଣୀରେ ନାମ ଲେଖାଇଲେ ଓ ପାଠପଢ଼ାରେ ଶ୍ରୀଗଣେଶ ଆରମ୍ଭ କଲେ । ଜାତୀୟ ସାକ୍ଷରତାର ହାର ଯାହାକି ୧୯୫୧ ମସିହାରେ ୨୦ ପ୍ରତିଶତରୁ ବି କମ୍ ଥିଲା ତହିଁରେ ଅଭିବୃଦ୍ଧି ଘଟି ୨୦୦୧ ମସିହା ବେଳକୁ ତାହା ୬୪ ପ୍ରତିଶତରେ ପହଁଞ୍ଚିଗଲା । ହେଲେ ସବୁଠାରୁ ବଡ଼ ସମସ୍ୟାଟି ହେଲା ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଶିକ୍ଷା ପ୍ରଦାନରେ ମସ୍ତବଡ଼ ଅଭାବ ଏବଂ ଏହି ଅଭାବର ମୂଳକାରଣଟି ହେଲା ସରକାରଙ୍କ ଦ୍ୱାରା ପରିଚାଳିତ ପ୍ରାଥମିକ ଓ ମାଧ୍ୟମିକ ସ୍କୁଲଗୁଡ଼ିକରେ ଥିବା ଅତ୍ୟନ୍ତ ନିମ୍ନସ୍ତରର ଭିତ୍ତିଭୂମି । ବୋଝ ଉପରେ ନଳିତା ବିଡ଼ା ପରି ସ୍କୁଲମାନଙ୍କରେ ଶିକ୍ଷକମାନଙ୍କର ଘୋର ଅଭାବ ଏବଂ ମୌଳିକ ଓ ପ୍ରାଥମିକ ଶିକ୍ଷାକୁ ୬ବର୍ଷରୁ ୧୪ ବର୍ଷ ବୟସ ମଧ୍ୟରେ ଥିବା ପିଲାମାନଙ୍କ କ୍ଷେତ୍ରରେ ବାଧ୍ୟତାମୂଳକ ଭାବେ ଲାଗୁ କରିବାକୁ ନେଇ ପ୍ରଚଳିତ ନୀତିନିୟମରେ ଥିବା ଲଗାମଛଡ଼ା ବ୍ୟବସ୍ଥା ଆମର ସବୁକିଛି ପ୍ରଚେଷ୍ଟାରେ ପାଣି ପକେଇ ଦେଉଛି । ଆମକୁ ନିଶ୍ଚିତ ଭାବେ ମଧ୍ୟ ମନେରଖିବାକୁ ପଡ଼ିବ ଯେ ଭାରତବର୍ଷରେ ଏବେ ବି ସାକ୍ଷରତାର ପରିମାପକ ଅତ୍ୟନ୍ତ ମୌଳିକ ସ୍ତରରେ ଲେଖିବା ଓ ପଢ଼ିବା ପାଇଁ ଜଣେ ବ୍ୟକ୍ତିର ସର୍ବନିମ୍ନ ଦକ୍ଷତାକୁ ନେଇ

ବିବେଚିତ ହୋଇଥାଏ । ପୁନଶ୍ଚ ଯେତିକି ଛାତ୍ର ମୌଳିକ ଶିକ୍ଷା ଲାଭ କରିଥାନ୍ତି ତନ୍ମଧ୍ୟରୁ ୫୦ ପ୍ରତିଶତରୁ ଅଧିକ ସଂଖ୍ୟକ ଛାତ୍ର ଆଉ ଉପର ଶ୍ରେଣୀରେ ପାଠ ପଢ଼ନ୍ତି ନାହିଁ । ଏହାହିଁ ହେଲା ଆମ ଦେଶରେ ପ୍ରଚଳିତ ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥାର ପ୍ରତିଛବି ।

୨୦୦୧ ମସିହାରେ ଭାରତ ସରକାର ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମ ଆରମ୍ଭ କଲେ ଏବଂ ଏହି କାର୍ଯ୍ୟକ୍ରମର ମୁଖ୍ୟ ଆଭିମୁଖ୍ୟ ଥିଲା ଯେ ୨୦୦୫ ମସିହା ସୁଦ୍ଧା ପ୍ରତ୍ୟେକ ଭାରତୀୟ ଶିଶୁ ନିଶ୍ଚିତ ରୂପେ ସ୍କୁଲକୁ ପାଠ ପଢ଼ିବାକୁ ଯାଉଥିବ । ଏ କ୍ଷେତ୍ରରେ କିଛି ପରିମାଣରେ ସଫଳତା ନିଶ୍ଚିତ ରୂପେ ମିଳିପାରିଛି ଯାହାଫଳରେ କି ସ୍କୁଲମାନଙ୍କରେ ନାମଲେଖା ହାର ୯୦ ପ୍ରତିଶତରୁ ବି ଅଧିକ ହୋଇପାରିଛି ଏବଂ ଆରମ୍ଭରୁ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ପୁଞ୍ଜି ବରାଦରେ କ୍ରମାଗତ ଅଭିବୃଦ୍ଧି ମଧ୍ୟ ହାସଲ କରାଯାଇପାରିଛି । ୨୦୦୯-୨୦୧୦ ଆର୍ଥିକ ବର୍ଷରେ ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମର ପ୍ରମୁଖ ଆଭିମୁଖ୍ୟର ପ୍ରାୟ ୮୦ ପ୍ରତିଶତ ହାସଲ କରାଯାଇପାରିଛି ବୋଲି ମାନବସମ୍ବଳ ବିକାଶ ମନ୍ତ୍ରଣାଳୟର ଆଭ୍ୟନ୍ତରୀଣ ରିପୋର୍ଟ ପ୍ରକାଶ କରିଛି । ହେଲେ ମୁଦ୍ଦାର କେନ୍ଦ୍ରବିନ୍ଦୁଟି ହେଲା ଯୋଗ୍ୟତମ ଶିକ୍ଷକଙ୍କ ନିଯୁକ୍ତି ଏବଂ ଗ୍ରାମୀଣ ଇଲାକାରେ ବାପା ମା' ମାନେ କିପରି ସେମାନଙ୍କ ପିଲାମାନଙ୍କୁ ନିଶ୍ଚିତ ରୂପେ ସ୍କୁଲକୁ ପଠାଇବେ - ତାହାହିଁ ହେଲା ସିନ୍ଦୁକର ଅସଲ ଚାବିକାଠି ।

୨୦୦୨ ମସିହାରେ ସେତେବେଳକାର କେନ୍ଦ୍ରସରକାର ୮୬ତମ ସମ୍ବିଧାନ ସଂଶୋଧନ ବିଲ୍ ପାଶ୍ କରାଇଲେ ଓ ତାର ୨୧ (କ) ଧାରାରେ ଉଲ୍ଲେଖ ଅଛି ଯେ ୬ ବର୍ଷରୁ ୧୪ ବର୍ଷ ମଧ୍ୟରେ ଥିବା ଦେଶର ସମସ୍ତ ଶିଶୁ ମାଗଣା ଓ ବାଧ୍ୟତାମୂଳକ ଶିକ୍ଷା ଲାଭ କରିବେ । ଏହି ସମ୍ବିଧାନ ସଂଶୋଧନର ପରିସର ମଧ୍ୟରେ କାର୍ଯ୍ୟକରି ଜାତୀୟ ଆଭିମୁଖ୍ୟକୁ ହାସଲ କରିବା ପାଇଁ ୨୦୦୭ ଓ ପରେ ଅଗଷ୍ଟ ୨୦୦୯ରେ ମାଗଣା ଓ ବାଧ୍ୟତାମୂଳକ ଶିକ୍ଷା ଲାଭ କରିବାର ଅଧିକାର ପାଇଁ ପାର୍ଲାମେଣ୍ଟରେ ଆଇନ୍ ପ୍ରଣୟନ ହେଲା । ଏହି ଆଇନ୍ ଏବେ ଉଭୟ କେନ୍ଦ୍ର ଓ ରାଜ୍ୟସରକାରମାନଙ୍କ ପାଇଁ ବାଧ୍ୟତାମୂଳକ ହେବ ଯଦ୍ୱାରା ସେମାନେ ମିଳିତ ଭାବେ କାର୍ଯ୍ୟକ୍ରମ ହାତକୁ ନେଇ ୬ରୁ ୧୪ ବର୍ଷ ବୟସର ଶିଶୁମାନଙ୍କୁ ସମ୍ପୂର୍ଣ୍ଣ ମାଗଣା ଓ ବାଧ୍ୟତାମୂଳକ ମୌଳିକ ଶିକ୍ଷା ପ୍ରଦାନ କରିବେ ଏବଂ ଏଥିପାଇଁ ଆବଶ୍ୟକୀୟ ଭିତ୍ତିଭୂମି ମଧ୍ୟ ପ୍ରତିଷ୍ଠା କରିବେ । ପ୍ରତ୍ୟେକ ସ୍ତରରେ ପ୍ରତ୍ୟେକ ରାଜ୍ୟସରକାରଙ୍କର ଦାୟିତ୍ୱ ହେଲା ପିଲାମାନଙ୍କର ନାମଲେଖା, ଉପସ୍ଥାନ ଏବଂ ବାଧ୍ୟତାମୂଳକ ଶିକ୍ଷା ଲାଭ ଓ ତାର ପରିସମାପ୍ତି ପ୍ରକ୍ରିୟାକୁ

ସଠିକ୍ ଭାବେ ତଦାରଖ ଏବଂ ମନିଟରିଂ କରିବା । ସୁତରାଂ ଜଣେ ଶିଶୁର ଜୀବନରେ ଶିକ୍ଷାର ପ୍ରାରମ୍ଭିକ ଆଧାରଶିଳା ସ୍ଥାପନା କରିବା ବିଶେଷ କରି ଅର୍ଥନୈତିକ ଦୁର୍ବଳ ଶ୍ରେଣୀର ପରିବାରରୁ ଆସିଥିବା ଶିଶୁମାନଙ୍କ ପାଇଁ ଶିକ୍ଷା ଅଧିକାରର ପ୍ରଚଳନ (Right to Education) ଏକ ଅତ୍ୟନ୍ତ ଜଟିଳ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅପରପକ୍ଷରେ ଏହି ଲକ୍ଷ୍ୟ ପଥରେ ଦ୍ୱିତୀୟ ପଦକ୍ଷେପଟି ମଧ୍ୟ ଠିକ୍ ସମପରିମାଣରେ ଏକ ବୃହତ୍ତର ରୂପରେଖର ଅଧିକାରୀ ଅଟେ । ଥରେ ଜଣେ ଛାତ୍ର ପ୍ରାଥମିକ ସ୍ତରର ଶିକ୍ଷା ପରିସମାପ୍ତି କରି ସାରିଲା ପରେ ଏପରି ଏକ ସ୍ତରରେ ପହଁଞ୍ଚିଯାଇଥାଏ ଯେ ଯେଉଁଠାରେ କି ସେ ଆହୁରି ଅଧିକ ମୌଳିକ ଜ୍ଞାନର ଆହରଣ କରିବାକୁ ଆଗଭର ହୋଇ କଲେଜ ଶିକ୍ଷାପାଇଁ ନିଜକୁ ପ୍ରସ୍ତୁତ କରିଥାଏ । ତେଣୁ ପ୍ରାଥମିକ ଓ ଉଚ୍ଚଶିକ୍ଷା କ୍ଷେତ୍ର ପରି ମାଧ୍ୟମିକ ସ୍ତରରେ ଶିକ୍ଷା ସଂସ୍କାର ବ୍ୟବସ୍ଥାର ପ୍ରଚଳନ ମଧ୍ୟ ନିତାନ୍ତ ଅପରିହାର୍ଯ୍ୟ ଅଟେ । ପ୍ରଥମତଃ ବିଗତ କେତେବର୍ଷ ଧରି ଏହା ପରିଲକ୍ଷିତ ହେଉଛି ଯେ ୧୪ରୁ ୧୮ ବର୍ଷ ବୟସର ଛାତ୍ରଛାତ୍ରୀମାନେ ବିଶେଷ କରି ବଡ଼ ବଡ଼ ସହର ଓ ଟାଉନ୍ ମାନଙ୍କରେ ନିଜ ଜୀବନରୁ ପାଣି ଛଡ଼େଇ ଦେଇ ଆତ୍ମହତ୍ୟାର ପଥ ବରଣ କରୁଛନ୍ତି ଏବଂ ବହୁତ କ୍ଷେତ୍ରରେ ପରୀକ୍ଷା ଓ ପାଠପଢ଼ାର ଚାପ ଏଥିପାଇଁ ମୁଖ୍ୟତଃ ଦାୟୀ ବୋଲି କୁହାଯାଉଛି । ଏଭଳି ଅଭାବନୀୟ ଘଟଣା ଦେଶପାଇଁ ଅତ୍ୟନ୍ତ ଲଜ୍ଜାକର ବ୍ୟାପାର ଅଟେ ଏବଂ ଏଥିପାଇଁ କେବଳ ପିତାମାତା ଯେ ସେମାନଙ୍କର ଯୁବ ସନ୍ତାନସନ୍ତତିମାନଙ୍କୁ ହରାଇଲେ ତାହା ନୁହେଁ ବରଂ ଏଭଳି ଘଟଣା ଘଟିବା ବାରମ୍ବାର ପ୍ରମାଣ କରୁଛି ଯେ ସମ୍ପ୍ରତି ଦଶମ ଓ ଦ୍ୱାଦଶ ଶ୍ରେଣୀରେ ପ୍ରଚଳିତ ହେଉଥିବା ପରୀକ୍ଷା ବ୍ୟବସ୍ଥା ନିଶ୍ଚିତ ରୂପେ ପରିବର୍ତ୍ତନ ସାପେକ୍ଷ ଯଦ୍ୱାରା ଏଭଳି ଭୟାନକ ପରିସ୍ଥିତିରୁ ଆମ ସମାଜ ବ୍ୟବସ୍ଥା ବର୍ତ୍ତିଯାଇପାରିବ । ଦ୍ୱିତୀୟତଃ ଅନ୍ୟ ଏକ ଚିନ୍ତାଜନକ ବ୍ୟାପାର ହେଲା ୨୦୦୯ ମସିହାର ଏକ ବିଶ୍ୱବ୍ୟାଙ୍କ ରିପୋର୍ଟ ଉଲ୍ଲେଖ କରିଛି ଯେ ଭାରତବର୍ଷର ବିଭିନ୍ନ ମାଧ୍ୟମିକ ସ୍କୁଲରେ ପଢୁଥିବା ପ୍ରତି ୧୦୦ଜଣ ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ୪୮ଜଣ ଛାତ୍ରଛାତ୍ରୀ ମାଧ୍ୟମିକ ଶିକ୍ଷା ସମାପ୍ତ କରିପାରିନଥାନ୍ତି । ଏ କ୍ଷେତ୍ରରେ ଭିଏତ୍‌ନାମ ଓ ବଙ୍ଗଳାଦେଶ ଠାରୁ ଭାରତବର୍ଷର ଅବସ୍ଥା ଆହୁରି ସାଂଘାତିକ । ମୁଣ୍ଡପିଛା ଆୟ କ୍ଷେତ୍ରରେ ଭିଏତ୍‌ନାମ ଓ ବଙ୍ଗଳାଦେଶ ଭାରତଠାରୁ ପଛରେ ପଡ଼ିଥିଲେ ମଧ୍ୟ ମାଧ୍ୟମିକ ସ୍କୁଲ ସ୍ତରରେ ମୋଟ ନାମଲେଖା ଅନୁପାତ କ୍ଷେତ୍ରରେ ଭାରତ ଏହି

ଦେଶଙ୍କ ଠାରୁ ପଛରେ ପଡ଼ିରହିଛି । ମାଧ୍ୟମିକ ସ୍କୁଲ ସ୍ତରରେ ମୋଟ୍ ନାମଲେଖା ଅନୁପାତ ଭାରତବର୍ଷ କ୍ଷେତ୍ରରେ ୪୦ ପ୍ରତିଶତ ଥିଲା ବେଳେ ପୂର୍ବ ଏସୀୟ ରାଷ୍ଟ୍ରମାନଙ୍କର ୭୦ ପ୍ରତିଶତ ଏବଂ ଲାଟିନ୍ ଆମେରିକା ରାଷ୍ଟ୍ରମାନଙ୍କର ୮୨ ପ୍ରତିଶତ ଅଟେ ।

ମାନ୍ୟବର ମନ୍ତ୍ରୀ ମହୋଦୟ କପିଲ୍ ସିବଲ୍ କୁହନ୍ତି ଯେ ପରୀକ୍ଷାର ବୋଝ ପିଲାମାନଙ୍କ ମୁଣ୍ଡରୁ ଓହ୍ଲାଇ ଦେବା ପାଇଁ ଭାରତ ସରକାର ୨୦୦୯ ମସିହାରେ ଏକ ଐତିହାସିକ ପଦକ୍ଷେପ ଗ୍ରହଣ କଲେ । ୧୦୦ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ଦେଶରେ ପ୍ରଚଳିତ ଥିବା ବାର୍ଷିକ ପରୀକ୍ଷା (Year-end Examination) ଓ ନିର୍ଦ୍ଦିଷ୍ଟ ଅବଧିର ପରିସମାପ୍ତି ପରେ ହେଉଥିବା ପରୀକ୍ଷା (Term-end Examination) ପକ୍ରିୟାର ଉଚ୍ଛେଦ କରାଗଲା । ସମଗ୍ର ଭାରତବର୍ଷରେ ସେଣ୍ଟ୍ରାଲ୍ ବୋର୍ଡ଼ ଅଫ୍ ସେକେଣ୍ଡାରୀ ଏଜୁକେସନ୍‌ରେ ପଢୁଥିବା ସିନିୟର ସେକେଣ୍ଡାରୀ ସାର୍ଟିଫିକେଟ୍ ଅବା ଦଶମ ଶ୍ରେଣୀ ବୋର୍ଡ଼ ପରୀକ୍ଷା କ୍ଷେତ୍ରରେ ଏହି ଉଚ୍ଛେଦ ପକ୍ରିୟା ଲାଗୁହେଲା । ୨୦୧୦-୨୦୧୧ ଶିକ୍ଷା ବର୍ଷଠାରୁ ଦଶମ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ବାର୍ଷିକ ବୋର୍ଡ଼ ପରୀକ୍ଷା ଦେବା ଇଚ୍ଛାଧିନ ହୋଇଯିବ ଏବଂ ସେହି ଛାତ୍ରମାନେ ହିଁ କେବଳ ଦଶମ ବୋର୍ଡ଼ ପରୀକ୍ଷା ଦେବେ ଯେଉଁମାନେ କି ଦଶମ ଶ୍ରେଣୀର ପରବର୍ତ୍ତୀ ଶିକ୍ଷା ଲାଭ କରିବା ପାଇଁ ଆଉ ଏକ ସ୍କୁଲକୁ ଟ୍ରାନ୍ସଫରରେ ଯିବା ପାଇଁ ଇଚ୍ଛୁକ ହେବେ । ପୁନଶ୍ଚ ନବମ ଓ ଦଶମ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ଏକ ଗ୍ରେଡ଼େସନ୍ ସିଷ୍ଟମର ମଧ୍ୟ ପ୍ରଣୟନ କରାଯାଇଛି ଏବଂ ପିଲାମାନଙ୍କ ମୁଣ୍ଡରେ ବର୍ଷ ଶେଷରେ ପରୀକ୍ଷାର ଏକ ମସ୍ତବଡ଼ ବୋଝ ଲଦି ଦେବା ବଦଳରେ ସେମାନଙ୍କୁ ବର୍ଷସାରା ଏହି ଗ୍ରେଡ଼େସନ୍ ମାର୍କ ପ୍ରଦାନ କରାଯିବ । କେବଳ ଏକାଡ଼େମିକ୍ ବିଷୟ ବସ୍ତୁ ଗୁଡ଼ିକର କୃତିତ୍ୱ ଉପରେ ପିଲାମାନଙ୍କର ସମ୍ପୂର୍ଣ୍ଣ ଦକ୍ଷତାର ନିର୍ଣ୍ଣୟ କରାନଯାଇ ଖେଳକୁଦ (Sports), ଜୀବନ ନିର୍ବାହ କ୍ଷେତ୍ରରେ ସେମାନଙ୍କର ଦକ୍ଷତା (Life Skill), ସାମାଜିକ କ୍ଷେତ୍ରରେ ଦକ୍ଷତା (Social Skill) ଆଦି ଅନ୍ୟାନ୍ୟ ବହୁ କ୍ଷେତ୍ରରେ ମଧ୍ୟ ସେମାନଙ୍କର ସାମଗ୍ରିକ କୃତିତ୍ୱକୁ ବିଚାରକୁ ନିଆଯିବ । ଏକାସମୟରେ କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ବୋର୍ଡ଼ [Central Advisory Board of Education (CABE)] ର ପୂର୍ଣ୍ଣ ସାହଚର୍ଯ୍ୟରେ ଦେଶରେ ଥିବା ସମସ୍ତ ଶିକ୍ଷା ବୋର୍ଡ଼ର ଅଙ୍କ ଓ ବିଜ୍ଞାନ ବିଭାଗରେ ଏକାରକମ ପାଠ୍ୟକ୍ରମର ପ୍ରଚଳନ ପାଇଁ ବେଶ୍ ଉଲ୍ଲେଖନୀୟ ଅଗ୍ରଗତି ପରିଲକ୍ଷିତ ହୋଇଛି ଏବଂ ଏଥିପାଇଁ ଆବଶ୍ୟକୀୟ ନୀତିନିୟମ ଓ ଧାରା ମଧ୍ୟ ଖୁବ୍ ଶୀଘ୍ର କାର୍ଯ୍ୟକାରୀ ହେବାକୁ ଯାଉଛି । ଏଭଳି ପ୍ରଚେଷ୍ଟାର ଲକ୍ଷ୍ୟ

ହେଲା ଦେଶରେ ଗୁଣାତ୍ମକ ଶିକ୍ଷାର ବିକାଶ ଏବଂ ଛାତ୍ରଛାତ୍ରୀମାନଙ୍କୁ ସେମାନଙ୍କର ଯୋଗ୍ୟତା ଭିତ୍ତିରେ ବିଭିନ୍ନ କ୍ଷେତ୍ରରେ ଗ୍ରେଡ୍ ଅନୁଯାୟୀ ନାମାଙ୍କିତ କରିବା । ଏହାଫଳରେ ଛାତ୍ରଛାତ୍ରୀମାନେ ଅତିରିକ୍ତ ପ୍ରୋତ୍ସାହନ ପାଇ ନିର୍ଦ୍ଧାରିତ ପାଠ୍ୟକ୍ରମ ସହ ଓତଃପ୍ରୋତ ଭାବେ ଜଡ଼ିତ ରହି ସମ୍ପୂର୍ଣ୍ଣ ମାଧ୍ୟମିକ ଶିକ୍ଷାକୁ ପ୍ରକୃତ ରୂପେ ଉପଭୋଗ କରିପାରିବେ ଯାହାକି ଉଚ୍ଚଶିକ୍ଷାର ଅଳିନ୍ଦରେ ପ୍ରବେଶ କରିବା ପାଇଁ ସେମାନଙ୍କୁ ଯଥେଷ୍ଟ ଖୋରାକ୍ ଯୋଗାଇବ ।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ କୌଣସି ଦେଶର ଉଚ୍ଚଶିକ୍ଷା କ୍ଷେତ୍ରରେ ଥିବା ଗୁଣବତ୍ତା ସେ ଦେଶର କର୍ମଶକ୍ତିର ଗୁଣବତ୍ତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଥାଏ ଏବଂ ସେ ଦେଶର ସାମଗ୍ରିକ ଉନ୍ନତି ଦେଶର ନାଗରିକଙ୍କ ଦକ୍ଷତା, କର୍ମକୁଶଳତା ଏବଂ ଜ୍ଞାନ ବୈଭବ ସହ ଓତଃପ୍ରୋତ ଭାବେ ଜଡ଼ିତ ହୋଇଥାଏ । ପ୍ରାଚୀନ କାଳରେ ଭାରତବର୍ଷର ଜ୍ଞାନ ବୈଭବ ଓ ଏହାର ପରମ ଉତ୍କର୍ଷତା ଗଗନଚୁମ୍ବୀ ସଫଳତା ହାସଲ କରିଥିଲା ଏବଂ ବିଶ୍ୱ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ନାଳନ୍ଦା ଓ ତକ୍ଷଶିଳା ଏହାର ଜ୍ୱଳନ୍ତ ଉଦାହରଣ ଅଟେ । ଅତୀତରେ ଭାରତବର୍ଷର ମହାମହିମ ପଣ୍ଡିତ ଓ ବିଦ୍ୱାନମାନେ ବିଜ୍ଞାନ, କଳା, ଦର୍ଶନ, ଅର୍ଥଶାସ୍ତ୍ର, ମହାକାଶ ବିଜ୍ଞାନ ଆଦି ବହୁବିଧ କ୍ଷେତ୍ରରେ ଅଦ୍ୱିତୀୟ ସାଫଲ୍ୟ ହାସଲ କରିଥିଲେ । ପରନ୍ତୁ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ପାଶ୍ଚାତ୍ୟ ରାଷ୍ଟ୍ରମାନେ ବିଶ୍ୱର ନେତୃତ୍ୱ ନେବା ଆରମ୍ଭ କଲେ ଏବଂ ତା ପରେ ୟୁରୋପରେ ସଂଗଠିତ ହୋଇଥିବା ଶିଳ୍ପବିପ୍ଳବ ସବୁକିଛି ଓଲଟ ପାଲଟ କରିଦେଲା । ଭାରତବର୍ଷରେ ବ୍ରିଟିଶ୍ ସାମ୍ରାଜ୍ୟର ଉପନିବେଶବାଦ କାଳରେ କେତେକ ଉଚ୍ଚଶିକ୍ଷା ପ୍ରତିଷ୍ଠାନ ସ୍ଥାପନା କରାଯାଇ ଅତ୍ୟାଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସଂକ୍ରାନ୍ତରେ ଶିକ୍ଷାଦାନ କରାଯାଉଥିଲା । ପରନ୍ତୁ ଭାରତବର୍ଷର ବିଶାଳ ଜନସମୁଦାୟକୁ ଆଖିଆଗରେ ରଖିଲେ ସେଭଳି ଶିକ୍ଷାନୁଷ୍ଠାନର ସଂଖ୍ୟା ଅତ୍ୟନ୍ତ ସ୍ୱଳ୍ପ ଥିଲା ଏବଂ ତାହା ଆବଶ୍ୟକତା ଠାରୁ ଯଥେଷ୍ଟ କମ୍ ଥିଲା । ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଉଚ୍ଚଶିକ୍ଷା, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ମହତ୍ତର ଉତ୍କର୍ଷତା ହାସଲ କରିବା ପାଇଁ ପଣ୍ଡିତ ନେହେରୁଙ୍କ ଦ୍ୱାରା ବଳିଷ୍ଠ ପଦକ୍ଷେପମାନ ନିଆଗଲା ଏବଂ ଟେକ୍ନିକାଲ୍, ମେଡ଼ିକାଲ୍ ଓ ମ୍ୟାନେଜମେଣ୍ଟ ଶିକ୍ଷାରେ ପାରଦର୍ଶିତା ହାସଲ କରିବା ପାଇଁ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (Indian Institute of Technology), ସର୍ବଭାରତୀୟ ଭେଷଜବିଦ୍ୟା ପ୍ରତିଷ୍ଠାନ (All India Institute of Medical Sciences) ତଥା ଭାରତୀୟ ପରିଚାଳନା ପ୍ରତିଷ୍ଠାନମାନ

(Indian Institute of Management) ପ୍ରତିଷ୍ଠା କରାଗଲା । ବିଶ୍ୱର ଯେକୌଣସି ବିକାଶଶୀଳ ରାଷ୍ଟ୍ରର ଇତିହାସରେ ସର୍ବାଙ୍ଗୀନ ରାଷ୍ଟ୍ରୀୟ ଅଭ୍ୟୁଦୟ ପାଇଁ ଏଭଳି ବଳିଷ୍ଠ ପଦକ୍ଷେପ ନିଆଯିବା ଅତ୍ୟନ୍ତ ବିରଳ ଘଟଣା । ପରେ ପରେ କଳା ଓ ମୌଳିକ ବିଜ୍ଞାନ କ୍ଷେତ୍ରରେ ଉଚ୍ଚତର ଶିକ୍ଷା ଓ ଗବେଷଣା ପାଇଁ ଦେଶରେ ବହୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର ୧୯୫୬ ମସିହାର ନୀତିନିୟମ ଅନ୍ତର୍ଗତ ଧାରା-୩ ଅନୁଯାୟୀ ଦେଶରେ ଡ଼ିମ୍‌ଡ୍ ବିଶ୍ୱବିଦ୍ୟାଳୟମାନ ମଧ୍ୟ ସ୍ଥାପନା କରାଗଲା । ଧିରେ ଧିରେ ସମୟର ଗତି ସହ ଏହା ହୃଦୟଙ୍ଗମ ହେଲା ଯେ ଦେଶରେ ଜନସଂଖ୍ୟାର ଅଭୂତପୂର୍ବ ବିସ୍ଫୋରଣ ଏବଂ ୯୦ ଦଶକର ଶେଷାର୍ଦ୍ଧ ଆଡ଼କୁ ଦେଶରେ ଯୁବସଂଖ୍ୟା ୫୦୦ ନିୟୁତକୁ ଟପି ଯାଉଥିବାରୁ ଏଭଳି ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକ ଅତି ବେଶୀରେ କଲେଜ ଯିବାକୁ ଯୋଗ୍ୟ ବିବେଚିତ ହେଉଥିବା ଛାତ୍ରଛାତ୍ରୀମାନଙ୍କ ସଂଖ୍ୟା ତୁଳନାରେ ଅତ୍ୟନ୍ତ ନଗଣ୍ୟ ଭାବେ ବିବେଚିତ ହେଲା ।

ଅର୍ଥନୈତିକ ଉଦାରୀକରଣ ପକ୍ରିୟା ଦ୍ୱାରା ଉନ୍ମୁକ୍ତ ହୋଇଯାଇଥିବା ଦେଶର ଏକାଧିକ ଶିଳ୍ପ ସେକ୍ଟର ଗୁଡ଼ିକର ଆବଶ୍ୟକତାକୁ ପୂରଣ କରିବା ପାଇଁ ଗତ ଦଶକରେ ଦେଶରେ ଛତୁ ଫୁଟିଲା ଭଳି ଅଗଣିତ ଘରୋଇ ଇଞ୍ଜିନିୟରିଂ କଲେଜ ଓ ପ୍ରତିଷ୍ଠାନମାନ ମୁଣ୍ଡଟେକି ଉଠିଲା ଏବଂ ଏ ଧାରା ଏଭଳି ଭାବେ ପ୍ରବାହିତ ହେଲା ଯେ ଏ ସମସ୍ତ କଲେଜ ଓ ପ୍ରତିଷ୍ଠାନଗୁଡ଼ିକ କୌଣସି ନା କୌଣସି ଡ଼ିମ୍‌ଡ଼ ବିଶ୍ୱବିଦ୍ୟାଳୟର ସହବନ୍ଧିତ ହୋଇଗଲେ ଏବଂ ସେମାନେ କ୍ୟାପିଟେସନ୍ ଫି ଏଭଳି ଭାବେ ଦାବି କଲେ ଯେ ଗରିବ ଗୁରୁବା ଓ ନିମ୍ନ ମଧ୍ୟବିତ୍ତଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ତାହା ଅତ୍ୟନ୍ତ ଦୁରୂହ ବ୍ୟାପାର ହୋଇ ଠିଆହେଲା । କୌଣସି ଏକକ ଗ୍ରୁପ କିମ୍ବା ପ୍ରତିଷ୍ଠାନମାନଙ୍କ ଦ୍ୱାରା ପରିଚାଳିତ ହେଉଥିବା ଏଭଳି ଅନୁଷ୍ଠାନ ଗୁଡ଼ିକର ବିଶାଳ ଚେନ୍ ଖୁବ୍ ଶୀଘ୍ର ମଧ୍ୟ ଡ଼ିମ୍‌ଡ ୟୁନିଭରସିଟିର ମାନ୍ୟତା ପାଇଗଲେ । କେବଳ ବିଗତ ୫ବର୍ଷ ମଧ୍ୟରେ ଏଭଳି ୩୬ଟି ନୂଆ ପ୍ରତିଷ୍ଠାନ ଡ଼ିମ୍‌ଡ ୟୁନିଭରସିଟିର ମାନ୍ୟତା ଲାଭ କରିଛି । ଅପରପକ୍ଷରେ ୧୯୫୬ ମସିହାରୁ ୨୦୦୪ ମସିହା ଭିତରେ କେବଳ ୯୨ଟି ପ୍ରତିଷ୍ଠାନ ଏଭଳି ମାନ୍ୟତା ଲାଭ କରିବାରେ ସକ୍ଷମ ହୋଇପାରିଥିଲେ ।

୨୦୦୭ ମସିହାରେ ଭାରତୀୟ ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ ବମ୍ବେର ପ୍ରଫେସର ରଞ୍ଜନ ବାନାର୍ଜି ଏବଂ ବିନାୟକ ପି.ମୁଲେଙ୍କ ଦ୍ୱାରା କରାଯାଇଥିବା ଏକ ଷ୍ଟଡ଼ି ପ୍ରକାଶ କରିଛି ଯେ ଦେଶରେ ଥିବା ୯୦ ପ୍ରତିଶତରୁ ଅଧିକ ସଂଖ୍ୟକ ଘରୋଇ ଇଞ୍ଜିନିୟରିଂ

କଲେଜ ଗୁଡ଼ିକ ଶିକ୍ଷକ ଓ ମୌଳିକ ଭିତ୍ତିଭୂମି କ୍ଷେତ୍ରରେ ସବ୍-କ୍ରିଟିକାଲ୍ ବା ଅତ୍ୟନ୍ତ ନିମ୍ନ ସ୍ତରରେ ଅଛନ୍ତି ଏବଂ ଏହାର ମୁଖ୍ୟ କାରଣ ହେଲା ସେମାନେ ସହବନ୍ଧିତ ହୋଇଥିବା ବିଶ୍ୱବିଦ୍ୟାଳୟଗୁଡ଼ିକ ଏକାଡ଼େମିକ୍ ଏବଂ ଅର୍ଥନୈତିକ ଦୁର୍ବଳତା ଭିତରେ ସଦାସର୍ବଦା ପେଶି ହୋଇରହିଛନ୍ତି । ପିଲାମାନଙ୍କ ଠାରୁ ମିଳୁଥିବା ନାମଲେଖା ଫିସ୍ ଯାହାକୁ କି କଲେଜର ପ୍ରମୁଖ ରାଜସ୍ୱ ବୋଲି ବିବେଚିତ କରାଯାଇଥାଏ, ତାହାର ହିସାବରେ ଆଦୌ ସ୍ୱଚ୍ଛତା ନଥାଏ ଯଦିଓ ତାହା କଲେଜର ମୁଖ୍ୟ ରୋଜଗାରର ପନ୍ଥା ହୋଇଥାଏ । ଫଳରେ "ଲୁଚିଛି ନା ଗୋଡ଼ ଦିଶୁଛି" ପରି ପରିସ୍ଥିତି ସୃଷ୍ଟି ହୋଇଥାଏ । କଲେଜର ମୋଟ୍ ବାର୍ଷିକ ବଜେଟ୍ ପରିମାଣର ୮୦ ପ୍ରତିଶତ ଫାକଲଟି ଏବଂ ଷ୍ଟାଫ୍‌ମାନଙ୍କର ଦରମା ଦେବାରେ ବ୍ୟୟ ହୋଇଥାଏ । ଏହି ରିପୋର୍ଟ ପୁନଶ୍ଚ ଦର୍ଶାଇଛି ଯେ ଦେଶରେ ଯେତେସଂଖ୍ୟାକ ଇଞ୍ଜିନିୟରିଂ ଗ୍ରାଜୁଏଟ୍ ସୃଷ୍ଟି ହୋଇଥାନ୍ତି ତାହାର ୭୫ ପ୍ରତିଶତ କେବଳ ଘରୋଇ ଇଞ୍ଜିନିୟରିଂ କଲେଜମାନଙ୍କରୁ ହିଁ ଉତ୍ତୁରିଥାଆନ୍ତି । ଏହି ଘରୋଇ ଇଞ୍ଜିନିୟରିଂ କଲେଜ ମାନଙ୍କରେ ପ୍ରଦାନ କରାଯାଉଥିବା ଶିକ୍ଷାର ଗୁଣାତ୍ମକମାନର ନିରୀକ୍ଷଣ ଓ ପର୍ଯ୍ୟବେକ୍ଷଣ ହେବା ଏକାନ୍ତ ଉଚିତ୍ କାରଣ ବାସ୍ତବ ଚିତ୍ରଟି ହେଲା ଘରୋଇ ଇଞ୍ଜିନିୟରିଂ କଲେଜ ମାନଙ୍କରୁ ଉତ୍ତୀର୍ଣ୍ଣ ହେଉଥିବା ୩୦ ପ୍ରତିଶତ ଗ୍ରାଜୁଏଟ୍ ଛାତ୍ରମାନେ ଇଞ୍ଜିନିୟରିଂ ଡ଼ିଗ୍ରୀ ହାସଲ୍ କରିବାର ବର୍ଷକ ପରେ ମଧ୍ୟ ବେକାର ହୋଇ ରାସ୍ତାରେ ଘୂରି ବୁଲୁଛନ୍ତି ।

ଦୁର୍ଭାଗ୍ୟବଶତଃ ଘରୋଇ ଡ଼ିମ୍‌ଡ଼ ୟୁନିଭରସିଟି ଗୁଡ଼ିକ ନିଜର ଫି-ଷ୍ଟ୍ରକଚର୍ ନିର୍ଦ୍ଧାରଣ ପକ୍ରିୟାରେ ଆଶାତୀତ ବୃଦ୍ଧି ଘଟାଇ ଛାତ୍ରଛାତ୍ରୀମାନଙ୍କ ତଣ୍ଟି କାଟି ସେମାନଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ନେଇ ନିଜ ତହବିଲ୍‌ର ବୃଦ୍ଧି ଘଟାଇଥାନ୍ତି । ଫଳରେ ଏହି ଡ଼ିମ୍‌ଡ଼ ୟୁନିଭରସିଟି ଗୁଡ଼ିକ ବାଣିଜ୍ୟିକ ପ୍ରତିଷ୍ଠାନ ଭଳି କାର୍ଯ୍ୟ କରିଥାନ୍ତି ଏବଂ ପିଲାମାନଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ କରିବା ସର୍ବନିମ୍ନ ଆବଶ୍ୟକତା ବୋଲି ବିବେଚନା କରିଥାନ୍ତି । ଦେଶର ଭବିଷ୍ୟତ ପାଇଁ ଏହା ଶୁଭଙ୍କର ନୁହେଁ କାରଣ ଦେଶରେ ପ୍ରସ୍ତୁତ ହୋଇଥିବା ବହୁ ଷ୍ଟଡ଼ି ରିପୋର୍ଟ ପ୍ରକାଶ କରିଛି ଯେ ଦେଶର ସଂଖ୍ୟାଧିକ ଘରୋଇ ଡ଼ିମ୍‌ଡ଼ ୟୁନିଭରସିଟି ମାନଙ୍କରୁ ଉତ୍ତୁରୁଥିବା ଛାତ୍ରଛାତ୍ରୀମାନଙ୍କର ଦକ୍ଷତା ସେମାନଙ୍କର ଦୀର୍ଘ ଜୀବନ ଯାତ୍ରା ପଥରେ ଆବଶ୍ୟକ ହେଉଥିବା ଦକ୍ଷତା ମଧ୍ୟରେ ଆଶାତୀତ ପାର୍ଥକ୍ୟ ପରିଲକ୍ଷିତ ହେଉଛି ଯାହାକି ରାଷ୍ଟ୍ରର ମହନୀୟ ଓ ଗୌରବୋଜ୍ଜ୍ୱଳ ଭବିଷ୍ୟତ ପାଇଁ ଆଦୌ ଶୁଭସୂଚନା ପ୍ରଦାନ କରୁନାହିଁ ।

ଉଚ୍ଚ କ୍ଷମତା ସମ୍ପନ୍ନ ଯଶପାଲ୍ କମିଟି ଶିକ୍ଷା କ୍ଷେତ୍ରରେ ସଂସ୍କାର ପାଇଁ ବହୁ ମୂଲ୍ୟବାନ ସୁପାରିଶମାନ ପ୍ରଦାନ କରିଛନ୍ତି । ଦେଶରେ ଏକାଧିକ ରେଗୁଲାଟୋରୀ

ବଡ଼ି ବଦଳରେ ଏକ ସର୍ବକ୍ଷମତା ସମ୍ପନ୍ନ ଅଥରିଟିର ପ୍ରତିଷ୍ଠା କରାଯିବ ଯାହାକି ସ୍ୱୟଂଶାସିତ ହେବା ସଙ୍ଗେ ସଙ୍ଗେ ଦେଶର ସମସ୍ତ ଉଚ୍ଚଶିକ୍ଷାନୁଷ୍ଠାନ ଗୁଡ଼ିକୁ ନିୟନ୍ତ୍ରଣ କରିବ । ଉଚ୍ଚଶିକ୍ଷା କ୍ଷେତ୍ରରେ ଉତ୍କୃଷ୍ଟ ମାନନିର୍ଦ୍ଧାରଣ କରିବା ଏବଂ ସମସ୍ତ ଉଚ୍ଚଶିକ୍ଷାନୁଷ୍ଠାନ ଗୁଡ଼ିକର ସମ୍ପୂର୍ଣ୍ଣ ମନିଟରିଂ କରିବା ଏହି ଆପେକ୍ସ ବଡ଼ିର କାର୍ଯ୍ୟ ପରିସରଭୁକ୍ତ ହେବ । ଯଶପାଲ୍ କମିଟି ପୁନଃ ସୁପାରିଶ କରିଛନ୍ତି ଯେ କୌଣସି ଶିକ୍ଷାନୁଷ୍ଠାନକୁ ଡ଼ିମ୍‌ଡ଼୍ ୟୁନିଭରସିଟିର ଷ୍ଟାଟସ୍ ପ୍ରଦାନ କରାଯିବା ପୂର୍ବରୁ ତାର ତନ୍ନ ତନ୍ନ ବିଶ୍ଳେଷଣ କରାଯାଉ ଯଦ୍ୱାରା ବିଶ୍ୱବିଦ୍ୟାଳୟର ସମସ୍ତ ଦିଗରେ ଗୁଣାତ୍ମକମାନ ବଜାୟ ରଖାଯାଇପାରିବ ।

ବିଶେଷଜ୍ଞମାନେ ପ୍ରଦାନ କରିଥିବା ବହୁବିଧ ସୁପାରିଶଗୁଡ଼ିକୁ ବିଚାରକୁ ନିଆଯାଇ ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ତର୍ଜମା କରାଯିବା ପରେ ପ୍ରଥମ ପଦକ୍ଷେପ ସ୍ୱରୂପ କେନ୍ଦ୍ରଶିକ୍ଷାମନ୍ତ୍ରୀ ଦେଶରେ ଥିବା ସମସ୍ତ ଡ଼ିମ୍‌ଡ଼-ଟୁ-ବି (Deemed-to-be) ବିଶ୍ୱବିଦ୍ୟାଳୟଗୁଡ଼ିକର କାର୍ଯ୍ୟକାରିତା ଉପରେ ସବିଶେଷ ରିଭ୍ୟୁ କରିବା ପାଇଁ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗକୁ ନିର୍ଦ୍ଦେଶ ଦେଲେ । ନାମଲେଖା ଏବଂ ଏନ୍‌ରୋଲ୍‌ମେଣ୍ଟ ପ୍ରୋସେସ୍ ମଧ୍ୟ ଏହି ରିଭ୍ୟୁର ଅନ୍ତର୍ଭୁକ୍ତ ହେଲା । ରିଭ୍ୟୁ ପିରିୟଡ୍ ସମୟରେ ଏବଂ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ ଦ୍ୱାରା ଉପସ୍ଥାପନା କରାଯାଇଥିବା ରିପୋର୍ଟର ବିଶ୍ଳେଷଣ ଓ ତର୍ଜମା କାଳରେ ଡ଼ିମ୍‌ଡ୍ ୟୁନିଭରସିଟି ଷ୍ଟାଟସ୍ ପାଇବା ପାଇଁ ସମଗ୍ର ଦେଶରୁ ମିଳିଥିବା ଏକାଧିକ ଅନୁରୋଧକୁ ସରକାରଙ୍କ ଶୀତଳ ଭଣ୍ଡାର ଭିତରେ ରଖି ଦିଆଗଲା । ପି.ଏନ୍. ଟଣ୍ଡନ୍ କମିଟି ଏବଂ ଦେଶରେ ଥିବା ୧୨୬ଟି ଡ଼ିମ୍‌ଡ଼୍ ୟୁନିଭରସିଟି ଗୁଡ଼ିକର ସାମ୍ପ୍ରତିକ ସ୍ଥିତି ରିଭ୍ୟୁ କରିବା ପାଇଁ ଗଠନ କରାଯାଇଥିବା ବିଶେଷ ଟାସ୍କ ଫୋର୍ସ ସେମାନଙ୍କର ରିପୋର୍ଟରେ ଉଲ୍ଲେଖ କରିଛନ୍ତି ଯେ ଏହି ୧୨୬ଟି ଡ଼ିମ୍‌ଡ଼୍ ୟୁନିଭରସିଟି ମଧ୍ୟରୁ ୪୪ଟି ଡ଼ିମ୍‌ଡ଼ ୟୁନିଭରସିଟିର କାର୍ଯ୍ୟକାରିତାରେ ସ୍ୱଚ୍ଛତା ଆଦୌ ପ୍ରତିପାଦିତ ହେଉନାହିଁ ଏବଂ ପରିଚାଳନା ବୋର୍ଡ଼ର ଗଠନଶୈଳୀରେ ମଧ୍ୟ ଆଶା କରାଯାଉନଥିବା ଗୁରୁତର ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହେଉଛି । ଏହି ଡ଼ିମ୍‌ଡ଼୍ ୟୁନିଭରସିଟି ମାନଙ୍କରେ ପ୍ରଚଳିତ ହେଉଥିବା ପାଠ୍ୟକ୍ରମର ନାମକରଣରେ ମଧ୍ୟ ସାଂଘାତିକ ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହେଉଛି ଏବଂ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ପାରିବାରିକ ରାଜତ୍ୱର କବଳରେ ପଡ଼ି ଦାରୁଣ ଭାବେ ନିଷ୍ପେସିତ ହେଉଛନ୍ତି । ନିକଟ ଅତୀତରେ କେନ୍ଦ୍ର ମାନବସମ୍ବଳ ମନ୍ତ୍ରଣାଳୟ ଦ୍ୱାରା ଉଚ୍ଚ ନ୍ୟାୟାଳୟରେ କରାଯାଇଥିବା ଏକ ଆଫିଡ଼େଭିଟ୍‌କୁ ନେଇ ବହୁ ବାଦାନୁବାଦର ଝଡ଼ ଦେଶରେ ବୋହିବାରେ ଲାଗିଛି ।

ସରକାରଙ୍କ କହିବା କଥା ହେଲା ଯେ ଏ ସମସ୍ତ ୪୪ଟି ଡ଼ିମ୍‌ଡ଼ ୟୁନିଭରସିଟି ସେମାନଙ୍କର ଡ଼ିମ୍‌ଡ଼ ୟୁନିଭରସିଟି ଷ୍ଟାଟସ୍ ନିଶ୍ଚିତ ରୂପେ ହରାଇବେ । କିନ୍ତୁ କୌଣସି ଜଣେ ହେଲେ ଛାତ୍ରର ବି ଭବିଷ୍ୟତ ନଷ୍ଟ ହେବ ନାହିଁ ଏବଂ ପ୍ରତ୍ୟେକ ଛାତ୍ର ବିଶ୍ୱବିଦ୍ୟାଳୟ ଡ଼ିଗ୍ରୀ ହାସଲ୍ କରିବେ । ଏହି ୪୪ଟି ଡ଼ିମ୍‌ଡ଼ ୟୁନିଭରସିଟି, ଡ଼ିମ୍‌ଡ଼ ୟୁନିଭରସିଟି ଷ୍ଟାଟସ୍ ପାଇଲା ପୂର୍ବରୁ ଯେଉଁ ବିଶ୍ୱବିଦ୍ୟାଳୟ ମାନଙ୍କ ଅଧିନରେ ସହବନ୍ଧିତ ଥିଲେ ସେହି ବିଶ୍ୱବିଦ୍ୟାଳୟ ସେମାନଙ୍କ ଛାତ୍ରମାନଙ୍କୁ ଡ଼ିଗ୍ରୀ ପ୍ରଦାନ କରିବ । କିନ୍ତୁ ମିଡ଼ିଆରେ ଏହି କଥାଟି ଠିକ୍ ଭାବେ ପରିସ୍ଫୁଟିତ ହୋଇପାରିଲା ନାହିଁ ଏବଂ ବାଦାନୁବାଦର ଝଡ଼ ଭିତରେ ଏହା ଘୋଡ଼େଇ ହୋଇରହିଗଲା ।

ସେହି ଏକା ସମୟରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଏକ ସୁପ୍ରିମ୍ ଲେଗୁଲାଟୋରୀ ଅଥରିଟିର ଇସ୍ୟୁକୁ ନେଇ କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ବୋର୍ଡ଼ (CABE) ନିକଟ ଅତୀତରେ କେନ୍ଦ୍ର ମାନବସମ୍ବଳ ବିକାଶ ମନ୍ତ୍ରଣାଳୟର ପ୍ରସ୍ତାବକୁ ଅନୁମୋଦନ କରିଛି ଯଦ୍ୱାରା ନ୍ୟାସନାଲ୍ କମିଶନ୍ ଫର ହାୟର ଏଜୁକେସନ୍ ଆଣ୍ଡ ରିସର୍ଚ୍ଚ ଭଳି ଏକ ସର୍ବୋଚ୍ଚ କ୍ଷମତା ସମ୍ପନ୍ନ ତଥା ସମ୍ପୂର୍ଣ୍ଣ ସ୍ୱୟଂଶାସିତ ଅଥରିଟିର ଗଠନ ପାଇଁ ରାସ୍ତା ସଫା ହୋଇଯାଇଛି । କେନ୍ଦ୍ର ମାନବସମ୍ବଳ ବିକାଶ ମନ୍ତ୍ରଣାଳୟ ଦ୍ୱାରା ଏକ ଟାସ୍କ ଫୋର୍ସର ଗଠନ ମଧ୍ୟ କରାଯାଇଛି ଯାହାକି ପ୍ରସ୍ତାବିତ ନ୍ୟାସନାଲ୍ କମିଶନ୍ ଫର ହାୟର ଏଜୁକେସନ୍ ଆଣ୍ଡ ରସିର୍ଚ୍ଚର ଗଠନ ପାଇଁ ବିହିତ ପଦକ୍ଷେପ ଗ୍ରହଣ କରିବ । ଏହା ମଧ୍ୟ ପ୍ରତ୍ୟେକ ରାଜ୍ୟର ମତାମତ ନେଇ ସମ୍ପୂର୍ଣ୍ଣ ବ୍ୟବସ୍ଥାର ଡ଼ିଜାଇନ୍, ଗଠନ ଓ ପ୍ରଚଳନ ପାଇଁ ଅଗ୍ରାଧିକାର ଭିତ୍ତିରେ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବ । ପୁନଶ୍ଚ ଏହା ମଧ୍ୟରେ ବିଦେଶୀ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଭାରତବର୍ଷରେ ସେମାନଙ୍କର ଶାଖା ଉନ୍ମୋଚନ କରିବା ପାଇଁ କେନ୍ଦ୍ର ମନ୍ତ୍ରୀମଣ୍ଡଳ ଅନୁମୋଦନ ପ୍ରଦାନ କରିସାରିଲାଣି । ଏହା ଫଳରେ ଶିକ୍ଷାର ଗୁଣାତ୍ମକ ମାନଦଣ୍ଡରେ ନିଶ୍ଚିତ ଅଭିବୃଦ୍ଧି ପରିଲକ୍ଷିତ ହେବ ଏବଂ ଆମର ଛାତ୍ରମାନେ ଭାରତ ମାଟିରେ ବିଶ୍ୱସ୍ତରୀୟ ସର୍ବୋତ୍କୃଷ୍ଟ ଶିକ୍ଷା ଲାଭ କରିପାରିବେ । ବିଶ୍ୱ ଗ୍ରାମର ବାସିନ୍ଦା ହୋଇ ଭାରତ ଶିକ୍ଷା କ୍ଷେତ୍ରରେ ଆଉ ଏକ ଘରିକିଆ ହୋଇ ରହିପାରିବ ନାହିଁ ଏବଂ ପାଶ୍ଚାତ୍ୟ ରାଷ୍ଟ୍ର ସହ ମିଳିମିଶି ଚଳିବାକୁ ପଡ଼ିବ ଏବଂ ପ୍ରତିଯୋଗିତା ମୂଳକ ଉଚ୍ଚତର ଶିକ୍ଷା ମଧ୍ୟ ଲାଭ କରିବାକୁ ପଡ଼ିବ । ଉଚ୍ଚଶିକ୍ଷା ସହ ଗବେଷଣା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଏବଂ ଏହି ବିଦେଶୀ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଭାରତମାଟିରେ ଉଚ୍ଚକୋଟୀର ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନେବେ ଏବଂ ଭାରତୀୟ ମସ୍ତିଷ୍କର

ସୁବିନିଯୋଗ କରି ତାହା ସୁଚାରୁରୂପେ ସମ୍ପାଦିତ କରିବେ ।

ବିଦେଶୀ ବିଶ୍ୱବିଦ୍ୟାଳୟ ବିଲ୍ ଖୁବ୍ ଶୀଘ୍ର ପାର୍ଲାମେଣ୍ଟରେ ଉପସ୍ଥାପନ କରାଯିବ ଯେଉଁଥିରେ କି ସ୍ୱଚ୍ଛତା (Transparency), ଉପଯୁକ୍ତ ଫି ଷ୍ଟ୍ରକଚର୍ (Appropriate Fee Structure) ଏବଂ ଗୁଣବତ୍ତା (Quality Education) ଆଦିକୁ ନେଇ ବିଭିନ୍ନ ଧାରା ଓ ଉପଧାରା ରହିବ ଯଦ୍ୱାରା ବିଶ୍ୱବିଦ୍ୟାଳୟ ଗୁଡ଼ିକର କାର୍ଯ୍ୟଧାରା ସମ୍ପୂର୍ଣ୍ଣ ଉନ୍ମୁକ୍ତ, ସ୍ୱଚ୍ଛ ଓ ଦୋଷ ଗୁଣ ରହିତ ହୋଇପାରିବ । ଦେଶରେ ସ୍ଥାପିତ ହୋଇଥିବା ଘରୋଇ ବିଶ୍ୱବିଦ୍ୟାଳୟଗୁଡ଼ିକ ଯେପରି ସ୍ୱଚ୍ଛ କାର୍ଯ୍ୟଧାରାର ପଥ ଅନୁସରଣ କରୁନାହାଁନ୍ତି ବିଦେଶୀ ବିଶ୍ୱବିଦ୍ୟାଳୟଗୁଡ଼ିକ ସହ ସେଭଳି ପରିସ୍ଥିତି ଆଦୌ ସୃଷ୍ଟି କରାଯିବ ନାହିଁ ।

ସମୟ ଆସି ଉପଗତ ହୋଇଛି, ଦେଶର ଅଗଣିତ ଯୁବଶକ୍ତିଙ୍କ ଭାଗ୍ୟାକାଶରେ ନବରବିର ଉଦୟ ପାଇଁ ଆମେ ବିହିତ ପଦକ୍ଷେପ ଗ୍ରହଣ କରିବା ଯେଉଁମାନେକି ଭାରତବର୍ଷକୁ ଅଭିବୃଦ୍ଧି ଓ ବିକାଶର ପରବର୍ତ୍ତୀ ସୋପାନରେ ପହଁଞ୍ଚାଇ ପାରିବେ ଏବଂ ଭାରତବର୍ଷକୁ ପ୍ରଗତିର ସ୍ୱର୍ଣ୍ଣ ସିଂହାସନରେ ଅଧିଷ୍ଠିତ କରାଇ ନବକଳେବର ପ୍ରଦାନ କରିପାରିବେ । ଏଥିପାଇଁ ଆମେ ଆମ ପଦକ୍ଷେପରେ ଆଦୌ ବିଫଳ ହେବାର ପ୍ରଶ୍ନ ଉଠୁ ନାହିଁ କାରଣ ଆମେ ଯଦି ଆମ ପ୍ରଚେଷ୍ଟାରେ ବିଫଳ ହୋଇଯାଉ ତେବେ ସମଗ୍ର ବିଶ୍ୱର ଏକକ ସର୍ବବୃହତ ଯୁବଶକ୍ତିର ଅସୁମାରୀ ସ୍ୱପ୍ନ, ଅସଂଖ୍ୟ ଆଶା ଓ ଅହେତୁକ ବିଶ୍ୱାସ ଚାହୁଁଚାହୁଁ ଧୂଳିସାତ୍ ହୋଇଯିବ ।

ବର୍ତ୍ତିକା ପୂଜା ସଂଖ୍ୟା : ୨୦୧୦



# ଜଳବାୟୁ ପରିବର୍ତ୍ତନ : କୋପେନ୍‌ହାଗେନ୍ ବିଶ୍ୱସମ୍ମିଳନୀର ଛାଇ ଆଲୁଅ ଖେଳ

କୋପେନ୍‌ହାଗେନ୍ ସହର ବହୁ ଚର୍ଚ୍ଚିତ ତଥା ଲବ୍ଧ ପ୍ରତିଷ୍ଠ ଲେଖକ ହାନ୍ସ କ୍ରିସଚିଆନ୍ ଆଣ୍ଡରସନ୍ (Hans Chirstian Anderson) ଏବଂ ତାଙ୍କର "ଲିଟିଲ୍ ମରମେଡ୍ (Little Mermaid) ରଚନା ପାଇଁ ବିଶ୍ୱପ୍ରସିଦ୍ଧ ଅଟେ । " ଦି ଚର୍ଚ୍ଚ ଅଫ୍ ଆୱାର ସେଭିଅର୍" (The Church of our Saviour) ପାଇଁ ମଧ୍ୟ ଏହି ସହର ସମଗ୍ର ବିଶ୍ୱରେ ସର୍ବଜନବିଦିତ ଓ ସର୍ବଜନ ପ୍ରଶଂସିତ । ଚର୍ଚ୍ଚଟିର ଶୀର୍ଷ ଦେଶ ଏକ ସ୍ପାଇରାଲ୍ (Spirial) ବା ସ୍କ୍ରିୟୁ (Screw) ଭଳି ନିର୍ମିତ ହୋଇଅଛି । ସହରୀ ସଭ୍ୟତାର ଲୋକକଥାରୁ ଜଣାଯାଏ ଯେ ଏହି ଚର୍ଚ୍ଚଟିର ଆର୍କିଟେକ୍ଟ ଯେତେବେଳେ ଜାଣିବାକୁ ପାଇଲେ ଯେ ଏହି ସ୍ପାଇରାଲ୍ ବା ସ୍କ୍ରିୟୁର ଗଠନ ଶୈଳୀ ଘଣ୍ଟାର ବିପରୀତ ଗତି (Anti Clock wise) ଦିଗରେ ନିର୍ମିତ ହୋଇଛି ସେତେବେଳେ ସେ ସେହି ଚର୍ଚ୍ଚ ଉପରକୁ ଚଢ଼ିଯାଇ ସେଠାରୁ ତଳକୁ ଲମ୍ଫ ପ୍ରଦାନ କରି ଆତ୍ମହତ୍ୟା କରିଥିଲେ ।

ଆଜି କୋପେନ୍‌ହାଗେନ୍ ସହର ତଥାକଥିତ "କୋପେନ୍‌ହାଗେନ୍ ସନନ୍ଦ (Copenhagen Accord)" ପାଇଁ ଅଭୁତପୂର୍ବ ବିଶ୍ୱପ୍ରସିଦ୍ଧି ଲାଭ କରିଛି ଯାହାକି ଦୁଇ ମାସ ତଳେ ସେଠାରେ ସଂଗଠିତ ହୋଇଥିବା ବିଶ୍ୱ ଜଳବାୟୁ ସମସ୍ୟା ସମ୍ମିଳନୀ ପରିପ୍ରେକ୍ଷୀରେ ପ୍ରସ୍ତୁତ ହୋଇଥିଲା । ଏହି ସନନ୍ଦଟି ସମ୍ପୂର୍ଣ୍ଣ ଭୁଲ୍ ତଥ୍ୟ ଉପରେ ପର୍ଯ୍ୟବେସିତ ହେବା ସଙ୍ଗେ ସଙ୍ଗେ ବିକଶିତ ଅର୍ଥନୀତି ସମ୍ପନ୍ନ ରାଷ୍ଟ୍ରମାନଙ୍କ ଆଭିମୁଖ୍ୟ ଆଡ଼କୁ ଢ଼ଳି କରି ରହିଥିବା ଯୋଗୁଁ ଏକତରଫା ହୋଇଯାଇଥିଲା । ଫଳରେ ବିକାଶଶୀଳ ରାଷ୍ଟ୍ରମାନଙ୍କ ଦ୍ୱାରା ଏହା ଆଦୌ ଗ୍ରହଣୀୟ ହୋଇନଥିଲା ।

ଏପରିକି କୋପେନ୍‌ହାଗେନ୍‌ରେ ବିଶ୍ୱଜଳବାୟୁ ସମ୍ମିଳନୀ ଆରମ୍ଭ ହେବା ପୂର୍ବରୁ ପାଶ୍ଚାତ୍ୟ ରାଷ୍ଟ୍ରମାନେ ନିଜର ବଡ଼ଭାଇ ପଣିଆ ସାବ୍ୟସ୍ତ କରିବା ପାଇଁ ଏକ ଡ୍ରାଫ୍ଟ ଡ଼କୁମେଣ୍ଟ - "ଏ ଫ୍ରେମ୍ ୱାର୍କ ଫର୍ ଆକ୍ସନ" (A Framework for Action) ପ୍ରସ୍ତୁତ କରିଥିଲେ । ଏହି ଡ଼କୁମେଣ୍ଟରେ ବିକଶିତ ରାଷ୍ଟ୍ରମାନେ ୧୯୯୦ ମସିହାରେ ନିର୍ଗମନ କରୁଥିବା ସବୁଜ ଗୃହ ବାଷ୍ପର ପରିମାଣରେ ୩୦ ପ୍ରତିଶତ ପରିବର୍ତ୍ତେ ମାତ୍ର ୩ପ୍ରତିଶତ ହ୍ରାସ କରିବାକୁ ଉଲ୍ଲେଖ କରିଥିଲେ । ଏହା ଶୁଣି ଆଫ୍ରିକୀୟ ରାଷ୍ଟ୍ରମାନେ

ସମ୍ମିଳନୀ ଛାଡ଼ି ଉଠିଯିବାକୁ ନିଷ୍ପତ୍ତି ନେଲେ । ଫଳରେ ଏହି ଡ୍ରାଫ୍ଟ ଡ଼କୁମେଣ୍ଟର ରୂପରେଖ ପ୍ରକାଶିତ ହୋଇପାରିଲା ନାହିଁ ।

**ସଦ୍ୟ ରାଜିନାମା (Fresh Agreement) :**

ଏପରି ଏକ କ୍ରୁର ଓ ଶଠତାପୂର୍ଣ୍ଣ ପ୍ରୟାସରେ ବିଫଳହେଲା ପରେ ବିକଶିତ ରାଷ୍ଟ୍ରମାନେ ଫ୍ରାନ୍ସ, ୟୁନାଇଟେଡ୍ କିଙ୍ଗଡ଼ମ୍ ଏବଂ ଅନ୍ୟ ରାଷ୍ଟ୍ରମାନଙ୍କ ସହାୟତାରେ ଏକ ନୂତନ ଡ୍ରାଫ୍ଟ ଡ଼କୁମେଣ୍ଟ ପ୍ରସ୍ତୁତ କରିବାକୁ ପ୍ରଚେଷ୍ଟା କଲେ । ସେମାନେ ବ୍ରାଜିଲ୍, ଭାରତ, ଦକ୍ଷିଣ ଆଫ୍ରିକା ଏବଂ ଚୀନ୍ [ଯାହାକୁ କି (BASIC Nations) ବୋଲି କୁହାଯାଇଥାଏ] ସେମାନଙ୍କୁ ୨୦୨୦ ମସିହା ସୁଦ୍ଧା ସେମାନଙ୍କର ସବୁଜ ଗୃହ ବାଷ୍ପ ନିର୍ଗମନର ପରିମାଣକୁ ୨୦ରୁ ୨୫ପ୍ରତିଶତ ହ୍ରାସ କରିବାକୁ କହିଲେ ଏବଂ ଏହା ପାଳନ କରିବାକୁ ପାଶ୍ଚାତ୍ୟ ରାଷ୍ଟ୍ରମାନେ ସେମାନଙ୍କୁ ୧୩୦ ବିଲିୟନ୍ ଡ଼ଲାର୍ ଅର୍ଥରାଶି ସହାୟତା ରୂପେ ପ୍ରଦାନ କରିବେ ବୋଲି ନିର୍ଭର ପ୍ରତିଶୃତି ପ୍ରଦାନ କଲେ । ଏପରିକି ପ୍ରଥମ ୩୦ ବିଲିୟନ୍ ଡ଼ଲାରର ସହାୟତା ରାଶି ୨୦୧୦ ମସିହାରେ ପ୍ରଦାନ କରିବାକୁ ମଧ ଘୋଷଣା କଲେ ।

ଏକଥା ଶୁଣି ପ୍ୟାସିଫିକ୍ ଆଇଲାଣ୍ଡ ରାଷ୍ଟ୍ର ଟୁଭାଲୁ ତାର ମତବ୍ୟକ୍ତ କରି କହିଲା ଯେ- "ଏହା ମନେ ହେଉଛି ସତେ ଯେପରି ୩୦ଟି ରୌପ୍ୟ ଖଣ୍ଡର ପ୍ରତିବଦଳରେ ଆମକୁ ଆମର ଭବିଷ୍ୟତକୁ ବିକିଦେବା ପାଇଁ ପ୍ରସ୍ତାବ ଦିଆଯାଉଛି । ଆମର ଭବିଷ୍ୟତ ଆଦୌ ବିକ୍ରି ପାଇଁ ଉଦ୍ଦିଷ୍ଟ ନୁହେଁ" । ଭେନେଜୁଏଲା କହିଥିଲା ଯେ – "ଆମେ ଆମର ରାଷ୍ଟ୍ରୀୟ ନୀତିକୁ ବିକ୍ରି କରିପାରିବୁ ନାହିଁ । ଆମକୁ ସବୁଜ ଗୃହ ବାଷ୍ପ ନିର୍ଗମନର ନିର୍ଦ୍ଧାରିତ ଲକ୍ଷ୍ୟ (Target) କଣ ହେବା ଉଚିତ୍ ଓ ତାର ଗାଣିତିକ ଅଙ୍କ ସମ୍ବନ୍ଧରେ ପ୍ରଥମେ ସ୍ପଷ୍ଟ ଭାବେ ଅବଗତ କରାଅ" ।

ଚାଲନ୍ତୁ ଏ ସର୍ମ୍ପକୀୟ ଗାଣିତିକ ତଥ୍ୟ ଉପରେ ଟିକେ ଦୃଷ୍ଟି ନିକ୍ଷେପ କରିବା । ୧୮୯୦ ମସିହାରୁ ପୃଥିବୀର ସମସ୍ତ ରାଷ୍ଟ୍ରମାନଙ୍କ ଦ୍ୱାରା ନିର୍ଗମନ କରାଯାଇଥିବା ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ୧୨୦୧ ଗିଗାଟନ୍ ଅଟେ । ଏ ପରିମାଣରୁ ବିକଶିତ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରଗୁଡ଼ିକର ଅବଦାନ ୭୦୦ ଗିଗାଟନ୍ ଅର୍ଥାତ୍ ମୋଟ ପରିମାଣର ୫୮ ପ୍ରତିଶତ ଅଟେ । କେବଳ ଆମେରିକାର ଅବଦାନ ୩୩୩ ଗିଗାଟନ୍ ଅଟେ ଯାହାକି ମୋଟ୍ ନିର୍ଗମନ ପରିମାଣର ୨୮ ପ୍ରତିଶତ ।

ପୃଥିବୀର ସମସ୍ତ ବିକାଶଶୀଳ ରାଷ୍ଟ୍ରସମୂହ ମୋଟ୍ ୫୦୧ ଗିଗାଟନ୍ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ କରିଥାନ୍ତି ଯାହାକି ମୋଟ୍ ନିର୍ଗମନ ପରିମାଣର ୪୧ ପ୍ରତିଶତ ଅଟେ । ଭାରତ ୩୧ ଗିଗାଟନ୍ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ କରିଥାଏ ଯାହାକି ମୋଟ୍ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ ପରିମାଣର ୩ ପ୍ରତିଶତ । ସେହିପରି ଚୀନ୍ ୧୦୪ ଗିଗାଟନ୍ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ କରିଥାଏ ଯାହାକି ମୋଟ୍ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ ପରିମାଣର ୯ ପ୍ରତିଶତ ଅଟେ । ଅର୍ଥାତ୍ ଆମେ ଭାରତୀୟମାନେ ପୃଥିବୀର ସମଗ୍ର ଜନସଂଖ୍ୟାର ୧୭ପ୍ରତିଶତ ଅଧିବାସୀ ହୋଇ ୩ ପ୍ରତିଶତ ଅଙ୍ଗାରକାମ୍ଳ ବାଷ୍ପ ବାୟୁମଣ୍ଡଳକୁ ନିର୍ଗମନ କରୁଥିବା ବେଳେ ଚୀନ୍ ପୃଥିବୀର ସମଗ୍ର ଜନସଂଖ୍ୟାର ୨୦ପ୍ରତିଶତ ଅଧିକାରୀ ହୋଇ ୯ ପ୍ରତିଶତ ଅଙ୍ଗାରକାମ୍ଳ ବାଷ୍ପ ବାୟୁମଣ୍ଡଳକୁ ନିର୍ଗମନ କରିଥାଏ । ଅପରପକ୍ଷରେ ଆମେରିକା ପୃଥିବୀର ସମଗ୍ର ଜନସଂଖ୍ୟାର ୪.୫ ପ୍ରତିଶତର ଅଧିକାରୀ ହୋଇ ୨୮ ପ୍ରତିଶତ ସବୁଜଗୃହ ବାଷ୍ପ ବାୟୁ ମଣ୍ଡଳକୁ ନିର୍ଗମନ କରିଥାଏ ।

ଏଭଳି ପରିପ୍ରେକ୍ଷୀରେ ଏକ ସର୍ବଜନ ସମ୍ମତ ପଦକ୍ଷେପ ହିଁ ବିଚାରଯୋଗ୍ୟ ଭାବେ ବିବେଚିତ ହେବା ଉଚିତ୍ । ୧୯୭୦ ଦଶକରେ ବୈଜ୍ଞାନିକମାନେ ଆବିଷ୍କାର କଲେ ଯେ ଅଙ୍ଗାରକାମ୍ଳ ଓ ମିଥେନ୍ ବାଷ୍ପର ନିର୍ଗମନ ସ୍ତର ପୃଥିବୀକୁ ଏକ ସବୁଜ ଗୃହ ଭାବେ ପରିଗଣିତ କରିଥାଏ ଯାହାକୁ ଭେଦ କରି ସୂର୍ଯ୍ୟଙ୍କ ଉତ୍ତାପ ପୃଥିବୀ ପୃଷ୍ଠରେ ପଡୁଥିଲେ ମଧ୍ୟ ପୃଥିବୀର ଉତ୍ତାପ ବାହ୍ୟ ଜଗତକୁ ପ୍ରସମିତ ହେବାରେ ଦୁରୂହ ବ୍ୟାପାର ସୃଷ୍ଟିକରିଥାଏ । ଅଙ୍ଗାରକାମ୍ଳ ବାଷ୍ପର କ୍ରମାଗତ ନିର୍ଗମନ ଫଳରେ ସବୁଜ ଗୃହ ପ୍ରଭାବ ପୃଥିବୀ ପୃଷ୍ଠକୁ ଦିନ ପରେ ଦିନ ଉତ୍ତପ୍ତ କରଣ କରିଥାଏ । ଫଳରେ ପୃଥିବୀ ପୃଷ୍ଠର ଉତ୍ତାପ ମଧ୍ୟ କ୍ରମାଗତ ଭାବେ ବୃଦ୍ଧି ପାଇଥାଏ । ସଭ୍ୟତାର ଉତ୍ତରଣ ପର୍ବରେ ଶିଳ୍ପବିକାଶର ବହୁଳ ଯୋଗଦାନ ଯୋଗୁଁ ଏପରି ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ସମସ୍ୟା ଆମ ସମ୍ମୁଖରେ ଆସି ବୀରଦର୍ପରେ ଦଣ୍ଡାୟମାନ ହେଉଛି । ୧୮୯୦ ମସିହାର ଶିଳ୍ପ ବିପ୍ଳବ ପରଠାରୁ ଆଜି ପର୍ଯ୍ୟନ୍ତ ପୃଥିବୀର ଉତ୍ତାପରେ ୧ଡ଼ିଗ୍ରୀ ସେଲ୍ସିୟସ୍ ବୃଦ୍ଧି ଘଟିଛି ।

ଯଦି ସବୁଜଗୃହ ବାଷ୍ପର ନିର୍ଗମନ ପରିମାଣରେ ଦ୍ରୁତ ହ୍ରାସ ନଘଟେ ତେବେ ଆଗାମୀ ୧୦୦ବର୍ଷ ଭିତରେ ପୃଥିବୀର ଉତ୍ତାପ ୩.୫ରୁ ୪ ଡ଼ିଗ୍ରୀ ସେଲ୍ସିୟସ୍ ବୃଦ୍ଧି ଘଟିବ । ଏହା ହେଲେ ମେରୁ ଅଞ୍ଚଳର ବରଫ ତଥା ଗ୍ଲାସିୟର୍ ଗୁଡ଼ିକ ତରଳି ଯିବ ଏବଂ ସମୁଦ୍ରର ଜଳପତନରେ ଅଭିବୃଦ୍ଧି ପରିଲକ୍ଷିତ ହେବ । ମାଳଦ୍ୱୀପ, ଶ୍ରୀଲଙ୍କା,

ଇଣ୍ଡୋନେସିଆ ଏବଂ ମାଇକ୍ରୋନେସିଆ ଆଦି ଦ୍ୱୀପରାଷ୍ଟ୍ର ଗୁଡ଼ିକର ସ୍ଥିତି ପ୍ରତି ଗୁରୁତର ବିପଦ ମାଡ଼ି ଆସିବ। ଠିକ୍ ସେହିପରି ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ଯଥା: ବଙ୍ଗଳାଦେଶ ଓ ଅନ୍ୟାନ୍ୟ ବହୁରାଷ୍ଟ୍ର ପ୍ରତି ବିପଦର କଳାବାଦଲ ଘୋଟିଆସିବ ଓ ଏହି ରାଷ୍ଟ୍ର ଗୁଡ଼ିକର ଭୌଗୋଳିକ ସ୍ଥିତିରେ ନିଶ୍ଚିତ ପରିବର୍ତ୍ତନ ଘଟିବ।

**ନିଶ୍ଚିତ ବିପଦର ପଦଧ୍ୱନୀ (Dangers Clear) :**

ବିପଦ ଯେ ଦ୍ରୁତ ଗତିରେ ମାଡ଼ି ଆସୁଛି – ଏହା ନିଶ୍ଚିତରୂପେ ସତ୍ୟ। ହେଲେ ସମ୍ଭାବ୍ୟ ସମାଧାନର ରାସ୍ତା ଉନ୍ମୋଚନ କରିବା ମଧ୍ୟ ଆମର ପରମ କର୍ତ୍ତବ୍ୟ। ବିଶ୍ୱ ରାଷ୍ଟ୍ର ସମୂହ ୧୯୯୨ ମସିହା ପରଠାରୁ ବର୍ଷ ପରେ ବର୍ଷ ପରସ୍ପରକୁ ଭେଟୁଛନ୍ତି ଓ ଆଲୋଚନା ମଧ୍ୟ କରୁଛନ୍ତି, ଯଦ୍ୱାରା ଏଭଳି ଏକ ଭୟଙ୍କର ସମସ୍ୟାର ସମାଧାନ ପାଇଁ ସୁନ୍ଦର ସୂତ୍ରଟିଏ କେମିତି ଖୋଲିଯାଉ। ବିଶ୍ୱ ତାପମାତ୍ରାରେ ଅହେତୁକ ବୃଦ୍ଧି ନଘଟୁ ଏବଂ ଏହା ଅତିବେଶୀରେ ୨ ଡ଼ିଗ୍ରୀ ସେଲ୍‌ସିୟସ୍ ଭିତରେ କିପରି ସୀମିତ ରହୁ - ଏହା ସମସ୍ତଙ୍କର ଧ୍ୟେୟ ହେବା ଉଚିତ୍।

"ଦି ଇଣ୍ଟରନ୍ୟାସନାଲ୍ ପ୍ୟାନେଲ୍ ଅନ୍ କ୍ଲାଇମେଟ୍ ଚେଞ୍ଜ" (The International Panel on Climate Change) ସମଗ୍ର ବିଶ୍ୱ ସମୁଦାୟକୁ ତାଗିଦ୍ କରି କହିଛି ଯେ ଏହା କରିବାକୁ ହେଲେ ୨୦୫୦ ମସିହା ସୁଦ୍ଧା ଆମକୁ ବିଶ୍ୱ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗମନ ପରିମାଣକୁ ୩୫୦ ପାର୍ଟ୍ସ ପର ମିଲିୟନ୍ (ppm) ସ୍ତରକୁ ଆଣିବାକୁ ପଡ଼ିବ ଯଦ୍ୱାରା ବିଶ୍ୱତାପମାତ୍ରାର ବୃଦ୍ଧି ପରିମାଣକୁ ୨ ଡ଼ିଗ୍ରୀ ସେଲ୍‌ସିୟସ୍ ଭିତରେ ସୀମିତ ରଖାଯାଇପାରିବ। ଶିଳ୍ପ ସମୃଦ୍ଧ ବିକଶିତ ରାଷ୍ଟ୍ରମାନେ ମଧ୍ୟ ଆଜିଠୁଁ ୨୦ବର୍ଷ ମଧ୍ୟରେ ଅର୍ଥାତ୍ ୨୦୨୦ ମସିହା ସୁଦ୍ଧା ସେମାନଙ୍କର ସବୁଜଗୃହ ବାଷ୍ପର ନିର୍ଗମନ ପରିମାଣକୁ ବର୍ତ୍ତମାନର ହାର ତୁଳନାରେ ୨୫ରୁ ୪୦ ପ୍ରତିଶତ ହ୍ରାସ କରିବା ଉଚିତ୍ ହେବ।

ଆମେରିକାର ପୂର୍ବତନ ରାଷ୍ଟ୍ରପତି ବିଲ୍‌କ୍ଲିଣ୍ଟନ, ଜର୍ଜ ଡ଼ବ୍ଲୁ ବୁଶ୍ ଅବା ଏବେକାର ରାଷ୍ଟ୍ରପତି ବାରାକ୍ ଓବାମା ହୁଅନ୍ତୁନା କାହିଁକି ସମସ୍ତେ ଏଭଳି ପଦକ୍ଷେପ ନେବା ପାଇଁ ଦୃଢ଼ଭାବେ ଅସ୍ୱୀକାର କରିଛନ୍ତି। କାରଣ ହେଉଛି ଏଭଳି ଦୃଢ଼ ପଦକ୍ଷେପ ନେଲେ ଆମେରିକାର ଅର୍ଥନୀତି ସମ୍ପୂର୍ଣ୍ଣ ରୂପେ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ ଯାହାକି ସେମାନେ କୌଣସି ପରିସ୍ଥିତିରେ ଆଦୌ କରିବାକୁ ଦେବେ ନାହିଁ। ଏଭଳି ପରିପ୍ରେକ୍ଷୀରେ ପଶ୍ଚିମ

ୟୁରୋପୀୟ ରାଷ୍ଟ୍ରସମୂହ ଓ ଅଷ୍ଟ୍ରେଲିଆ ମଧ୍ୟ ବଡ଼ଭାଇ ଆମେରିକାର ଗୋଡ଼ାଣିଆ ହେଉଛି । ସେମାନେ କୁହନ୍ତି ଯେ ସେମାନେ ସବୁଜ ଗୃହ ବାଷ୍ପ ନିର୍ଗମନର ପରିମାଣରେ ମାତ୍ର ୩ ପ୍ରତିଶତ ହ୍ରାସ ଘଟାଇପାରିବେ, ତାଠୁଁ ଆଦୌ ଅଧିକ ନୁହେଁ । ସେମାନେ ସେମାନଙ୍କର ବନ୍ଧୁକର ମୁନକୁ ବିକାଶଶୀଳ ଅର୍ଥନୀତି ସମ୍ପନ୍ନ ରାଷ୍ଟ୍ର ସମୂହ ବିଶେଷତଃ ଚୀନ୍ ଓ ଭାରତ ଆଡ଼କୁ ମୁହାଁଇଛନ୍ତି । ପ୍ରଥମେ ସେମାନଙ୍କର ଯୁକ୍ତି ହେଲା ଆମର ଧାନକ୍ଷେତ ଓ ଗାଈଗୋରୁମାନଙ୍କର ଗୋବରରୁ ପ୍ରଚୁର ପରିମାଣର ମିଥେନ୍ ଗ୍ୟାସ୍ ସୃଷ୍ଟି ହେଉଛି ଏବଂ ବିଶ୍ୱ ଉତ୍ତପ୍ତି କରଣରେ ବିକାଶଶୀଳ ରାଷ୍ଟ୍ରମାନଙ୍କର ଯୋଗଦାନ ଅନନ୍ୟ ସାଧାରଣ । ଏହା ପ୍ରମାଣ କରିବାକୁ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ (CSIR) ର ପ୍ରାକ୍ତନ ଦିବଙ୍ଗତ ମହାନିର୍ଦ୍ଦେଶକ ଡ଼ଃ ଏ.ପି. ମିତ୍ରଙ୍କୁ ଦାୟିତ୍ୱ ପ୍ରଦାନ କରାଯାଇଥିଲା ଏବଂ ଗବେଷଣା ପରେ ବିକଶିତ ରାଷ୍ଟ୍ରମାନଙ୍କ ଅଭିଯୋଗ ଭୁଲ୍ ବୋଲି ପ୍ରମାଣିତ ହୋଇଥିଲା ।

**ଅଭିଯୋଗ ଓ ପ୍ରତିଅଭିଯୋଗ (The Accusations) :**

ତାପରେ ବିକଶିତ ରାଷ୍ଟ୍ରମାନଙ୍କର ପାଲ୍‌ଟା ଅଭିଯୋଗ ହେଲା ବିକାଶଶୀଳ ରାଷ୍ଟ୍ରମାନେ ରୋଷେଇପାଇଁ ବ୍ୟବହାର କରୁଥିବା ଜାଳେଣୀ କାଠ ଓ ଚୂଲିରୁ ନିର୍ଗତ ହେଉଥିବା ଅସମ୍ଭବ ଧୂଆଁ ବିଶ୍ୱରେ ସବୁଜ ଗୃହ ବାଷ୍ପ ସୃଷ୍ଟିର ମୁଖ୍ୟ କାରଣ ଅଟେ । ସେମାନେ ପୁଣି ଏବେ ଅଭିଯୋଗ ବାଢୁଛନ୍ତି ଯେ ଦ୍ରୁତ ଅଭିବୃଦ୍ଧିଶୀଳ ଭାରତୀୟ ଅର୍ଥନୀତି ଏବଂ ଏଥିପାଇଁ ଜୀବାଶ୍ମ ଇନ୍ଧନ (Fossil Fuel) ର ଦହନ ମାଧ୍ୟମରେ ଆମେ ସୃଷ୍ଟି କରୁଥିବା ଶକ୍ତି ଗ୍ଲୋବାଲ୍ ୱାର୍ମିଂ ପାଇଁ ନିଶ୍ଚିତ ରୂପେ ଦାୟୀ ଅଟେ ।

ଗ୍ଲୋବାଲ୍ ୱାର୍ମିଂ ପାଇଁ ଆମର ୧୧୦କୋଟି ଜନସଂଖ୍ୟା ଯେ ମୁଖ୍ୟତଃ ଦାୟୀ – ବିକଶିତ ରାଷ୍ଟ୍ରମାନେ ସେଥିପାଇଁ ଆମ ଉପରେ ଏପର୍ଯ୍ୟନ୍ତ ଦୋଷାରୋପ କରିନାହାନ୍ତି; କାରଣ ହୁଏତ ଆମେ ପ୍ରତ୍ୟେକ ପ୍ରତିମିନିଟ୍‌ରେ ଅଙ୍ଗାରକାମ୍ଳ ବାଷ୍ପ ନିଶ୍ୱାସ ବାୟୁରେ ବାୟୁ ମଣ୍ଡଳକୁ ନିର୍ଗତ କରୁଛୁ । ନିକଟ ଅତୀତରେ ଅଷ୍ଟ୍ରେଲିଆ ଚୀନ୍‌କୁ ୨୦ବର୍ଷ ପାଇଁ ବର୍ଷକୁ ୩୦ ନିୟୁତ ଟନ୍ କୋଇଲା ଯୋଗାଇଦେବାକୁ ଏକ ରାଜିନାମା ସ୍ୱାକ୍ଷରିତ କରିଛି ଏବଂ କୋଇଲା ଭିତ୍ତିକ ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା କରି ଚୀନ୍ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ କରିବ । ତେଣୁ ଏ ପରିପ୍ରେକ୍ଷୀରେ ବିକଶିତ ରାଷ୍ଟ୍ରମାନେ ମଧ୍ୟ ଚୀନ୍‌କୁ ଗ୍ଲୋବାଲ୍ ୱାର୍ମିଂ ପାଇଁ ନିଶ୍ଚିତ ରୂପେ ଦାୟୀ କରିବେ ।

**ତାହେଲେ ଆଗକୁ ରାସ୍ତା କଣ ( What Next ) ?**

ଆଗକୁ କିଭଳି ପଦକ୍ଷେପ ନିଆଯିବା ଉଚିତ୍ ହେବ ସେ ନେଇ ଭାରତ ଏବେ ବି ଦଶପାହୁଣ୍ଡ ଆଗେଇଗଲେ ପାଞ୍ଚ ପାହୁଣ୍ଡ ପଛକୁ ଫେରିଆସୁଛି । କୌଣସି ନିର୍ଣ୍ଣାୟକ ପଦକ୍ଷେପ ନେବା ପାଇଁ ଭାରତ ଦୋ ଦୋ ପାଞ୍ଚ ହେଉଛି । ହାତେ ମାପି ଚାଖଣ୍ଡେ ଚାଲିବାକୁ ହୁଏତ ଭାରତ ଏବେ ଉଚିତ୍ ମନେ କରୁଛି । ଫେବୃୟାରୀ ୫ ତାରିଖ ଦିନ ପ୍ରଧାନମନ୍ତ୍ରୀ ଡ଼ଃ ମନମୋହନ ସିଂହ ଘୋଷଣା କଲେ ଯେ ଭାରତ ଆଗାମୀ "ୟୁନାଇଟେଡ୍ ନେସନ୍ସ ଫ୍ରେମୱାର୍କ କନ୍‌ଭେନ୍‌ସନ୍ ଅନ୍ କ୍ଲାଇମେଟ୍ ଚେଞ୍ଜ (UNFCC)" ରେ ଏକ ଖୋଲା ମନ ନେଇ ଯୋଗଦାନ କରିବ ଏବଂ ୨୦୨୦ ମସିହା ସୁଦ୍ଧା ସବୁଜ ଗୃହ ବାଷ୍ପ ନିର୍ଗମନ ପରିମାଣରେ ୨୦ରୁ ୨୫ ପ୍ରତିଶତ ହ୍ରାସ କରିବା ପାଇଁ ଭାରତ କରିଥିବା ନିର୍ଭର ପ୍ରତିଶ୍ରୁତିକୁ ଅକ୍ଷରେ ଅକ୍ଷରେ ପାଳନ କରିବ ।

ଆମକୁ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼ିଥାଏ ଯେ ଏଭଳି ସର୍ତ୍ତ ପୂରଣ କରିବା ପାଇଁ ଆମ ଯୋଜନାର ଆଭିମୁଖ୍ୟ ସତରେ କଣ ହେବା ଉଚିତ୍ ? ଅବା ଆମ ହାତରେ କଣ ସେପରି କୌଣସି ଯାଦୁର ବାଡ଼ିଟିଏ ଅଛି ଯାହାକୁ ଟିକେ ହଲାଇ ଦେଲେ ଆମକୁ ଆମ ମନ ଇଚ୍ଛା ଫଳ ମିଳିଯିବ !

ବିଜ୍ଞାନ ଦିଗନ୍ତ : ମଇ, ୨୦୧୦



ବିଶ୍ୱବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱପ୍ରତିଷ୍ଠାନ ୱିପୋର "ଆନ୍ତର୍ଜାତିକ ସ୍ୱର୍ଣ୍ଣ ପଦକ- ୧୯୯୮", ନାଲକୋର "ଆଉଟ୍‌ଷ୍ଟାଣ୍ଡିଙ୍ଗ ଆଚିଭ୍‌ମେଣ୍ଟ ଆୱାର୍ଡ଼ -୧୯୯୮", ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟ ଅଧିନସ୍ଥ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦ(ସି.ଏସ୍.ଆଇ.ଆର୍)ର "ଶ୍ରେଷ୍ଠ ଜାତୀୟ ପ୍ରଯୁକ୍ତିବିଦ୍ୟା ପୁରସ୍କାର-୨୦୦୨" ତଥା "ଭାରତବର୍ଷର ଶ୍ରେଷ୍ଠ ନାଗରିକ ପୁରସ୍କାର-୨୦୦୮" ଆଦି ବହୁ ସମ୍ମାନଜନକ ପୁରସ୍କାର ଲାଭ କରିଛନ୍ତି ।

ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ଡ଼ଃ ମିଶ୍ର ଏ ପୁସ୍ତକଟିକୁ ମିଶାଇ ମୋଟ୍ ୮ ଖଣ୍ଡ ଜନପ୍ରିୟ ବିଜ୍ଞାନ ପୁସ୍ତକ ରଚନା କରିଛନ୍ତି । ସେଗୁଡ଼ିକ ହେଲା: ଚେତନା, ପ୍ରଯୁକ୍ତିବିଦ୍ୟାର ମହାଦୌଡ଼, ଭାରତୀୟ କଳିଙ୍ଗ ପୁରସ୍କାର ବିଜେତା, ବିଜ୍ଞାନର ମାୟାନଗରୀ, ବିଜ୍ଞାନର ମାନବୀୟ ରୂପ, ଜ୍ଞାନର ଐଶ୍ୱର୍ଯ୍ୟ ଓ ଜ୍ଞାନର ଅର୍ଥନୀତି । ତନ୍ମଧ୍ୟରୁ "ବିଜ୍ଞାନର ମାୟାନଗରୀ" ପୁସ୍ତକଟି ଶ୍ରେଷ୍ଠ ଜନପ୍ରିୟ ବିଜ୍ଞାନ ପୁସ୍ତକ ଭାବେ ୨୦୦୩ ମସିହାରେ ଓଡ଼ିଶା ସରକାରଙ୍କ "ବିଜ୍ଞାନ ଏକାଡେମୀ ପୁରସ୍କାର" ଲାଭ କରିଛନ୍ତି । "ବିଜ୍ଞାନର ମାନବୀୟ ରୂପ" ପୁସ୍ତକଟି ଉଭୟ "ରାଜଧାନୀ ପୁସ୍ତକମେଳା ପୁରସ୍କାର ୨୦୦୬" ଓ "ଭୁବନେଶ୍ୱର ପୁସ୍ତକମେଳା ପୁରସ୍କାର-୨୦୦୭" ଲାଭ କରିଛି । "ଜ୍ଞାନର ଐଶ୍ୱର୍ଯ୍ୟ" ପୁସ୍ତକଟି "କଳିଙ୍ଗ ପୁସ୍ତକମେଳା ପୁରସ୍କାର -୨୦୦୮" ଲାଭ କରି ଅନନ୍ୟ ପାଠକୀୟ ସ୍ୱୀକୃତି ଲାଭ କରିଛି ।

ଡ଼ଃ ମିଶ୍ର ଦେଶ ବିଦେଶର ବହୁ ବୃତ୍ତିଗତ ଅନୁଷ୍ଠାନର ସଭ୍ୟ ଓ ଫେଲୋ ଭାବେ କାର୍ଯ୍ୟ କରୁଛନ୍ତି । ବହୁ ଦେଶବିଦେଶ ଭ୍ରମଣ କରି ଡ଼ଃ ମିଶ୍ର ଅନନ୍ୟ ବୈଜ୍ଞାନିକ କୀର୍ତ୍ତିସ୍ତମ୍ଭ ସ୍ଥାପନା କରିଛନ୍ତି । ସମ୍ପ୍ରତି ଡ଼ଃ ମିଶ୍ର କେନ୍ଦ୍ର ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟର ଆର୍ଥିକ ଅନୁଦାନ ଲାଭ କରି କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ପ୍ରକାଶନରେ ୧୯୫୨ ମସିହାରୁ ୨୦୦୯ ମସିହା ମଧ୍ୟରେ ସମଗ୍ର ବିଶ୍ୱରେ "କଳିଙ୍ଗ ପୁରସ୍କାର" ଲାଭ କରିଥିବା ୬୫ ଜଣ ପ୍ରଥିତଯଶା ବୈଜ୍ଞାନିକ ମହାମନିଷୀଙ୍କର ବାୟୋଗ୍ରାଫି ରଚନାରେ ନିମଗ୍ନ ଅଛନ୍ତି । ଏଭଳି ପ୍ରଚେଷ୍ଟା ସମଗ୍ର ବିଶ୍ୱରେ ପ୍ରଥମ ।

ଡ଼ଃ ମିଶ୍ରଙ୍କ ଜୀବନଲିପି (Biography) ଦେଶ ବିଦେଶର ବହୁ ଆତ୍ମଜୀବନୀ ପୁସ୍ତକ (Biographical Memoirs) ରେ ସ୍ଥାନିତ ହୋଇ ଅତ୍ୟନ୍ତ ପ୍ରଶଂସାଭାଜନ ହୋଇଛି ।

ବିଜ୍ଞାନକୁ ଲୋକାଭିମୁଖୀ କରିବା ସଙ୍ଗେ ସଙ୍ଗେ ଜନସାଧାରଣ ବିଶେଷତଃ ତରୁଣ ଯୁବଗୋଷ୍ଠୀଙ୍କ ମନରେ ବିଜ୍ଞାନ ପ୍ରତି ଅହେତୁକ ଆକର୍ଷଣ ସୃଷ୍ଟି କରିବାର ପରମ ଆଭିମୁଖ୍ୟ ରଖି ଡ଼ଃ ମିଶ୍ର ବିଗତ ୩୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ନିରବଚ୍ଛିନ୍ନ ଭାବେ ଜନପ୍ରିୟ ବିଜ୍ଞାନ ରଚନା କରି ଆସୁଛନ୍ତି । ରାଜ୍ୟର ପ୍ରମୁଖ ସମ୍ବାଦପତ୍ର, ପତ୍ରପତ୍ରିକାର ବିଜ୍ଞାନ ପୃଷ୍ଠାରେ ଡ଼ଃ ମିଶ୍ର ଜଣେ ଅତ୍ୟନ୍ତ ପରିଚିତ ନାମ । ତାଙ୍କର ଏହି ପ୍ରୟାସର ସ୍ୱୀକୃତି ସ୍ୱରୂପ ଡ଼ଃ ମିଶ୍ର ରାଜ୍ୟର ବହୁ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ବହୁବାର ସମ୍ମାନିତ ହୋଇଛନ୍ତି । ଦୂରଦର୍ଶନ ଭୁବନେଶ୍ୱର କେନ୍ଦ୍ରର ବହୁ ବିଜ୍ଞାନଭିତ୍ତିକ କାର୍ଯ୍ୟକ୍ରମ ସହ ଡ଼ଃ ମିଶ୍ର ଓତଃପ୍ରୋତ ଭାବେ ଜଡ଼ିତ । ସମ୍ପ୍ରତି ଡ଼ଃ ମିଶ୍ର ଓଡ଼ିଶାରେ ଥିବା ସମସ୍ତ ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନ, ଶିଳ୍ପ ସଂସ୍ଥା, ବିଶ୍ୱବିଦ୍ୟାଳୟ ଓ ଉଚ୍ଚଶିକ୍ଷାନୁଷ୍ଠାନ ମାନଙ୍କରେ ସଂଗଠିତ ହେଉଥିବା ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଭିତ୍ତିକ ନାନାବିଧ କାର୍ଯ୍ୟକ୍ରମକୁ ଦୂରଦର୍ଶନ କେନ୍ଦ୍ର ଭୁବନେଶ୍ୱର ମାଧ୍ୟମରେ "ଡକୁମେଣ୍ଟାରୀ" ପ୍ରସ୍ତୁତି କରିବାରେ ବ୍ୟସ୍ତ ଅଛନ୍ତି । ଏଭଳି ପ୍ରୟାସ ମଧ୍ୟ ଓଡ଼ିଶାରେ ସର୍ବପ୍ରଥମ ।

ଡ଼ଃ ମିଶ୍ର ଜଣେ ଅତ୍ୟନ୍ତ ସରଳ, ଅମାୟିକ, ନିରାଡ଼ମ୍ବର ଓ ଆତ୍ମାନୁରାଗୀ ବ୍ୟକ୍ତିତ୍ୱ ଭାବେ ସୁପରିଚିତ । ବିଜ୍ଞାନ, ବୈଜ୍ଞାନିକ ଗବେଷଣା ଓ ସାହିତ୍ୟ ସାଧନା ତାଙ୍କ ଜୀବନର ଅନିର୍ବାଣ ସ୍ୱପ୍ନ ଓ ପରମ ତପସ୍ୟା । ଜଣେ ପ୍ରକୃତିପ୍ରେମୀ ଭାବେ ମଧ୍ୟ ସେ ସମାଜରେ ବେଶ୍ ପ୍ରଶଂସିତ । ଗଳ୍ପ, କବିତା, ଉପନ୍ୟାସ, ସଂଗୀତ ଓ ନୃତ୍ୟ ପ୍ରତି ତାଙ୍କ ଗଭୀର ଅନୁରାଗ, ଶ୍ରଦ୍ଧା ଓ ପ୍ରେମ ରହିଛି । ଡ଼ଃ ମିଶ୍ର ବିଜ୍ଞାନର ସର୍ବବ୍ୟାପ୍ତ ପରିଚୟ, ଅସଂଖ୍ୟ ସ୍ୱପ୍ନ, ଅସୁମାରୀ ସମ୍ଭାବନା ଓ ଉଜ୍ଜ୍ୱଳମୟ ଭବିଷ୍ୟତର ନିଖୁଣ ଚିତ୍ର ଆଙ୍କିବାରେ ଅତ୍ୟନ୍ତ ସିଦ୍ଧହସ୍ତ ଓ ସଫଳକାମୀ ବ୍ୟକ୍ତିତ୍ୱ ।

ଠିକଣା :
ଡ଼ଃ ଚିତ୍ତରଞ୍ଜନ ମିଶ୍ର
ବି-୩, ଏଚ୍.ଆଇ.ଜି. କଲୋନୀ, ବରମୁଣ୍ଡା ହାଉସିଂବୋର୍ଡ଼,
ଭୁବନେଶ୍ୱର-୭୫୧୦୦୩, ଫୋନ୍ : ୦୬୭୪-୨୫୫୪୦୨୭
ମୋବାଇଲ୍ : ୯୩୩୮ ୨୦୪୯୯୩
ଇ.ମେଲ୍ : crmishra49@yah

## "ବିଜ୍ଞାନର ଶଂଖନାଦ" ସମ୍ପର୍କରେ ପଦେ...

"ବିଜ୍ଞାନର ଶଂଖନାଦ" ପୁସ୍ତକଟି ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ, ବରିଷ୍ଠ ସ୍ତମ୍ଭକାର, ବାଗ୍ମୀ, ସୁବକ୍ତା ତଥା ଓଡ଼ିଶାର ବିଶିଷ୍ଟ ଜନପ୍ରିୟ ବିଜ୍ଞାନ ରଚନାକାର ଡ଼ଃ ଚିତ୍ତରଞ୍ଜନ ମିଶ୍ରଙ୍କର ଏକ ଅନବଦ୍ୟ କୃତି । ପୁସ୍ତକଟିରେ ଡ଼ଃ ମିଶ୍ର ବିଜ୍ଞାନର ସର୍ବବ୍ୟାପ୍ତ ପରିଚୟ, ଅସଂଖ୍ୟ ସ୍ୱପ୍ନ, ଅସୁମାରୀ ସମ୍ଭାବନା ଓ ଉଜ୍ଜ୍ୱଳମୟ ଭବିଷ୍ୟତର ଏକ ନିଖୁଣ ଚିତ୍ର ଆଙ୍କିବାରେ ସଫଳକାମୀ ହୋଇଛନ୍ତି । ଭାରତୀୟ ବିଜ୍ଞାନର ଅନିର୍ବାଣ ଜୟଯାତ୍ରା, ବିଜ୍ଞାନର ପରମ ମହାନୁଭବତା, ଉଚ୍ଚଶିକ୍ଷା ଓ ଗବେଷଣାର ବିବର୍ତ୍ତନବାଦ, ଅନ୍ତର୍ଦେଶୀୟ ପ୍ରଯୁକ୍ତିବିଦ୍ୟାର ଅଭୂତପୂର୍ବ ସାଫଲ୍ୟ, ବିଶ୍ୱ ବୈଜ୍ଞାନିକ ରତ୍ନଚକ୍ରର ସପ୍ତରଙ୍ଗ ବର୍ଣ୍ଣାଳୀ ଆଦି ବହୁ ଉଚ୍ଚକୋଟୀର ଭାବଗର୍ଭକ ବୈଜ୍ଞାନିକ ରଚନାବଳୀକୁ ଡ଼ଃ ମିଶ୍ର ଅତ୍ୟନ୍ତ ସରଳ, ସାବଲୀଳ ଓ ପ୍ରାଞ୍ଜଳ ଭାବରେ ସ୍ୱକୀୟ ବୈଜ୍ଞାନିକ ଛଟା ଓ ଚିନ୍ତା ଚେତନାର ପ୍ରବାହମାନ ଶବ୍ଦବ୍ରହ୍ମ ମାଧ୍ୟମରେ ଗୁମ୍ଫିତ କରିଛନ୍ତି ।

ବହୁ ଆଶା, ବହୁ ସ୍ୱପ୍ନ, ବହୁ ସଂଗ୍ରାମ, ବହୁ ତିତିକ୍ଷାକୁ ପାଥେୟ କରି ଜନପ୍ରିୟ ବିଜ୍ଞାନ ରଚନାକାର ଡ଼ଃ ମିଶ୍ର ବିଶ୍ୱ ବୈଜ୍ଞାନିକ ଚିତ୍ର ବିନ୍ୟାସକୁ ନିଜର କଲମ ମୁନରେ ପ୍ରସ୍ଫୁଟିତ କରିବାରେ ସିଦ୍ଧହସ୍ତ ହୋଇଛନ୍ତି । ଏହି ଜନପ୍ରିୟ ବିଜ୍ଞାନ ପୁସ୍ତକଟି ଲେଖକଙ୍କର ଅଷ୍ଟମ ସୃଷ୍ଟିର ପରମ ସ୍ୱାକ୍ଷର ବହନ କରିଛି । ବିଜ୍ଞାନ ମାଧ୍ୟମରେ ସେ ସ୍ୱପ୍ନର ତାଜମହଲ ଗଢ଼ିବାକୁ ଚାହିଁଛନ୍ତି ଧୂଳି ଧୂସରିତ ମାଟି ବୁକୁରେ । ଯୁବଶକ୍ତିର ପ୍ରେରଣା ହିଁ ତାଙ୍କ ମନରେ ଅହେତୁକ ବାସନା ସୃଷ୍ଟି କରିଛି । ଯୁବଶକ୍ତି ଉପରେ ତାଙ୍କର ଭାରି ଭରସା । ଭାରତର କୋଟି କୋଟି ଯୁବ ମାନସରେ ବିଜ୍ଞାନର କୀର୍ତ୍ତି ସ୍ତମ୍ଭ ସ୍ଥାପନ କରିବା ତାଙ୍କ ଜୀବନର ଏକ ଅନିର୍ବାଣ ସ୍ୱପ୍ନ । ଭାରତୀୟ ଯୁବଶକ୍ତିର ହାତଧରି ସେ ଦୌଡ଼ିବାକୁ ଚାହିଁଛନ୍ତି ସମୟର ବଡ଼ଦାଣ୍ଡରେ । ଯୁବଶକ୍ତିର ଆଖିରେ ସେ ଦେଖୁଛନ୍ତି ଆଗାମି କାଲିର ଭବିଷ୍ୟତ, ଭବିଷ୍ୟତର ଭବିଷ୍ୟତ ଓ ଉଦିତ ସୂର୍ଯ୍ୟର ଅବର୍ଣ୍ଣନୀୟ ଆଭା । ବୈଜ୍ଞାନିକ ରଚନାକାର ଡ଼ଃ ମିଶ୍ର ଏକ ସ୍ୱପ୍ନ ବିଦଗ୍ଧ ବୈଜ୍ଞାନିକ ବ୍ୟକ୍ତିତ୍ୱ ଭାବେ ପାଠକ ମହଲରେ ବେଶ୍ ପରିଚିତ । ତାଙ୍କ ବୈଜ୍ଞାନିକ ପ୍ରତିଭାର ଅନନ୍ୟ ରୂପାୟନ ହୋଇଛି ପୁସ୍ତକଟିର ଛତ୍ରେ ଛତ୍ରେ। ସେ ଜୀବନର ଜୟ ଜୟକାର କରିଛନ୍ତି, ସ୍ୱପ୍ନର ଜୟ ଜୟକାର କରିଛନ୍ତି ତାଙ୍କର ପ୍ରତିଟି ରଚନାରେ । ସାରା ସଂସାରକୁ ନିଜ ବାହୁ ବନ୍ଧନରେ ବାନ୍ଧି ରଖିବାକୁ ଚାହିଁଛନ୍ତି ତାଙ୍କର ରାଶି ରାଶି ବୈଜ୍ଞାନିକ ପ୍ରବନ୍ଧ ମାଧ୍ୟମରେ । ବିଜ୍ଞାନର ନାଗଫାଶରେ ଜାବୁଡ଼ିଧରି ରଖିବାକୁ ଚାହିଁଛନ୍ତି ଗୋଟାପଣେ ସାରା ଜଗତକୁ । ତାଙ୍କର ପ୍ରତିଟି ରଚନାରେ, ପ୍ରତିଟି ସ୍ୱପ୍ନରେ ଇନ୍ଦ୍ରଧନୁର ସପ୍ତରଙ୍ଗ ବିଛେଇ ହୋଇପଡ଼ିଛି ମାଟି ମଟାଳର କର୍ଦ୍ଦମାକ୍ତ ଶେଯ ଉପରେ ।

ବୈଜ୍ଞାନିକ ଗବେଷଣା, ଉଚ୍ଚଶିକ୍ଷାରେ ସଙ୍କଟ, ବିଜ୍ଞାନର ସାମ୍ପ୍ରତିକ ସ୍ଥିତି, ଭବିଷ୍ୟତର ଆଶା ଓ ସ୍ୱପ୍ନ, ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକଙ୍କ ଜୀବନ ଦର୍ଶନ ତଥା ବିଶ୍ୱ ଗବେଷଣା ଓ ଉନ୍ନୟନର ସୁଦୂରପ୍ରସାରୀ ପରାଭବକୁ ଅଭିମାନୀ ଅକ୍ଷର ଓ ଅସୁମାରୀ ଶବ୍ଦର ବାହୁ ବନ୍ଧନରେ ବାନ୍ଧି ଡ଼ଃ ମିଶ୍ର ସେ ସବୁକୁ ପାଠକଙ୍କ ଦରବାରରେ ପରିବେଷଣ କରିବାର ମହତ୍ ପ୍ରୟାସ କରିଛନ୍ତି । ପୁସ୍ତକଟିରେ ସ୍ଥାନିତ ସମସ୍ତ ବୈଜ୍ଞାନିକ ରଚନାବଳୀ ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ଦୈନିକ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିସାରିଛି । ସେହି ପ୍ରବନ୍ଧ ଗୁଡ଼ିକୁ ଗୋଟିଏ ମାଳାରେ ଗୁନ୍ଥି ଏକ ଅନନ୍ୟ ନବକଳେବର ରୂପରେ ଭେଟି ଦେବାର ଡ଼ଃ ମିଶ୍ରଙ୍କର ଏହା ଏକ ଅପରୂପ ପଦକ୍ଷେପ । ଆଶା ଲେଖକଙ୍କର ପୂର୍ବ ପୁସ୍ତକଗୁଡ଼ିକ ପରି ଏ ପୁସ୍ତକଟି ମଧ୍ୟ ଜନତାର ଦରବାରରେ ସଫଳତାର ବରଣମାଳା ପିନ୍ଧି ସମୟର ଆଶୀର୍ବାଦରେ ଅଭିମଣ୍ଡିତ ହେବ ।

ପ୍ରଚ୍ଛଦ : ଶ୍ରୀ ବଳଦେବ ମହାରଥୀ

ମୂଲ୍ୟ : ତିନି ଶହ ଟଙ୍କା ମାତ୍ର